# ହରିହର ମହାପାତ୍ର ଗ୍ରନ୍ଥାବଳୀ



ସଂଗ୍ରହ ଓ ସଂପାଦନା

ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ



## ସୁରେଶ କୁମାର ମହାପାତ୍ର
## (୧୯୫୭)

କବି ହରିହର ମହାପାତ୍ରଙ୍କ ମୌଳିକ କାବ୍ୟ କବିତାଗୁଡ଼ିକୁ ବହୁବର୍ଷ ପରେ ପୁନଃଉଦ୍ଧାର ଓ ସଂକଳିତ କରିବା ନିମନ୍ତେ ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦଙ୍କ ପ୍ରଚେଷ୍ଟାକୁ ପରୋକ୍ଷ ଭାବେ ସହଯୋଗ ଦେଇଥିବା ଏବଂ ଉକ୍ତ ଗ୍ରନ୍ଥରସତ୍ୱାଧିକାର ଗ୍ରହଣ କରିଥିବା ଶ୍ରୀଯୁକ୍ତ ସୁରେଶ କୁମାର ମହାପାତ୍ର କବି ହରିହର ମହାପାତ୍ରଙ୍କ ତୃତୀୟପୁତ୍ର ଇନ୍ଦୁ ଭୂଷଣ ମହାପାତ୍ରଙ୍କ ମଧ୍ୟମ ପୁତ୍ର । ସାହିତ୍ୟ ସଂସ୍କୃତିକୁ ଅନ୍ତରଙ୍ଗ ଭାବେ ଭଲ ପାଉଥିବା ସୁରେଶ କୁମାର ବୃତ୍ତିରେ ଭାରତୀୟ ଷ୍ଟେଟ୍ ବ୍ୟାଙ୍କର ଜଣେ ବରିଷ୍ଠ ଅଧିକାରୀ । ସେ ସମ୍ବଲପୁର ଜିଲ୍ଲାର କୁଚିଣ୍ଡା ଉପଖଣ୍ଡ ଅନ୍ତର୍ଗତ ଭୋଜପୁରଠାରେ ଜନ୍ମଗ୍ରହଣ କରି ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଶିକ୍ଷା ସମାପ୍ତ ପରେ ବ୍ୟାଙ୍କ ସେବାରେ ଯୋଗ ଦେଇ ଓଡ଼ିଶାର ବିଭିନ୍ନ ଶାଖାରେ ଦାୟିତ୍ୱ ନିର୍ବାହ ପୂର୍ବକ ସଂପ୍ରତି ଭୁବନେଶ୍ୱରଠାରେ ଅବସ୍ଥାପିତ । ତତ୍କାଳୀନ ବିଶିଷ୍ଟ କବି ହରିହର ମହାପାତ୍ରଙ୍କ ଲୁପ୍ତପ୍ରାୟ ରଚନାଗୁଡ଼ିକୁ ଗ୍ରନ୍ଥାବଳୀ ଭାବେ ଲୋକଲୋଚନକୁ ଆଣିବାରେ ତାଙ୍କର ଅନନ୍ୟ ଭୂମିକା ଯେ ଭାଷା ସାହିତ୍ୟ ପ୍ରତି ରହିଥିବା ରୁଚି ଓ ପୂଜ୍ୟପୂଜା ପ୍ରତି ସମ୍ମାନକୁ ପ୍ରତୀକିତ କରେ ଏହା ନିଃସନ୍ଦେହ ।

– ପ୍ରକାଶକ

# ହରିହର ମହାପାତ୍ର ଗ୍ରନ୍ଥାବଳୀ

ସଂଗ୍ରହ ଓ ସଂପାଦନା

ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

କାବ୍ୟଲୋକ
ନିଜିଗଡ଼ କୁରୁଖି, ହରିରାଜପୁର
ଜଟଣୀ, ପୁରୀ-୭୫୨୦୫୦

॥ ହରିହର ମହାପାତ୍ର ଗ୍ରନ୍ଥାବଳୀ ॥

ହରିହର ମହାପାତ୍ର ଗ୍ରନ୍ଥାବଳୀ □ ସଂଗ୍ରହ ଓ ସଂପାଦନା: ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ □ ପ୍ରକାଶକ : କାବ୍ୟଲୋକ, ନିଜିଗଡ଼ କୁରୁଖି, ହରିରାଜପୁର, ଜଟଣୀ, ପୁରୀ-୭୫୨୦୫୦, ମୋ: ୯୪୩୭୨୮୩୯୦୭ □ ସ୍ୱତ୍ୱ: ସୁରେଶ କୁମାର ମହାପାତ୍ର,ଭୋଜପୁର,କୁଚିଣ୍ଡା, ସମ୍ବଲପୁର □ ମୁଦ୍ରଣ:ଜଗନ୍ନାଥ ଗ୍ରାଫିକ୍ସ,ଭୁବନେଶ୍ୱର-୨୨ □ ପ୍ରଥମ ପ୍ରକାଶନ : ୨୦୧୫ □ମୂଲ୍ୟ : ୪୮୦ଟଙ୍କା

---

Harihara Mohapatra Granthabali □Collection & Compilation: Dr. Fanindra Bhusan Nanda □ Publisher : KAVYALOKA, Nizigarh Kurukhi, Harirajpur, Jatni, Puri-752050, Mob.: 9437283907 □ Printed at Jagannath Graphics, Bhubaneswar-22 □ First Edition-2015 □ Price : **Rs. 480/-**

**ISBN 978-93-85316-29-6**

# ମୁଖଶାଳା

ଓଡିଆ ସାରସ୍ୱତ ପ୍ରେକ୍ଷାପଟରେ ଅନନ୍ୟ ଯଜ୍ଞ ବେଦୀ ବାମଣ୍ଡା । ବାମଣ୍ଡା କେବଳ ଓଡିଆ ଭାଷା ସାହିତ୍ୟକୁ ସମୃଦ୍ଧ କରିଥିଲା ତା ନୁହେଁ ବରଂ ଆଧୁନିକ ସାରସ୍ୱତ ଧାରାକୁ ପୁଷ୍କଳ କରିଥିଲା । ରାଧାନାଥ ଯୁଗୀୟ ପ୍ରାଣସ୍ପନ୍ଦନକୁ ଉଚିତ ଖୋରାକ ଯୋଗାଇଥିଲା ବାମଣ୍ଡା । ଏହି ଧାରାକୁ ପୁଷ୍ଟ କରିବାରେ ବାମଣ୍ଡାର କବି ଓ ସାହିତ୍ୟିକ ନିଜ ସୃଷ୍ଟି ଉତ୍ସର୍ଗୀ ଦେଇଥିଲେ । ଏମିତି ଏକ ପ୍ରାଣପାତ ଉତ୍ସର୍ଗର ଉଜ୍ଜ୍ୱଳ ଦୃଷ୍ଟାନ୍ତ 'ହରିହର ମହାପାତ୍ର' । ହରିହରଙ୍କ ସୃଷ୍ଟି ସଂଭାରର ଏକ ସଂକଳନ ସଂପାଦନା କଳ୍ପନାରେ ଥିଲା । ଏଥିପାଇଁ ମଧ୍ୟ ପ୍ରାରମ୍ଭିକ ଉଦ୍ୟମ ଆରମ୍ଭ କରାଯାଇଥିଲା । ଏହି ସମୟରେ ହରିହର ମହାପାତ୍ରଙ୍କ ସୁଯୋଗ୍ୟ ନାତି ଶ୍ରୀଯୁକ୍ତ ସୁରେଶ କୁମାର ମହାପାତ୍ର ନିଜ ପିତାମହଙ୍କ ସୃଷ୍ଟିକୁ ଲୋକଲୋଚନକୁ ଆଣିବାକୁ ଆଗଭର ହେଲେ । କିନ୍ତୁ ତାଙ୍କ ପାଖରେ ହରିହରଙ୍କ ଗୋଟିଏ ମଧ୍ୟ ରଚନା ନଥିଲା । ଏଣୁ ଚୁକ୍ତି ହେଲା ସେ ଗ୍ରନ୍ଥାବଳୀର ପ୍ରକାଶନ ଖର୍ଚ୍ଚ ବିନା ଦ୍ୱିଧାରେ ଗ୍ରହଣ କରିବେ ଏବଂ ସଂପାଦକର ଦାୟିତ୍ୱ ରହିଲା ରଚନାବଳୀ ସଂଗ୍ରହ ଓ ସଂପାଦନାର । ଶ୍ରୀଯୁକ୍ତ ମହାପାତ୍ରଙ୍କ ପ୍ରତିବଦ୍ଧତା ଓ ସହଯୋଗଦ୍ୱାରା ଏହି ଗ୍ରନ୍ଥାବଳୀ ଆଜି ଲୋକଲୋଚନକୁ ଆସିଛି । ତାଙ୍କର ସହଯୋଗ ପାଇଁ ତାଙ୍କୁ ମୁଁ କୃତଜ୍ଞତା ଜଣାଉଛି ।

ଏହି ଗ୍ରନ୍ଥର ଉପାଦାନ ବିଭିନ୍ନ ସ୍ଥାନରୁ ସଂଗୃହୀତ ସେଥିପାଇଁ ବିଭିନ୍ନ ଅନୁଷ୍ଠାନ ଓ ବ୍ୟକ୍ତି ବିଶେଷଙ୍କ ସହଯୋଗକୁ ମୁଁ ଶ୍ରଦ୍ଧାର ସହିତ ସ୍ମରଣ କରୁଛି । ଉତ୍କଳ ସାହିତ୍ୟ ସମାଜର ମଧୁସୂଦନ ପାଠାଗାରରେ ଥିବା ସଂବଲପୁର ହିତୈଷିଣୀ, ଗଡଜାତବାସିନୀ, ଉତ୍କଳ ସେବକ ଆଦି ସମ୍ବାଦ ପତ୍ରରୁ ହରିହର ମହାପାତ୍ରଙ୍କ ରଚନା ସଂଗ୍ରହ କରିଛି ଏଥିରେ ଗ୍ରନ୍ଥାଗାରିକ ସ୍ନେହର ଲକ୍ଷ୍ମୀପ୍ରିୟା ଜେନା ମୋତେ ସାହାଯ୍ୟ କରିଥିବାରୁ ତାଙ୍କୁ ସ୍ନେହାଶୀର୍ବାଦ ଜଣାଉଛି ।

ଦେବଗଡର ପଣ୍ଡିତ ଦୁର୍ଗା ପ୍ରସାଦ ଦ୍ୱିବେଦୀ ଏହି ଗ୍ରନ୍ଥାବଳୀର ସଂଯୋଜକର ଭୂମିକା ନିର୍ବାହ କରିଛନ୍ତି । ତାଙ୍କର ଉତ୍ସାହବାକ୍ୟ ଓ ବାରମ୍ବାର ତାଗିଦ୍ ଦ୍ୱାରା ଗ୍ରନ୍ଥାବଳୀ ସଂପାଦନା କାର୍ଯ୍ୟ ତ୍ୱରାନ୍ୱିତ ହୋଇଛି । ତାଙ୍କୁ ସଂପାଦକର ଭୂମିଷ୍ଠ ପ୍ରଣାମ । ଶ୍ରୀଯୁକ୍ତ ହେମନ୍ତ କୁମାର ମହାପାତ୍ର, ଶ୍ରୀଯୁକ୍ତ ମଧୁସୂଦନ ଗୁରୁ, ଶ୍ରୀଯୁକ୍ତ ପୁରୁଷୋତ୍ତମ ନାଥ ଶର୍ମା (ବର୍ତ୍ତମାନ ଦିବଂଗତ) ପ୍ରମୁଖଙ୍କ ଆଶୀର୍ବାଦ ମୋର ପାଥେୟ । ସେମାନଙ୍କୁ ପ୍ରଣାମ କରିବା ମୋର ସର୍ବାଦୌ କର୍ତ୍ତବ୍ୟ । ବାମଣ୍ଡାର ପ୍ରତିଟି ଶୁଭେଚ୍ଛୁଙ୍କ ଠାରେ ମୁଁ ଦାୟବଦ୍ଧ । ବାମଣ୍ଡା ମାଟି ପ୍ରତି ମୁଁ କୃତଜ୍ଞ । ସେହି

ମାଟିର ଋଣ ପରିଶୋଧ କଲେ ଏହା ଏକ ସାମାନ୍ୟ ପରିକଳ୍ପନା ମାତ୍ର । ତଥାପି ସେହି ପବିତ୍ର ମାଟି ପ୍ରତି ମୁଁ ଋଣ ଗ୍ରସ୍ତ ପ୍ରତିଟି ଜୀବନ ।

ହରିହର ମହାପାତ୍ର ଜଣେ ସୃଜନଶୀଳ ଶିଳ୍ପୀ ଓ କବିରାଜ । ସେ ଅନେକ ସୃଷ୍ଟିର ସ୍ରଷ୍ଟା ଓ ଅନେକ ରୋଗର ଚିକିତ୍ସକ । ଜଣେ ଲୋକପ୍ରିୟ ଚିକିତ୍ସକ, ଅନନ୍ୟ କବି, ବିଶିଷ୍ଟ ସଂଗୀତଜ୍ଞ ଓ ନାଟ୍ୟକାର ରୂପେ ସେ ସମ୍ମାନର ପାତ୍ର । ରାଧାନାଥ ଯୁଗ ଓ ସତ୍ୟବାଦୀ ଯୁଗର ସଂଧିକ୍ଷଣରେ ତାଙ୍କର ସାରସ୍ୱତଚର୍ଯ୍ୟା । ରାଧାନାଥ କାବ୍ୟ ଧାରା ଦ୍ୱାରା ସେ ଅନୁପ୍ରାଣିତ ଏବଂ ସେହି ଧାରାକୁ ପୁଷ୍ଟ କରିବା ଯେମିତିଥିଲା ତାଙ୍କର କଳ୍ପିତ ପ୍ରାରବ୍ଧ । ଏହି ଆଭିମୁଖ୍ୟରେ ସେ କେତେ ସଫଳ ତାହା ସମୟ କହିବ କିନ୍ତୁ ସେହି କୃତବିଦ୍ୟ ସାଧକଙ୍କ ରଚନା ସମୂହକୁ ଏକତ୍ରିତ କରିବା ଆମର ମହନୀୟ କର୍ତ୍ତବ୍ୟ । ସେହି କର୍ତ୍ତବ୍ୟର ଫଳପ୍ରସୂ ଏହି ଗ୍ରନ୍ଥାବଳୀ । ଗ୍ରନ୍ଥାବଳୀର ସଂଗ୍ରହ ଓ ସଂପାଦନା ସମୟେ ଭରତ କାବ୍ୟ ଓ ମଣ୍ଡୁରାଜ ବିଜୟ ନାଟକର ଅପ୍ରାପ୍ତି ସଂପାଦକର ସର୍ବଶ୍ରେଷ୍ଠ ଦୁଃଖ । ଭରତ କାବ୍ୟର କିଛି ବିକ୍ଷିପ୍ତ ଅଂଶ ବିଭିନ୍ନ ସୂତ୍ରରୁ ସଂଗ୍ରହ କରି ଏଠାରେ ପାଠକଙ୍କୁ ଭେଟି ଦିଆଯାଇଛି ଓ ଦୁଃଖର ସହିତ ସ୍ୱୀକାର କରୁଛି ନିଜର ଅପାରଗତା ଏବଂ ହରିହର ମହାପାତ୍ରଙ୍କ ବଂଶଧରଙ୍କ ଅମନୋଯୋଗିତା ଯୋଗୁଁ ଆଜି ଓଡିଆ ସାରସ୍ୱତପ୍ରେମୀ ସେହି ଅନନ୍ୟ କାବ୍ୟ ପାଠରୁ ବଞ୍ଚିତ ହେଲେ ।

ହରିହର ମହାପାତ୍ରଙ୍କ 'ଖଣ୍ଡାଧାର' କାବ୍ୟ ମୋର ଦୃଷ୍ଟି ଅନ୍ତରାଳରେ ଥିଲା କିନ୍ତୁ କୃତବିଦ୍ୟ ଗବେଷକ ଓ ଐତିହାସିକ ଡକ୍ଟର କୈଳାସ ଚନ୍ଦ୍ର ଦାଶ 'ଖଣ୍ଡାଧାର' କାବ୍ୟଟି ଯୋଗାଇଦେଇ ମୋତେ ଅନୁଗୃହୀତ କରିଛନ୍ତି । ତାଙ୍କୁ ଏହି ପର୍ଯ୍ୟାୟରେ ପ୍ରଣାମ କରୁଛି ଏବଂ ସ୍ମରଣ କରୁଛି ତାଙ୍କର ଅନନ୍ୟ ସାରସ୍ୱତ ପ୍ରୀତି ଓ କୃତିକୁ ।

ଓଡିଶାର ତିନିଜଣ ଖ୍ୟାତଯଶା ଗବେଷକ ଡକ୍ଟର ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ, ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ଓ ଡକ୍ଟର ଗୌରାଙ୍ଗ ଚରଣ ଦାଶ ମୋର ପ୍ରତିଟି ଗତିବିଧି ସୁନିୟନ୍ତ୍ରିତ କରନ୍ତି । କାବ୍ୟିକତାର ପଲ୍ଲବନରେ ଓ କଳ୍ପନା ପ୍ରବଣତାରେ ଭାସି ଯାଉଥିବା ଚିନ୍ତାଧାରାକୁ ବିଜ୍ଞାନସିଦ୍ଧ ଗବେଷଣାରେ ବାନ୍ଧି ଉଚିତ ଦିଗଦର୍ଶନ ଦେବାରେ ଏମାନଙ୍କର ଉଦ୍ୟମ ଓ ସ୍ନେହଶୀଳତା ମୋତେ ମୁଗ୍ଧ,ଚକିତ ଓ ଗତିଶୀଳ କରିଛି । ଏମାନେ ପ୍ରକୃତରେ ଗୁରୁ ଓ ସମ୍ମାନାସ୍ପଦ ଏବଂ ମୋର ପ୍ରଣମ୍ୟ ।

ସାରସ୍ୱତ ନିଷ୍ଠା ଓ ଦାୟବଦ୍ଧତାରୁ ସାମାନ୍ୟ ସ୍ଖଳିତ ହେଲେ ପ୍ରତିପଦେପଦେ ସଂଖୋଳି ନେଇ ସାରସ୍ୱତ ଧାରା ଓ ଆନ୍ତର୍ଜାତିକ ସାହିତ୍ୟର ଗତିପଥ ସଂପର୍କରେ ସଚେତ କରାଇ ମୋତେ ଆହ୍ଲାଦିତ ଓ ବାଙ୍ମୟ କରିବାରେ ସଫଳ ଅନଶ୍ୱର ସାରସ୍ୱତ ଶିଳ୍ପୀ ନକୁଳ ଚନ୍ଦ୍ର ସାହୁଙ୍କୁ ମୁଁ ପ୍ରଣାମ କରୁଛି । ଗବେଷଣା ତଥା ସଂପାଦନାର ରୁକ୍ଷ ବଂଧୁର ଗତିପଥକୁ ସରସ ସୁନ୍ଦର ଓ କାବ୍ୟିକ କରିବାରେ ତାଙ୍କର ସୃଷ୍ଟିଶୀଳ ପ୍ରତିଭାର ଅନୁପ୍ରେରଣା ଛାୟାଦାୟୀ ବୃକ୍ଷ ପରି । ତେଣୁ ଓଡିଆ ସାହିତ୍ୟର ସେହି ସାରସ୍ୱତ ବୃକ୍ଷଙ୍କୁ ପ୍ରଣାମ କରୁଛି ।

ଏହି ପୁସ୍ତକର ପ୍ରକାଶନରେ ଆଗ୍ରହ ପ୍ରକାଶ କରି ମୋତେ ଅନୁପ୍ରେରିତ କରିଥିବାରୁ ବଂଧୁ ସନ୍ତୋଷ ମହାପାତ୍ରଙ୍କୁ ଶୁଭେଚ୍ଛା ଜଣାଉଛି । ମୁଦ୍ରଣ ଦାୟିତ୍ୱ ନିର୍ବାହ କରିଥିବାରୁ କାବ୍ୟଲୋକର ସଂପାଦକ କବିବଂଧୁ ଭିକାରୀ ଧଳଙ୍କ ପ୍ରତି ମୁଁ କୃତଜ୍ଞ । ସେ ଯେଉଁ ନିଷ୍ଠା ଓ ପ୍ରତିବଦ୍ଧତା ନେଇ ଏହାକୁ ସୁଦୃଶ୍ୟ ସଂକଳନରେ ପ୍ରକାଶ କରିଛନ୍ତି ତାହା ଅତୁଳନୀୟ । ତାଙ୍କର ସମସ୍ତ ସହକର୍ମୀଙ୍କୁ ମୋର ଧନ୍ୟବାଦ । ସ୍ନେହାସ୍ପଦ ଶ୍ରୀକାନ୍ତ କୁମାର ସାହୁ ଡିଟିପି କାର୍ଯ୍ୟରେ ସହଯୋଗ କରିଥିବାରୁ ଧନ୍ୟବାଦ ଜଣାଉଛି ।

ଗବେଷକ ସଂପାଦକ ଏମାନେ ନିଶାଗ୍ରସ୍ତ ପ୍ରାଣୀ । ଏମାନଙ୍କୁ ମଣ କରି ଉପଯୁକ୍ତ ଅବସର ପ୍ରଦାନ କଲେ ଜାତୀୟ କର୍ତ୍ତବ୍ୟ ସୁସଂପାଦିତ ହୁଏ । ଏହି ପ୍ରତିବଦ୍ଧତାରେ ବିଶ୍ୱାସୀ ମୋର ପ୍ରିୟତମା ପତ୍ନୀ ଶ୍ରୀମତୀ ଶୈଳବାଳାଙ୍କ ଅକୁଣ୍ଠ ସହଯୋଗ ଓ ତ୍ୟାଗ ପାଇଁ ମୁଁ ସାଧୁବାଦ ଜଣାଉଛି । ମୋର ପ୍ରତିଟି ପୁସ୍ତକ ପ୍ରକାଶନରେ ପୁଲକିତ ହୋଇ ଚାତକ ପରି ଚାହିଁ ରହିଥିବା ସବ୍ୟ, ରିଙ୍କି, ବାଉଲ ଓ ପିଙ୍କି ଙ୍କୁ ଏହି ଅବସରରେ ମୋର ସ୍ନେହପୂର୍ଣ୍ଣ ଶୁଭାଶିଷ ।

ବହୁ ଉଦ୍ୟମ ଓ ଚେଷ୍ଟା ସତ୍ତ୍ୱେ 'ହରିହର ଗ୍ରନ୍ଥାବଳୀ' କୁ ପୂର୍ଣ୍ଣାଙ୍ଗ ରୂପ ଦେବା ସମ୍ଭବ ହୋଇ ପାରିଲା ନାହିଁ । ଅନେକ ଅତ୍ୟାବଶ୍ୟକ ଉପାଦାନର ଅପ୍ରାପ୍ତି ମ୍ରିୟମାଣ କରିଛି । ଯତ୍‌ପରୋନାସ୍ତି ଉଦ୍ୟମ ସତ୍ତ୍ୱେ ଆଂଶିକ ଅସଫଳତା ମୋତେ ବିଚଳିତ କରି ଦୁଃଖ ଦେଇଛି । ସେ ଯା ହେଉ ସମସ୍ତ ଅପୂର୍ଣ୍ଣତା ଓ ତ୍ରୁଟିକୁ ଶିରୋଭୂଷଣ କରି ଏହି ସଂକଳନଟି ପାଠକ, ଗବେଷକ ଓ ଶୁଭେଚ୍ଛୁଙ୍କ ହାତରେ ଉତ୍ସର୍ଗୀଦେଲି ଏବଂ ସେମାନଙ୍କ ସଦୟ ଦୃଷ୍ଟି ଏଥିପ୍ରତି ଆକର୍ଷିତ ହେଲେ ଶ୍ରମ ସାର୍ଥକ ମଣିବି ।

ଦିବଂଗତ ସ୍ରଷ୍ଟାମାନଙ୍କର ରଚନା ସଂଭାର ସଂକଳନ ଏକ ଜାତୀୟ କର୍ତ୍ତବ୍ୟ । ଏଥିରେ ସମସ୍ତଙ୍କ ସାହାଯ୍ୟ କାମ୍ୟ । ବିଶେଷ କରି ସ୍ରଷ୍ଟାଙ୍କ ବଂଶଧରମାନେ ଘରେ ଥିବା ନଥିପତ୍ର ତଥା ଉପାଦାନ ସମୂହକୁ ସଂପାଦକ ହାତରେ ଅର୍ପଣ କରି ସାହାଯ୍ୟ କରିବା ଉଚିତ୍ । ପ୍ରାଚୀନ ଉପାଦାନ ଗୁଡିକୁ କୀଟଦ୍ରଂଷ୍ଟ ଓ ଧ୍ୱଂସମୁଖରୁ ଉଦ୍ଧାର କରି ଲୋକଲୋଚନକୁ ଆଣିବା ସମସ୍ତଙ୍କର ନୈତିକ କର୍ତ୍ତବ୍ୟ । କିନ୍ତୁ ଏ ଦିଗରେ ବଂଶଧରମାନଙ୍କ ଉଦାସୀନତା ଓ କାର୍ପଣ୍ୟ ଦୁଃଖଦାୟକ । ସଂପାଦକଟିଏ ଏହିପରି ଦୁର୍ଲ୍ଲଭ ଗ୍ରନ୍ଥ ସଂପାଦନା କରି ଅନ୍ତତଃ ଓଡିଶାରେ କିଛି ଆର୍ଥିକ ରୋଜଗାର କରେନା ଏହି କଥାକୁ ବିନମ୍ରତାର ସହିତ ମୁଁ ଅନେକଙ୍କୁ ଜଣାଇଦେବାକୁ ଚାହେଁ ।

'ହରିହର ମହାପାତ୍ର ଗ୍ରନ୍ଥାବଳୀ' ଆପଣମାନଙ୍କ ହାତରେ । ଏହାର ସମସ୍ତ ଅପୂର୍ଣ୍ଣତା ଓ ତ୍ରୁଟିକୁ ମୁଁ ମୁଣ୍ଡେଇ ନେଉଛି ଏବଂ ସମସ୍ତ ଶ୍ରେୟ ଆପଣମାନଙ୍କୁ ଦେଉଛି । ସାରସ୍ୱତ ନନ୍ଦିଘୋଷ ଏମିତି ବଡଦାଣ୍ଡରେ ଆଗେଇ ଚାଲୁଥାଉ ।

ଫଣୀନ୍ଦ୍ର ଭୂଷଣ ନନ୍ଦ

ଶ୍ରୀ ଗୁଣ୍ଡିଚା ୨୦୧୫

# ସୂଚୀପତ୍ର





# କବିତାରେ ଶାନ୍ତି ଅନ୍ୱେଷଣ: ହରିହର କବିତା ବୀକ୍ଷଣ

ପ୍ରକୃତି ଓ ଜୀବନ ମଧ୍ୟରେ ଶାନ୍ତି ଅନ୍ୱେଷଣ କବିର ଅନ୍ୟତମ ଆଭିମୁଖ୍ୟ । କବିତାର ଉଦାତ୍ତ ଭାବବଳୟ ଭିତରେ ପ୍ରତିଧ୍ୱନିତ ନୈସର୍ଗୀୟ ପ୍ରେମ, ବୈଚିତ୍ର୍ୟମୟ ପ୍ରକୃତି ଏବଂ ଯନ୍ତ୍ରଣାଗ୍ରସ୍ତ ପୃଥିବୀର ସତ୍ୟନିଷ୍ଠ ଉଚ୍ଚାରଣ : ଅସହାୟ ଜୀବନଚର୍ଯ୍ୟା ଭିତରେ ସୃଷ୍ଟିର ଚରମତମ ସାର୍ଥକତା । ପ୍ରତିଟି ମଣିଷ ଭିତରେ ଏକ ନୈସର୍ଗୀୟ ଚେତନା ତା'ର ଦୃଷ୍ଟିଭଙ୍ଗୀକୁ ଅମୃତମୟ, ମଧୁମୟ କରି ତୋଳେ । ଯା'ଫଳରେ ପ୍ରକୃତିର ସୌନ୍ଦର୍ଯ୍ୟବତ୍ତାକୁ ସେ ମଣିଷ ଜୀବନର ମାର୍ମିକ ଅନୁଭବ ସହିତ ଏକାତ୍ମ କରିଦିଏ ଏବଂ ମଧୁମୟ ସୃଷ୍ଟିର ଅମୃତତ୍ୱକୁ ଉପଲବ୍ଧି କରିବାରେ ସଫଳ ହୁଏ । ଏପରି ଏକ ଉପଲବ୍ଧିର ଶାଶ୍ୱତ ପ୍ରୟାଣ ହରିହରଙ୍କ କବିତା ବୀକ୍ଷଣ ।

କବି ହରିହର ୧୮୮୫ ଖ୍ରୀ.ରେ ଦେବଗଡ଼ଠାରେ ଜନ୍ମଗ୍ରହଣ କରନ୍ତି । ପିତା ଗୋବର୍ଦ୍ଧନ ମହାପାତ୍ର ଏବଂ ମାତା ଜାନକୀ ଦେବୀ । ସେ ମିଡ଼ିଲ ଭର୍ଣ୍ଣାକୁଲାର ପର୍ଯ୍ୟନ୍ତ ଶିକ୍ଷା ଲାଭ କରିଥିଲେ ହେଁ ଓଡ଼ିଆ, ହିନ୍ଦୀ, ଇଂରାଜୀ ଓ ବଙ୍ଗଳା ଭାଷାରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ନାଟକ ଓ ସଙ୍ଗୀତ ପ୍ରତି ତାଙ୍କର ଆକର୍ଷଣ ପ୍ରବଳ ଥିଲା । ବାମଣ୍ଡାର ସାରସ୍ୱତ ପରମ୍ପରା ଛାତ୍ର ହରିହରଙ୍କ ମନରେ ଗଭୀର ରେଖାପାତ କରିଥିଲା । ଦେବଗଡ଼ ଆଲୋଚନା ସଭା, ଛାତ୍ର ସମିତି ପ୍ରଭୃତିରେ ନିୟମିତ ସାହିତ୍ୟ ଚର୍ଚ୍ଚା ଲାଗି ରହିଥିଲା । ଏପରି ଏକ ପୃଷ୍ଠଭୂମିରେ ଲାଳିତ ପାଳିତ ଏବଂ ପରିବର୍ଦ୍ଧିତ ହରିହର ସୃଷ୍ଟି ମାନସ ।

କରୁଣାତ୍ମକ ପୃଷ୍ଠଭୂମିରେ ସବୁ ସମୟରେ ସୁମଧୁର କାବ୍ୟରାଣୀର ହୁଏ ଶୁଚିଶୁଭ୍ର ପ୍ରକାଶ । ବାମଣ୍ଡାର ସାରସ୍ୱତ ଦୁନ୍ଦୁଭିମାର ଅନବଦ୍ୟ କ୍ରାନ୍ତିପୁରୁଷ ସାର୍ ବାସୁଦେବଙ୍କ ତିରୋଧାନରେ ଓଡ଼ିଶାର ସାହିତ୍ୟାକାଶ ସ୍ତବ୍ଧ ହୋଇଯାଇଥିଲା । ଏହି ଶୋକାର୍ତ୍ତ ପରିବେଶ ବାମଣ୍ଡାର ସାରସ୍ୱତ ଗୋଷ୍ଠୀକୁ ସ୍ତମ୍ଭୀଭୂତ କରିଦେଇଥିଲା । ଏପରି ଏକ ଦୁଃଖାତ୍ମକ ସମୟର ବ୍ୟାପ୍ତି ଭିତରେ ହରିହର ଉତ୍ସର୍ଗୀ ଦେଇଛନ୍ତି ନିଜର କରୁଣ ଆବେଗକୁ ।

''ଆହେ ସୁଚ୍ଛଳ ଦେବ ଦଣ୍ଡଧାରୀ
ଉତ୍କଳ ନୟନୁ ବହଇ ବାରି
ଚାଲିଗଲ ଦେବ ସ୍ୱର୍ଗ ପଥରେ
ନ ଚାହିଁଲ ଆମ୍ଭ କଷ୍ଟକୁ ଥରେ

ପିତା ପ୍ରାୟ ଥିଲ ପାଳି
ନିଷ୍ଠିତେ ବୈକୁଣ୍ଠ ଧାମେ ବିରାଜିଲ
ଶୋକେ ମରୁ ଅଛୁଁ ଭାଳି ।'' (ସମ୍ବଲପୁର ହିତୈଷିଣୀ ୨୩।୧୨।୧୯୦୩)

ଏହା ହିଁ ବୋଧହୁଏ ହରିହରଙ୍କ ପ୍ରଥମ ସ୍ୱତଃସ୍ଫୂର୍ତ୍ତ କାବ୍ୟିକ ଉଚ୍ଚାରଣ । ଏହି ଉଚ୍ଚାରଣ ପରବର୍ତ୍ତୀ ପର୍ଯ୍ୟାୟରେ ଆହୁରି ରସଘନ ହୋଇଛି । ଉତ୍ତରିତ ଜୀବନଚର୍ଯ୍ୟାକୁ ଗ୍ରହଣ କରି ସୃଷ୍ଟିଶୀଳ ପ୍ରତିଭା ନିର୍ମାଣ କରିଛି ଗୋଟିଏ ପରେ ଗୋଟିଏ ଅନବଦ୍ୟ କୃତି । ଅଥଚ ଇତସ୍ତତଃ ପ୍ରକାଶିତ ସୃଷ୍ଟି ଅନ୍ତରାଳେ ଓଡ଼ିଆ ସାହିତ୍ୟରେ ସୁନିର୍ଦ୍ଦିଷ୍ଟ ହୋଇପାରିନାହିଁ ତାଙ୍କର ସ୍ଥାନ । ଓଡ଼ିଶାର ସାରସ୍ୱତ ଦିଗ୍‌ବଳୟକୁ ଉଦ୍ଭାସିତ କରିବାରେ ଏହି ପ୍ରତିଭା କେତେଦୂର ସଫଳ ହୋଇଛି, ତା'ର ଏକ ସଂକ୍ଷିପ୍ତ ପର୍ଯ୍ୟାଲୋଚନାର ବିବରଣୀ ମାତ୍ର ଏଠି ପ୍ରଦତ୍ତ କରାଯାଇଛି ।

ହରିହର ମହାପାତ୍ରଙ୍କ ସାହିତ୍ୟକୃତିକୁ ନିମ୍ନ ପ୍ରକାରେ ତାଲିକାଭୁକ୍ତ କରାଯାଇପାରେ ।

୧. ବିବିଧ ସଂଗୀତ (୧୯୦୭)
୨. ହେମ କମଳିନୀ (କାବ୍ୟ-୧୯୧୧)
୩. କୁମାର କଣ୍ଠାଭରଣ (୧୯୧୨)
୪. ବିସ୍ମୃତିର ପରିଣାମ (୧୯୧୨)
୫. କଲ୍ୟାଣ କୁସୁମ (୧୯୧୩)
୬. ନୈବେଦ୍ୟ ( ଶୋକ ଗୀତିକା)
୭. ମରୁରାଜ ବିଜୟ (ନାଟକ-୧୯୧୮)
୮. ଶାନ୍ତିଭିକ୍ଷା ( କବିତା ସଂକଳନ-୧୯୩୩)
୯. ବିବ୍ରତା ଭାରତୀ ( କାବ୍ୟ-୧୯୩୩)
୧୦. ଭରତ ( ଅପ୍ରକାଶିତ - କାବ୍ୟ)
୧୧. ଖଣ୍ଡାଧାର (କାବ୍ୟ-୧୯୩୭)
୧୨. ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ରଚନାବଳୀ ।

## (କ) ଗଦ୍ୟସୃଷ୍ଟି: ଏକ ସୂଚନାତ୍ମକ ବିବରଣୀ

ସର୍ବୋତଭାବେ କବିଜୀବନ ଅତିବାହିତ କରୁଥିବା ହରିହରଙ୍କ ଲେଖନୀ କ୍ୱଚିତ ଗଦ୍ୟାତ୍ମକ ରଚନା ସୃଷ୍ଟି କରିଛି । ମରୁରାଜ ବିଜୟ, ଆୟୁର୍ବେଦ, ବସନ୍ତ ନିବାସ ବ୍ୟତିରେକେ ଗୋଟିଏ ଦୁଇଟି ମୌଳିକ ପ୍ରବନ୍ଧ ସମ୍ବଲପୁର ହିତୈଷିଣୀ ଉପହାର ପ୍ରଭୃତି ପତ୍ରିକାରେ ପ୍ରକାଶିତ ।

''ମରୁରାଜ ବିଜୟ'' ତାଙ୍କର ଏକ ବହୁ ଲୋକପ୍ରିୟ ନାଟକ । ପୌରାଣିକ କାହାଣୀକୁ ଅବଲମ୍ବନକରି ଏହା ବ୍ୟଙ୍ଗାତ୍ମକ ଶୈଳୀରେ ରଚିତ । ଚରିତ୍ରସଜ୍ଜା ଆଧୁନିକ । ନାଟକରେ ଦୁର୍ଭିକ୍ଷରାଜ, ଇନଫ୍ଲୁଏଞ୍ଜା, ଆଦିବାସୀ, ଗୟାସୁର ପ୍ରଭୃତି ଚରିତ୍ରର ଅବତାରଣା କରାଯାଇଛି । ନାଟକର କଥାବସ୍ତୁ ୧୯୧୮ର କରାଳ ସମର ଜ୍ୱର (ଇନ୍‌ଫ୍ଲୁଏଞ୍ଜା)ରୁ ସାର ଗ୍ରହଣ କରିଛି ।

ଏହି ସମର ଜ୍ୱର ସାରା ଭାରତରେ ଆତଙ୍କ ସୃଷ୍ଟି କରିଥିଲା । ଏହା ସହିତ ଦୁର୍ଭିକ୍ଷର ଉତ୍ପୀଡନ ଲୋକଙ୍କୁ ସର୍ବସ୍ୱାନ୍ତ କରି ତୋଳିଥିଲା । ବାମଣ୍ଡାରେ ସର୍ଦ୍ଦିଜ୍ୱର ବା (ଇନ୍‌ଫ୍ଲୁଏଞ୍ଜା) ଯୋଗୁ ସ୍କୁଲ କଚେରୀ ପ୍ରଭୃତି ଦୀର୍ଘଦିନ ବନ୍ଦ ରହିଥିଲା । ଏହି ଦୁଃସମୟରେ ଜଣେ ଦେଶପ୍ରେମୀ କବିରାଜ ରୂପେ ହରିହର ରୋଗୀଙ୍କ ସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ଲୋକଙ୍କ ସେବା ଛଳରେ ସେ ଏହି ଭୟାବହ ପରିଣତିକୁ ଖୁବ୍ ନିବିଡ ଭାବେ ଅନୁଭବିଥିଲେ । ତାଙ୍କ ସେବା ଯୋଗୁ ସେ ବାମଣ୍ଡା ରାଜାଙ୍କ ଦ୍ୱାରା ପୁରସ୍କୃତ ହୋଇଥିଲେ । ଦେବଗଡ ମ୍ୟୁନିସପାଲିଟି ରିପୋର୍ଟ ଅନୁସାରେ ୧୯୧୮ ନଭେମ୍ବର ୫ ତାରିଖରୁ ଡିସେମ୍ବର ୧୩ ତାରିଖ ଭିତରେ ଦେବଗଡ଼ ସହରରେ କେବଳ ୨୪୫ ଜଣଙ୍କ ମୃତ୍ୟୁ ହୋଇଥିଲା । (ସମ୍ବଲପୁର ହିତୈଷିଣୀ- ୧୪-୧୨-୧୯୧୮)

ଏହି ଦୁଃଖଦ ସମୟକୁ ନାଟ୍ୟକଳାରେ ମଣ୍ଡିତ କରି ଲୋକଙ୍କ ମନରେ ଇନ୍‌ଫ୍ଲୁଏଞ୍ଜା ବିରୋଧରେ ଯାବତୀୟ ପ୍ରତିକାର ବ୍ୟବସ୍ଥା ସେ କରିଛନ୍ତି । ଇନ୍‌ଫ୍ଲୁଏଞ୍ଜା ଏକ ସମରଲିପ୍ସୁ ବୈଦେଶିକ ରାଜା ରୂପେ ଏ ନାଟକରେ ଚିତ୍ରିତ । ତା'ର ଆକ୍ରମଣରେ ଶହ ଶହ ସ୍ୱଦେଶୀ ମୃତ୍ୟୁବରଣ କରିଛନ୍ତି । ଏହି ନାଟକ ଦେବଗଡ଼ଠାରେ ବାରମ୍ବାର ସଫଳତାର ସହିତ ମଞ୍ଚସ୍ଥ ହୋଇ ନିଜର ଆଭିମୁଖ୍ୟ ପ୍ରଚାରରେ ସମର୍ଥ ହୋଇଥିଲା ।

ଆୟୁର୍ବେଦ ତାଙ୍କର ଏକ ଶିକ୍ଷାପ୍ରଦ ପ୍ରବନ୍ଧ । ଏହା ଧାରାବାହିକ ଭାବେ ସମ୍ବଲପୁର ହିତୈଷିଣୀରେ ପ୍ରକାଶ ଲଭିଥିଲା । ଏ ପ୍ରବନ୍ଧରେ ଆୟୁର୍ବେଦର ଐତିହ୍ୟ, ସୃଷ୍ଟି, ଉପକାରିତା ଏବଂ ଆମଦେଶର ସଂସ୍କୃତି ସହିତ ଏହାର ଏକାତ୍ମତା ପ୍ରଦର୍ଶିତ ।

ଦେବଗଡ଼ ସନ୍ନିକଟ ପ୍ରଧାନପାଟ ପ୍ରପାତ ପାଦଦେଶରେ ନିର୍ମିତ ଶୈଳନିବାସ 'ବସନ୍ତନିବାସ'କୁ ବର୍ଣ୍ଣନା କରି ସେ 'ବସନ୍ତ ନିବାସ' ରଚନା କରିଛନ୍ତି । ଦେବଗଡର ପ୍ରାକୃତିକ ଶୋଭା କବିମନଲୋଭା ଦୃଶ୍ୟ, ସାରସ୍ୱତ ପରମ୍ପରା ଓ ଐତିହ୍ୟ ଏ ପ୍ରବନ୍ଧରେ ବର୍ଣ୍ଣିତ । ଏହା ୧୯୧୦ ମ. ସମ୍ବଲପୁର ହିତୈଷିଣୀରେ ଧାରାବାହିକ ପ୍ରକାଶିତ । ଉପହାର ପତ୍ରିକା ଅକ୍ଟୋବର -୧୯୩୭ ସଂଖ୍ୟାରେ ତାଙ୍କର 'ସାହିତ୍ୟ କ୍ଷେତ୍ରରେ ଦେବତା ଭୂତ' ପ୍ରବନ୍ଧଟି ପ୍ରକାଶିତ । ଏଥିରେ ପୌରାଣିକ ମତବାଦ ସହିତ ବିବର୍ତ୍ତନବାଦ ତଥ୍ୟର ସୁସମନ୍ୱୟକୁ ହରିହର ମହାପାତ୍ର ମାର୍ମିକ ଭାବେ ବର୍ଣ୍ଣନା କରିଛନ୍ତି । ଏହି ସମସ୍ତ ରଚନା ସହିତ ତାଙ୍କର ଅନେକ ଦୁଷ୍ପ୍ରାପ୍ୟ ଗଦ୍ୟକୃତି ବିଭିନ୍ନ ପତ୍ରପତ୍ରିକା ଅନ୍ତରାଳରେ ତଥା ଅପ୍ରକାଶିତ ଅବସ୍ଥାରେ ଇତସ୍ତତଃ ପଡ଼ିରହିଛି ।

## (ଖ)କାବ୍ୟମାନସ: ଏକ ପର୍ଯ୍ୟାଲୋଚନା

ଭଞ୍ଜୀୟ କାବ୍ୟାଦର୍ଶରୁ ଓହରିଯାଇ କବିତାକୁ ଏକ ନୂତନ ପରିପାଟୀ ପ୍ରଦାନରେ ରାଧାନାଥଙ୍କ ଅନନ୍ୟ ପ୍ରୟାସକୁ ଯେଉଁ ତରୁଣ କବି- ଗୋଷ୍ଠୀ ନିର୍ବିବାଦରେ ସମର୍ଥନ କରିଗଲେ, ସେ ଭିତରେ କବି ହରିହର ମହାପାତ୍ର ଅନ୍ୟତମ । ହରିହରଙ୍କ କବିତା ରାଧାନାଥ ଚେତନାକୁ

କେତେଦୂର ପରିପୁଷ୍ଟ କରିଛି, ତାଙ୍କ ସୃଷ୍ଟି ଓ ସୃଜନଶକ୍ତି କେତେଦୂର ଏକ ଉଚ୍ଚାଙ୍ଗ କାବ୍ୟସ୍ୱରକୁ ବନ୍ଦନ କରିଛି, ତା'ର ପର୍ଯ୍ୟବେକ୍ଷଣ ହିଁ ଏ ପ୍ରସଙ୍ଗର ଉଦ୍ଦେଶ୍ୟ ।

ହରିହର ମହାପାତ୍ରଙ୍କ ସାରସ୍ୱତ ଜୀବନର ରସାପ୍ଳୁତ ଅଭିବ୍ୟକ୍ତିର ପ୍ରତିଧ୍ୱନି ତାଙ୍କର କାବ୍ୟ କବିତାରେ ଗୁଞ୍ଜରିତ । "କୁମାର କର୍ଣ୍ଣାଭରଣ" ତାଙ୍କର ଏକ ମୌଳିକ କୃତି ନ ହେଲେ ମଧ୍ୟ କବିତା ଅଧ୍ୟୟନ ଦିଗରେ ଏହାକୁ ଅସ୍ୱୀକାର କରାଯାଇ ନ ପାରେ । କୁମାର କର୍ଣ୍ଣାଭରଣ ସଂସ୍କୃତ ଅମରକୋଷର ଅବଲମ୍ବନରେ ପଦ୍ୟାକାରରେ ଲିଖିତ । ଓଡ଼ିଆ ଭାଷାରେ ପ୍ରଣୀତ ସମସ୍ତ ଅଭିଧାନ ଗଦ୍ୟାକାରରେ ଲିଖିତ । ବାଳକ ବାଳିକାଙ୍କ ସୁବିଧା ନିମନ୍ତେ କବି ଏହାକୁ ପଦ୍ୟାକାରରେ ଲେଖିଛନ୍ତି । ଅମରକୋଷର ଲିଙ୍ଗ ନିର୍ଣ୍ଣୟ ଓ ଓଡ଼ିଆ ଭାଷାରେ ଅବ୍ୟବହୃତ ଶବ୍ଦ ସମୂହକୁ ଏଥିରେ ବର୍ଜିତ କରାଯାଇଛି । ଏହି ପୁସ୍ତକ ସେ ସମୟର ସ୍କୁଲ ପାଠ୍ୟ ରୂପେ ଗୃହୀତ ହୋଇଥିଲା । ଏହା ଯଦିଓ କବିଙ୍କର ମୌଳିକ କୃତି ନୁହେଁ, ତଥାପି କବିତ୍ୱର ଝଲକ ଏଠି ଯଥାଯଥ ଭାବେ ପ୍ରତିଫଳିତ । ଓଡ଼ିଆ ଭାଷାରେ ଅମରକୋଷର ଏହା ପ୍ରଥମ ସଫଳ ଅନୁବାଦ । ପାଠକଙ୍କ ଅବଗତି ନିମନ୍ତେ ଏଠି ଗୋଟିଏ ମାତ୍ର ପଦ ଉଦ୍ଧୃତ କରାଗଲା ।

ସ୍ୱର୍ଗ: "ସ୍ୱର୍ଲୋକ, ତ୍ରିଦିବ, ନାକ, ତ୍ରିଦଶ-ଆଳୟ
ସ୍ୱଃ, ସୌରିକ, ତ୍ରିପିଷ୍ଟକ, ଦିବ, ଫଳୋଦୟ
ଏହି ନଅ ଗୋଟି ନାମ ଅଟେ ସ୍ୱରଗର
ମନେରଖ ପ୍ରିୟଶିଶୁ ହୋଇ ତତପର ।" (କୁମାରକର୍ଣ୍ଣାଭରଣ)

ଆଲୋଚ୍ୟ ବହିର ଅନନ୍ୟ ଲୋକପ୍ରିୟତା ଯୋଗୁ ୧୯୧୨ରୁ ୧୯୧୫ ଭିତରେ ଏହାର ତୃତୀୟ ସଂସ୍କରଣ ସମାପ୍ତ ହୋଇଯାଇଥିଲା ।

ହରିହରଙ୍କ ଉତ୍ତରିତ କାବ୍ୟଚର୍ଯ୍ୟାର ଅଭିନବତ୍ୱ ବିବିଧ ସଙ୍ଗୀତ (୧୯୦୭)ରୁ ଭରତ କାବ୍ୟ ମଧ୍ୟରେ ବେଶ୍ ସୁରକ୍ଷିତ । ନିମ୍ନରେ ତାଙ୍କର ଗତିଶୀଳ କବିମାନସର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ପ୍ରଦତ୍ତ ହେଲା ।

## ■ ବିବିଧ ସଂଗୀତ

ବିବିଧ ସଂଗୀତ ସଂକଳନଟି ଚଉରାଶିଟି ଗୀତି କବିତାର ସମାରୋହ । ବିବିଧ ସଂଗୀତ ଜଗଦୀଶ ପ୍ରେସ୍ ବୌଦ୍ଧରେ ୧୯୦୭ରେ ପ୍ରକାଶିତ । ବାମଣ୍ଡା ଥିଏଟର ପାର୍ଟି ଏବଂ ବିଭିନ୍ନ ଯାତ୍ରାଦଳର ସଂଗୀତ ପ୍ରୟୋଜନୀୟତାକୁ ପୂରଣ କରିବା ପାଇଁ ମୁଖ୍ୟତଃ ଏଗୁଡିକ ରଚିତ । ଏ ଗୀତଗୁଡିକ ସାବଲୀଳ ଶବ୍ଦ ସଂଯୋଜନା ସହିତ ବିଭିନ୍ନ ଶ୍ରୁତିମଧୁର ରାଗ ରାଗିଣୀରେ ରଚିତ । ବାମଣ୍ଡାର ସଂଗୀତ ସମାଜ ଦ୍ୱାରା ଗୀତଗୁଡିକ ବାରମ୍ବାର ପରିବେଷିତ ହୋଇଛି । ଗୀତଗୁଡିକ ଜୀବନର ବହୁମୁଖୀନତାକୁ ପ୍ରକାଶ କରିଛନ୍ତି । ଏଗୁଡିକରେ ବିଷୟ ବୈଚିତ୍ର୍ୟ

ପରିଲକ୍ଷିତ । ପ୍ରକୃତିଚିତ୍ର, ଜାତୀୟତାବୋଧ, ପୌରାଣିକଗାଥା, ଜୀବନଚିନ୍ତା, ସମାଜଚିତ୍ର ପ୍ରଭୃତି ବିଭିନ୍ନ ପ୍ରେକ୍ଷାପଟକୁ ନେଇ ଗୀତଗୁଡ଼ିକ ଗଢ଼ିଉଠିଛି । ରାଧାନାଥ ଯୁଗୀୟ କବିତାର ମୁଖ୍ୟ ବିଭାବ ପ୍ରକୃତିପ୍ରୀତି ଓ ଦେଶପ୍ରେମ ଏହି ଗୀତଗୁଡ଼ିକରେ ସୂକ୍ଷ୍ମ ଭାବରେ ପ୍ରତିଫଳିତ । ଶିଖରୀ ବଳୟ ବେଷ୍ଟିତ ପ୍ରାକୃତିକ ଶୋଭା ସମ୍ଭାରରେ ପରିପୂର୍ଣ୍ଣ ଦେବଗଡ଼ କବିଙ୍କୁ ପ୍ରକୃତିର ମନୋରମ ଆଲେଖ୍ୟକୁ ଅନୁଧ୍ୟାନ କରିବାର ସୁଯୋଗ ଦେଇଛି ।

'' ରମ୍ୟ କାନନେ ନବ ବିକଶିତ
କୁସୁମ ହରଇ ନୟନ
କୁସୁମେ କୁସୁମେ ଭ୍ରମେ ମତ୍ତ ଅଳି
କରି ମୃଦୁସ୍ୱନେ ଗୁଞ୍ଜନ ।
ଦିଶେ କି ସୁନ୍ଦର ବନମଲ୍ଲିକା
ତାରାକାନ୍ତି ନିନ୍ଦି ଶୁଭ୍ରକଳିକା
ନବକିଶଳୟ ଦୋଳେ ଧୀରେ ଧୀରେ
ପ୍ରଫୁଲ୍ଲ ପାଦପ ଜୀବନ ।''(ବାସନ୍ତିକ ବିପିନ) ।

ହରିହର କବିତା ରଚନା କରିବା ସମୟକୁ ଓଡ଼ିଆ କବିତାରେ ଉଗ୍ର ଜାତୀୟତାବାଦର ସୁଅ ପ୍ରବାହିତ । ପ୍ରତିଟି ସତ୍‌କବିଙ୍କ କବିତାରେ ପରାଧୀନ ଦେଶ ପାଇଁ ଚିନ୍ତା, ସ୍ୱଦେଶାନୁରାଗ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଆଭିମୁଖ୍ୟ ପରିସ୍ଫୁଟ । ବିବିଧ ସଂଗୀତର କବିତାଗୁଡ଼ିକ ମୁଖ୍ୟତଃ ଗାନ କରିବା ପାଇଁ ଉଦ୍ଦିଷ୍ଟ । ଫଳରେ ଦେଶପ୍ରେମର ବାର୍ତ୍ତା ପ୍ରଚାର କରିବାରେ ଏହା ପ୍ରମୁଖ ଭୂମିକା ଗ୍ରହଣ କରି ପାରିଛି । ଏ ପ୍ରସଙ୍ଗରେ ଭାରତ ଭାବନା, ନିଜ ସେନା ପ୍ରତି ପ୍ରତାପସିଂହଙ୍କ ଉକ୍ତି, କୌଣସି ରମଣୀର ଭାରତ ଭାବନା, ଜାଗ, ମାତୃପ୍ରିୟା ପ୍ରତି ପଦ୍ମାବତୀର ଉକ୍ତି, ପଦ୍ମାବତୀ ପ୍ରତି ମାତୃପ୍ରିୟାର ଉକ୍ତି, ପୃଥ୍ୱୀରାଜ ପ୍ରତି ପ୍ରଭୃତି କବିତାରେ ଜାତୀୟତାବୋଧର ମହାନ୍ ପରମ୍ପରା ଝଙ୍କୃତ ।

''ସଜନୀରେ, କୁଟିଳ ଗାମିନୀ କାଳ -ତଟିନୀ
କି ଥିଲା କି ହେଲା ଆଜି ଏ ଭାରତ ଅବନୀ ।
ଜନମ ଲଭି ସୁକାଳେ ଖେଳୁଥିଲେ ଏହା କୋଳେ
କେତେ ମାନବତୀ ସତୀ ପତିବ୍ରତା କାମିନୀ ।''

(ପଦ୍ମାବତୀ ପ୍ରତି ମାତୃପ୍ରିୟାର ଉକ୍ତି) ।

ଦେଶର ଦୁରାବସ୍ଥା ସହିତ ନାରୀ ସମାଜର ଅଧୋଗତି କବିଙ୍କୁ ବ୍ୟଥିତ କରି ତୋଳିଛି । ଅଜ୍ଞାନତା ଯୋଗୁ ନାରୀମାନଙ୍କର ବିପର୍ଯ୍ୟସ୍ତ ଜୀବନଚର୍ଯ୍ୟାକୁ କବି ନିଷ୍ଠୁର ଭାବେ ଇଙ୍ଗିତ କରିଛନ୍ତି ।

''ସଜନିରେ, ଆକୁଳେ କାନ୍ଦଇ ଆଜି ଜୀବନ
ଭଗିନୀମାନଙ୍କ ଦଶା କରି ଅବଲୋକନ

ନ ଜାଣନ୍ତି ନିଜ ଧର୍ମ ନ ଜାଣନ୍ତି ନିଜ କର୍ମ
ଅଜ୍ଞାନ ତିମିର ସରେ ସର୍ବେ ଛନ୍ତି ମଗନ ।
ଦେଖି ଦୁହିତାଙ୍କ ଦଶା ବିଷାଦଭରେ ବିବଶା
ଆକୁଳେ ଭାରତମାତା କରେ ଦୁଃଖେ ରୋଦନ ।''

(ମାତୃପ୍ରିୟା ପ୍ରତି ପଦ୍ମାବତୀର ଉକ୍ତି)

ଦୁର୍ଗାବତୀ, ଲକ୍ଷ୍ମୀବାଈ ପ୍ରଭୃତି ବୀରାନାରୀଙ୍କ ଅପୂର୍ବ ଅବଦାନ ସ୍ମରଣ କରି କବି ଦେଶର ହୃତଗୌରବ ଫେରି ଆସିବାକୁ କାୟୋମନବାକ୍ୟରେ ବାଣୀପଦରେ ନିବେଦନ କରିଛନ୍ତି ।

ଆଳସ୍ୟ-ସରେ ବୁଡ଼ିଣ
ବିଷାଦ-ପଙ୍କେ ଜଡ଼ିଣ
କାନ୍ଦଇ ଭାରତ ଆଜ ଧରି ଦୀନମୂରତି
ନାହିଁ ମା ପୂର୍ବ ବିଭବ
ନାହିଁ ପୂର୍ବ ଗଉରବ
କେବଳ ଭାରତ ନାମ ଶୁଣୁଅଛି ଜଗତି ।
ଦିଅ ବୁଦ୍ଧି ଦିଅ ଜ୍ଞାନ ।
ପୂର୍ବ ଧନ ପୂର୍ବ ମାନ
ପୂର୍ବ ବୀରତା ଧୀରତା ଲଭୁ ପୂର୍ବ କୀରତି ।'' (ଆସ ମା)

ଏହି ସଂକଳନର ମୁଖ୍ୟ ଆଭିମୁଖ୍ୟ ସଙ୍ଗୀତଗାନ ହେଲେ ମଧ ସେ ଭିତରେ କବି ଗାୟକ ଓ ଶ୍ରୋତାମନରେ ଅପୂର୍ବ ଦେଶପ୍ରେମର ବୀଜ ବୁଣିଯାଇଛନ୍ତି ।

ହରିହରଙ୍କ ପ୍ରଥମ ସଂକଳନ ରୂପେ '' ବିବିଧ ସଙ୍ଗୀତ' ଅପୂର୍ବ ସିଦ୍ଧିର ଅଧିକାରୀ । ଏହି ସଂକଳନରେ ଜୀବନର ବିବିଧ ପର୍ଯ୍ୟାୟକୁ କବି ଅପରୂପ କାବ୍ୟକଳାରେ ପରିବେଷଣ କରିଛନ୍ତି । ଜାତିପ୍ରେମ ଓ ପ୍ରକୃତିପ୍ରୀତି ଏ କବିତାଗୁଡ଼ିକର ମୁଖ୍ୟ ବିଭାବ । ତା' ସହିତ ମଣିଷର କ୍ଷଣଭଙ୍ଗୁର ଜୀବନ ପ୍ରତି ଏକ ଦାର୍ଶନିକ ସୁଲଭ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି 'ବିରହେ', 'ଭବମରୁରେ ମୂଢ଼ମନ', 'ପରାଣ ଆକୁଳ' ପ୍ରଭୃତି କବିତାରେ । ଏତଦ୍‌ବ୍ୟତୀତ ଆଧାତ୍ମିକତା ଓ ବିଭୁପ୍ରେମର ବାଣୀ ମଧ ଅନେକ କବିତାରେ ଗୁଞ୍ଜରିତ ।

ବିବିଧ ସଂଗୀତ ଓଡ଼ିଆ ସାହିତ୍ୟରେ ହରିହରଙ୍କୁ ଜଣେ ସଫଳ କବିର ସିଦ୍ଧି ପ୍ରଦାନରେ କୃତକାର୍ଯ୍ୟ ହୋଇଛି ।

## ■ ହେମ କମଳିନୀ

ହେମ କମଳିନୀ କବିଙ୍କର ଏକ ଉତ୍କୃଷ୍ଟ କାବ୍ୟ । ୧୯୦୯ରେ ଏହା ସମ୍ବଲପୁର ହିତୈଷିଣୀ ପୃଷ୍ଠାରେ ପ୍ରକାଶିତ ଏବଂ ୧୯୧୧ରେ ବାମଣ୍ଡା ହିତୈଷିଣୀ ପ୍ରେସ୍‌ରେ ପୁସ୍ତକାକାରେ ମୁଦ୍ରିତ । ଅଥଚ ଏହାର ରଚନା ୧୯୦୮ ପୂର୍ବରୁ ସମାପ୍ତ କରି ଏପ୍ରିଲ

୧୯୦୮ରେ ରାଧାନାଥଙ୍କ ବାମଣ୍ଡା ଅବସ୍ଥାନ ସମୟେ ତାଙ୍କୁ ଦେଖାଇ ଭୂୟସୀ ପ୍ରଶଂସା ଲଭିଥିଲେ । "ହେମ କମଳିନୀ କାବ୍ୟ ମୁଁ କବିଙ୍କ ମୁଖରୁ ଆଦ୍ୟୋପ୍ରାନ୍ତ ଶ୍ରବଣ କରି ପ୍ରୀତ ହୋଇଅଛି । ହେମ କମଳିନୀ ହରିହର ବାବୁଙ୍କର ରଚନାର କ୍ରମୋତ୍କର୍ଷ ପରିଚାୟକ ।" (ରାଧାନାଥ ତା ୪.୪.୧୯୦୮) ଭକ୍ତକବି ମଧୁସୂଦନ ରାଓ ଏ କାବ୍ୟର ପ୍ରଶଂସାରେ କହନ୍ତି, କବିଙ୍କର ହେମକମଳିନୀ ଓ ବିବିଧ ସଙ୍ଗୀତର ରଚନାରେ ପ୍ରକାଶିତ ସୁରୁଚି, ସରସତା ଓ ଲିପି କୌଶଳ ସର୍ବଥା ପ୍ରଶଂସନୀୟ । (ହେମ କମଳିନୀ)

ହେମ କମଳିନୀ କାବ୍ୟ ଅପୂର୍ବ ପ୍ରକୃତି ଚିତ୍ରଣରେ ସୁଚିତ୍ରିତ । ଏହା ଛଅଟି ସର୍ଗରେ ବିଭକ୍ତ । ପ୍ରଥମ ସର୍ଗରେ ଶାରଦ ଉଷାର ବର୍ଣ୍ଣନା ସହିତ କାବ୍ୟାରମ୍ଭ ହୋଇଛି । କବି ରୀତିଯୁଗୀୟ କାବ୍ୟାଦର୍ଶକୁ ଜଳାଞ୍ଜଳି ଦେଇ ଆଧୁନିକ କାବ୍ୟାଦର୍ଶକୁ ଗ୍ରହଣ କରିଛନ୍ତି । ପ୍ରଥମେ ଦେବ ବନ୍ଦନା ପରିବର୍ତ୍ତେ କବି ପ୍ରକୃତିର ଜୟଗାନ କରିଛନ୍ତି ।

ଶାରଦ ସମୀର          ବହେ ଧୀରେ ଧୀରେ
    ମଧୁର ଶାରଦ ଉଷା
ଶାରଦୀୟ ଲୀଳା          ରଚଇ ଆନନ୍ଦେ
    ପିନ୍ଧି ଶାରଦୀୟ ଭୂଷା ।
ତରୁଡାଳେ ବସି          ବିହଙ୍ଗମରାଜି
    ଡାକନ୍ତି ଶାରଦ ଗାନ
ସେ ମଧୁର ଗାନେ          ମାନସ ବିହଙ୍ଗ
    ନୀରବେ ତୋଳଇ ତାନ ॥(ପୃ-୧)

'ହେମ କମଳିନୀ' ଏକ ବର୍ଣ୍ଣନାତ୍ମକ କାବ୍ୟ । କାବ୍ୟରେ କମଳିନୀର କ୍ଷଣ ସ୍ଥାୟିତ୍ୱର ଦୁଃଖ ପ୍ରକାଶ ପାଇଛି । ଜୀବନ ସହିତ ମୃତ୍ୟୁ ଯେ ଅଙ୍ଗାଙ୍ଗୀ ଭାବେ ଜଡିତ, ଏହାର ମଧୁରତମ ପରିପ୍ରକାଶ ଘଟିଛି ଏ କାବ୍ୟରେ । ପ୍ରକୃତିରାଣୀର ଅନବଦ୍ୟ ଶୋଭାସଂଭାର ଭିତରେ ଭଙ୍ଗୁରତାର ଅନ୍ତରଙ୍ଗ ଚିତ୍ରକୁ କବି ନିରୀକ୍ଷଣ କରିଛନ୍ତି । ନିଜ ଘରେ କନ୍ୟା କମଳିନୀର ଜନ୍ମ, ଜନ୍ମ ଜନିତ ହର୍ଷ, ଆପତ୍ୟ ସ୍ନେହର ମାଧୁରିମା ସହିତ କନ୍ୟାର ମୃତ୍ୟୁ ଜନିତ ବିଷାଦ ଏବଂ ହାହାକାରର ଅନୁଭବ ବେଶ୍ କରୁଣାକ୍ତ ହୋଇଉଠିଛି । ପ୍ରକୃତିରେ ନଳିନୀର ଉଷାଲୋକ ସହିତ ପ୍ରସ୍ଫୁଟିତ ହେବା, ସନ୍ଧ୍ୟାରେ ମଉଳିପଡିବାର ଚିତ୍ର ସହିତ କନ୍ୟାର ତୁଳନାତ୍ମକ ବିବରଣୀ କବି ପ୍ରଦାନ କରିଛନ୍ତି । ପ୍ରକୃତିର ମହାନତା ସାମ୍ନାରେ ମଣିଷ ଜନ୍ମର ନିଷ୍ଫଳତା ଓ ଅସାରତାକୁ କଳାତ୍ମକ ଭାବେ କବି ପରିବେଷଣ କରିଛନ୍ତି । କାବ୍ୟର ଉଦାତ୍ତ ସ୍ୱର କରୁଣତାର ଆବାହନ କରିଛି ।

କାବ୍ୟର ପ୍ରଥମ ତିନୋଟି ସର୍ଗରେ ଋତୁବର୍ଣ୍ଣନା ସହିତ କମଳିନୀର ଅବସ୍ଥା ବର୍ଣ୍ଣିତ ହୋଇଛି । ଋତୁ ବର୍ଣ୍ଣନା ପ୍ରସଙ୍ଗରେ କବିଙ୍କ ଉଚ୍ଚାରଣ କେତେକାଂଶରେ ଭକ୍ତକବି ମଧୁସୂଦନ

ରାଓଙ୍କ ରଚନା ସହିତ ସାମ୍ୟ ରକ୍ଷାକରେ । କାବ୍ୟର ରଚନା ଶୈଳୀ ସାବଲୀଳ- ଉପମା ପ୍ରୟୋଗରେ କବି ନିଜସ୍ୱ ଭାବବୃତ୍ତର ପୂର୍ଣ୍ଣ ଉପଯୋଗ କରିଛନ୍ତି । ପ୍ରତିଟି ପ୍ରତୀକ ଉପମା ଆଦି ପ୍ରକୃତିର ସୁବିସ୍ତୃତ ପ୍ରାଙ୍ଗଣରୁ ସଂଗୃହୀତ । ତାଙ୍କର ବସ୍ତୁ-ପ୍ରତୀକ ପାଠକ ମନରେ ଭାବ ଉଦ୍ରେକ କରେ । " ଭାବାନୁଭୂତିକୁ ବୁଦ୍ଧି ଓ କଳ୍ପନା ବସ୍ତୁ ପ୍ରତୀକ ମାଧ୍ୟମରେ ମୂର୍ତ୍ତିଦାନ କରନ୍ତି । ସେହି ମୂର୍ତ୍ତି-କାବ୍ୟ ପାଠକର ଭାବକୁ ଉଦ୍‌ବୁଦ୍ଧ କରିଥାଏ । ଭଲ କବିତା ତେଣୁ କେବେ ଭାବ ପ୍ରକାଶ କରେ ନାହିଁ, ଚିରକାଳ କେବଳ ଭାବ ଉଦ୍ରେକ କରେ ।" (ଆଧୁନିକ କାବ୍ୟ ଜିଜ୍ଞାସା: ଚିତ୍ରକଳ୍ପ, ଦାଶରଥି ଦାସ) କବିଙ୍କ ଯେ କୌଣସି ପ୍ରତୀକକୁ ଏଠି ଗ୍ରହଣ କରାଯାଇପାରେ ।

" ନିଶି ନିପତିତ ସଲିଳର ବିନ୍ଦୁ
ଖସେ ପତରୁଁ ପତରେ
ପ୍ରଭାତେ ଅରୁଣ ମୟୂଖ ସମ୍ପାଦେ
ସ୍ୱଚ୍ଛହୀରା ଛବିଧରେ ।" (ପୃ-୧୮)

ବା-"ଦିଶେ କି ସୁନ୍ଦର ହେମ ନଳିନୀର
ଭାଲେ ଗୋରଚନା ବିନ୍ଦୁ
ଯା'ର ଦରଶନେ ହୃଦୟ ଗଗନେ
ହସେ ଅନୁରାଗ -ଇନ୍ଦୁ ।" (ପୃ-୨୦)

ପ୍ରକୃତି ବର୍ଣ୍ଣନାରେ ଶତମୁଖ କବିଙ୍କର ହେମକମଳିନୀ ଏକ ଅନନ୍ୟ ସୃଷ୍ଟି । କାବ୍ୟରେ ସୌନ୍ଦର୍ଯ୍ୟବୋଧର ଅନଶ୍ୱର ପ୍ରତିଫଳନ ଘଟିଛି ।

## ■ ଶାନ୍ତିଭିକ୍ଷା

ପ୍ରକୃତି ଅନ୍ତରାଳେ କବିଙ୍କର ପରମଶାନ୍ତି ଅନ୍ୱେଷଣ ହିଁ ଏହି କବିତା ସଂକଳନର ଲକ୍ଷ୍ୟ । ସୃଷ୍ଟିର ବିବର୍ତ୍ତନ ଦେଇ କବି ଶାନ୍ତି ଖୋଜିଛନ୍ତି । ପୌରାଣିକ ମତବାଦଠାରୁ ଆଧୁନିକ ମନୀଷିଙ୍କ ବୈଜ୍ଞାନିକ ସିଦ୍ଧାନ୍ତ ଅନ୍ତରାଳରେ ସେ ଶାନ୍ତିର ମହିମାନ୍ୱିତ ପ୍ରତିଷ୍ଠା କରିଛନ୍ତି । ଶାନ୍ତିଭିକ୍ଷାରେ ନିଭୃତ ଚିନ୍ତାଠାରୁ ଚିଦାନନ୍ଦ ଯାଏ ପଇଁତିରିଶଟି କବିତା ସଂକଳିତ । ଏ କବିତାଗୁଡିକ ପୂର୍ବରୁ 'ସମ୍ବଲପୁର -ହିତୈଷିଣୀ'ରେ ପ୍ରକାଶିତ । ୧୯୩୩ରେ ଶାନ୍ତିଭିକ୍ଷା କଟକ ସାରସ୍ୱତ ପ୍ରେସରେ ପ୍ରକାଶିତ ହୋଇ ବେଶ୍ ଲୋକପ୍ରିୟତା ଅର୍ଜନ କରେ । ଏହି ସଂକଳନର ପାଣ୍ଡୁଲିପି ପଢ଼ି ଭକ୍ତକବି ମଧୁସୂଦନ ଉଲ୍ଲସିତ ପ୍ରଶଂସା କରନ୍ତି -

"x x x କବିତାଗୁଡିକ ଶାନ୍ତି ରସୋଦ୍ଦୀପକ - ସ୍ଥାନେ ସ୍ଥାନେ ରସର ସୌନ୍ଦର୍ଯ୍ୟ, ଭାବର ଗାମ୍ଭୀର୍ଯ୍ୟ ଓ ଛନ୍ଦର ଝଙ୍କାର ସମିଚୀନ ରୂପେ ପରିସ୍ଫୁଟ ହୋଇଅଛି । କେତେକ ସ୍ଥଳରେ ଲେଖା ଟିକିଏ ଦୁର୍ବୋଧ ହୋଇଥିବାର ଜଣାଗଲା ।" (ଅଭିମତ)

'ଶାନ୍ତି ଭିକ୍ଷା' କବିଙ୍କ ପ୍ରକୃତି ପ୍ରୀତିର ଉତ୍ତରିତ ପର୍ଯ୍ୟାୟ । ଏଠି ପ୍ରତିଟି କବିତାରେ କବି ଦରଦୀ ହୃଦୟ ନେଇ ପ୍ରକୃତିକୁ ଅନୁଭବ କରିଛନ୍ତି । କୋଳାହଳମୟ ସମାଜ ଜୀବନର ଦୁଃଖ ଦୁର୍ଦ୍ଦଶା ଅନ୍ତରାଳରେ ସେ ପ୍ରାକୃତିକ ଶାନ୍ତିନିକେତନର ସନ୍ଧାନ କରିଛନ୍ତି । ଏହି ସନ୍ଧାନର କଳାତ୍ମକ ବ୍ୟାପ୍ତି ଭିତରେ ଉର୍ଜ୍ଜ୍ୱଳ ଶାନ୍ତି ଭିକ୍ଷାର କବିତା ସମୂହ ।

"ନ ଛୁଏଁ କି ହୃଦ ତୋର ବିଶ୍ୱ କୋଳାହଳ ?
ଗାଉଛୁ କି ସୁଖେ ତେଣୁ ମହା ପ୍ରେମଗୀତି .
ନ ଦିଏ କି ତାପ ତୋତେ ପାପ ହଳାହଳ ?
ଲଭିଛୁକି ଶାନ୍ତିମୟୀ ପୁଣ୍ୟମୟୀ ପ୍ରୀତି ?
ପାପ-ହଳାହଳେ ମୋର ବ୍ୟଥିତ ଜୀବନ
କାହିଁ ଗଲେ ଲଭିବି ମୁଁ ଶାନ୍ତି ନିକେତନ ?" (କୋକିଳ- ପ୍ରତି)

ଜାଗତିକ ପାପ-ପଙ୍କରେ ବିପର୍ଯ୍ୟସ୍ତ ଜୀବନଚର୍ଯ୍ୟା ଭିତରେ କବି ଅତିଷ୍ଠ । ପ୍ରକୃତିର ଶାଶ୍ୱତ ପ୍ରାଙ୍ଗଣରେ କବି ଶାନ୍ତିର ଅନ୍ୱେଷଣ କରିଛନ୍ତି । ପ୍ରତିଟି କବିତାରେ ଏ ରସ ମାଧୂର୍ଯ୍ୟ, ଏ ଚିରନ୍ତନ ଅନ୍ୱେଷାର ଭାବ ସନ୍ନିହିତ ।

" ଏ ଭବ ସାଗରେ ମୋର ପଙ୍କିଳ ଜୀବନ
କାହିଁଗଲେ ଲଭିବି ମୁଁ ଶାନ୍ତିନିକେତନ ।"(ନଳିନୀ- ପ୍ରତି )

ନିଭୃତ ଚିନ୍ତା, କୋକିଳପ୍ରତି, ନଳିନୀପ୍ରତି, ମୟୂରପ୍ରତି, ସମୁଦ୍ର ଦର୍ଶନେ, ବ୍ରାହ୍ମୀତଟିନୀ ପ୍ରତି ପ୍ରଭୃତି କବିତା ହେଉ ବା କର୍ତ୍ତବ୍ୟ, ପ୍ରେମିକ, ଦୂରବୀକ୍ଷଣ, ଜନନୀର ସ୍ନେହ, ପରିଶ୍ରମୀ ପ୍ରଭୃତି କବିତା ହେଉ ସବୁଠି ସେ ଶାନ୍ତିର ଅନ୍ୱେଷା କରିଛନ୍ତି । ମଣିଷର ଜାଗତିକ ଗୁଣରାଜି ଅନ୍ତରାଳରେ ମଧ୍ୟ ସେ ଶାନ୍ତି ଖୋଜିଛନ୍ତି । ସ୍ମୃତି, ବାସନାପ୍ରତି, କଳ୍ପନାପ୍ରତି ପ୍ରଭୃତି ଏହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ଶାନ୍ତିଭିକ୍ଷା ସଂକଳନରେ କବିଙ୍କର କାବ୍ୟାଭିମୁଖ୍ୟ ଶାନ୍ତିପ୍ରତି ସତତ ଉନ୍ମୁଖ । ଏତଦ୍‌ବ୍ୟତୀତ ସଂସାରର ନଶ୍ୱରତା, ସାଂପ୍ରତିକ ଜୀବନର ଦୁଃସ୍ଥତା, ବିବର୍ତ୍ତନବାଦ କ୍ରମରେ ଅତୀତର ପ୍ରତ୍ନ ଉଦ୍ଧାର, ପୁରାଣୋକ୍ତି ସହିତ ଆଧୁନିକ ବୈଜ୍ଞାନିକ ତଥ୍ୟ ସମୂହର ତୁଳନାତ୍ମକ ବିବରଣୀ ଏହି କବିତାଗୁଡିକର ଉପଜୀବ୍ୟ ବସ୍ତୁ ।

'ପ୍ରଦକ୍ଷିଣ' କବିତାରେ କବି ବିବର୍ତ୍ତନ ପ୍ରକ୍ରିୟାକୁ ବେଶ୍ କଳାତ୍ମକ ଭାବେ ଚିତ୍ରଣ କରିଛନ୍ତି । ଦଶାବତାରର ବିବର୍ତ୍ତନ କ୍ରିୟା ସହିତ ପୃଥିବୀର ବିବର୍ତ୍ତନ କ୍ରିୟାକୁ କବି ତୁଳନା କରିଛନ୍ତି ।

" ଭାଷେ ପ୍ରଜ୍ଞା : ଏ ସାଗରେ ଆସନ୍ତେ ରାଘବ
ଲାଗିଲା ଅବନୀ ପୃଷ୍ଠେ କୌର୍ମ ମହୋତ୍ସବ
ଭୁଜଗ ଉରଗ ଖଗ ବ୍ୟାପିଲେ ଅବନୀ

ଦିଗେ ଦିଗେ ଶୁଭେ ଫଣି ଫୁ ଫୁ କାର ଧ୍ୱନି
ତକ୍ଷକ କୁଳିକ କୁଳେ ପୂରିଲା ଅତଳ
ଜୀବକୁଳେ, ଜୀବନର ଯୁଦ୍ଧ କୋଳାହଳ
ଉଠି ଅବିରତ, ଧରା କଂପାଇଲା ତ୍ରାସେ
ପଡିଲା ବିଶାଳ ଝସ କୁଳିକର ଗ୍ରାସେ
ଟଳିଯିବ ଜୀବସୃଷ୍ଟି ପ୍ରତେ ହେଲା ମନେ
ଆସିଲା ସ୍ୱଦଂଷ୍ଟା ତୋଳି ବରାହ ସଘନେ ।'' (ଶାନ୍ତିଭିକ୍ଷା: ପୃ-୪୬)

ଏ ବର୍ଣ୍ଣନାରେ ମାଛଠାରୁ ସ୍ଥୂଳଚର୍ମୀ ଜୀବ ବରାହ ପର୍ଯ୍ୟନ୍ତ ବିବର୍ତ୍ତନର ଧାରା ପ୍ରଦତ୍ତ । ଅନ୍ୟପକ୍ଷରେ ମୀନ ଅବତାରଠାରୁ କ୍ରମାନ୍ୱୟରେ ବରାହ ପର୍ଯ୍ୟନ୍ତ ଅବତାର ହୋଇଥିବାର ତୁଳନାତ୍ମକ ବିବରଣୀ ସଂଗୁପ୍ତ ରହିଛି । ପ୍ରାଣୀଜଗତରେ ଜୀବନ ଯୁଦ୍ଧରେ ( struggle for existence) ପରାଜିତ ପ୍ରାଣୀ ପ୍ରକୃତି ବକ୍ଷରୁ ଲୋପ ପାଇବା ସହିତ ନୂତନଜୀବ ସୃଷ୍ଟି ହୋଇଛି । ବିବର୍ତ୍ତନବାଦର କ୍ରାନ୍ତିକାରୀ ତଥ୍ୟକୁ ଓଡ଼ିଆ କବିତାରେ ପ୍ରଥମେ ରାଜକବି ସଚ୍ଚିଦାନନ୍ଦ ''ଯୌନନିର୍ବାଚନ'' ଏବଂ '' ପ୍ରକୃତି'' କାବ୍ୟରେ ପରିବେଷଣ କରିଛନ୍ତି । ଏହି 'ପ୍ରକୃତି' କାବ୍ୟରୁ ହରିହର ସମ୍ଭବତଃ ଅନୁପ୍ରେରଣା ଲାଭ କରିଥାଇପାରନ୍ତି । ଏହି ପର୍ଯ୍ୟାୟରେ ''ଉନ୍ମେଷ' କବିତାରେ ସୃଷ୍ଟିର ଉଷାକାଳ ବର୍ଣ୍ଣିତ । ସିନ୍ଧୁ ମନ୍ଥନ ଯୋଗୁ ବିଭିନ୍ନ ଶକ୍ତିର ସନ୍ଧାନ, କ୍ରମାନ୍ୱୟରେ ଜୀବଗଣଙ୍କ ଅଭ୍ୟୁଦୟ ସୂଚିତ । ''ମୋହିନୀ'' ମହାପ୍ରଳୟ ରୂପେ ବର୍ଣ୍ଣିତ ହୋଇ କବିଙ୍କ ଉତ୍ତରିତ କାବ୍ୟଦୃଷ୍ଟିର ପରିଚୟ ଦିଏ ।

ସିନ୍ଧୁ ମନ୍ଥନରେ ସାପ ରଜ୍ଜୁ ରୂପେ ବ୍ୟବହୃତ ହୋଇଥିଲା । ସାପ ପୂର୍ବରୁ ଜାତ ଜୀବ ସର୍ପ ମୁଖରେ ଗଲେ । ସାପ ପରବର୍ତ୍ତୀ ଜୀବ ପଶ୍ଚାତରେ ରହିଲେ । ମନ୍ଥନରୁ ଜାତ ହଳାହଳକୁ ଶିବ ପାନ କରିଥିଲେ । କବି ଏ ହଳାହଳକୁ ସାପ ରୂପେ ଏବଂ ନୀଳକଣ୍ଠଙ୍କୁ ମୟୂର ରୂପେ ବର୍ଣ୍ଣନା କରିଛନ୍ତି । ସାପ ପରେ ମୟୂରର ଉଦ୍‌ଭବକୁ ବିବର୍ତ୍ତନ ପ୍ରକ୍ରିୟାରେ ମଧ୍ୟ ସରୀସୃପ ପରେ ପକ୍ଷୀଙ୍କ ସୃଷ୍ଟି । ସିନ୍ଧୁ ବା ପ୍ରକୃତି ମନ୍ଥନରୁ ବିଭିନ୍ନ ଆଣବିକ ଶକ୍ତିର ସନ୍ଧାନ ମିଳିବା କଥା କବି ଦର୍ଶାଇଛନ୍ତି ।

'' ଦୁଷ୍ଟ ଶିଷ୍ଟ ଖଳସାଧୁ ଜୀବନ ସଂଗ୍ରାମେ
ଯୁଝୁଛନ୍ତି ଆଳୟାନ୍ତ ନିତ୍ୟ ଧରାଧାମେ
କରୁଛନ୍ତି କାଳ-ଜଳ-ଜଳଧି ମନ୍ଥନ
ଲଭୁଛନ୍ତି ବହୁଶକ୍ତି ସୁଷମା ରତନ ।''(ସିନ୍ଧୁମନ୍ଥନ-୬୩)

ଏହି କବିତା ସମୂହରେ ବୈଦିକ ଦେବାଦେବୀଙ୍କ ନିରାଜନା ସହିତ ଆଧୁନିକ ବୈଜ୍ଞାନିକ ଆବିଷ୍କାରଗୁଡିକର ସମନ୍ୱୟ ସ୍ଥାପନ କରାଯାଇଛି ।

'' ସାରିଲେଣି ଉଷାକାଳ- ପୂଷା ନୀରାଜନ
ଜ୍ଞାନଜ୍ୟେଷ୍ଠ ପରିମେଷ୍ଟି ପଙ୍କଜ ଆସନ ।''

ପୂଷା ଏବଂ ଉଷାକୁ ବୈଦିକ ଗ୍ରନ୍ଥରେ ଦେବୀ ରୂପେ ସ୍ତୁତି କରାଯାଇଛି । " Pushan, a vedic God, husband of Surya, and son of the asvins; described as carrying a spear and goad, riding through the sky in a chariot drawn by goats, feeding on gruel, and toothless. He leads the dead to the Fathers... "(Antiquities of India: L.D. Barnett)

ଉଷା ସମ୍ପର୍କରେ କୁହାଯାଇଛି " The dawn addressed in the veda as a Goddess; Some times regarded as consort of Surya, or as mother of Surya and Agni, and as sister of Bhagh and the Asvins."(L.D..Barnett)

ବୈଦିକ ଗ୍ରନ୍ଥରେ ବର୍ଣ୍ଣିତ ଉର୍ଜ୍ୱସ୍ୱଳ ଭାବରାଜିକୁ ଆଧୁନିକ ବାଙ୍ମୟରେ ପରିବେଷଣ କରିବାକୁ ଯାଇ କବି ସ୍ୱୀକାର କରିଛନ୍ତି- " ଆଧୁନିକ ସାହିତ୍ୟରେ ଆଧ୍ୟାତ୍ମିକ ଭାବର ସମାବେଶ ବିରଳ ଲକ୍ଷିତ ହୁଏ; ଅଥଚ ସେହି ଆଧ୍ୟାତ୍ମିକତା ହିଁ ମାନବତାର ପ୍ରତୀକ ସାରବସ୍ତୁ । ସେହି ଆଧ୍ୟାତ୍ମିକତା ଏ ଗ୍ରନ୍ଥର ପ୍ରଧାନ ଅବଲମ୍ବନ । ପ୍ରାଚ୍ୟ ଋଷିଗଣ ରୂପକ ଆବରଣରେ ଅମୂଲ୍ୟ ଜ୍ଞାନ ସମ୍ପଦ ରଖିଯାଇଛନ୍ତି । ଆଧୁନିକ ଯୁଗରେ ଆମ୍ଭମାନଙ୍କର ଅନଧ୍ୟବସାୟ ସେ ସବୁର ବିକୃତାର୍ଥ ପୋଷଣ କରି ଆମ୍ଭମାନଙ୍କର ଦୁର୍ଦ୍ଦଶା ବୃଦ୍ଧି କରୁଅଛି । " ମୋହିନୀ", "ସିନ୍ଧୁମନ୍ଥନ" ପ୍ରଭୃତି କେତେକ କବିତାରେ କଥଞ୍ଚିତ ସେ ଆବରଣ- ଉନ୍ମୋଚନର ଚେଷ୍ଟା କରିଅଛି ।"(ମୁଖବନ୍ଧ - ଶାନ୍ତିଭିକ୍ଷା)

ଶାନ୍ତିଭିକ୍ଷା କବିଙ୍କର ଏକ ଉଚ୍ଚକୋଟୀର ସୃଷ୍ଟି । ସନ୍ନିବେଶିତ କବିତାଗୁଡ଼ିକରେ ବୈଦିକ ଯୁଗରୁ ଆଧୁନିକ ଯୁଗର ଜ୍ଞାନଲବ୍ଧ ବିବରଣୀର ସମନ୍ୱୟ ସ୍ଥାପିତ ହୋଇଛି । ଜ୍ଞାନର ଗଭୀରତାରେ କବି ହଜିଯାଇ ନାହାନ୍ତି ବରଂ ଜ୍ଞାନର ନିବିଡ ଆଶ୍ଳେଷ ମଧ୍ୟରେ ଶାନ୍ତି ଦେବୀଙ୍କୁ ଆହ୍ୱାନ କରିଛନ୍ତି । ବିଶିଷ୍ଟ ସମାଲୋଚକ ଭୋଳାନାଥ ସାମନ୍ତରାୟଙ୍କ ଉକ୍ତି ଏ ବକ୍ତବ୍ୟକୁ ବଳିଷ୍ଠ କରେ । " କବି ଶ୍ରୀଯୁକ୍ତ ହରିହର ମହାପାତ୍ରଙ୍କ ରଚିତ ଶାନ୍ତିଭିକ୍ଷା କବିତାଗୁଡ଼ିକ ପଢ଼ି ଆନନ୍ଦିତ ହେଲି । ରସାତ୍ମକ ବାକ୍ୟ ହିଁ କବିତା । "ଶାନ୍ତି ଭିକ୍ଷା'ରେ ଶାନ୍ତି ରସର ଅଭାବ ହୋଇନାହିଁ ।" (ଅଭିମତ-ଶାନ୍ତିଭିକ୍ଷା)

## ■ ବିବ୍ରତା ଭାରତୀ

ବିବ୍ରତା ଭାରତୀ ୧୯୩୩ରେ ପୁସ୍ତିକାକାରେ ପ୍ରକାଶିତ । ତତ୍‌ପୂର୍ବରୁ ଏହାର ଅଂଶବିଶେଷ 'ସହକାର' ୧୪ଶ ଭାଗ / ୬ଷ୍ଠ ସଂଖ୍ୟା ଆଶ୍ୱିନ -୧୯୩୩ରେ ପ୍ରକାଶିତ ହୋଇଥିଲା । ଉତ୍କଳ ଭାରତୀଙ୍କ ବିପର୍ଯ୍ୟସ୍ତ ଅବସ୍ଥାର ଚିତ୍ର ଏ କାବ୍ୟରେ ପ୍ରଦତ୍ତ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଅବ୍ୟବହିତ ମୁହୂର୍ତ୍ତ ପୂର୍ବରେ ଯେଉଁ ତୀବ୍ର ଜାତୀୟତାବୋଧ ପ୍ରତିଟି ଓଡ଼ିଆ ମନରେ ଚେଇଁ ଉଠିଥିଲା, ତା'ର ଏକ କଳାତ୍ମକ ପରିପ୍ରକାଶ ବିବ୍ରତା

ଭାରତୀ । ଏଠି ନିଜର ବିଷାଦ, ଲାଞ୍ଛନା, ନୈରାଶ୍ୟ, ଅପମାନରେ ବିବ୍ରତା ଭାରତୀ ପ୍ରତିଟି ଉତ୍କଳୀୟଙ୍କୁ ନିଜର ଦୁଃଖ ଜଣାଉଛନ୍ତି । ଏକଦା ଆଧ୍ୟାତ୍ମିକ ଓ କଳା କ୍ଷେତ୍ରରେ ଶୀର୍ଷତ୍ୱ ପ୍ରାପ୍ତ ହୋଇଥିବା ଓଡ଼ିଆଙ୍କ ଚରମ ଦୁର୍ଭାଗ୍ୟ ଯୋଗୁ ଭାରତୀ ବ୍ୟଥିତା । ପଡ଼ୋଶୀ ଜାତିଙ୍କ ତୁଳନାରେ ମୁମୂର୍ଷୁ ଓଡ଼ିଆ ପ୍ରାଣରେ ଜାତୀୟ ପ୍ରୀତି ସମ୍ପାଦନ ହିଁ ଏ କବିତାର ଆଭିମୁଖ୍ୟ ।

"ବିଷାଦ, ଲାଞ୍ଛନା ନୈରାଶ୍ୟ ବଞ୍ଚନା
ମାନ ଅପମାନ ଔଦାସ୍ୟେ ଦଳି
ଉତ୍କଳ ଭୁବନେ ଭ୍ରମି ଘରେ ଘରେ
ଉତ୍କଳ ସନ୍ତାନେ ଜଣାଅ ଅଳି ।" (ବିବ୍ରତା ଭାରତୀ)

ପ୍ରତିଟି ଉତ୍କଳୀୟଙ୍କୁ ନିବେଦନ କରିବା ସହିତ କବି ଉପାନ୍ତ ଅଞ୍ଚଳର ଅବସ୍ଥିତ ପାଞ୍ଚ ନରେନ୍ଦ୍ରଙ୍କୁ ଓଡ଼ିଶାର ଦୁର୍ଗତିର ଅସହାୟତା ଜ୍ଞାପନ କରି ଆଶୁ ପ୍ରତିକାର ଭିକ୍ଷା କରିଛନ୍ତି ।

"କହ ମା । ସୁରଙ୍ଗୀ ଟିକିଲୀ, ଚିକିଟୀ
ଧରାକୋଟ ପତି ଛାମୁରେ ଯାଇ
ଜୟପୁର ପତି ପ୍ରାସାଦେ ପ୍ରବେଶି
ଜଣାଇବୁ ଦୁଃଖ- ବୀଣା ବଜାଇ ।
ଗାଇବୁ କରୁଣେ- 'ହେ ନରେନ୍ଦ୍ର ବୃନ୍ଦ
ଶୁଣିବ କି ଥରେ ମୋର ଗୁହାରି ?
ବିଶ୍ୱଲୀଳା ଭୂମେ ଭୋଗୁଅଛି ଲଜ୍ଜା
ସପତ୍ନୀ ଗୌରବେ ନିରତେ ହାରି ।" (ବିବ୍ରତା ଭାରତୀ)

କବି ଉକ୍ତ କବିତା ପୁସ୍ତକଟି ଉଲ୍ଲିଖିତ ପଞ୍ଚ ନରେନ୍ଦ୍ରଙ୍କ ପବିତ୍ର ନାମରେ ଉତ୍ସର୍ଗ କରିଛନ୍ତି । ଅନ୍ୟ ଅନେକ ଖ୍ୟାତଯଶା ରାଜା ମହାରାଜା ଥିଲେ ମଧ୍ୟ ଉପାନ୍ତ ଅଞ୍ଚଳର ଏ ରାଜାମାନଙ୍କୁ କବି ଅନୁରୋଧ କରିବା ଅତି ତାତ୍ପର୍ଯ୍ୟପୂର୍ଣ୍ଣ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପରିପ୍ରେକ୍ଷୀରେ ସୁରଙ୍ଗୀ, ଟିକଲୀ, ଚିକିଟୀ, ଧରାକୋଟ, ଜୟପୁର ରାଜ୍ୟ ଓଡ଼ିଶା ପ୍ରଦେଶରୁ ପ୍ରାରମ୍ଭିକ ପର୍ଯ୍ୟାୟରେ ବାଦ୍ ପଡିଥିଲା । ଉକ୍ତ ରାଜାଙ୍କ ଆତ୍ମିକ ଉଦ୍ୟମରେ ଓଡ଼ିଶାରେ ମିଶିଥିଲା । ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନରେ ଏ ରାଜନ୍ୟବୃନ୍ଦ ସଭାପତିତ୍ୱ କରିଛନ୍ତି । ଧରାକୋଟ ରାଜା ମଦନ ମୋହନ ସିଂହ ୨ୟ ଅଧିବେଶନ, ସୁରଙ୍ଗୀ ରାଜା ଚନ୍ଦ୍ରଚୂଡାମଣି ହରିଚନ୍ଦନ ଜଗଦେବ ୫ମ ଓ ୮ମ ଅଧିବେଶନ ଏବଂ ଜୟପୁର ରାଜା ବୀରବିକ୍ରମଦେବ ୧୦ମ ଅଧିବେଶନରେ ସଭାପତିତ୍ୱ କରିଥିଲେ ।

ଟିକାଲୀ ଅଧୀଶ୍ୱର ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦେବ ମାଳବିକାଗ୍ନିମିତ୍ର (ଅନୁବାଦ), ମୁକ୍ତାହାର (କବିତା) ପ୍ରଭୃତି ରଚନା କରିଥିଲେ । ଚିକିଟୀ ଅଧୀଶ୍ୱର ରାଧାମୋହନ

ରାଜେନ୍ଦ୍ରଦେବ ପ୍ରେମତରଙ୍ଗ, ପରିମଳା ସହଗମନ, ପାଞ୍ଚାଳୀ ପଟାପହରଣ, ପାଣ୍ଡବ ବନବାସ, ଶ୍ରୀପ୍ରତାପ, ପ୍ରକୃତି ରହସ୍ୟ, ପ୍ରକୃତ ପ୍ରଣୟ ପ୍ରଭୃତି ନାଟକ ଏବଂ ପ୍ରେମ ମଞ୍ଜରୀ, ପ୍ରକୃତି ବର୍ଣ୍ଣନା, ପ୍ରକ୍ରମ ପଦ୍ୟାବଳୀ ପ୍ରଭୃତି କବିତା ପୁସ୍ତକର ରଚୟିତା । ଜୟପୁର ଅଧିପତି ବୀରବିକ୍ରମ ଦେବଙ୍କ ନାଟକ ଗଳ୍ପ ପ୍ରଭୃତି ଅନେକ ସାରସ୍ୱତ କୀର୍ତ୍ତି ରହିଛି । ତାଙ୍କର ଓଡ଼ିଆ ଭାଷାପ୍ରୀତିକୁ ଫକୀରମୋହନ ସାରସ୍ୱତ ସମ୍ମାନ ଜଣାଇଛନ୍ତି ।

"ଧନ୍ୟ ହେ ବିକ୍ରମ ଦେଓ ପଣ୍ଡିତ ରତନ
ମହାରାଜ ଜୟପୁର ଉତ୍କଳ ଭୂଷଣ ।
ତୁମ୍ଭର କବିତ୍ୱ ରାଧା ମାଧବ ନାଟକ
ପଢ଼ି ଜ୍ଞାନ କରେ ମୋର ଜୀବନ ସାର୍ଥକ ।
xx xx xx
ଓଡ଼ିଆ ପଢ଼ିବା ପାଇଁ ସମର୍ପିଛ ପ୍ରାଣ
ଧନ୍ୟ ଧନ୍ୟ ତୁମ୍ଭ ମାତୃଭାଷା ପ୍ରତି ଟାଣ ।" (ଉତ୍କଳ ଭ୍ରମଣଂ)

ସୁରଙ୍ଗୀ ରାଜା ମଧ୍ୟ କୁରାଣିନୀ, ଜଣାଣ, ପ୍ରାର୍ଥନାବଳୀର ରଚୟିତା ।

ଏହି ରାଜାବୃନ୍ଦ ବିଭିନ୍ନ ଆଳରେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ ନିରବଚ୍ଛିନ୍ନ ଉଦ୍ୟମ କରିଛନ୍ତି । ଉପାନ୍ତ ଅଞ୍ଚଳ ହୋଇଥିବାରୁ ଉକ୍ତ ରାଜାମାନଙ୍କ ଉପରେ ପଡ଼ୋଶୀ ଭାଷା କବଳରୁ ଓଡ଼ିଆ ଭାଷାର ଉଦ୍ଧାର ଏବଂ ମହାନତା ପ୍ରଦର୍ଶନର ଦାୟିତ୍ୱ ଖୁବ୍ ଅଧିକ । ଗ୍ରାମ୍ୟ କଳହର ମୀମାଂସା ପଞ୍ଚାୟତ ହସ୍ତରେ ନ୍ୟସ୍ତ ଥିଲା ପରି, ଓଡ଼ିଆ ଭାଷା ଗଠନର କଳହ ଅପନୋଦନ କରି ଓଡ଼ିଆତ୍ୱର ପ୍ରତିଷ୍ଠାର ଦାୟିତ୍ୱ କବି ଏ ପଞ୍ଚନରେନ୍ଦ୍ରଙ୍କୁ ଦେଇଛନ୍ତି ।

"ପଞ୍ଚାୟତେ ମୋର ସପତ୍ନୀ କଳହ
ଭାଙ୍ଗିଦିଅ ପଞ୍ଚ ନରେନ୍ଦ୍ର ମଣି ।" (ବିବ୍ରତାଭାରତୀ)

ଏ କବିତାର ପ୍ରତି ଛତ୍ରେ ଛତ୍ରେ ଉତ୍କଳୀୟ ଶୌର୍ଯ୍ୟ, ବୀର୍ଯ୍ୟ ଶିଳ୍ପୀ କାରିଗରୀ ବିଦ୍ୟାର ମହାନତା ପ୍ରଦର୍ଶିତ ହୋଇଛି । ଆଳସ୍ୟର ଶୃଙ୍ଖଳ ଭେଦ କରି ଓଡ଼ିଶାର ପରମ ଉନ୍ନତି ହିଁ କବିଙ୍କ ଲକ୍ଷ୍ୟ । ଅତୀତର ସ୍ମୃତି ନବବଳ ନବ ଉନ୍ମାଦନା ସଞ୍ଚାର କରୁ ।

ସେ ସ୍ମୃତି ତପନ ଅତୀତ ଗଗନୁଁ
ଉଇଁ ଆସୁ ହୃଦ ଅନ୍ଧାର ଭେଦି
ସେ ଜ୍ୟୋତି ଝଳକେ ଉଦ୍‌ବୋଧିତ ପ୍ରାଣେ
ଜାଗୁ ଏ ଓଡ଼ିଆ ଜଡ଼ତା ଛେଦି ।" (ବିବ୍ରତାଭାରତୀ)

ଜାତୀୟତାବୋଧ ପ୍ରଖ୍ୟାପନରେ ଏ କବିତା ସଫଳ ହୋଇଛି ।

## ■ ବିସ୍ମୃତିର ପରିଣାମ

ଏହି କବିତା '' ସମ୍ବଲପୁର-ହିତୈଷିଣୀ'' ୧୯୧୦ର ୨୧/୪୧ ଏବଂ ୨୧/୪୬ ସଂଖ୍ୟାରେ ପ୍ରକାଶିତ ଏବଂ ସେହି ବର୍ଷ ହିତୈଷିଣୀ ପ୍ରେସରେ ପୁସ୍ତକାକାରରେ ମୁଦ୍ରିତ । ପ୍ରକୃତିର ସୁରମ୍ୟ ଆଲେଖ୍ୟ ସହିତ ଦାର୍ଶନିକ ଦୃଷ୍ଟିଭଙ୍ଗୀର ସଫଳ ସମାବେଶ ଏ କବିତାରେ ପ୍ରତିଫଳିତ । ପୂତନୀରା ଜାହ୍ନବୀକୁ ଉପଲକ୍ଷ୍ୟ କରି କବି ପ୍ରାଚୀନ ଏବଂ ଆଧୁନିକ ମତାଦର୍ଶର କଳାତ୍ମକ ତୁଳନା କରିଛନ୍ତି । ଆଦର୍ଶ ଆର୍ଯ୍ୟ ପରମ୍ପରା ସହିତ ଜାତୀୟ ପ୍ରୀତି ଏହି କାବ୍ୟରେ ଗୁଞ୍ଜରିତ । ପ୍ରାଚୀନ ପବିତ୍ର ଆଶ୍ରମ ଧର୍ମଧାରା ସତ୍ୟ ଶିବ ସୁନ୍ଦରର ଚିନ୍ତନ ଭାରତରେ ବିଲୟ ଘଟିଛି । ଦେଶ ପାଇଁ ପ୍ରାଣପଣ କରୁଥିବା ବୀର ପୁରୁଷ ଆଉ ନାହାନ୍ତି । ଆଦର୍ଶ ଜୀବନ ଧାରା ସହିତ ସଂହତି ରକ୍ଷାକାରୀ ପ୍ରକୃତି ଆଜି ବିବର୍ଣ୍ଣା । ଗୌରବାବହ ଅତୀତର ସ୍ମୃତି ବିସ୍ମୃତ ହୋଇ ଭାରତୀୟମାନେ ବିକଳାଙ୍ଗ ଜୀବନ ବିତାଉଛନ୍ତି । ଅତୀତର ସମୃଦ୍ଧମୟ ଭାରତକୁ ଜାହ୍ନବୀ ଅବଲୋକନ କରିଛି । ମହାଭାରତୀୟ ଯଶୋରାଶିକୁ ନିଜର ପବିତ୍ର ସ୍ରୋତ ସହିତ ଏକାତ୍ମ କରି ଦେଇଛି ।

''ଶାନ୍ତି ସ୍ୱରୂପିଣୀ ଏହି କଳ-ନିନାଦିନୀ
ଭାରତମାତାର ଚିର-ବକ୍ଷ-ବିଳାସିନୀ
ଭାରତର ଅତୀତର ସମ୍ପଦ ଗାରିମା
ଜାଣେଇ ଜାହ୍ନବୀ ତା'ର ମହତୀ ମହିମା ।''(ସମ୍ବଲପୁର ହିତୈଷିଣୀ- ୨୧।୪୬)

ଏହି କବିତାରେ ଜାହ୍ନବୀ ତୀରରେ ଅବସ୍ଥାପିତ ଜଣେ ବର୍ଷୀୟାନ ସାଧୁପୁରୁଷଙ୍କ ନିକଟକୁ ଜଣେ ଯୁବକ ଆସିଛି । ସାଧୁ ତାକୁ ଉପଦେଶ ଛଳରେ ଭାରତର ପ୍ରାଚୀନ ଐତିହ୍ୟର ସ୍ମୃତିଚାରଣ କରିଛନ୍ତି । କାବ୍ୟ ପୃଷ୍ଠଭୂମିରେ ସଚେତନ ଭାବେ କବି ଦୁଇ ପୁରୁଷର ପ୍ରତୀକ ଭାବେ ବୃଦ୍ଧ ଏବଂ ଯୁବକକୁ ଗ୍ରହଣ କରିଛନ୍ତି । ସମୟର ଚିରନ୍ତନ ପ୍ରବାହ ସହିତ ପ୍ରତିଟି ଉତ୍‌ଥାନ ପତନର ମୂକସାକ୍ଷୀ ଜାହ୍ନବୀ । ଜାହ୍ନବୀର ପବିତ୍ର ଧାରା ଆଜି କଳୁଷିତ, ବଦଳିଛି ଯୁଗ, ବଦଳିଛି ବିଚାରଧାରା, ବଦଳିଛି ମୂଲ୍ୟବୋଧ । ଏଣୁ କବି ବ୍ୟଥିତ-

'' ଆହା ! ହା, ସେଦିନ ବସ ଯାଇଅଛି ଚାଲି
ଉଦ୍‌ବେଳିତ ହୃଦ ଆଜି ସେ ସମ୍ପଦ ଭାଳି
ବସନ୍ତ କେଳିନିଳୟ ତପୋବନ ରାଜି
ମରୁଭୂମି ରୂପେ ଆହା ପରିଣତ ଆଜି ।
ଅତୁଳ ବିଭବଶାଳୀ ଥିଲା ଯେ ଭାରତ
ଉଦର ଜ୍ୱାଳାରେ ଆଜ ଆହା ଭିକ୍ଷାରତ ।'' (ସମ୍ବଲପୁର ହିତୈଷିଣୀ- ୨୧।୪୬)

ବିଂଶ ଶତକର ପ୍ରଥମ ଦଶକରେ ଓଡ଼ିଆ ସାହିତ୍ୟରେ ଯେଉଁ ଜାତୀୟବାଦର ପ୍ରତିଧ୍ୱନି ଗୁଞ୍ଜରିତ ହୋଇଥିଲା, ସେଥିରେ ଉତ୍କଳୀୟ ଚେତନା ସହିତ ମହାଭାରତୀୟ ଚେତନା ଏକୀଭୂତ ହୋଇଥିଲା । ଉତ୍କଳୀୟତାର ଜାଗୃତି ସହିତ ପ୍ରତ୍ୟେକ ସତ୍‌କବି ମହାଭାରତୀୟ ଆଦର୍ଶର ଉତ୍‌ଥାନ କାମନା କରିଥିଲେ । ପରାଧୀନ ଦେଶର କ୍ଲୀବତାକୁ ପରିହାର କରି ଏକ ସମୃଦ୍ଧ

ରାଷ୍ଟ୍ର ନିର୍ମାଣର ସ୍ୱପ୍ନ ପ୍ରତିଟି ସାରସ୍ୱତ ସାଧକଙ୍କୁ ଆକୃଷ୍ଟ କରିଥିଲା । ଏପରି ଏକ ପ୍ରେକ୍ଷାପଟରେ 'ବିସ୍ମୃତିର ପରିଣାମ' କବିତା ପରିକଳ୍ପିତ ।

ଭାରତର ଗୌରବୋଜ୍ଜ୍ୱଳ ଐତିହ୍ୟର ପତନକୁ ମହାକାଳ ବକ୍ଷରେ କ୍ଷଣିକର ଉଦ୍ଭାସନ ରୂପେ କବି ରାଧାନାଥୀ ସ୍ୱରରେ ସ୍ୱୀକାର କରିଛନ୍ତି ।

''ପୁଲକେ ମଳୟାନିଳେ ମନ୍ଦେମନ୍ଦେ ହସି
ପଲକେ ପଡ଼େ କୁସୁମ ଧରାତଳେ ଖସି
ପୁଲକେ ସଉଦାମିନୀ ଅନନ୍ତ ଗଗନେ
ପଲକେ କୋକିଳ-କଳ ଗୀତି ଖେଳି ରଙ୍ଗେ
ପଲକେ ମିଶଇ ଯଥା ସମୀର ତରଙ୍ଗେ
ପୁଲକେ ତେସନ ହସି ଗୌରବ ସୁମନ
ପଲକେ ମଉଳି ତଳେ ହୋଇଛି ପତନ ।'' (ସ.ହି. ୨୧/୪୬)

ଏହାରି ଅନ୍ତରାଳରେ କବି ଏକ ନୂତନ ସୂର୍ଯ୍ୟୋଦୟର ଆଶାପୋଷଣ କରିଛନ୍ତି । ଭାବ, ଭାଷା ଉଭୟ ଦୃଷ୍ଟିରୁ ଏ କବିତା ଏକ ସଫଳ ସୃଷ୍ଟି ।

■ ଭରତ କାବ୍ୟ

ଭରତ କବିଙ୍କର ଏକ ଉତ୍କୃଷ୍ଟ କାବ୍ୟ । ଏହା ଦୁଷ୍ମନ୍ତ ଶକୁନ୍ତଳା ଆଖ୍ୟାନରୁ ଆରମ୍ଭ ହୋଇ, ଭରତ ଜନ୍ମ, ଦୁଷ୍ମନ୍ତଙ୍କ ବାନପ୍ରସ୍ଥ ଗମନ ଓ ଭରତଙ୍କ ଉତ୍କର୍ଷ ରାଜ୍ୟ ଶାସନ ପ୍ରଣାଳୀ ବର୍ଣ୍ଣିତ । ଏହି କାବ୍ୟ ବାରୋଟି ସର୍ଗରେ ବିଭକ୍ତ । ଏହା ଏକ ଅପ୍ରକାଶିତ କାବ୍ୟ । ଏ କାବ୍ୟର ସୁନିର୍ବାଚିତ ଅଂଶ ''ଚୟନିକା'' ଶୀର୍ଷକରେ ''ଗଡ଼ଜାତ ବାସିନୀ'' ଏବଂ ''ଉପହାର'' ପତ୍ରିକାରେ କ୍ରମଶଃକାରେ ପ୍ରକାଶ ଲଭିଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ କବିଙ୍କ ଉତ୍ତରଦାୟାଦ ୰ ତରୁଣ କୁମାର ମହାପାତ୍ର ସ୍ୱସଂପାଦିତ ଖବରକାଗଜ 'ଗଡ଼ଜାତ ସମାଚାର' (ଦେବଗଡ଼-୧୯୮୮)ରେ କ୍ରମାନ୍ୱୟରେ ''ଭରତ'' କାବ୍ୟକୁ ପ୍ରକାଶ କରୁଥିଲେ । ତରୁଣ ମହାପାତ୍ରଙ୍କ ଅକାଳ ବିୟୋଗରେ ଗଡ଼ଜାତ ସମାଚାରର ବିଲୟ ସହିତ ଏହି କାବ୍ୟରସ ପାନରୁ ପାଠକ ବଞ୍ଚିତ ହେଲେ ।

ଏହି କାବ୍ୟଟି ପ୍ରକାଶ ହେବା ପାଇଁ ବିଭିନ୍ନ ସମୟରେ ପ୍ରେସକୁ ଯାଇଥିଲେ ମଧ ଏଯାବତ୍ ପ୍ରକାଶିତ ହୋଇନାହିଁ । ୧୯୩୩ରେ ଏହି କାବ୍ୟଟିର ଲେଖା ସମାପ୍ତ ହୋଇଛି ଓ ନିକଟରେ ପ୍ରେସକୁ ଯିବ ବୋଲି 'ଗଡଜାତ ବାସିନୀ'ରେ ଏକ ସମ୍ବାଦ ପ୍ରକାଶ ପାଇଥିଲା । ଏହି ସମ୍ବାଦର ଉତ୍ତରରେ ହରିହର ମହାପାତ୍ରଙ୍କ ପତ୍ର 'ଭରତ' କାବ୍ୟ ସମ୍ପର୍କିତ ସତ୍ୟ ଉନ୍ମୋଚିତ କରେ । ସେହି ବିରଳ ପତ୍ରଟି ଗଡଜାତ ବାସିନୀ (୩୩/୩୬ ତା ୨୨-୯-୧୯୩୪) ପୃଷ୍ଠାରୁ ଉଦ୍ଧୃତ କରି ପାଠକଙ୍କ ଅବଗତି ପାଇଁ ଏଠାରେ ଦିଆଗଲା ।

ମାନନୀୟ 'ଗଡଜାତ ବାସିନୀ'ର ସମ୍ପାଦକ

ମହାଶୟ,

ଭବଦୀୟ ସମ୍ପାଦିତ ୩୩ଶ ଭାଗ ୩୩ ସଂଖ୍ୟକ ଗଡଜାତ ବାସିନୀରେ, ବାମଣ୍ଡାର ସାହିତ୍ୟ ସମ୍ବାଦରେ ଆପଣ ଲେଖିଛନ୍ତି ଯେ ମୋ ରଚିତ 'ଭରତ' କାବ୍ୟର ଲେଖା ପ୍ରାୟ ଶେଷ ହେଲାଣି, ନିକଟରେ ପ୍ରେସକୁ ତାହା ପ୍ରେରିତ ହେବ । ଏ ସମ୍ବାଦଟି ଠିକ୍ ନ ଥିବାରୁ ଏ ସମ୍ବନ୍ଧେ ମୋତେ ପଦେ ଜଣାଇବାକୁ ହେଲା ।

ପ୍ରକୃତ ଘଟଣା ଏହି ଉକ୍ତ ଭରତ କାବ୍ୟର ୧ମ ଭାଗ ଲେଖା ସରିଛି । ଗତ ଜାନୁୟାରୀ ମାସରେ ମହାମାନନୀୟ କଳାହାଣ୍ଡି ମହାରାଜ ଶ୍ରୀମନ୍ ଶ୍ରୀ ଶ୍ରୀ ବ୍ରଜମୋହନ ସିଂହଦେବ ଓ.ବି.ଇ. ମହୋଦୟ ବାମଣ୍ଡାକୁ ଆସିଥିଲେ । ତତ୍ ପୂର୍ବରୁ ଉକ୍ତ ସ୍ୱନାମଧନ୍ୟ ଗୁଣଗ୍ରାହୀ ମହାରାଜ ମହୋଦୟ, ମୋର କ୍ଷୁଦ୍ର କବିତା 'ବିବ୍ରତା ଭାରତୀ' ପଠନ ପୂର୍ବକ ପ୍ରସଙ୍ଗତଃ 'ଭରତ' କାବ୍ୟଟି ମୁଦ୍ରିତ କରାଇ ଦେବାକୁ ପ୍ରତିଶ୍ରୁତି ଦେଇଥିବାରୁ ତହିଁର ପାଣ୍ଡୁଲିପି ତାଙ୍କ ସମ୍ମୁଖରେ ଉପସ୍ଥାପନ କରିଥିଲି । ମହାରାଜ ମହୋଦୟଙ୍କ ଆଦେଶ ଅନୁସାରେ ଉକ୍ତ ପାଣ୍ଡୁଲିପି ସେହି ସମୟରୁ ତାଙ୍କ ସମୀପକୁ (କଳାହାଣ୍ଡି)କୁ ପଠାଇ ସାରିଅଛି । ସମ୍ଭବତଃ ତହିଁର ମୁଦ୍ରଣ କାର୍ଯ୍ୟ ଚାଲିଥିବ । ସ୍ୱଦେଶବତ୍ସଳ ସାହିତ୍ୟପ୍ରିୟ ଗୁଣଗ୍ରାହକ ଶ୍ରୀମାନ ମହାରାଜ ମହୋଦୟଙ୍କର କରୁଣାରୁ ଅବଶ୍ୟ ଉକ୍ତ ଗ୍ରନ୍ଥ ଅନତିବିଳମ୍ବେ ଉତ୍କଳୀୟ ସାହିତ୍ୟିକମାନଙ୍କର ଦୃଷ୍ଟିଗୋଚର କରାଇପାରିବି ବୋଲି ମୋର ଆଶା ।

ଆପଣଙ୍କ ଲେଖାଦ୍ୱାରା ଉକ୍ତ 'ଭରତ' କାବ୍ୟର ମୁଦ୍ରାଙ୍କନ ସମ୍ବନ୍ଧେ ମୋର ସ୍ୱାତନ୍ତ୍ୟ ପ୍ରକାଶ ପାଉଥିବାରୁ ଏହା ଲେଖିଲି । ଆଶାକରେ ଏହା ପତ୍ରିକାସ୍ଥ କରାଇ ଉକ୍ତ କାବ୍ୟ ପ୍ରକାଶ ବିଷୟରେ ସହାୟତା ପ୍ରକାଶ କରିବେ ।

ଶ୍ରୀହରିହର ମହାପାତ୍ର,
କବିରାଜ, ବାମଣ୍ଡା

'ଭରତ' କାବ୍ୟ ଏଯାବତ୍ ଅପ୍ରକାଶିତ ରହିଛି । ଏହାକୁ ପ୍ରକାଶ କରିବା ଦିଗରେ ତାଙ୍କର ପରିବାର ବର୍ଗ କୌଣସି ପଦକ୍ଷେପ ନେବାର ସାମାନ୍ୟ ଉଦ୍ୟମ ମଧ୍ୟ କରିନାହାନ୍ତି ।

'ଭରତ' କାବ୍ୟରେ ପ୍ରକୃତି ବର୍ଣ୍ଣନା ସହିତ ମହାଭାରତୀୟ ଚେତନା ପ୍ରତିଧ୍ୱନିତ । କାବ୍ୟରେ ସାବଲୀଳ ପ୍ରକୃତି ବର୍ଣ୍ଣନାର ଦୃଷ୍ଟାନ୍ତ ରୂପେ ବର୍ଷା ବର୍ଣ୍ଣନାକୁ ଗ୍ରହଣ କରାଯାଇପାରେ ।

''ସମାଗତ ନବ ନୀରଦ କାଳ, ଭୁବନ ଘେରି
ବାଜିଲା ଅନନ୍ତ ଗଗନେଘନ ତାଣ୍ଡବ ଭେରୀ
ବାଷ୍ପାକାରେ ଉଠି ଆକାଶେ ସିନ୍ଧୁ ସଲିଳ ରାଶି
ବହି ବ୍ୟୋମତର ମୂରତି ଖେଳେ ଚୌଦିଗେ ଭାସି
ଲୋଟୁଥିଲା ଯା'ର ଚରଣେ ପିଟି ଲହରୀ ଶିର
ଆଦରେ ଆଶ୍ଳେଷି ବହିଛି ଶିରେ ସେହି ସମୀର ।'' (ଗଡ଼ଜାତବାସିନୀ: ୩୩/୩୮)

ଆର୍ଯ୍ୟକୁଳାଚାର ସାଧନା ହିଁ ଆଜିର ବିପର୍ଯ୍ୟସ୍ତ ଜୀବନଧାରାକୁ ସୁଧାରିବାରେ ସକ୍ଷମ ହେବ । ଏଣୁ କବି ଘୋଷଣା କରନ୍ତି ।

"ଏ ତ ଆର୍ଯ୍ୟ କୁଳରୀତି । ପ୍ରକୃତିର କୃତି
ସ୍ମରି ଆର୍ଯ୍ୟ ପ୍ରାଣ କରଇ ଗତି
ବାଲ୍ୟେ ବିଦ୍ୟା ଯଉବନେ ସୁକର୍ମ ସାଧନା
ସାୟାହ୍ନେ ଲୋଡ଼ଇ ଆତ୍ମ ମୁକତି ।" (ଉପହାର,ଏପ୍ରିଲ୍ ୧୯୩୭)

ଏହି କାବ୍ୟର ଛତ୍ରେଛତ୍ରେ ଜାତୀୟଚେତନା ଓ ଦେଶପ୍ରେମର ଅପୂର୍ବ ବାଣୀ ସୁରକ୍ଷିତ ।

## ■ କଲ୍ୟାଣ କୁସୁମ

ସଚ୍ଚିଦାନନ୍ଦ ଦେବଙ୍କ ଆତ୍ମଜ ଦିବ୍ୟଶଙ୍କର ଦେବଙ୍କ ଖଡ଼ିଆଳ ରାଜକୁମାରୀ ପାଣିଗ୍ରହଣ ଉପଲକ୍ଷେ ଏ ଆଶୀର୍ବାଦ ମୂଳକ କବିତା ରଚିତ । ୧-୩-୧୯୧୩ରେ ଏହି ପୁସ୍ତିକା ହିତୈଷିଣୀ ପ୍ରେସରେ ମୁଦ୍ରିତ ହୋଇ ବିତରିତ ହୋଇଥିଲା । ଏ କବିତା ଆଠଟି ଦଳରେ ବିଭକ୍ତ । ପ୍ରତିଟି ଦଳ ବିଭିନ୍ନ ତାଳଯୁକ୍ତ ରାଗ ରାଗିଣୀରେ ରଚିତ । ବିବାହୋତ୍ସବ ଉପଲକ୍ଷେ ଗାନ କରିବା ଏ ଗୁଡିକର ଲକ୍ଷ୍ୟ । ଗୀତିଧର୍ମିତା ସହିତ ଏ ଗୁଡିକରେ ଶବ୍ଦ ଗୁଂଫନର ସାବଲୀଳତା ଉପଭୋଗ୍ୟ । ଉଦ୍ଦେଶ୍ୟମୂଳକ ଭାବେ ରଚିତ ହୋଇଥିବାରୁ ଏହାର ମୁଖ୍ୟ ଆଭିମୁଖ୍ୟ ଆନନ୍ଦଦାନ ଏବଂ ନବଦମ୍ପତିଙ୍କୁ ଆଶୀର୍ବାଦ ପ୍ରଦାନ । ସେ ଦୃଷ୍ଟିରୁ ଏହା ସଫଳ କିନ୍ତୁ କଳାତ୍ମକ ଉତ୍କର୍ଷତା ହରାଇଛି ।

## ■ ନୈବେଦ୍ୟ

ଦୁଃଖାଭିଭୂତ ହୃଦୟ ଉତ୍କୃଷ୍ଟ କବିତାର ଜନନୀ । ମାତୃବିୟୋଗ ଦୁଃଖକାତର ହରିହର ମାତାଙ୍କ ଉଦ୍ଦେଶ୍ୟରେ ଶୋକାଶ୍ରୁ ନୈବେଦ୍ୟ ସମର୍ପିତ କରିଛନ୍ତି ।

"ଫାଟିଯାରେ ହୃଦ      ଫୁଟିଯାରେ ଆଖି
ରହିବୁ କି ସୁଖ ଘେନି
ଆଜିଠାରୁ ସିନା      ରସନା-ଅଗ୍ରତେ
ବ୍ୟର୍ଥମାତା ବର୍ଣ୍ଣବେନି ।" (ନୈବେଦ୍ୟ)

ଏ କବିତାରେ ମାତାର ବାତ୍ସଲ୍ୟପ୍ରେମ, ପୁତ୍ର ନିମନ୍ତେ ସତତ କାତର ଜନନୀ ଅନ୍ତର ଏବଂ ମାତାର ମହାନତା ପ୍ରଦର୍ଶିତ ।

## ■ ଖଣ୍ଡାଧାର

ଜୀବନର ରଙ୍ଗଧରି ଶିଳ୍ପୀଟିଏ ବସିଛି । ସ୍ପର୍ଶକାତରା ସ୍ରୋତଟିଏ ରାସ୍ତା ଖୋଜୁଚି ପ୍ରକାଶର । ଯେମିତି ହୃଦୟର ଗାଲିଚା ତଳେ ଅନ୍ତଃସଲିଳ ଫଲ୍ଗୁଧାର, ଯେମିତି ବିଶ୍ୱପୁରୁଷ ଛାତିରେ ଶ୍ରୀବତ୍ସ ଲାଂଛନ । ପ୍ରକୃତିର ଧାରରୁ ଖସୁଛି ବୁନ୍ଦାବୁନ୍ଦା ଶିଶିର, କାକର, ଐଶ୍ୱର୍ଯ୍ୟ ଖଳାରୁ ଉଡାଚାଲିଛି ଶାଶ୍ୱତ ଫସଲ । ବହୁ ଅପେକ୍ଷିତ ଦୃଶ୍ୟଟିଏ ରୂପ ପାଉଛି କବିର ଅନ୍ତଃଫାଡି,

ନିଗାଡି ପ୍ରାଣପୂର୍ଣ୍ଣ ଶବଦର ପ୍ରାଚୁର୍ଯ୍ୟ । ଗଢ଼ି ଉଠୁଛି ଅନବଦ୍ୟ କବିତା ସ୍ୱଭାବ ସୁନ୍ଦର ଖଣ୍ଡାଧାର- କବି ପ୍ରାର୍ଥନା କରୁଛି-

ଉଠ ଖଣ୍ଡାପାଟ ଶୈଳ ବିଳାସିନୀ ।
ଉଠ ଶୋଭାଦେବୀ! ଶୟନ ତେଜି
ଆସିଅଛି ମୁଁ ଯେ ଦୂରପଥ ବହି
ତୋର ଦରଶନ ମାନସେ ହେଜି ।
ସ୍ୱଭାବ ସୁନ୍ଦର ତୋ ବିମଳ ବିଭା
ଫୁଟି ଉଠୁ ମୋର ମାନସ ତଟେ
ଦେଖାଅ ଯତନେ ଯେ ଶୋଭା-ରତନ
ସାଜି ରଖୁଅଛୁଁ ହୃଦୟ ପଟେ । (ଖଣ୍ଡାଧାର - ପୃ-୧)

ପ୍ରକୃତିର ସୌନ୍ଦର୍ଯ୍ୟବଲ୍ଲଭାକୁ କବିଦୃଷ୍ଟି ଜୀବନର ମାର୍ମିକ ଅଭିଳିପି ସହିତ ଏକାତ୍ମ କରିଦିଏ ଏବଂ ମଧୁମୟ ସୃଷ୍ଟିର ଅମୃତ ବିଭାକୁ ବିଶ୍ୱଜନୀନ କରି ତୋଳେ । ଏପରି ଏକ ଉପଲବ୍ଧିର ଉଦାତ୍ତ ସ୍ୱର କବି ହରିହର ମହାପାତ୍ରଙ୍କ 'ଖଣ୍ଡାଧାର' ।

ହରିହରଙ୍କ ସୁପୁତ୍ର ଇନ୍ଦୁଭୂଷଣ ମହାପାତ୍ରଙ୍କ ଦ୍ୱାରା ସାରସ୍ୱତ ପ୍ରେସ କଟକ-୧୯୫୨ରେ 'ଖଣ୍ଡାଧାର' କାବ୍ୟ ପ୍ରକାଶପାଏ । ଏହି କାବ୍ୟଟି ୧୯୩୭ରେ କବି ରଚନା କରିଥିବାର ଜଣାପଡେ । ଓଡ଼ିଆ ପ୍ରକୃତି ବର୍ଣ୍ଣନାମୂଳକ କାବ୍ୟଧାରାରେ 'ଖଣ୍ଡାଧାର' ଏକ ସୁବର୍ଣ୍ଣ ସଂଯୋଜନ । ଦାମୋଦର ପଟ୍ଟନାୟକଙ୍କ 'କପିଳାସ କ୍ଷେତ୍ର' (୧୮୮୫) ଠାରୁ ଆରମ୍ଭ କରି ରାଧାନାଥଙ୍କ 'ଚିଲିକା', ବାସୁଦେବ ସୁଢ଼ଳଦେବଙ୍କ 'ଚିତ୍ରୋତ୍ପଳା', ଦାମୋଦର ମିଶ୍ରଙ୍କ 'ଅଂଶୁପା' ରତ୍ନାକର ଶର୍ମାଙ୍କ 'ବପାଳିମାଳୀ', ଲୋଚନ ପ୍ରସାଦ ପାଣ୍ଡେୟଙ୍କ 'ମହାନଦୀ' ଚିନ୍ତାମଣି ମହାନ୍ତିଙ୍କ ମେଘାସନ, ମହେନ୍ଦ୍ର, ସାଳନ୍ଦୀ ପ୍ରଭୃତି କାବ୍ୟର ଉତ୍ତର ସୃଷ୍ଟି 'ଖଣ୍ଡାଧାର' । ଏହି ସମସ୍ତ କାବ୍ୟର ଅନୁଶୀଳନ ମାଧ୍ୟମରେ ବୃହତ୍ତର ଭୂଖଣ୍ଡର ଭୌଗୋଳିକ ପରିଚୟ ସୁସ୍ପଷ୍ଟ ହୋଇଥାଏ । ଓଡ଼ିଶାର ସାଂସ୍କୃତିକ, ଐତିହାସିକ ଓ ନୃତାତ୍ତ୍ୱିକ ଅଧ୍ୟୟନ ଦିଗରେ ଉପରୋକ୍ତ କାବ୍ୟ ସମୂହର ବିଶେଷ ଭୂମିକା ରହିଛି ।

ହରିହର ମହାପାତ୍ରଙ୍କ 'ଖଣ୍ଡାଧାର' କାବ୍ୟକୁ ଅନେକ ଆଲୋଚକ ଅପ୍ରକାଶିତ ବୋଲି ଧରି ନେଇଛନ୍ତି । କାବ୍ୟଟିକୁ ୧୯୩୭ରେ ଲେଖିଥିଲେ ମଧ୍ୟ ମଧ୍ୟମ/ତୃତୀୟ ପୁତ୍ରଙ୍କ ପ୍ରଚେଷ୍ଟାରେ ମୁଦ୍ରିତ ରୂପ ୧୯୫୨ରେ ଲୋକଲୋଚନକୁ ଆସେ । କବି ଏହାକୁ ପ୍ରକୃତି ଚିତ୍ର ଖଣ୍ଡକାବ୍ୟ ରୂପେ ଅଭିହିତ କରନ୍ତି । ୬୮ ପୃଷ୍ଠାର ଏହି କାବ୍ୟ ପୁସ୍ତକଟି ୪ଟି ସର୍ଗରେ ବିଭକ୍ତ । ପ୍ରଥମ ସର୍ଗରେ ଖଣ୍ଡାଧାରର ପ୍ରାକୃତିକ ଅବସ୍ଥିତି ସହିତ ସୁନ୍ଦର ବର୍ଣ୍ଣନା ରହିଛି । ଏଠାରେ ପ୍ରକୃତିର ମାନବୀକରଣ ବେଶ୍ ଆହ୍ଲାଦକ । ଯେମିତି ପ୍ରକୃତି ସହିତ କବି ଏକାତ୍ମ ହୋଇଛନ୍ତି । ଭୌଗୋଳିକ ଚିତ୍ର ପ୍ରଦାନ କଲାବେଳେ କବି ଜାଙ୍ଗଲିକ ଜନଜାତିଙ୍କ ରୁଚି, ସଂସ୍କୃତି, ଅତିଥି ପରାୟଣତା ଓ

ଚାଲିଚଳନର ବିଶଦ୍ ବର୍ଣ୍ଣନା ଦେଇଛନ୍ତି । ପ୍ରକୃତିର ଅନବଦ୍ୟ କୋଳକୁ ସଭ୍ୟ ଜଗତଠାରୁ ତୁଚ୍ଛ ମଣୁଥିବା ମଣିଷ ପାଇଁ କବିଙ୍କ ଘୋଷଣା ବେଶ୍ ସମ୍ବେଦନଶୀଳ ଓ ସତ୍ୟନିଷ୍ଠ ।

ସେ ଶ୍ୟାମ ଅଞ୍ଚଳେ ବନେଚର ନର
କି ଆନନ୍ଦେ ସୁଖେ କାଟଇ କାଳ
ପ୍ରକୃତି ମାତାର ଅମୃତ ଚୁମ୍ବନେ
ଏଡିଅଛି ସେ'ତ ନବ୍ୟ ଜଂଜାଳ ।

ବନଚର ମଣିଷର ଖାଦ୍ୟ ସାମଗ୍ରୀ ମଧ୍ୟ ପ୍ରକୃତି ଦତ୍ତ -

ଆମ୍ବଖାଇ ଆମ୍ବ ଟାକୁଆ ରଖଇ
ବରଷାରେ କରେ କୋଇଲି ପିଠା
ମହୁ ବାସ୍ନୁଁ ମହୁ ମହୁଲଫୁଲେ ସେ
କରିନିଏ ତାର ଭୋଜନ ମିଠା ।
ବରଷିଲେ ପାଣି ଫୁଟେ କେତେ ଛତୁ
ପିଚ, ଭାନ୍ଦୁ, ଖୁଦ, ଆଣ୍ଠୁଆ, ବାଲି
ରୁଗୁଡା, ଶିକୁଳା, ବିହୁଡୁଣି ପାଇ
ତୃଣ ପାଇଁ ସେତ ନ ବସେ ଭାଳି ।

ବିଭିନ୍ନ ପ୍ରକାର ଛତୁ, କରଡି, ମହୁଲଫୁଲ, ବିଭିନ୍ନ କନ୍ଦା ଜାତୀୟ ଖାଦ୍ୟର ତାଲିକା ଦେବାରେ କବିଙ୍କର ଅରଣ୍ୟଜ୍ଞାନ ସମୁଜ୍ଜ୍ୱଳ ।

ଦ୍ୱିତୀୟ ସର୍ଗରେ କାଦମ୍ବବଂଶର ଇତିହାସ ଓ ବଣେଇ ରାଜ୍ୟ ଶାସନର ଇତିକଥା ବର୍ଣ୍ଣିତ । କାଦମ୍ବ ସହିତ ଚାଲୁକ୍ୟ ବଂଶର ସମରସଜ୍ଜାର ଚିତ୍ର ବେଶ୍ ହୃଦୟସ୍ପର୍ଶୀ । ଚାଲୁକ୍ୟଦ୍ୱାରା ପରାସ୍ତ ବିତାଡିତ କାଦମ୍ବକୁମାର ଜଙ୍ଗଲ ମଧ୍ୟରେ ନୂତନ ଗିରିଦୁର୍ଗ ସ୍ଥାପନର ପ୍ରଚେଷ୍ଟା ଜନଜାତିଙ୍କ ସାହାଯ୍ୟରେ ସମ୍ଭବ ହୋଇଛି । ପ୍ରକୃତି ବର୍ଣ୍ଣନା ସହିତ କାଦମ୍ବ କୁମାରଙ୍କ ପ୍ରଣୟିନୀ ସମ୍ମୁଖରେ ନିଜବଂଶର ଗୌରବ ପ୍ରଖ୍ୟାପନ ହିଁ ୨ୟ ସର୍ଗର ବୈଚିତ୍ର୍ୟ । ତୃତୀୟ ସର୍ଗରେ ଖଣ୍ଡାଧାରକୁ ସମ୍ବୋଧନ କରି କାଦମ୍ବକୁଳର ବିଷାଦ ଗାଥା ବର୍ଣ୍ଣିତ ହୋଇଛି । କଦମ୍ବ ବଂଶର ପ୍ରତିଷ୍ଠାତା ତ୍ରିନେତ୍ର କଦମ୍ବ କାଞ୍ଚୀଠାରେ ରାଜତ୍ୱ କରୁଥିଲେ । ତୃତୀୟ ମୟୂରବର୍ମାଙ୍କ ସମୟେ ୧୧୩୧ ଖ୍ରୀ:ରେ ଏମାନଙ୍କର ଗୌରବ ନଷ୍ଟ ହୋଇଥିଲା । କାଦମ୍ବରାଣୀ ନିଜର ଶିଶୁପୁତ୍ର ଧରି ଦାକ୍ଷିଣାତ୍ୟ ରାମେଶ୍ୱରଠାରେ ଆତ୍ମଗୋପନ କରିଥିଲେ । ରାଜା-ରାଣୀଙ୍କ ଏହି ଅସହାୟ ଅବସ୍ଥାରେ ସପ୍ତପୁତ୍ର ଜାତ ହୋଇଥିଲେ । ରାଣୀ ନିଜର ଅନ୍ତିମ ସମୟରେ ନିଜର ଇଷ୍ଟଦେବୀ 'କୁମାରୀ'ଙ୍କ ସ୍ୱର୍ଣ୍ଣମୟୀ ମୂର୍ତ୍ତି ଜ୍ୟେଷ୍ଠପୁତ୍ରକୁ ସମର୍ପି ନିଜ ବଂଶର ଗୌରବଗାଥା ବଖାଣିଥିଲେ । ସେହି ସପ୍ତକୁମାର ଭାରତର ବିଭିନ୍ନ ସ୍ଥାନ ଭ୍ରମଣ କରି ଅନୁକୂଳ କ୍ଷେତ୍ର ଅନ୍ୱେଷଣ କରୁଛନ୍ତି । ସେମାନଙ୍କ ମଧ୍ୟରୁ ଅନ୍ୟତମ ଶ୍ରୀ ଉଗ୍ରପ୍ରତାପ ପତ୍ନୀ ସହିତ ଖଣ୍ଡାଧାର କୂଳରେ ପହଞ୍ଚିଛନ୍ତି ।

ଚତୁର୍ଥ ସର୍ଗରେ କାଦମ୍ବକୁମାରଙ୍କ ପତ୍ନୀ ଭୂୟାଁ, ରମଣୀଙ୍କ ଶ୍ରଦ୍ଧାଭାଜନ ହୋଇଛନ୍ତି ।

ଭୂୟାଁ ପ୍ରମଦାଙ୍କ ସୌହୃଦ୍ୟ ଲାଳସେ
ଯାଇଥିଲେ ଏହି ବୀରେନ୍ଦ୍ର ବାଳା
ଘେନି ଆସିଛନ୍ତି ପଲ୍ଲି-ବାସିନୀଙ୍କ
ବିମଳ ଶରଧା କୁସୁମମାଳା ( ପୃ-୫୦)

କାଦମ୍ବବୀରଙ୍କ କଳାକ୍ଷେତ୍ର ଉତ୍କଳକୁ ଆଗମନ ଏବଂ ଉତ୍କଳର କଳା ଭାସ୍କର୍ଯ୍ୟ ସନ୍ଦର୍ଶନରେ ଅଭିଭୂତ ଉତ୍କଳର ଐତିହ୍ୟ 'ଖଣ୍ଡାଧାର'କୁ ଉପଲକ୍ଷ୍ୟ କରି କବି ପରିବେଷଣ କରିଛନ୍ତି । ଏହି ସର୍ଗରେ ପ୍ରକୃତିର ଅନୁପମ ବର୍ଣ୍ଣନା ବେଶ୍ ସ୍ପର୍ଶକାତର । ଭୂୟାଁବୀର କାଦମ୍ବ କୁମାରଙ୍କୁ ସାହାଯ୍ୟ କରିବାକୁ ରଣକ୍ଷେତ୍ରରେ ଅବତୀର୍ଣ୍ଣ ।

'ଖଣ୍ଡାଧାର' ଓଡ଼ିଆ ସାହିତ୍ୟରେ ଅନ୍ୟତମ ଶ୍ରେଷ୍ଠ ପ୍ରକୃତି କାବ୍ୟ । ଖଣ୍ଡାଧାରରେ ନୈସର୍ଗିକ ଶୋଭା ସମ୍ପଦକୁ କବି ଲେଖନୀ ଜୀବନ୍ୟାସ ଦେଇଛି । ଆଦିବାସୀଙ୍କ ନିରାସକ୍ତ ଜୀବନ ମାଧୁର୍ଯ୍ୟ, ଅତିଥି ପରାୟଣତାର ମହନୀୟ ଆଲେଖ୍ୟ 'ଖଣ୍ଡାଧାର'ରେ ଗୁମ୍ଫିତ । ଜୀବନରସରେ ରସାଣିତ ସମାଜ ଓ ସଂସ୍କୃତିର ଅନଶ୍ୱର ବ୍ୟାଖ୍ୟା 'ଖଣ୍ଡାଧାର'କୁ ଏକ ଉତ୍କର୍ଷ କାବ୍ୟକୃତିର ମର୍ଯ୍ୟାଦା ପ୍ରଦାନ କରେ । ହରିହର ମହାପାତ୍ର ଅନନ୍ତ ଭୂମାର ଉପାସକ, ପ୍ରକୃତିର ପ୍ରେମିକ ଏବଂ ମାନବବାଦୀ କାବ୍ୟ ନାୟକ, ଅନନ୍ତ ପ୍ରକୃତି ଓ ଇତିହାସ ଅନ୍ତରାଳରେ ସେ ସର୍ବଜନୀନ ଓ ସର୍ବକାଳୀନ ମାନବିକତାର ଅନ୍ୱେଷଣ କରିଛନ୍ତି । ଏହି ଅନ୍ୱେଷଣର ଅନନ୍ୟ ଦସ୍ତାବିଜ ହିଁ ତାଙ୍କର ପ୍ରତିଟି କାବ୍ୟ । ପ୍ରକୃତି ପ୍ରେମ ସଂଜାତ 'ଖଣ୍ଡାଧାର' ବିଷୟ ଓ ଶୈଳୀ ସଂରଚନା ଦୃଷ୍ଟିରୁ ଅନୁପମ ।

## ■ ପ୍ରାନ୍ତ କଥନ

କବି ହରିହର ମହାପାତ୍ରଙ୍କ ଅନେକ କାବ୍ୟ କବିତା ସମ୍ବଲପୁର ହିତୈଷିଣୀ, ଆଶା, ଉତ୍କଳ ସାହିତ୍ୟ, ସହକାର, ଉପହାର, ଗଡ଼ଜାତ ବାସିନୀ, ଉତ୍କଳସେବକ ପ୍ରଭୃତି ପତ୍ର ପତ୍ରିକାରେ ପ୍ରକାଶିତ । ଓଡ଼ିଆ ସାରସ୍ୱତ ପରମ୍ପରାରେ ଜଣେ ସତ୍ୟନିଷ୍ଠ ନିରବଚ୍ଛିନ୍ନ ସାରସ୍ୱତ ସାଧକ ରୂପେ ହରିହର ମହାପାତ୍ର ସ୍ୱୀକୃତ । ତାଙ୍କ କବିତାର ପରିସର ପ୍ରକୃତି ବର୍ଣ୍ଣନାଠାରୁ ଆରମ୍ଭ ହୋଇ ଜୀବନର ବହୁମୁଖୀନତାକୁ ସ୍ପର୍ଶ କରିବାରେ ସଫଳ ହୋଇଛି । ପ୍ରାଚୀନ ସଂସ୍କୃତିର ଔଜ୍ଜ୍ୱଲ୍ୟରେ ଋଦ୍ଧିମନ୍ତ ଏ କାବ୍ୟକୃତି ଜାତୀୟତାବୋଧ ଏବଂ ଉତ୍କଳୀୟ ପ୍ରୀତିରେ ଦୀପ୍ତିମନ୍ତ । ବୈଜ୍ଞାନିକ, ପ୍ରତ୍ନତାତ୍ତ୍ୱିକ, ଆୟୁର୍ବେଦିକ ତଥ୍ୟ ସମୂହକୁ ଗର୍ଭସ୍ଥ କରି ଏକ ଅନନ୍ୟ କାବ୍ୟାନୁଭବ ପ୍ରକାଶରେ ତାଙ୍କର କବିତା ସମର୍ଥ ।

ହରିହରଙ୍କ କାବ୍ୟ ସୌନ୍ଦର୍ଯ୍ୟ ଓ ଶିଳ୍ପ ସୌକର୍ଯ୍ୟ ବିଂଶ ଶତାବ୍ଦୀ ପ୍ରଥମାର୍ଦ୍ଧର ଅନ୍ୟତମ ଆକର୍ଷଣ । କାବ୍ୟ ମାଧ୍ୟମରେ ଦୁର୍ବିସହ ଜୀବନଯାତ୍ରାର ଚିତ୍ର ଓ ତତ୍‌ସହିତ ଶାନ୍ତି ନିକେତନର ଅନ୍ୱେଷଣ ତାଙ୍କ କବିତାର ମର୍ମବାଣୀ । ପ୍ରାଣମୟ ଓ ରସସ୍ନିଗ୍ଧ କାବ୍ୟସରଣୀ ଗଠନରେ ରାଧାନାଥ ଓ ସତ୍ୟବାଦୀ ଯୁଗସନ୍ଧିର ଜଣେ ସମର୍ଥ କାବ୍ୟ ପୁରୁଷ ହରିହର ମହାପାତ୍ର ।

ଫଣୀନ୍ଦ୍ର ଭୂଷଣ ନନ୍ଦ

# କ୍ଷବଥ ସଙ୍ଗୀତ ।

---

ବାମଣ୍ଡା ରାଜଧାନୀ ଦେବଦୁର୍ଗନିବାସୀ

ପଣ୍ଡିତ ଶ୍ରୀ ହରିହର ମହାପାତ୍ର

କର୍ତ୍ତୃକ ରଚିତ ।

---

BOAD.

Printed at the Jagadish Press,

1907.

---

ମୂଲ୍ୟ ଦୁଇଅଣା ମାତ୍ର

# ଉତ୍ସର୍ଗପତ୍ର

ସକଳସଦ୍ଗୁଣାକର ଉଦାରହୃଦୟ
**ରାଜକୁମର ଶ୍ରୀମାନ୍ ଦୁଷ୍ମନ୍ତଦେବ ଲାଇ(ବାମଣ୍ଡା)**
ମହୋଦୟ କରକମଳେଷୁ

(ଆଶାବରୀ-ଆଠତାଳି)
ହୃଦନନ୍ଦନ ହେ ଘେନ ଏହି ଉପହାର;
ସାହିତ୍ୟ-କାନନେ ବିହରି ଗୁନ୍ଥିଛି
ସଙ୍ଗୀତ କୁସୁମହାର ।ପଦ ।
ତୋଳି ସଯତନେ ସୁମଞ୍ଜୁଳ ଛନ୍ଦେ
କରି ନ ଜାଣେ ସଂହାର,
ପରିମଳମୟ ନୁହେ ଏ କୁସୁମ
ନ ଦିଶଇ ମନୋହର ।୧ ।
ବହୁଦିନୁ ହୃଦେ ପୋଷିଥିଲି ଆଶା
ଭ୍ରମି ସାହିତ୍ୟ କାନନେ,
ଗୁନ୍ଥି ପୁଷ୍ପହାର ଦେଇ ତବ କରେ
ଲଭିବି ଆନନ୍ଦ ମନେ ।୨ ।
ବାସନା-ତଟିନୀ ତୀରେ ଆଜି ସେହି
କୃପା-ପାଦପ ତଳରେ,
ଶ୍ରଦ୍ଧା-କୃତଜ୍ଞତା ନିଦର୍ଶନ ରୂପେ
ଅରପିଲି ତବ କରେ । ୩ ।
କ୍ଷମା, ଦୟା, ପ୍ରେମ ମତିସିଦ୍ଧି ସାମ
ହାର ଦୋଳେ ଯେ ହୃଦୟେ,
ଲଭୁ ଏହା ତହିଁ କିଞ୍ଚିତ ଆଦର
ଜଣାଉଛି ସବିନୟେ । ୪ ।

ତା ୮ ।୬ ।୧୯୦୭ ବିନୀତ
ବାମଣ୍ଡା ଦେବଦୁର୍ଗ ରଚକ



# ସୂଚୀପତ୍ର

## ଭାରତୀ-ଆବାହନ

(ଶ୍ରୀପଞ୍ଚମୀ : ତାଳ ଝୁଲା )

ଆସ ଦୟାମୟୀ ଶାରଦେ !
ଅଜ୍ଞାନହାରିଣୀ ମାତଃ ବରଦେ !
ବହୁ ଆଜି ବୀଣାଝଙ୍କାର-ଅନିଳ
ମିଶୁ ମନ-ନଭେ ମୋହ-ନୀରଦେ ।ପଦ।
ମଧୁ ଆଗମନେ ସୁମନେ ସୁମନେ
ହସୁଛନ୍ତି ଆଜି ମଧୁସମ୍ପଦେ;
ଖେଳେ ଧୀରେ ଧୀରେ ମଳୟ ସମୀର
ମାତିଣ କୁସୁମ ସୁରଭିମଦେ ।୧।

ଗୁଣୁ ଗୁଣୁ ସ୍ୱନେ ଗୁଞ୍ଜରି ମଧୁପ
ମଧୁ-ସୁଧା ପାନେ ରତ ଆନନ୍ଦେ;
ସୁମରିଣ ତବ ବୀଣାର ଝଙ୍କାର
ହସେ କମଳିନୀ ସରେ ପ୍ରମୋଦେ ।୨।

ମଞ୍ଜୁଳ ବଞ୍ଜୁଳ ବଲ୍ଲରୀ ଦୋଳାଇ
ମୃଦୁଳ ଅନିଳେ ହସିଣ ମନ୍ଦେ;
ମଧୁ ଆହରଣେ ରତ ମଧୁମକ୍ଷି
ସଞ୍ଚରି ଆନନ୍ଦେ ଉତ୍ସାହ-ନଦେ ।୩।

ବକୁଳିତ ରମ୍ୟ ରସାଳ ଡାଳରେ
ଗାଏ ମଧୁସଖା ମଧୁରଛନ୍ଦେ;
କହ ମା ! କିପରି ବଜାଇବି ଆଜି
ମୋ ହୃଦୟ-ବୀଣା ମଧୁରନାଦେ ।୪।

## ଆହ୍ୱାନ

(ଝିଞ୍ଜୋଟ ଖମ୍ବାଜ-ଏକତାଳି)

ଆସ କେ ଆସ ମାତିବ ବିଭୁ କୀରତି ଗାନରେ,
ବନେ ଉପବନେ ବିହରି, ପ୍ରେମ-ପୀୟୂଷ ପାନରେ ।ପଦ।

ଲଳିତ ବସନ୍ତେ ରସାଳଡାଳେ
ଗାଉଛି କୋକିଳ ପ୍ରେମ-ଉତାଳେ
ସୁମନେ ସୁ-ମନେ, ଗାଏ ଅଳି ମଧୁସ୍ୱନରେ ।୧।

ଶୁଣି ବସନ୍ତରେ ବସନ୍ତ ଗାନ
ହଲଦି ବସନ୍ତ ଆନନ୍ଦମନ
ମଞ୍ଜୁଳ ବଞ୍ଜୁଳ ବନେ ରତ ମଧୁତାନରେ ।୨ ।

ତରଙ୍ଗେ ତରଙ୍ଗେ ରଙ୍ଗେ ବିହରି
ଅନିଳ କୁରଙ୍ଗ ମାନସ ହରି
ସୁଦୂରେ ମଧୁରେ ଗାଉଛି କୀଚକବନରେ ।୩ ।

ଶାରଦ ପ୍ରଭାତେ ଆନନ୍ଦ ମନେ
ରତ ହରି ହରି କୀରତି ଗାନେ
ହରଷେ ସାରସେ ବିହରି ବନଜବନରେ ।୪ ।

ପ୍ରେମ-ମଧୁମୟ ମଧୁର ଗାନ
ଶୁଣି ପୁଲକିତ ମନ ଜୀବନ
ଉଲ୍ଲାସେ, ହୁଲ୍ଲାସେ ବିହରେ ଆନନ୍ଦ-ବନରେ ।୫ ।

## ବାସନ୍ତିକ ପ୍ରଭାତ

(ବଙ୍ଗଳା 'ନୀଳନଳିନୀ ଯୁଗଳ ଲୋଚନ' ବୃତ୍ତରେ ।)

ଫୁଲ୍ଲ କୁସୁମ ବିମଳ ଆନନ
ବହଇ ମୃଦୁଳ ମଳୟପବନ ।ପଦ ।

ନବବିକଶିତ ବକୁଳସୁବାସ
ଚହଟଇ ମୃଦୁ ମୃଦୁ ଦଶଦିଶ,
କି ମଧୁର ଛବି କରେ ପରକାଶ
ଡାକେ ପିକ "କୁହୁ" ସ୍ୱରେ କରଇ ଗାୟନ ।୧ ।

ହସେ ଉପବନେ ଜାତି ଯୂଥୀ ମଲ୍ଲୀ
ଗୋଲାପ ଚମ୍ପକ ବକୁଳ ନିଆଳୀ
କୁସୁମେ କୁସୁମେ ଭ୍ରମେ ମତ୍ତ ଅଳି
ପିଏ ମଧୁ ମଧୁସ୍ୱରେ କରିଣ ଗୁଞ୍ଜନ ।୨ ।

ରଙ୍ଗବର୍ଣ୍ଣେ ରଞ୍ଜି ପୂରୁବ-ବିମାନ
ସୁରଙ୍ଗବସନ କରି ପରିଧାନ
ନବୀନ ଆନନ୍ଦେ ହସନ୍ତି ତପନ
ଦେଖି ସରେ କମଳିନୀ ଆନନ୍ଦେ ମଗନ ।୩ ।

ମାଧବିନୀ କୁଞ୍ଜେ ଲତା-ଦୋଳାସନେ
ଦୋଳି ଧୀରେ ଧୀରେ ଦକ୍ଷିଣାପବନେ
ଗାଏ କିଟି ବସି ଆନନ୍ଦିତ ମନେ,
ଆହା କି କୋମଳ ତାର ମଧୁରନିସ୍ୱନ ।୪ ।

ହସଇ ଧରଣୀ ନବୀନଭୂଷଣେ
ଆବରି ବରାଙ୍ଗ କୁସୁମ-ବସନେ,
ମଧୁର ବସନ୍ତ ଉଷା ଆଗମନେ
ନବୀନ ଉତ୍ସାହେ ଏବେ ପ୍ରଫୁଲ୍ଲ ଜୀବନ ।୫ ।

## ରବି ଆବାହନ

(ସାବେରି-ଆଠତାଳି)

ଦିନମଣି ହେ, ଆସ ଦେବ ! ଶୂନ୍ୟ-ରଥେ
ଜାଗ୍ରୁ ଏ ଧରଣୀ ।ପଦ ।
ଲଭି ନବକିରଣ ପରଶ
ହେଉ ଜଗତ-ଜଡତା ନାଶ,
ହସୁ ମହାନନ୍ଦେ ଦଶଦିଶ,
ମାତୁ ଉତ୍ସାହେ ଅବନୀ
ନବ ଯୁଗମଣି ।୧ ।

ଗାଉ ବିହଙ୍ଗ ପାଦପେ ବସି,
ଫୁଟୁ କୁସୁମ ଆନନ୍ଦେ ହସି,
ଦୋଳୁ ପାଦପ ବାତେ ଉଲ୍ଲସି
ଖେଳୁ ସଂସାର-ସାଗରେ
ଜୀବନ-ତରଣୀ ।୨ ।

## ଜନନୀ

(ଆଠତାଳି)

ସପତଲୋକ ପ୍ରକାଶିନୀ, ଜନନୀ ଗୋ !
ରବିମଣ୍ଡଳ ନିବାସିନୀ ।ପଦ ।
ତୁହି ମା ! ସଲିଳେ ତୁହି ମା ! ଅନିଳେ
ତୁହି କୁସୁମ ବିକାଶିନୀ ।୧ ।

ମଣିଗଣେ ଦ୍ୟୁତି ଶଶୀ ତାରା-ଜ୍ୟୋତି
ତୁହି ମା ! ବୀଣାବାଦିନୀ ।୨ ।

ତ୍ରିଗୁଣଧାରିଣୀ କଳୁଷହାରିଣୀ
(ତୁହି) ଅଜ୍ଞାନ-ତିମିରନାଶିନୀ ।୩ ।

ତୁହି ହୃଦେ ଭକ୍ତି ତୁହି ଜୀବେ ମୁକ୍ତି
ତୁ ସଦବୁଦ୍ଧିବିଧାୟିନୀ ।୪ ।

ଦିଅ ମା ! ସୁଜ୍ଞାନ (ଆଜି) ମାଗେ ଏ ସନ୍ତାନ
ଅଭୟବରପ୍ରଦାୟିନୀ ।୫ ।

❑❑

## ବସନ୍ତ

(ବଙ୍ଗଳା 'ଚଲ ମୋରା ସବେ ତ୍ୱରା କରି'ବୃତ୍ତରେ ।)

ଆସିଲା ବସନ୍ତ ଧୀରେ ଧୀରେ
ଧରା ମହାନନ୍ଦେ ଗମନ
ଡାଳେ ବସି 'କୁହୁ' ସ୍ୱରେ କରେ ପିକ ଗାୟନ ।ପଦ ।

ବିକଶିଲା ଉପବନେ ମନୋହର ସୁମନ
କୁସୁମ-ସୁବାସେ ହୁଏ ଆନନ୍ଦିତ ଜୀବନ ।୧ ।

ମଧୁ-ମଦେ ମତ୍ତ ଅଳି ଭ୍ରମି କରେ ଗୁଞ୍ଜନ
ଚୁମ୍ବି କୁସୁମ ପତର ବହେ ଧୀରେ ପବନ ।୨ ।

ପିନ୍ଧିଛନ୍ତି ମହୀରୁହେ କିଶଳୟ-ବସନ
ବିହଙ୍ଗମେ କରୁଛନ୍ତି ସୁମଧୁରେ କୂଜନ ।୩ ।

ନିଆଳୀ କୁସୁମ ବାସେ ଆମୋଦିତ କାନନ
ସୁରଙ୍ଗ କାନ୍ତି ପଳାଶ ହରେ ଜନ ନୟନ ।୪ ।
ଆସେ ଉଷା ମହାନନ୍ଦେ ପିନ୍ଧି ରଙ୍ଗବସନ
ହସେ ସରେ କମଳିନୀ ଦେଖି ନବତପନ ।୫ ।

ରଜନୀରେ ଶଶୀ ତାରା ମଣ୍ଡି ନୀଳଗଗନ
କରନ୍ତି ଜ୍ୟୋତ୍ସ୍ନା-ଚନ୍ଦନ ଧରା ଅଙ୍ଗେ ଲେପନ ।୬ ।

କରେ କର ସୁଧା ପାନ ଭେଦି ନୀଳଗଗନ
ଆନନ୍ଦେ ଚକୋର କରି ସୁମଧୁରେ ଗାୟନ ।୭ ।

ମହାନନ୍ଦେ ପୂର୍ଣ୍ଣ ମନ ଉଲ୍ଲସିତ ଜୀବନ
ପିନ୍ଧିଛି ଧରଣୀ-ରାଣୀ ବାସନ୍ତିକ ବସନ ।୮ ।

## ବୀଣାପାଣି

(ରାଗ ତୋଡି-ଆଠତାଳି)

ନଳିନୀବନ ବାସିନୀ, ଗୋ ଜନନୀ !
ପ୍ରକୃତିବିହାରୀ କବିକୂଳହୃଦ
ମଞ୍ଜୁନିକୁଞ୍ଜ ରଞ୍ଜନୀ ।ପଦ ।

ଶ୍ୱେତାମ୍ବରା ମାତା ! ଶ୍ୱେତ ବେଶଭୂଷା
ଜଗତ ଜ୍ୟୋତ୍ସ୍ନାରୂପିଣୀ;
ଆହା ସେ ସୁଷମା କାହିଁ, ଜଗତେ
ଭକତହୃଦ ହାରିଣୀ ।୧ ।

କୁସୁମସୁଷମ ଘେରୁ ଉପବନେ
ବାଲ୍ମୀକି ଚିତ୍ତମୋହିନୀ,
ଯେ ମୋହନବୀଣା ଧରି ବିଭୁପ୍ରେମେ
ରତ ବ୍ୟାସ ମହାମୁନି ।୨ ।

ତ୍ରିଭୁବନଜିଣା ସେ ଅମୃତବୀଣା
ଚିତ୍ତ ଆହ୍ଲାଦକାରିଣୀ;
ବଜାଅ ମା ! ଆଜି ସୁଗମ୍ଭୀରତାନେ
ନାଚୁ ଆନନ୍ଦେ ଅବନୀ ।୩ ।

ନମଇଁ ଅଧମ ତବ ଶ୍ରୀଚରଣେ
କ୍ଷମା-କୃପା-ବିଧାୟିନୀ !
ଦିଅ କୃପା କରି ପ୍ରେମ-ବାରିବିନ୍ଦୁ
ଅଧମହୃଦପାବନୀ ।୪ ।

## ଗାଅ !

(ବଙ୍ଗଳା 'ଲାଲ ତମାଲ ତଲ ଲାଲଯମୁନାଜଲ' ବୃତ୍ତରେ ।)

ଗାଅ କୋକିଳରାଜି ଗାଆ ବିପିନେ ରାଜି
ଗାଅ ଆନନ୍ଦେ ଆଜି ମହେଶକୀରତିଗାନ ।ପଦ ।
ଗାଅ (ଏ) ବସନ୍ତକାଳେ ଗାଅ ବିହରି ଡାଳେ
ଗାଅ ବାରେ ସୁମଞ୍ଜୁଳେ ତୋଳି ପଞ୍ଚମତାନ ।୧ ।

ଗାଅ ଭ୍ରମର ମାନେ ଗାଅ ଭ୍ରମି ସୁମନେ
ଗାଅ ଆନନ୍ଦିତମନେ ଧରିଣ ଗୁଞ୍ଜନସ୍ୱନ ।୨ ।

ଗାଅ ହେ ଭରତିଆ ଗାଅ ହେ ଶାରୀ ଶୁଆ
ଗାଅ ଆରେ କୁମ୍ଭାଟୁଆ ଭ୍ରମି ଗହନ କାନନ ।୩ ।

ଗାଅ ଗମ୍ଭୀରେ କେକୀ ! ଗାଅ ଶିଖଣ୍ଡ ଟେକି
ଗାଅ ନୀରଦ ନିରେଖି ହୋଇ ପ୍ରଫୁଲ୍ଲିତ ମନ ।୪ ।

ଗାଅ ମାନସ-ପକ୍ଷୀ ! ଗାଅ ଚିନ୍ତା ଉପେକ୍ଷି
ବସି ହୃଦୟ-ପାଦପେ ଧରିଣ ମଧୁରତାନ ।୫ ।

## ଏ କି ଗାନ ?

(ତାଳ ଝୁଲା ।)

ଏ କି ମଧୁର ଗାନ କିଏ ଗାଏ କାନନେ
ଗାଏ ମଧୁରସ୍ୱନେ ଗାଏ ମଧୁରତାନେ ।ପଦ ।

ରମ୍ୟ ପାଦପରାଜି ସ୍ଥିରଭାବେ ବିରାଜି
ଶୁଣୁଛନ୍ତି ଚକିତେ ସୁଖେ ପଲ୍ଲବ-କାନେ ।୧ ।

ଧୀରେ ଶୁଣେ କୋକିଳ ବସି ରସାଳଡାଳ
ନତମୁଖେ ଚକିତେ ଦୁଃଖେ ଲଜ୍ଜିତ ମନେ ।୨ ।

ଅବା ଗାଏ କିନ୍ନରୀ ବିଣା ବାଦନ କରି
ଝଙ୍କାରିତ ଏ ବନ ତାର ମଧୁରତାନେ ।୩ ।

ମନ-ଜୀବନକିଣା ବାଜେ ହୃଦୟ-ବୀଣା
ରତ ମାନସ-ପକ୍ଷୀ ବିଭୁକୀରତିଗାନେ ।୪ ।

## ଆୟ ପକ୍ଷୀ !

(ହିନ୍ଦୀ 'ଲେଓ ସଖି ଲେଓ ଭାର ପିଆଲା' ବୃତ୍ତରେ ।)

ଆୟ ପକ୍ଷି ! ଆୟ ବସି ଏ ଡାଳେ
ଗାଅ ରେ ମଧୁରେ;
ଯାର ଗଗନ ଯାର ଜୀବନ
ତାହାରି ପ୍ରେମରେ । ପଦ ।

ଗଗନପଥେ,ତୁ ମନୋରଥେ
ବୁଲୁଅଛୁ କରି ବୃଥା
'ସା' 'ସା' 'ସା'
ପରମେଶ ଯଶୋଗାନ
ଆନନ୍ଦମନରେ ।୧ ।

## କଳିକାପ୍ରତି

(ତୋଡିପରଜ-କତାଲୀ)

ରେ କଳିକା, କେବେ ହେବୁ ବିକାଶ ?
ପରକାଶି ମୃଦୁ ମଧୁର ହାସ ।ପଦ ।

ପୋଷିଅଛି ମନେ ବହୁତ ଆଶା
ଲଭିବି ତୋ ମନୋହର ସୁବାସ ।୧ ।

ଲଭି ମନ୍ଦ ସମୀରଣ ପରଶ
ନାଚି ଆନନ୍ଦରେ ହୋଇ ଉଲ୍ଲାସ ।୨ ।

ପିନ୍ଧିଣ ବିମଳ ସୁକାନ୍ତି-ବାସ
ଆବରିଣ ସେହି ପୀୟୂଷ-କୋଷ ।୩ ।

ସେ ମୋହନ ଛଟା ହେଲେ ପ୍ରକାଶ
ବୁଡିବ ଆନନ୍ଦ-ସରେ ମାନସ ।୪ ।

## ବାସନ୍ତିକ ଉଦ୍ୟାନ

("ବସନ୍ତେ କୁଞ୍ଜବନ କୁସୁମବାସ" ବୃତ୍ତରେ ।)

ବସନ୍ତେ ବସନ୍ତରେ ବସନ୍ତ ଗାଏ ମଧୁରେ
ବସନ୍ତଦ୍ରୁମେ ବସି ବକୁଳିତ ଶାଖା ପରେ ।ପଦ ।

ମନ୍ଦମନ୍ଦ ସମୀରେ କି ରୁଚିରେ !
ନବ କିଶଳୟ ଥରେ,
ଭ୍ରମର ମଧୁକର ଗାଇ ଗୁଣୁଗୁଣୁ ସ୍ୱରେ ।୧ ।

ଘେରାଇ ପୁଷ୍ପବାସ କି ହରଷ !
ବହେ ବାତ ଧୀରେ ଧୀରେ,
ଗୁଞ୍ଜରି ମଞ୍ଜୁସ୍ୱନେ ଅଳି ମଧୁପାନ କରେ ।୨ ।

ରବିକର ପରଶେ, କି ଉଲ୍ଲାସେ !
ହସୁଅଛି ସରସୀରେ,
ପ୍ରଫୁଲ୍ଲ ଅରବିନ୍ଦ ମୃଦୁବାତେ ଦୋଳି ଧୀରେ ।୩ ।

ମଲ୍ଲୀ ନିଆଳୀଫୁଲ, କି ମଞ୍ଜୁଳ !
ବିକଶିତ ବିପିନରେ,
ମୃଦୁ ମଧୁ ସୁବାସ ମନ-ଧନ ଘେରୀ କରେ ।୪ ।

## ମଧୁମକ୍ଷିକା

(କଳହଂସକେଦାର, "ଶ୍ୟାମଶିଖଣ୍ଡଚୂଳ" ବୃତ୍ତରେ ।)

ମଧୁମକ୍ଷିକା ! ତୋର ପ୍ରଫୁଲ୍ଲଚିତ୍ତ
ସଦା କର୍ମରେ ରତ । ପଦ ।
ଉପବନେ କାନନେ ଭ୍ରମି ସତତ,
ଗୁଣୁଗୁଣୁ ନିସ୍ୱନେ ଗାଉ କି ଗୀତ ? ।୧ ।

ଲଙ୍ଘିଣ ନଦ ନଦୀ ସର ପର୍ବତ,
ଯହିଁ କୁସୁମ ତହିଁ ହେଉ ଆଗତ ।୨ ।

ଆହରି ଯତ୍ନେ ପୁଷ୍ପ ମଧୁ କିଞ୍ଚିତ,
ନେଇ ବାସରେ ତାହା କରୁ ସଞ୍ଚିତ,
ଶେଷେ ଭଣ୍ଡାର ତୋର ହୁଏ ପୂରିତ ।୪ ।

ଆହା କି ଯତନେ ତୋ ବାସ ନିର୍ମିତ,
କ୍ଷୁଦ୍ର କ୍ଷୁଦ୍ର କୋଠରୀ କେତେ ଶୋଭିତ ।୫ ।

ଏକତାପାଶେ ତୁହି ଅଟୁ ଗ୍ରଥିତ,
କି ମନ୍ତ୍ରବଳେ ସଦା ଉତ୍ସାହ-ଚିତ୍ତ ।୬ ।

ଶିଖାଅ ମୋତେ ବନ୍ଧୁ ! ଏ ପୁଣ୍ୟବ୍ରତ,
ହେବି ଯା ବଳେ କର୍ମେ ନିରତେ ରତ ।୭ ।

## ପ୍ରେମ-କୁଞ୍ଜବନ

(ରାଗ ନଟ-ତାଳ ଝୁଲା ।
"କୁଞ୍ଜବନରେ କାଳିଆ ଦେବତା" ବୃତ୍ତରେ ।)

ବିହି ବିହିଛି, ପ୍ରେମ-କୁଞ୍ଜବନ ଜଗତେ ।ପଦ ।

ଫୁଟି ଆନନ୍ଦ-କୁସୁମ, ଦିଶଇ କେଡେ ସୁଷମ,
ତାର-କାନ୍ତି ଅନୁପମ, ହସ ତାର ମନୋରମ
ଦୋଳେ ଧୀରେ ଭାବ-ମରୁତେ ।୧ ।

ଚହଟି ଉଲ୍ଲାସ-ବାସ ଆମୋଦିତ ଦଶଦିଶ
ଲଭି ତା ମୃଦୁପରଶ କାମ-ନାସା ହୁଏ ବଶ
ସ୍ନେହ ଝରି ଝରେ ନିରତେ ।୨ ।

ବୁଲି ସେ କୁଞ୍ଜ କାନନେ, ତୋଳି କୁସୁମ ଯତନେ
ଫୁଲ୍ଲଲତାଦୋଳାସନେ, ଦୋଳି ଆନନ୍ଦିତ ମନେ
ଖେଳ ମୂଢ଼ ! ଅନୁବରତେ ।୩ ।

## କି କରିବି ?

(ତାଳ ଝୁଲା : "କି କହିବି, ମିତ ଗଲି ନୀରକୁ" ବୃତ୍ତରେ ।)
କି କରିବି, ଯିବି କେଉଁ ପଥରେ ମୁଁ ?
କାହିଁ ଗଲେ ସନ୍ତରିବି, ଶାନ୍ତି-ସାଗରେ ମୁଁ ।ପଦ ।

ଦେଖଇ ଦେଶ ବିଦେଶେ ନିରାଶା-କୁହେଳି ଦିଶେ,
ଜ୍ଞାନ-ରବି ଲୁଚିଯାଏ ହୃଦାକାଶରେ ।୧ ।

ପୁଣ୍ୟଶ୍ଳୋକ ମୁନିଗଣ ଯେ ପଥେ କଲେ ଗମନ,
ଲିଭି ଗଲାଣି କି ତାହା ପାପ-ତୃଣରେ ? ।୨ ।

ଷଡରିପୁ ଅତ୍ୟାଚାରେ ନିରତେ ଜୀବନ ଥରେ,
ଯେତେ ମୁଁ ଘୁଞ୍ଚୁଛି ଲେ ପୁଣି ଦେଖେ ଆଗରେ ।୩ ।

ଯେ ପଥେ ଦେଉଛି ପଦ ସେ ପଥେ ଦେଖେ ବିପଦ,
ନାହିଁ କି କଣ୍ଟକଶୂନ୍ୟ ପଥ ସଂସାରେ । ୪ ।

## ଶୈଶବ ମାଧୁରୀ

(ଘଣ୍ଟାରବ-ଆଠତାଳି ।
"ମନେ ପଡୁଛି ମା ସେହି ଚନ୍ଦ୍ରମୁଖ" ବୃତ୍ତରେ ।)

ଦେଖ ନୟନରେ ! ଏ ଦିବ୍ୟ ମାଧୁରୀ,
ଅଧର-କୁସୁମେ ଅଛି ହାସ-ମଧୁ ପୂରି ।ପଦ ।

ନବ ବଦନ-କମଳ ଦିଶଇ କେତେ ମଞ୍ଜୁଳ,
ଗଣ୍ଡମଣ୍ଡଳ ରଙ୍ଗିମା ନିଏ ମନ ହରି ।

ରସନା କେତେ କୋମଳ ମନୋହର ସୁଶୀତଳ,
ବଚନ-ପୀୟୂଷରେ ପଡୁଅଛି ଝରି ।୨ ।

କି ସୁନ୍ଦର ଦନ୍ତକାନ୍ତି ନିନ୍ଦଇ ମୁକୁତାପନ୍ତି,
ଢ଼ାଳିଛି ନୟନେ ବିହି କି ଲାବଣ୍ୟ-ବାରି ।୩ ।

କୋମଳ କର ଚରଣ ଚଞ୍ଚଳ ମୃଦୁ ଗମନ,
ପଦ ପଦକେ ପ୍ରକାଶେ କି ମୃଦୁଚ୍ଛଟୁରୀ ।୪ ।

ଦେଖି ଏ ମଧୁର ଛବି ମାନସ ଯାଉଛି ଦ୍ରବି,
ପ୍ରଫୁଲ୍ଲ ଶାନ୍ତି ଆନନ୍ଦ ସାଗରେ ସନ୍ତରି ।୫ ।

## ଏକତା

(ମାରୁଆ-ଆଠତାଳି ।
"ପ୍ରାଣ ସଙ୍ଗିନୀ ରେ ନେତ୍ରାନନ୍ଦପସରା" ବୃତ୍ତରେ ।)

ପ୍ରିୟ ସୋଦର ହେ ଆଜ ଆନନ୍ଦମନେ,
ଦେଖିଲି ବିହରି ବନେ । ପଦ ।

ଦେଖିଲି ତଟିନୀରେ ଖେଳୁଛନ୍ତି ଧୀରେ ଧୀରେ
ଏକମେଳେ ମୀନଗଣ ପ୍ରଫୁଲ୍ଲମନେ ।୧ ।

ମଧୁମକ୍ଷିକାଗଣକରି ମୃଦୁଗୁଞ୍ଜନ
ଏକତା-ପ୍ରେମେ ରତ ମଧୁ ସଞ୍ଚନେ ।୨ ।

ଗାଇ ସୁମଧୁରସ୍ୱନେ ଏକମେଳେ ହର୍ଷମନେ
ଉଡିଗଲେ ପକ୍ଷୀଗଣ ନୀଳ ଗଗନେ ।୩ ।

ଛିଣ୍ଡାଇ ଏକତା-ପାଶ ହୋଇ ଷଡରିପୁବଶ
ରତ କିମ୍ପା ଆମ୍ଭେମାନେ ସ୍ୱାର୍ଥସାଧନେ ।୪ ।

## ହୃଦ- ନନ୍ଦନବନ

(ଇମନକଲ୍ୟାଣ ।
ବଙ୍ଗଳା "ସୁନ୍ଦର ହୃଦିରଞ୍ଜନ ତୁମି" ବୃତ୍ତରେ ।)

ପ୍ରେମିକ ହୃଦ ନନ୍ଦନବନେ
ଫୁଲ୍ଲ କୁସୁମ ହସେ;
ଧୀର ସମୀରେ ନାଚେ ସଧୀରେ
ସୁମଧୁର ମଧୁ ଖସେ ।ପଦ ।

କୋକିଳ କୂଜନ ମନ ରଞ୍ଜନ
ମନ ରଞ୍ଜନ ଅଳି ଗୁଞ୍ଜନ
ବିଷାଦଭଞ୍ଜନ ମୃଦୁସୁବାସ
ଚହଟେ ଚଉପାଶେ ।୧ ।

## ସ୍ୱର୍ଗୀୟ ରାଜା ଶ୍ରୀ ବାସୁଦେବ ସୁଢ଼ଳଦେବପ୍ରତି

(ରାଗ ତୋଡି-ଆଠତାଳି)

କରିଅଛି ଦରଶନ, ହେ ନରରାଣ ;
ସୁଷମା-ଲହରୀ ଖେଳେ ଯହିଁ ସଦା,
ତୁମ୍ଭର ସେ ଉପବନ ।ପଦ ।

ବିକଶିତ ଯହିଁ କ୍ଷମା, ଦୟା, ପ୍ରେମ
ଛଳେ ବିବିଧ ସୁମନ;
କୀରତି-ସୁରଭି ବିତରି ସମୀର
ହରେ ଯହିଁ ଜନମନ ।୧ ।

ସୁରମ୍ୟ ରସାଳଡାଳେ ବସି ଯହିଁ
କୋକିଳ କରଇ ଗାନ;
ମଞ୍ଜୁଳ ବଞ୍ଜୁଳ କୁଞ୍ଜେ ମଞ୍ଜୁସ୍ୱନେ
ବସନ୍ତ ଧରଇ ତାନ । ୨ ।

ମୃଦୁଳ ଅନିଳେ ଦୋଳେ ଧୀରେ ଧୀରେ
ଋତୁ ଲତା-ଦୋଳାସନ;
ବସି ଯହିଁ ବିଶ୍ୱ ଜନନୀ ଭାରତୀ
କରନ୍ତି ବୀଣା ବାଦନ । ୩ ।

କୁସୁମେ କୁସୁମେ ବିହରି ମଧୁପ
ମଧୁରେ କରେ ଗୁଞ୍ଜନ;
ଯାର ଶୋଭା-ଧନେ କିଣା କବିକୁଳ
ଆନନ୍ଦେ ମନ ମଗନ । ୪ ।

## ପକ୍ଷଚ୍ଛିନ୍ନ ଭ୍ରମରପ୍ରତି

(ମାରୁଆ-ଝୁଲା)

କିବା ମଧୁଛବି ନାଚେ ତବ ନୟନେ,
କିବା ଆଶା, ମଧୁପ ! ଖେଳେ ଆଜି ଜୀବନେ ।ପଦ ।

(ତବ) ପକ୍ଷଯୁଗ ଛିନ୍ନ ବକ୍ଷ କିମ୍ବା ଖିନ୍ନ ?
(କିମ୍ବା) ବିଷାଦିତ ଅନିଳ ବହେ ହୃଦ-କାନନେ ।୧ ।

ଗୁଣଗୁଣୁସ୍ୱନେ ଶ୍ୟାମତୃଣବନେ
ବସି ବିଜନେ ରତ କାହା ଗୁଣ ଗାୟନେ ।୨ ।

(ସଦା) ବାସନା-ରସନେ ମଧୁ-ସୁଧା ପାନେ
ରହେ ମନ କାହାର ବଦନ ଦରଶନେ । ୩ ।

ପ୍ରୟାସ କେବଳ ନାହିଁ କିଛି ଫଳ
ନାହିଁ ତ ଅଙ୍ଗେ ବଳ ବାସନା କିମ୍ବା ମନେ । ୪ ।

# ସୀତାଙ୍କ ପ୍ରତି ରାମଚନ୍ଦ୍ରଙ୍କ ଉକ୍ତି–ବନବିହାର

(ରାଗ କାମୋଦି–ଏକତାଳି)

ସୁରଭିବଦନା ମୋ ଜୀବନରେ । ପଦ ।

ତେଜି ଅଯୋଧ୍ୟାପୁର କଲି ବନେ ବିହାର
ମଣିଲି ସୁରପୁର ସମାନରେ ।୧ ।

ଦେଖ ସୁରଭିଅଙ୍ଗୀ ! ପିକ ସୁରଭିସଙ୍ଗୀ
ସୁରଭି ପରେ କରେ ଗାୟନରେ ।୨ ।

ହସନ୍ତି ସୁରପ୍ରିୟ ବନ ସୁରଭିମୟ
ଏ ଗିରି ସୁରକ୍ତକେ ଶୋଭନରେ । ୩ ।

ସୁରଦୁନ୍ଦୁଭି ଧ୍ୱନି ସୁରଦୁନ୍ଦୁଭି ଶୁଣି
କରେ ଆନନ୍ଦେ ବାତେ ନର୍ତ୍ତନରେ । ୪ ।

ଚୁମ୍ବି ସୁରସୁମନ କରେ ଅଳି ଗୁଞ୍ଜନ
ଖେଳେ ସୁରଭି ସଙ୍ଗେ ପବନରେ । ୫ ।

ରମ୍ୟ ସୁରବଲ୍ଲଭା ପ୍ରକାଶେ ଶୀତପ୍ରଭା
ସୁରଭିଗନ୍ଧେ ମନ ମୋହନରେ ।୬ ।

ସୁରକୃତା ଶୋଭିତ ଯେସନେ ଉପବୀତ
ସୁରଦାରୁରେ ହୋଇ ବେଷ୍ଟନରେ ।୭ ।

ଧରି ସୁରଙ୍ଗକାନ୍ତି ସୁରପର୍ଣ୍ଣୀ ହସନ୍ତି
ସୁରଭିହୀନେ ବୃଥା ଜୀବନରେ ।୮ ।

ଥିଲା ସିନା ସୁରଭି ନଥିଲା ତ ସୁରଭି
ରାଜିଲା ତୋ ସୁରଭି ବଦନରେ ।୯ ।

---

ସୁରଭି = ପଦ୍ମ, ହେମ, ରସାଳବୃକ୍ଷ, ଋଷ୍ଟ, ଋଦ୍ରଜଟା ନାମକ ଲତା ବି : ଧୂପ ବା ନିର୍ଯ୍ୟାସ ବି :, କଦମ୍ବ, ଚମ୍ପା ।
ସୁରପ୍ରିୟ = ଜାତିପୁଷ୍ପ । ସୁରକ୍ତକ = ଗୈରିକ ବି: । ସୁର ଦୁନ୍ଦୁଭି = ବନ୍ୟତୁଳସୀ ବି: ଓ ପ୍ରଦୁଦଜାତୀୟ ପକ୍ଷୀ: ।
ସୁରସୁମନ = ପୁନ୍ନାଗଭେଦ । ସୁରବଲ୍ଲଭା = ଶ୍ୱେତଦୂର୍ବା । ସୁରକୃତା = ଜୀବନ୍ତୀ ନାମକ ଲତା ବି: ସୁରପର୍ଣ୍ଣୀ = ପଲାଶ

## ଶ୍ରୀକୃଷ୍ଣଙ୍କ ପ୍ରତି ଯଶୋଦାଙ୍କ ଉକ୍ତି

(ସୁରଟ-ଆଠତାଳି)

ଆସ ଆନନ୍ଦ ପସରାରେ
ଧନ ! ତୁ ମୋ ହୃଦନିଧି ପରାରେ ।ପଦ ।
ବାଳମେଳେ ତୁ କେତେବେଳ
ଖେଳୁଥିବୁ ବାବୁ ! ଧୂଳିଖେଳ
ବହିଲାଣି ଅଙ୍ଗରୁ ଝାଳ
ଧୂଳିଲାଗି ତନୁ କାନ୍ତିହରାରେ ।୧ ।

ଯେତେ ମନା କଲେ ନ ମାନୁ
ବାହାରି ଆସୁ ତୁ ସଦନୁ
କ୍ଷଣେ ଦୂର ହେଲେ ନୟନୁ
ଚିନ୍ତାରେ ମୋ ହୃଦ ହୁଏ ଭରା ରେ ।୨ ।

ଭାଇ ବଳରାମ ଅଗ୍ରଜ
ସୁବୋଧ ମୋ ସୁନାତନୁଜ
ଏବେ ବାବୁ ! ଖେଳ ବରଜ !
ଶ୍ରାନ୍ତ ହେବ ଅଙ୍ଗ ଲାଗି ଖରାରେ ।୩ ।

ନବନବନୀତ ତୋ ପାଇଁ
ରଖିଅଛି ଆରେ କହ୍ନାଇ
ଭାଇ ବଳରାମ ଦେବ ଖାଇ
କାନ୍ଦିକାନ୍ଦି ଗଡୁଥିବୁ ଧରାରେ ୪ ।

## ବାସନ୍ତିକ ପ୍ରଦୋଷ

(ଭାଟିଆରୀ-ଏକତାଳି)

ଆହେ ବନ୍ଧୁବର !
(ଦେଖ) ବସନ୍ତ-ପ୍ରଦୋଷ, ମନୋହର ! ।ପଦ ।

ଅସ୍ତାଚଳଶିରେ ଦିନମଣି ଫଣିରାଜଶିରେ କିବା ମଣି,
ଅବା ଜଗତର ପାପ ଦୁରାଗ୍ରହ
ଦେଖିଣ ତପନ କୋପଭର ।୧ ।

ଅବା ନୁହନ୍ତି ଏ ଦିନମଣି ନୁହଇ ଏ ଫଣିରାଜ-ମଣି,
ମେଲାଣି ଘେନିକି ଯାଉଛି ଦିବସ
(ତେଣୁ) ଅନୁରାଗେ ମୁଖ ଜରଜର ।୨।

ବାରୁଣି-ରାଣୀ କି ରଙ୍ଗବାସ ପିନ୍ଧିଣ କରଇ ଅଟ୍ଟହାସ,
ଫଗୁଖେଳେ ଆଜି ମାତିଛି ଆନନ୍ଦେ
ଏ ଗୋଲକ ଫଗୁଥାଳୀ ତାର ।୩ ।

ଉଡି ଫଗୁରାଶି ଦଶଦିଶ ରାଗଛବି କରେ ପରକାଶ,
ଢାଳିଦେଲା ଅବା ତରଳାଇ ଛାଣି
ଧରାଶିରେ ଧାତା ହେମ-ନୀର ।୪ ।

ଖେଳେ ନୀଳନଭେ କାଦମ୍ବିନୀ ଫଗୁ ମାଖି ହର୍ଷେ ହସେ ଧନୀ
ଯେସନେ ବିବିଧବର୍ଣ୍ଣେ ବିଚିତ୍ରିତ
ଚନ୍ଦ୍ରତାପ ଶୋହେ ବିଶ୍ୱୋପର ।୫ ।
ବାସମୁଖେ ବିହଙ୍ଗମଗଣ ସାରି ନିଜ ଦିବାକର୍ମମାନ
ଉଡି ଯାଉଛନ୍ତି ସୁନୀଳଗଗନେ
ଗାଇଣ ସଙ୍ଗୀତ ସୁମଧୁର ।୬ ।

କରେ ତଟିନୀରେ ବୀଚିମାଳା ରଙ୍ଗକାଦମ୍ବିନୀ ସଙ୍ଗେ ଖେଳା
ତହିଁ ବିହଙ୍ଗମ ପ୍ରତିବିମ୍ବ ପଡି
ବଢ଼ାଏ ଦ୍ୱିଗୁଣେ ଶୋଭାଦର ।୭ ।

ଫେରନ୍ତି ସଦନେ ଗାବଗଣ ମହାନନ୍ଦେ କରି ହମ୍ବାଳନ
କର୍ମକ୍ଷେତ୍ରୁ ନର ବାହୁଡେ ସଦନେ
ପ୍ରଫୁଲ୍ଲ ହେଲେଣି ନିଶାଚର ।୮ ।

## ଶ୍ରୀକୃଷ୍ଣପ୍ରତି ବଳରାମଙ୍କ ଉକ୍ତି

(ଯମୁନାତଟ ତାଳ-ଝୁଲା)
ଚାଲ ଯିବା ସଦନେ, ଭାଇ! ଦିବାବସାନେ ।ପଦ ।
ଗାଇ ମଧୁରସ୍ୱରେ ନିଜ ବାସମୁଖରେ
(ଉଡି) ଯାଉଛନ୍ତି ପକ୍ଷୀଗଣ ନୀଳଗଗନେ ।୧ ।
ହରଷରେ ଗୋକୁଳ ତେଜି ତୃଣ କବଳ
ଉତ୍ସୁକ ଦେଖରେ ଭାଇ ଗୃହେ ଗମନେ ।୨ ।
ଉପଗତ ପ୍ରଦୋଷ ଦେଖି ଶ୍ରୁତି ମାନସ

ନିବେଶିଥିବେ ଜନନୀ ବଂଶୀର ସ୍ୱନେ ।୩।
ଆମ୍ଭ ବିଳମ୍ବେ ପିତା କରି ମାନସେ ଚିନ୍ତା
ପଥ ଚାହୁଁଥିବେ ପରା ସତୃଷ୍ଣମନେ ।୪।

## ନିଆଳୀ

(ତାଳ–ଝୁଲା "ପରାଣସଙ୍ଗୀ ଯିବ କି ମୋହ ମନରୁ" ବୃରେ ।)

(ଏ) ବନନିଆଳୀ, ଦିଶଇ କେଡେ ରୁଚିର ।ପଦ।

ପରକାଶି ସୁକାନ୍ତି ନିନ୍ଦେ ତାରକାପନ୍ତି
ଦରଶନେ ବଢ଼ାଏ ଲୋଭ ନେତ୍ର ମନର ।୧।

କ୍ଷୁଦ୍ର ଅଧରେ ହାସ ମୃଦୁ ମୃଦୁ ବିକାଶ
ବହି ପଡିବ ସତେ ହାସ-ପୀୟୂଷଝର ।୨।

ମନ୍ଦ ମନ୍ଦ ସମୀରେ ଦୋଳଇ ଧୀରେ ଧୀରେ
ବିତରଇ କାନନେ ସୁବାସ ମନୋହର ।୩।

ଏତ କାନନଫୁଲ ଦିଶେ କେଡେ ମଞ୍ଜୁଳ
କିବା ମାଧୁରୀମୟ କୁସୁମ ଉଦ୍ୟାନର ।୪।

## ବିଧୁ ରଜନୀରେ ମଲ୍ଲିକାପ୍ରତି

(ରାଗ କାମୋଦୀ-ଝୁଲା)

ମଲ୍ଲିକେ ! ତୋର ଅଧରେ କେ ଦେଲା ଏତେ ସୁବାସ,
ମଧୁ-ବିଧୁ-ରଜନୀରେ ହେଉ ସଦା ହସହସ ।ପଦ।
ଅଟଇ ତ କ୍ଷୁଦ୍ରତର ତୋର ଏ ରମ୍ୟ ଅଧର
କିପରି ଧରିଛୁ ତହିଁ ଏତେକ ହାସ--ପୀୟୂଷ ।୧।

ଅଧରେ ପୂରିତ ହୋଇ ଖସି ତଳେ ନ ପଡଇ,
ଖସିଲା ଖସିଲା ପରା ! ଲଭି ସମୀରପରଶ ।୨।

ଲଭିଣ ତୋତେ ହରଷ ଆମୋଦିତ ଦଶଦିଶ,
ଆମୋଦିତ ପ୍ରାଣ ମନ ଲଭି ତୋ ମୃଦୁସୁବାସ ।୩।

ହୋଇ ଅକୁଣ୍ଠିତ ମନ ବିତରୁଛୁ ବାସ-ଧନ
ମନେ ଧରି କି ବିଚାର ନ ଦେଉ ତୁ ହାସ-ଲେଶ ।୪।

ତୋ ମନମୋହନକାନ୍ତି ନିନ୍ଦେ ନଭେ ତାରାପତି,
ଲଜ୍ଜାଭରେ ହୀନପ୍ରଭ ଠେକିଲେଣି ଶଶୀପାଶ ।୫ ।

ଧନ୍ୟ ଗୋ ମଲ୍ଲିକେ ! ଧନ୍ୟ କର ମୋରେ ଶିକ୍ଷାଦାନ,
କିପରି ମୁଁ ସୁଖେ ଦୁଃଖେ ନ ହେବି କେବେ ବିରସ ।୬ ।

## ରଜନୀଗନ୍ଧା

(ରାଗ କାଫି-ତାଳ ଝୁଲା)

ବାସ ରେ ରଜନୀଗନ୍ଧା ବିଧୁରଜନୀରେ,
ହାସରେ ପୀୟୂଷ-ଝର ଝରେ ଧୀରେ ଧୀରେ ।ପଦ ।

ନାଚରେ ମଧୁରଛନ୍ଦେ
ମୃଦୁଳ ସମୀରେ
ପିନ୍ଧି ରଜତ-ବସନ
ଆନନ୍ଦ ମନରେ ।୧ ।

ମଲ୍ଲିକା କଳିକା ଏବେ
ସୁରମ୍ୟ ଅଧରେ,
ହସିଲାଣି ଉପହାସ
କରି ମାନସରେ ।୨ ।

## ବିଧୁରଜନୀ

(ତାଳ-ଝୁଲା)

ନୀଳଗଗନେ ମନ୍ଦେ ମନ୍ଦେ ହସଇ,
ଧୀରେ ଧୀରେ ସୁଧାକର କର-ସୁଧା ଢ଼ାଳଇ ।ପଦ ।

ହସେ ତାରା ଗଗନେ, ହସେ ଧରା ମଉନେ,
ହସି ଶଶିମୋହିନୀ, ସରସୀରେ ରାଜଇ ।୧ ।

ଫୁଲ-ବାସ ଘେରାଇ, ଧୀର ବାତ ବହଇ,
ଉଡି ଉଡି ଚକୋର, ସୁଧା ପାନ କରଇ ।୨ ।

ଜାଗିଅଛି ଚକୋର, ଜାଗିଛି ଶଶିକର,
ଜାଗି ମୋର ନୟନ, ବିଶ୍ୱଶୋଭା ଦେଖାଇ ।୩ ।

## ବଂଶୀସ୍ୱନ-ଚୈତ୍ରପୂର୍ଣ୍ଣିମା-ଅର୍ଦ୍ଧରାତ୍ର

(ରାଗ-ଝିଞ୍ଜିଟ୍-ତାଳ ଆଡଖେମଟା)

ସୁଦୂରେ ମଧୁରେ କେ ବାଉଛି ବଂଶୀ
ଏ ବିଧୁରଜନୀ କାଳରେ ।ପଦ ।

ନୀରବ ଏ କାଳେ ନିଖିଳ ଧରା ନୀରବ ଗଗନେ ଚନ୍ଦ୍ରମା ତାରା
ନୀରବେ ଯେସନେ ଶୁଣୁଅଛି ବିଶ୍ୱ
କର୍ଣ୍ଣ ଡେରି ସ୍ଥିର ଚିତ୍ତରେ ।୧ ।

ନକ୍ଷତ୍ର ଖଚିତ ନୀଳଆକାଶ ଢ଼ାଳେ ସୁଧାକର କର-ପୀୟୂଷ
ସୁମଧୁରଧ୍ୱନି ଶ୍ରବଣେ ଅବନୀ
ହସୁଛି ଆନନ୍ଦ ଭୋଳରେ ।୨ ।

ମିଶିଛି ସେ ସ୍ୱନେ ଦିବ୍ୟମାଧୁରୀ ଖେଳୁଛି ସଧୀରେ ସୁଧାଲହରୀ
ଧୀରେ ଧୀରେ ଉଠି ଖେଳଇ ଗଗନେ
ଜ୍ୟୋତ୍ସ୍ନା ସଙ୍ଗେ ଏକ ମେଳରେ ।୩ ।

ପୂରିଛି ଅନ୍ତରେ ଶାନ୍ତି-ଜୀବନ ଧୋଇଅଛି ପୂତ ନୀରେ ବଦନ
ଗାଏ ବଂଶୀ 'ପାପ ତେଜି ସନ୍ତରଣ
କର ପୂତ ଶାନ୍ତି-ଜଳରେ' ।୪ ।

## ଗ୍ରୀଷ୍ମ

(ଖମ୍ବା ଜବାହାର-କବାଲି)

ଦାରୁଣ ଗ୍ରୀଷ୍ମକାଳ ହେଲା ପ୍ରବେଶ,
ମଧୁ ଅନ୍ତରେ ଧରି ନିରାଟବେଶ ।ପଦ ।

ନଦୀ ସରୋବରମାନ ହେଲେ ଜଳବିହୀନ
ଆକୁଳପରାଣ ମୀନ ଚିନ୍ତାଆବେଶ ।୧ ।

ପଲ୍ଲବବିହୀନ ଡାଳେ ବିହଙ୍ଗମ ଆକୁଳେ
ବସିଅଛି ଦୁଃଖେ ମନ କରି ବିରସ ।୨ ।

ରବିରଶ୍ମି ହୁତାଶନ ତାପେ ତପ୍ତ ଜୀବନ
ତପ୍ତ ଝଞ୍ଜାବାତେ ଦଗ୍ଧ ଦିଶ ବିଦିଶ ।୩ ।

ଜୀବ ଜନ୍ତୁ ତୃଷାକୁଳ ଲୋଡୁଛନ୍ତି ସଲିଳ
ବିକଳପରାଣ ସର୍ବେ ଅର୍ଦ୍ଧମାନସ ।୪ ।

ନୀରସ ବନ, ପ୍ରାନ୍ତର ବନ୍ୟପଶୁନିକର
ଆକୁଳେ ଲୋଡନ୍ତି ଶିତ ଛାୟା ପରଶ ।୫ ।

ଭୀମବେଶେ ହୁତାଶନ ଦହେ ଗିରିକାନନ
ନିରୁପାୟ ଜୀବଗଣ ହେଲେ ବିନାଶ ।୬ ।

ହରିଣୀ ବିବେକବିକା ଦେଖି ମୃଗତୃଷ୍ଣିକା
ଜଳଭ୍ରମେ ଧାଇଁ ଶେଷେ ହୁଏ ହତାଶ ।୭ ।

ରସାଳବନେ ଝଙ୍କାରୀ ମଧୁସ୍ୱନେ ଝଙ୍କାରି
ପରଏ ରସାଳ, ଘେନି ବିଭୂ ଆଦେଶ ।୮ ।

ସୁଖ ପରେ ଆସେ ଦୁଃଖ ଦୁଃଖ ଅନ୍ତରେ ସୁଖ
ହରଷ ବିରସକ୍ରମେ ମିଳେ ହରଷ ।୯ ।

## ଭବ-ମରୁରେ

("ମାନସ-ମରାଳ ଆଜି ଉଡି ଯାଅ ବାରେ" ବୃତ୍ତେ )

ପତିତପାବନ ହରି କର ହେ କରୁଣା,
ହୃଦ-ସରୁ କୃପା-ଜଳ ହେଲା କିମ୍ପା ଊଣା ।ପଦ ।

ଭବ-କାନ୍ତାରେ, ବିଷାଦିତ ଅନ୍ତରେ
ନିରାଶ୍ରୟେ ଭ୍ରମୁଅଛି ହୋଇଣ ବଣା ।୧ ।

(ଏହି) ପାପ-ମରୁରେ, ଦିବାମଧ ଭାଗରେ
ଆକୁଳ ମାଡିଣ ତପ୍ତ-ସିକତାକଣା ।୨ ।

ତପ୍ତ ନୟନ, ଆକୁଳିତ ଜୀବନ
ତୃଷାଭରେ ହୋଇଅଛି ବ୍ୟଥିତ ମନ ।୩ ।

କରିଛି ଆଶା ଘୁଞ୍ଚାଇବି ପିପାସା
ଘୁଞ୍ଚିବ କି ତବ କୃପା-ସଳିଳ ବିନା ।୪ ।

## ପିତୃହୀନ ଏକବର୍ଷ ବୟସ୍କ କୌଣସି ଶିଶୁ ଦର୍ଶନରେ

(ଖମ୍ବାଇମିଶ୍ର - ଏକତାଳି)

କାହିଁକି ଦାରୁଣ ବିହି (ଏ) ମନ୍ଦବିଧି ବିହିଲା ରେ,
ଜୀବନଙ୍କ ରଖି କିମ୍ବା ଜୀବନ ସେ ହରିଲା ରେ । ପଦ ।

ଏ ଯେ ନବୀନ ନଳିନ ଦିଶଇ ଆଜି ମଳିନ,
ସେ ମଧୁ-ରଙ୍ଗିମାଛଟା କାହିଁ ଅପସରିଲା ରେ ।୧ ।

ଦେଖି ଏ ଦଶା ଭ୍ରମର ଦୁଃଖେ ହେଲାଣି ଅସ୍ଥିର
ଆହା ଏ ରମ୍ୟ କୋରକ ଫିକା ଆଜି ଦିଶିଲା ରେ ।

ସୁରଙ୍ଗ ରମ୍ୟ ଅଧରେ ହାସ ମାନସ ନ ହରେ
ମଧୁର ବାସ-ପୀୟୂଷ ବାସ-କୋଷ ରହିଲା ରେ ।୪ ।

ଦେଖି ମଳିନ ବଦନ ବ୍ୟଥିତ ହୁଏ ଜୀବନ
ଅବସାଦ ପଙ୍କେ ଆଜି ମନ-ମୀନ ବୁଡ଼ିଲାରେ ।୫ ।

## ମାନସପ୍ରତି

(ରାଗ ଆଶାବରୀ-ଆଡତାଳି)

ମୂଢ଼ ମାନସ ରେ ନ ଛୁଅଁ (ଏ) ମଦ-ପାଦପ;
ଯଦି ତୁ ଛୁଇଁବୁ ମଦ-ମହୀରୁହ ଲଭିବୁ ଅନ୍ତରେ ତାପ ।ପଦ ।

ମାତ୍ସର୍ଯ୍ୟ-ପଲ୍ଲବ ଦୋଳେ ଧୀରେ ଧୀରେ
ନୀରବେ କରେ ପ୍ରଳାପ;
ପ୍ରତି ଶିରାରେ ତା ପୂରିତ ହୋଇଛି
କୂଟ-ଗରଳ ଅମାପ ।୧ ।

ଦିଶେ କି ସୁଷମ ଏ ମୋହ-କୁସୁମ
ଧରିଛି କି ରମ୍ୟ ରୂପ;
ଘଟୁ-ପରାଗରେ ରଙ୍ଗିମାଛଟାରେ
ନିନ୍ଦେ ପଳାଶ ଗୋଲାପ ।୨ ।

ଦେଖ କାମ-ଫଳ ଦିଶେ କି ମଞ୍ଜୁଳ
ପକ୍ୱ ରସାଳ ସ୍ୱରୂପ;

ଏ ଫଳ ଭୁଞ୍ଜିଲେ କଳଙ୍କ-ସାଗରେ
ଅରଜିବୁ ମହାପାପ ।୩।

ଅଛି ତା ଭିତରେ କ୍ରୋଧରୂପ ଅଗ୍ନି
ଅସୀମ ତାର ପ୍ରତାପ;
କାଠିନ୍ୟରେ ଜିଣେ କୁଳିଶ ପାଷାଣ
ରଙ୍ଗବନେ ଇନ୍ଦ୍ରଗୋପ ।୪।

ପୁଣି ତା ଭିତରେ ଅଛି ଲୋଭ-ବୀଜ
କେଡେ କମନୀୟ ରୂପ;
ଭକ୍ଷଣେ ମଧୁର ପରଶେ କୋମଳ
ଅନ୍ତେ ଦିଏ ଘୋର ତାପ ।୫।

## କ୍ଷୁଦ୍ର ବିହଙ୍ଗମପ୍ରତି

(ତାଳ-ଝୁଲା)

କି ଭାବନା-ସାଗରେ ମାନସ ତୋ ମଗନ?
କହ କହ ବିହଙ୍ଗମ ଘେନ ମୋର ବଚନ ।ପଦ।

ପତ୍ରଶୂନ୍ୟ ବୃକ୍ଷଡାଳେ
ବସିଛୁ କି ପ୍ରେମଭୋଳେ
କରୁଛୁ ମଧୁର ସ୍ୱରେ କି ସଙ୍ଗୀତ ଗାୟନ ।୧।

ସୁପୀତ ଲୋମ-ବସନ
ଦିଶଇ କେଡେ ଶୋଭନ
କହ ପକ୍ଷୀ! ଏହା ତୋତେ କିଏ କଲା ପ୍ରଦାନ ।୨।

ତୋର କ୍ଷୁଦ୍ର କଳେବର
ଦିଶେ କି ରୁଚିରତର
ଆହା କେଡେ ସୁମଧୁର ତୋର ମୃଦୁ ନିସ୍ୱନ ।୩।

ଧନ୍ୟ ଧନ୍ୟ ବିହଙ୍ଗମ!
ଶୋଭା ତୋର ଅନୁପମ
ଧନ୍ୟ ତୋର ପିତା ମାତା ଧନ୍ୟ ତୋର ଜୀବନ ।୪।

## କୌଣସି ବନ୍ଧୁ-ପ୍ରତି

(ରାଗ ବସନ୍ତ-ଅଠତାଳି:"କେତେ କୋକିଳ କୁହୁକୁହୁ ଡାକୁ" ବୃତ୍ତେ ।)

ଆଜ ବନ୍ଧୁ ହେ ବ୍ୟଥିତ ଜୀବନ,
ତବ ବିରହେ କରେ ରୋଦନ । ପଦ ।

ବନ୍ଧୁବର ହେ!
ବାଲ୍ୟସ୍ମୃତି ଦିଏ ଆଜି ମନେ କଦନ,
କାହିଁ ସେ ରମ୍ୟ କାନନ କାହିଁ କୁସୁମ ଚୟନ
କାହିଁ ଶୀତ ବଚନ-ଚନ୍ଦନ ।୧ ।

ବନ୍ଧୁବର ହେ!
କାହିଁ ଗଲା ଏକମେଳେ ବିଦ୍ୟାପଠନ,
କାହିଁ କାବ୍ୟ-ଉପବନ କାହିଁ ଲତା-ଦୋଳାସନ
କାହିଁ ସେହି ସୁଗୀତ ଗାୟନ ।୨ ।

ବନ୍ଧୁବର ହେ!
ସେ ରମ୍ୟ ଉଦ୍ୟାନ ଆଜି ହେଲା ଗହନ,
ଗଲା ସେ ଘଟନାରାଶି କାଳ-ତଟିନୀରେ ଭାସି
ନିରାଶେ ଆକୁଳ ଆଜି ମନ ।୩ ।

ବନ୍ଧୁବର ହେ!
ଅତୁଳ ସମ୍ପଦେଆଜି ଅଛ ମଗନ
ଛିଣ୍ଡାଇ ସେ ପ୍ରେମ-ହାର କରିଛ ମୋତେ ଅନ୍ତର
ବିଷାଦିତ ସତୃଷ୍ଣ ନୟନ ।୪ ।

## ମାୟା-ମରୀଚିକା

(କାମୋଦି-ଆଠତାଳି:"ଦିଶିଲା ଜକଜକ ନୀଳରତନତନୁ" ବୃତ୍ତରେ ।)

ମାୟା-ମୃଗତୃଷ୍ଣିକା    ଦେଖି ମନ-କୁରଙ୍ଗ
ଧାଏଁ ଆନନ୍ଦେ ଭବ କାନନେ ।ପଦ ।

ଧାମଇ ଯେତିକି    ମାନସ-କୁରଙ୍ଗ
ଘୁଞ୍ଚଇ ତେଣିକି    ତୃଷ୍ଣିକା ଅନଙ୍ଗ
ଖେଳେ ବିମୋହନ    ନୀଳମାତରଙ୍ଗ
ଛନ୍ନ ଉପୁଜେ    ମୃଗ ନୟନେ ।୧ ।

ବିଶ୍ରାମଇ ଯେବେ ଗହନ କାନନେ
କୁରଙ୍ଗ, ପାଦପ- ତଳେ ଶ୍ରାନ୍ତମନେ
ନାଚଇ ତୃଷିକା ପୁଣି ତା ନୟନେ
ପୁଣି ଜନମେ ଆଶା ଜୀବନେ ।୨ ।

ମରୀଚିକା ଦେଖି ନ ତୁଟଇ ଆଶା
ଧାମଇ ନିରତେ ବଢ଼ଇ ପିପାସା
ହୁଅଇ ଜୀବନ ବିଷାଦେ ବିବଶା
ନ ଇଛଇ ଶକତି ଗମନେ ।୩ ।

ଅଛି ଏକା ବିଭୁ ପଦ-ସରୋବର
ପୂରିଛି ବିମଳ ସୁଶୀତଳ ନୀର
ଯାଅ ମନ-ମୃଗ ଆଶା-ତୃଷା-ହର
ସେ ପୂତ ମଧୁମୟ ଜୀବନେ ।୪ ।

## ଅସାର ସଂସାର

(“ସଙ୍ଗିନୀ, ଆସରେ ଅଙ୍କେ ବସରେ” ବୃତ୍ତେ )

ମାନସ । ସଂସାର, ଅଟେ ଅସାର,
କେ ବୋଲେ ଏହା ‘ସଂସାର’ । ପଦ ।

ଅତଳ ଅକୂଳ ଅଟେ, ଭବ-କାସାର,
ନ ପାରଇ ଛୁଇଁ କୂଳ ଲହରୀ ଆଶାର ।୧ ।

ମନେ ଦିଏ ଭୀତି ପାପ-ରାଘବ ବିସାର,
ନିରନ୍ତର ଆକୁଳିତ ହୁଏ ସଦା ସାର ।୨ ।

ନିରତେ ବରଷୁଅଛି ଯେସନେ ଆସାର,
ମାନସ-କମଳଶିରେ ବିଷାଦ-ତୁଷାର ।୩ ।

ପ୍ରଦୋଷେ ମଳିନ ଯଥା କୁସୁମ ଉଷାର,
କ୍ଷଣକେ କରେ ଜୀବନ ‘ମର’ ନାମ ସାର ।୪ ।

# ବର୍ଷା

("ଘେନାଇ ଯେତେ ଆମ୍ଭେ କହିଲୁ ଗୋ" ବୃତ୍ତରେ )

ହେଲା ବରଷାକାଳ ପ୍ରବେଶ ହେ,
ଲୁଚିଲେ ଘନେ ଦିଶ ବିଦିଶ ହେ ।ପଦ।

ନିରତେ ନୀରଧାର ବରଷେ ନୀରଧର
ଲତା ପାଦପ ହେଲେ ହରଷ ହେ ।୧।

ନୀଳ ଜଳଦ ଅଙ୍ଗେ ଖେଳେ ବିବିଧ ରଙ୍ଗେ
ଚପଳା ହୋଇ ପ୍ରେମଉଲ୍ଲାସ ହେ ।୨।

ଗମ୍ଭୀରସ୍ୱନେ ଘନ ଗରଜେ ଘନଘନ
ହେଲା ପୁଲକେ ନୀପ ବିକାଶ ହେ ।୩।

ଉଦ୍‌ବେଗେ ନଦୀକୂଳ ଗମନ୍ତି ଲଘି କୂଳ
ମୀନକୂଳ ଆକୁଳମାନସ ହେ ।୪।

ନୟନ ମନଲୋଭା ଦେଖି ଅଟବୀ ଶୋଭା
ସୁରମ୍ୟ କିଶଳୟ ସୁହାସ ହେ ।୫।

ଶାଖୀ ଶାଖାରେ ଶିଖୀ ନାଚେ ଶିଖଣ୍ଡ ଟେକି
ଉତ୍ସାହେ ହୋଇ ମଦେ ଆବେଶ ହେ ।୬।

ରାବେ ଆନନ୍ଦେ ଭେକ ଡାକେ ହର୍ଷେ ଡାହୁକ
ଉଲ୍ଲସିତ କୃଷକ ମାନସ ହେ ।୭।

ପିନ୍ଧି ତିମିର-ବାସ ଧରିଣ ଭୀମବେଶ
ହୁଅଇ ବିଭାବରୀ ପ୍ରକାଶ ହେ ।୮।

ଗ୍ରୀଷ୍ମତାପିତ ମହୀ ମହାନନ୍ଦେ ହସଇ
ପିଇ ଶୀତଳ ପୟ-ପୀୟୂଷ ହେ ।୯।

# ବିରହେ ରାମଚନ୍ଦ୍ରଙ୍କର ଖେଦୋକ୍ତି

(ବର୍ଷାକାଳ "ମୋ ରାଣ ପରାଣଧନ" ବୃତ୍ତରେ ।)

ହେଉଥିବ ଆକୁଳିତ ପ୍ରିୟା ମାନସ-ସାରଙ୍ଗ,
ଦେଖି ଏ ବରଷାକାଳ ନୀଳଗଗନେ ସାରଙ୍ଗ ।ପଦ ।

ଦେଖ ହେ ଭାଇ ଲକ୍ଷ୍ମଣ,
ସାରଙ୍ଗେ ଚଞ୍ଚଳମନ
ସାରଙ୍ଗ ଦେଖି ଲୋଡନ୍ତି
ଭୟେ ପାଦପ ସାରଙ୍ଗ ।୧ ।

ସାରଙ୍ଗେ ସାରଙ୍ଗମୁଖେ
ପିଅନ୍ତି ଜୀବନ ସୁଖେ
ସାରଙ୍ଗକବଳେ ପଡି
ଆକୁଳେ ରାବେ ସାରଙ୍ଗ ।୨ ।

ସାରଙ୍ଗ ତେଜି ସାରଙ୍ଗ
ଚୁମ୍ୱେ ମାଳତି ସାରଙ୍ଗ
ସାରଙ୍ଗସ୍ୱନେ ନାଚଇ
ସାରଙ୍ଗମଦେ ସାରଙ୍ଗ ।୩ ।

ଖେଳଇ ସରେ ସାରଙ୍ଗ
କି ରମ୍ୟ କାନ୍ତି ସାରଙ୍ଗ
ସାରଙ୍ଗ ସାରଙ୍ଗ ତେଜି
ଘେନିଲେ ଜନେ ସାରଙ୍ଗ ।୪ ।

ସାରଙ୍ଗ କାନ୍ତି ସାରଙ୍ଗ
ପିନ୍ଧି ଆସଇ ସାରଙ୍ଗ
କମ୍ପାଏ ବିରହୀହୃଦ
ସାରଙ୍ଗଶରେ ସାରଙ୍ଗ ।୫ ।

---

(ସାରଙ୍ଗ = ମୃଗ, ମେଘ, ଛତ୍ର, ଚାତକ, ସିଂହ, ହସ୍ତୀ, ପଦ୍ମ, ଭ୍ରମର, ପୁଷ୍ପ, ମଦନ, ମୟୂର, ହଂସ, ବସନ, ଚନ୍ଦନ, କର୍ପୁର, ମଦନ ଓ ମଦନ ଶର, ଛତ୍ର ଓ ବସ୍ତ୍ର, କୃଷ୍ଣ, ରାତ୍ରି)

## ତୁହିତ

(ହିନ୍ଦୀ "ନଟଧାରିଣୀ ଯୋଗିନୀ କାମେନୀଆ" ବୃତ୍ତରେ)

ପ୍ରେମ-କମଳେ ବିମଳ କମଳ ହେ,
ପ୍ରେମିକ ହୃଦୟ-ବନେ କମଳ ହେ ।ପଦ।

ମନ ବସନ୍ତେ, ବସନ୍ତ ବସନ୍ତେ,
ଜୀବନ-ତଟିନୀ ତୀରେ କମଳ ହେ ।୧ ।

ଚେତନା-ତପନେ ତୁହିତ ତପନ
ହରଷ-ସଲିଳେ ତୁହି ସଲୀଳ ହେ ।୨ ।

## ମାନସପ୍ରତି

(ଭୈରବୀ-ଆଦିତାଳ)

ପାମର ମନ, କ୍ଷଣିକ ଅଟେ ଜୀବନ ରେ ।ପଦ।

ପ୍ରଭାତେ ହସି ଯେସନ ପ୍ରଦୋଷେ ହୁଏ ମଳିନ
ସୁଷମାମୟୀ ସୁମନ ରେ ।୧ ।

ଖେଳି ଗଗନେ ଯେସନ ଗଗନେ ହୁଏ ବିଲୀନ
ସୁମଧୁର ବଂଶୀସ୍ୱନ ରେ ।୨ ।

ଲଭି ଆସାର ସମ୍ପାତ ଜଳବିନ୍ଦୁ ହୋଇ ଜାତ
ମିଶଇ ଜଳେ ଯେସନ ରେ ।୩ ।

ଅନନ୍ତ ପଦନଳିନ ସଙ୍ଗତେ ହୁଏ ମିଳନ
ଘନେ ବିଜୁଳି ସମାନ ରେ ।୪ ।

## ପ୍ରାଣ ହେଉଛି ଆକୁଳ

(ରେଖ୍ତା-ଆଠତାଳି)

ପ୍ରାଣ ହେଉଛି ସତତ ଆକୁଳ
ଭବ-ପାରାବାରେ ସନ୍ତରି ସନ୍ତରି
ମଗନ ବିଷାଦ-ସଲିଳ । ପଦ ।

ମଦ-କର୍କଟ ମାତ୍ସର୍ଯ୍ୟ କୁମ୍ଭୀର
ଲୋଭ-ରାଘବମୂରତି ଗମ୍ଭୀର

ଦେଖାଇ ଭୀଷଣ ବିକଟ ଦର୍ଶନ
ମାନସ କରାନ୍ତି ବିହ୍ୱଳ ।୧ ।

ପଛେ ଗୋଡାଇଛି ମୋହ-ତରଙ୍ଗ
ଆଗେ ଫଣା ଟେକି କାମ-ଭୁଜଙ୍ଗ
ପୁଣି ପାରାବାର ଗରଭେ ଜଳୁଛି
ଭୀମବେଶେ କ୍ରୋଧ-ଅନଳ ।୨ ।

ଆଉ ନାହିଁ ବାହୁ ପାଦେ ଶକତି
ହେବି ଏଥୁଁ ନିଜ ବଳେ ମୁକତି
କେହି ନାହିଁ ମୋର ରକ୍ଷକ ଏକାଳେ
ଭରସା ହୃଦୟ ସମ୍ବଳ ।୩ ।

ହୃଦ-ସମ୍ବଳ ଜଗତଜୀବନ !
ଆଜି ଡାକେ ତବ ଦୀନ ସନ୍ତାନ
ଦିଅ ପଦ-ତରୀ ହେବି ଏଥୁ ପାରି
ହେ ବିଭୁ ଭକତବତ୍ସଳ ।୪ ।

## କ୍ଷୀଣ ଜୀବନ

କ୍ଷୀଣ ଜୀବନ କାହିଁ କ୍ଷଣକେ ହୁଏ ଲୀନ,
କାହୁଁ ଆସେ କାହିଁ ଯାଏ ନମିଳଇ ଦରଶନ ।ପଦ ।

କମଳ ଦଳରେ ଜଳ ପରାୟେ ଢ଼ଳଢ଼ଳ
ଯଥା ଜଳେ ଜଳବିମ୍ବ ଅବା ମୃଦୁ ବଂଶୀସ୍ୱନ ।୧ ।

## ଶରତ୍

(ସୋମ-ଆଦିତାଳ)

ରୁଚିର ଶରଦକାଳ ଧୀରେ ଧୀରେ ଆସିଲା,
ନବୀନ ଭୂଷଣେ ମହୀ ମନ୍ଦେ ମନ୍ଦେ ହସିଲା ।ପଦ ।

ସ୍ୱଚ୍ଛ ସୁନୀଳ ବିମଳ ସୁରସ ସରସୀଜଳ
ରମ୍ୟ କୁମୁଦ କମଳ ଆନନ୍ଦେ ବିକଶିଲା ।୧ ।

କମଳବନେ ଭ୍ରମର ମଧୁରେ କରେ ଝଙ୍କାର
ପ୍ରକୃତି ସମ୍ପଦେ ସୁଖେ ହଂସ ସରେ ଖେଳିଲା ।୨ ।

ଧାନ୍ୟକ୍ଷେତ୍ର ସୁଶ୍ୟାମଳ ମୃଦୁବାତେ ଢ଼ଳଢ଼ଳ
ତରଙ୍ଗେ ତରଙ୍ଗେ ରଙ୍ଗେ ମହାନନ୍ଦେ ନାଚିଲା ।୩ ।

ଅବନତ ଫଳଭରେ ଶାରଦ ଧାନ୍ୟ କେଦାରେ
ଶ୍ୟାମଳ ଅବନୀ ଶୁଭ୍ର କାଶ-ବାସ ପିନ୍ଧିଲା ।୪ ।

ଜାତି ଚମ୍ପକ ମାଳତୀ ପ୍ରକାଶନ୍ତି ରମ୍ୟକାନ୍ତି
ବିତରି ସୁବାସ ବାତ ଧୀରେ ଧୀରେ ବହିଲା ।୫ ।

ଗଗନେ ଜଳଦରାଶି ସଙ୍ଗରେ ବିହରି ଶଶୀ
ଉଜ୍ଜ୍ୱଳ ଜ୍ୟୋତ୍ସ୍ନା ବସନେ ଧରା ଅଙ୍ଗ ଭୂଷିଲା ।୬ ।

ଶାରଦ ଭୂଷଣେ ମହୀ ମଣ୍ଡି ଶରୀର ହସଇ
ପାଦପେ ଶାରଦ ଗାନ ବିହଙ୍ଗମ ଗାଇଲା ।୭ ।

## ପ୍ରଭାତେ ନଳିନୀପ୍ରତି

(ସୋମ-ଆଦିତାଳ)

ହସରେ ନଳିନୀ ଆଜି ନାଚ ମନ୍ଦସମୀରେ ।ପଦ।

ଦେଖରେ ପ୍ରାଚୀଗଗନେ ଆସନ୍ତି ଆନନ୍ଦମନେ
ତରୁଣବେଶେ ଅରୁଣ ହସି ହସି ମଧୁରେ ।୧।

ଯାଇ ତ ଥିଲେ ବିଦେଶ ଲଭିଣ ବିଭୁ ଆଦେଶ
କରିଛୁ ମୁଖ ବିରସ କିମ୍ବା ଅଭିମାନରେ ।୨।

ତାଙ୍କ ଆଗମନବାଣୀ ବିହଙ୍ଗମ-ଦୂତ ଆଣି
ଜଣାଏ ବିନୟଗୀରେ ଶୁଣ ତୁ ହରଷରେ ।୩ ।

ପିନ୍ଧି ତୁ ସୁକାନ୍ତି -ବାସ ଧର ତୁ ରୁଚିରବେଶ
ଦେଖିଣ ପତି ସନ୍ତୋଷ ହୋଇବ ମାନସରେ ।୪।

## ଜାହ୍ନବୀ

(ଭୈରୋଂ-ଏକତାଳି)

ହୃଦୟହାରିଣୀ ଜନନୀ ଜାହ୍ନବୀ! ପାପ-ତାପ ବିନାଶିନୀ!
କର ମା! କରୁଣା ଦୀନହୀନପ୍ରତି ପୂତପଦ ପ୍ରଦାୟିନୀ ।ପଦ ।

ଅବଗାହି ତବ ଶାନ୍ତିମୟ ନୀରେ ସୁଖୀ ସର୍ବମହାମୁନି,
ଭାଗ୍ୟବଳେ ତୋତେ ଲଭି ଗୋ ଜନନୀ ସୁଖୀ ଭାରତ ଅବନୀ ।୧ ।

ଭାଗ୍ୟବଳେ ସୁଖେ ବିହରନ୍ତି ଭୋଳେ ତୋ ତୀରେ ହରି ହରିଣୀ,
ମଧୁମୟ ଅଙ୍କେ ଖେଳନ୍ତି ନିଃଶଙ୍କେ ସୁଖେ କୂର୍ମ ମୀନଶ୍ରେଣୀ ।୨ ।

କୁନ୍ଦେନ୍ଦୁ ନିନ୍ଦିଣ ତୋ ସୁନ୍ଦରକାନ୍ତି ନୟନ-ମନ-ମୋହିନୀ,
କେଉଁ ଭାଗ୍ୟବଳେ ଲଭି ତୋର ଅଙ୍କ ମାତ ତ୍ରିଲୋକତାରିଣୀ ।୩।

ବିସ୍ମୟ-ସାଗରେ ମାନସ ମଗନ କହ ମା ! କଳନାଦିନୀ,
ଶ୍ରୀପଦ-ନୀରଜୁଁ ସ୍ରବିଣ କିପରି ହେଲୁ ତୁ ମର୍ତ୍ତ୍ୟଗାମିନୀ ।୪।

ଜୟ ମା ! ଜୟ ମା ! ହରମନୋରମା !
କଳିକଳୁଷହାରିଣୀ,
ତ୍ରାହି ମା ! ତ୍ରାହି ମା ! କରୁଣାହୃଦୟା
ନରକପଥବାରିଣୀ ।୫।

## ଜାଗ

(ଦକ୍ଷିଣକାମୋଦୀ-ଆଡତାଳି)

ଜାଗ ସହୋଦରଗଣ ! ଜାଗ ନବୀନ ସାହସେ,
ନବବଳ ବୁଦ୍ଧି ଧୃତି ସ୍ମୃତି ଧରିଣ ମାନସେ ।ପଦ।

ଦେଖ ମାତୃଭୂମି ଦଶା ବିଷାଦଭରେ ବିବଶା
କାନ୍ଦି କାନ୍ଦି ଶୀର୍ଣ୍ଣ ତନୁ ନାହିଁ ମନେ ସୁଖ ଲେଶେ ।୧।

ଦେଖ ତବ ଦେଶ ନାରୀ ପାପେ ସର୍ବେ ହତଶିରୀ,
ସୁଶିକ୍ଷା ଅଭାବୁ ସିନା ଅଛନ୍ତି ଏ ହୀନବେଶେ ।୨।

ବାସନା ବିଳାସେ ପଡି ନିଜ କର୍ମପଥ ଛୁଡି
ନ ଯାଅ ନ ଯାଅ ଭାଇ ! ନ ଯାଅ ସେ ପାପଦେଶେ ।୩।

(ଦେଖ) ପୂରୁବ କୀର୍ତ୍ତିକଳାପ କରନ୍ତି କେତେ ବିଳାପ
କାଳବଳେ ବିକଳାଙ୍ଗ ଦୁଃଖେ ଝୁରନ୍ତି ହତାଶେ ।୪।

ଛାଡ ମନୁ ଅହଂକାର ଛାଡ ପାପ ଦୂରାଚାର
ଭାଇ ଭାଇ ସର୍ବେ ମିଳି ମାତ କର୍ମେ ପ୍ରେମାବେଶେ ।୫।

ବୁଲ ହେ କେଶରୀ ସରି କର୍ମ-କାନନେ ବିହରି
ନାଚୁ ଧମନୀ-ଶୋଣିତ ଉତ୍ସାହ-ତଡିତ ପରଶେ ।୬।

## ତବ କୀରତି

(ଶଙ୍କରାଭରଣ-ଝୁଲା)

ଜଗତଜୀବନ ହରି ! ଦେଖେ ଜଗତେ ବିହରି,
ଖେଳେ ସଂସାର-ସାଗରେ ତବ କୀରତି-ଲହରୀ ।ପଦ ।

ମନୋହର ହରିକାଳେ ହରି ବସି ତରୁଡାଳେ,
ଗାଏ ତବ ଯଶୋଗୀତ ଭାବୁକ ମାନସ ହରି ।୧ ।

ତବ କରୁଣା ସୁମରି ନାଚଇ ବିପିନେ ହରି
ଖେଳନ୍ତି ଆନନ୍ଦମନେ ସରେ ହରି ହରି ହରି ।୨ ।

କୀଚକବନେ ବିହରି ଗାଏ ଯଶୋଗୀତି ହରି,
ହସନ୍ତି ପ୍ରକାଶି ହରି ତବ ପ୍ରେମେ ହରି ହରି ।୩ ।

ତୁମ୍ଭରି ବିକ୍ରମେ ହରି ଭ୍ରମେ ଗହନେ ବିହରି
ବସି ବନେ ତରୁଡାଳେ ଗାଏ ହରି "ହରି ହରି" ।

## ଶରତ ପ୍ରଭାତ

(ସୋମ-ଆଦିତାଳ)

ଏ ନବ ଶାରଦ ଉଷା ଆହା କେଡେ ରୁଚିର,
ପିନ୍ଧିଛି ପ୍ରକୃତି-ରାଣୀ ଚାରୁକାନ୍ତି-ଅମ୍ବର ।ପଦ ।

ମଞ୍ଜୁଳ ପାଦପ ଡାଳେ,ବସିଣ ଆନନ୍ଦ ଭୋଳେ,
ବିହଙ୍ଗଗାଏ ସଙ୍ଗୀ ଆହା ! କେଡେ ମୃଧୁର ।୧।

କାନନେ ବିବିଧ ଫୁଲ, ବିକଶି ଦିଶେ ମଞ୍ଜୁଳ,
ଚୁମ୍ବିଣ ଲତା ପତର, ବହେ ଧୀରେ ଧୀରେ ସମୀର ।୨ ।

ବନଗିରି ସୁଶ୍ୟାମଳ, ସରବେ ହର୍ଷେ ପ୍ରଫୁଲ୍ଲ,
ମଧୁରେ କରେ ମଶକ,ତୃଣବନେ ଝଙ୍କାର ।୩ ।

ହସଇ ସରେ ନଳିନୀ,ହସେ ସରେ କୁମୁଦିନୀ,
ଆନନ୍ଦ-ସଳିଳେ ଏବେ,ପୂର୍ଣ୍ଣ ହୃଦ-ସାଗର ।୪ ।

---

ହରି = ବିଷ୍ଣୁ, ବସନ୍ତ, ମୋହିତ କରି, ମୟୂର, ହଂସ, ମୀନ, ଭେକ, ସମୀରଣ, କିରଣ, ଚନ୍ଦ୍ର, ସୂର୍ଯ୍ୟ, ସିଂହ, ଶୁକପକ୍ଷୀ । କୀଚକ = ବାୟୁସଂଯୋଗରେ ଯେଉଁ ବାଉଁଶରୁ ଶବ୍ଦ ନିର୍ଗତ ହୁଏ ।

## ରଙ୍ଗଣୀ ଲତା

(ଝିଞ୍ଜିଟ-ଝୁଲା)

ରୁଚିର ରଙ୍ଗଣୀଲତା
ଖେଳେ ତରଙ୍ଗେ,ତରଙ୍ଗେ
ଜଡିତ ହୋଇଛି ସୁଖେ
ପାଦପ ସଙ୍ଗେ କି ରଙ୍ଗେ ।ପଦ ।

ସମୀର-ମଦନଶରେ
କମ୍ପୁଅଛି ଧୀରେ ଧୀରେ,
ଝରୁଛି କୁସୁମ-ହସ
ସୁଧା ତା ଅଙ୍ଗେ ସୁରଙ୍ଗେ ।୧ ।

ସୂକ୍ଷ୍ମ ପଲ୍ଲବ-ବସନ
କରିଅଛି ପରିଧାନ,
ପ୍ରଫୁଲ୍ଲ ପାଦପ ସୁଖେ
ପ୍ରେମ ଆବେଗେ ତା ସଙ୍ଗେ ।୨ ।

## ନିଜ ସେନାପ୍ରତି ପ୍ରତାପ ସିଂହଙ୍କ ଉକ୍ତି

(ତ୍ରିପୁଟା)

"ଏ ଘନକାଳରେ କାନ୍ତ କରି ଯା ଗଲେ ଏକାନ୍ତ" ବୃତ୍ତରେ ।)

ଜାଗ ହେ, ଉତ୍ସାହେ ମାତି ପାହିଲା ଜଡତା-ରାତି,
ହୁଅ ହେ କୃପାଣପାଣି ନାଶିବା ରଣେ ଅରାତି ।ପଦ ।

ଦୂରନ୍ତ ମୂଢ଼ ଯବନ ହରିନେଲା ମାନ ଧନ
ବଳୀ କେଶରୀ ଅଶନ ନେଇଣ ଭକ୍ଷିଲେ ଶ୍ୱାନ,
ସହିବ କି କେଶରୀ, ମାନସେ ଭୀତି ଧରି,
ହୃଦୟ ସ୍ଥିର କରି, ବୀରତା ପରିହରି,
ଭୀରୁ ଶୂକର ପରି, ଦୀନହୀନତାଦରି,
ତେଜିଣ ଅହଂକାର ପଥର କରି ଛାତି ।୧ ।

ଲଭି କେଶରୀ ଜନମ    ଘୃଣ୍ୟ ହୀନ ଶ୍ୱାନ ସମ
ପାଳିଲା ଶ୍ୱାନଧରମ ସେ ମାନସିଂହ ଅଧମ
ଘୃଣିତ ତା ପଥରେ, ଚଳିବ କି ହେ ଥରେ,
ବହିବ କି ଆଦରେ, କଳଙ୍କଭାର ଶିରେ,
ମନେ ପଡ଼ିଲେ ବାରେ କ୍ରୋଧେ ଜୀବନ ଥରେ !
ସ୍ମର ହୃଦୟେ ବାରେ ସେ ନାରୀ ଦୁର୍ଗାବତୀ ।୨ ।

ସ୍ମର ହେ ପୂର୍ବବିଭବ, ସ୍ମର ପୂର୍ବଗଉରବ
ସ୍ମର ହେ ରଘୁରାଘବ ସ୍ମର ସେ ପଞ୍ଚପାଣ୍ଡବ
ଯୁଦ୍ଧେ ରଘୁନରେଶ, ହୃଦେ ନେଲେ କୁଳିଶ,
କଲେ ରାମନରେଶ, ଲଙ୍କେଶ ଦର୍ପ ନାଶ,
ପାଣ୍ଡବେ ଧର୍ମବଶ, ଧ୍ୱଂସିଲେ ଅରି-ବଂଶ,
ଗାଉଛି ଆଜି ତାଙ୍କ କୀରତି ଏ ଧରିତ୍ରୀ ।୩ ।

ପବିତ୍ର କ୍ଷତ୍ରିୟକୂଳେ ଜନମିଅଛ ସୁକାଳେ
ଶୋଣିତ ତରଙ୍ଗକୂଳେ ନାଚେ ଧମନୀ ଆକୁଳେ
ଧର ହେ ଶସ୍ତ୍ରଧର, ହୋଇଣ ଦର୍ପଭର,
ରଣପ୍ରାଙ୍ଗଣ ସୁଖେ, ହୁଅ ହେ ଅଗ୍ରସର,
ବଇରୀ କରେ ମର, ଅବା ବଇରୀ ମାର,
ମାଇଲେ କ୍ଷିତି ମଲେ ସ୍ୱରଗ ପରାପତି ।୪ ।

## ଭାରତ ଭାବନା

("ବାଜିଲାଣି ଯେ ବାଇଣା ଜୀବନରଣେ" ବୃତ୍ତରେ)

ଭାରତ ଅବନୀ ପରା ବୀରଜନନୀ ହେ,
ଶୀତଳ ଶିଥିଳ ଆଜ କିମ୍ପା ଧମନୀ ହେ ।ପଦ ।

ଜନମିଥିଲେ କି ସତେ ବୀରସତ ଏ ଭାରତେ
ଯାର ନାମେ ଶୋକେ ଆଜି କାନ୍ଦେ ମେଦିନୀ ।୧ ।

ସତେ କି ଧନୁଷ୍ଟଙ୍କାରେ ସମରେ ବୀରହୁଙ୍କାରେ
ଭୟେ ହୁଏ ଚଞ୍ଚଳିତ ବନେ ହରିଣୀ ।୨ ।

ଯୋଜନ ଭେଦି ଗମନ କରେ କି ବୀର ନୟନ
(ସେହି) ଦୃଷ୍ଟି ଭେଦଇ କି ଶର-ସଉଦାମିନୀ ।୩।

କାହାନ୍ତି ସେ ବୀରଗଣ କାହିଁ ସେ ଅମୋଘ ବାଣ
ନିରତେ ବ୍ୟଥିତା ମାତା ଅଶ୍ରୁଲୋଚନୀ ।୪।

## ହୃଦୟ-କନ୍ଦର

(ରାଗ ତୋଡ଼ି-ଆଠତାଳି)

ଦେଖ ହୃଦୟ-କନ୍ଦରେ, ହେ ସୁଜନେ !
ବିମଳ ଶୀତଳ ପୂତ ପ୍ରେମ-ଝର
ଝରୁଅଛି ନିରନ୍ତରେ । ପଦ ।

ସବିତାମୟୂଖେ ତରଙ୍ଗେ ତରଙ୍ଗେ
(ଶତ) ଇନ୍ଦ୍ରଧନୁ ଛବି ଧରେ,
ସେ ପ୍ରେମ-ସଲିଳେ ଚଇତନ-ମୀନ
ମଜ୍ଜି ଖେଳେ ଧୀରେ ଧୀରେ ।୧।

ବିକଶି ସୁଷମ ଆନନ୍ଦ-କୁସୁମ
ହସେ ମାନସ-ଲତାରେ,
ଜୀବନ ମୋହନ ପରମ ସମ୍ପଦ
ଶାନ୍ତି-ସୁବାସ ବିତରେ ।୨।

ଦୋଳେ ଧୀରେ ଧୀରେ ମରମ-ପଲ୍ଲବ
ମୃଦୁ ପୁଲକ-ସମୀରେ,
ମାଧବ ମୋହିତ ବିବେକ-କୋକିଳ
ଗାଏ ସୁମଧୁରସ୍ୱରେ ।୩।

ନୀର ଛଳେ ବିଭୁ ଚରଣ କମଳୁ
(ଏହି) ମକରନ୍ଦ ଝର ଝରେ,
ଆସ ଆସ ଭାଇ ! ସନ୍ତରିବା ସୁଖେ
ଏ ପୀୟୂଷମୟ ନୀରେ ।୪।

---

(ସବିତା = ସୂର୍ଯ୍ୟ ଓ ନାରାୟଣ । ମାଧବ = ବିଷ୍ଣୁ, ମଧୁସମ୍ପଦ)

## ବାଲ୍ମୀକି

("ରେ କଞ୍ଜ-ଖଞ୍ଜନାକ୍ଷି କୁଞ୍ଜରଗମନା ରେ" ବୃତ୍ତ )

ହେ କବିକୁଳଗୁରୁ ଭାରତୀନନ୍ଦନ ହେ ।ପଦ।

ହୋଇ ସାରଦା ପ୍ରସନ୍ନା (ନିଜ) ତ୍ରିଭୁବନଜିଣା ବୀଣା
ତବ ଶ୍ରୀକରେ କରିଅଛନ୍ତି ପ୍ରଦାନ ହେ ।୧ ।

ବାଇ ସେ ବୀଣା ମଧୁରେ ସୁସ୍ୱରେ ଧୀରେ ଗମ୍ଭୀରେ
ଗାଇବା ରାମଗୀତି ଜଗତମୋହନ ହେ ।୨ ।

ଶୁଣି ସେ ବୀଣାଝଙ୍କାର ପୁଲକିତ ତିନିପୁର
ଚରାଚର ସକଳେ ଆନନ୍ଦେ ମଗନ ହେ ।୩ ।

ସେ ପୂତ ବୀଣାଝଙ୍କାର କେତେ ମହାଉପକାର
ଏ ଭାରତ ମଣ୍ଡଳେ କରିଛି ସାଧନ ହେ ।୪ ।

ଧନ୍ୟ ସେ ମଧୁର ଗାନ ଭେଦି ହୃଦ ପ୍ରାଣ ମନ
ବୁଝାଏ ମାନବକୁ ସୁନୀତି ସୁଜ୍ଞାନ ହେ ।୫ ।

(ଆଜି) ଧର୍ମ ନୀତିଜ୍ଞାନ ଛାଡି ଅଜ୍ଞାନ-ତିମିରେ ବୁଡି
'ଅହଂ'ଗୁଣେ ଭାରତ ରହିଛି ଆଛନ୍ନ ହେ ।୬ ।

ଗାଇ ଗାଇ ରାମନାମ ଗଲିଲେ ମୋକ୍ଷଧାମ
ପାଇବୁ ନାହିଁ ଆଉ ନବନୀତିଜ୍ଞାନ ହେ ।୭ ।

## ପ୍ରଧାନପାଟ ପ୍ରପାତ

(ରାଗ ଶ୍ରୀ-ଆଠତାଳି)

(ଏ) ନୀରଝର (ବନ୍ଧୁ!) ନିରନ୍ତର
ବହେ ଝରଝର,
ମନୋହର, ପଥିକ ଜନର । ପଦ ।

ଏ ପ୍ରଧାନପାଟ ଗିରି ଶିର ଉତ୍ତୋଳନ କରି
ଦେଖୁଛି ଦିବା ଶର୍ବରୀଏହି ଦେବଦୁର୍ଗ ଶିରୀ
ବହି ସଦା, ମୂରତି ଗମ୍ଭୀର ।୧ ।

ସତେ କି ଏ ଦ୍ୱିଜବର ଉପବୀତ ନୀରଧାର
ସୁନିର୍ମଳ ଶୁଭ୍ରତର ପିନ୍ଧିଅଛି ସ୍କନ୍ଧୋପର
ଶ୍ୟାମବକ୍ଷେ, ଦିଶଇ ସୁନ୍ଦର ।୨ ।

ନୁହେ ଦ୍ୱିଜ ପରବତ ନୁହେ ଝର ଉପବୀତ
ଯୋଗୀ ଯୋଗମଗ୍ନଚିତ୍ତ ନିଜ ବକ୍ଷ ପଦ ସିକ୍ତ
(ଯେହ୍ନେ) ନେତ୍ରଝରି, ପ୍ରେମ-ଅଶ୍ରୁଧାର ।୩ ।

ବିବିଧ ଶିଳା ଶୋଭିତ ନାନାପୁଷ୍ପ ବିକଶିତ
ବହେ ଧୀରେ ଧୀରେ ବାତ ପ୍ରାଣ ମନ ଉଲ୍ଲସିତ
ଦରଶନେ, ଶ୍ରାନ୍ତି ହୁଏ ଦୂର ।୪ ।

ବସି ଲତାଦୋଳାସନେ ଗନ୍ଧର୍ବ ମଧୁରତାନେ,
ମିଶାଇ ଝର ନିସ୍ୱନେ ରତ ବିଭୁ ଯଶୋଗାନେ
ଝଙ୍କାରିତ, ହୁଅଇ କନ୍ଦର(ଏ) ।୫ ।

## ଆସ ମା !

(ଦେଶାକ୍ଷ-ତ୍ରିପୁଟା)

ଆସ ମା ଭାରତେ ଆଜି ବୀଣାପାଣି ଭାରତୀ ।
ବଜାଅ ମଧୁରେ ବୀଣା ଜାଣୁ ମା ଏ ଧରିତ୍ରୀ ।ପଦ ।
ସେ ପୂତ ମଧୁର ଗାନ
ସେ ଧୀର ଗମ୍ଭୀର ତାନ
ଭାରତ ଅଙ୍ଗୁ ଜଡତା
ନାଶ କରୁ ଝଟତି ।୧ ।

ଆଳସ୍ୟ-ସରେ ବୁଡିଣ
ବିଷାଦ-ପଙ୍କେ ଜଡିଣ
କାନ୍ଦଇ ଭାରତ ଆଜି
ଧରି ଦୀନମୂରତି ।୨ ।

ନାହିଁ ମା ପୂର୍ବ ବିଭବ
ନାହିଁ ପୂର୍ବ ଗଉରବ
କେବଳ ଭାରତ ନାମ
ଶୁଣୁଅଛି ଜଗତୀ ।୩ ।

ଦିଅ ବୁଦ୍ଧି ଲଭୁ ଜ୍ଞାନ
ପୂର୍ବ ଧନ ପୂର୍ବ ମାନ
ପୂର୍ବ ବୀରତା ଧୀରତା
ଲଭୁ ପୂର୍ବ କୀରତି ।୪ ।

## ଶାରଦବୃଷ୍ଟି

(ରାଗ ଆଷାଢ଼ଶୁକ୍ଳ )

ଏ ରମ୍ୟ ଶରଦେ ଉଦୀଚୀ ପଟେ
କି ଛବି ଗମ୍ଭୀରବେଶେ ପ୍ରକଟେ
ଗମ୍ଭୀର ଗର୍ଜ୍ଜନେ ବନ କନ୍ଦର
କମ୍ପାଇ ଆସେ କି ଦିଶ କୁଞ୍ଜର
    ଗିଳିବ କି ମହୀ ?
ପ୍ରକୃତି ଆତଙ୍କ ନୁହଇ କହି ।୧ ।

ବହଇ ପ୍ରବଳବେଗେ ସମୀର
ଥରଇ ପାଦପ ଲତା ପତର
ଲୁଚିଲେଣି ନଭେ ଦେବ ତପନ
ପିନ୍ଧିଛି ମଳିନବାସ ଗଗନ
    ବିହଙ୍ଗ ଭୟରେ
ଲୁଚିଅଛି ଯାଇ ନୀଡକୋଳରେ ।୨ ।

ବିନ୍ଦୁ ବିନ୍ଦୁ ଜଳ ହେଲା ପତିତ
ଭୟ-ବାତେ ଧରା ହୁଏ କମ୍ପିତ
କ୍ରମେ ଘନଧାରେ ପଡି ସଲିଳ
ତିନ୍ତିଲା ଅବନୀ ଗଣ୍ଡମଣ୍ଡଳ
    ଚିହ୍ନିଲାଣି ଧରା
ନିଜ ପ୍ରାଣବନ୍ଧୁ ଜଳଦ ପରା ? ।୩ ।

କରେ ଅଭିଷେକ ସଲିଳଧାରେ
ବିବିଧ ବାଜଣା ବାଇ ସୁସ୍ୱରେ
ପଲ୍ଲବ-ମର୍ଦ୍ଦଳ ଅନିଳ ଭେରୀ
ନାଚେ ନାନାଛନ୍ଦେ ଲତା-ସୁନ୍ଦରୀ
    ସମୟ ଜଣାଏ ।
ସୁଖ ଦୁଃଖ ଦୁଃଖ ସୁଖ ପରାଯେ ।୪ ।

## ଶାରଦବୃଷ୍ଟି-ଅବସାନେ

(“ସଖି, ଘନକୋଳରେ କୁତୂକେ ଭାସଇ ଚନ୍ଦ” ବୃତ୍ତରେ ।)

ଧରା, ହସେ ମଧୁରେ,
ଶାରଦ ବୃଷ୍ଟି ଅନ୍ତରେ ଆନନ୍ଦଭରେ ।ପଦ ।
ପରକାଶି ରମ୍ୟକାନ୍ତି ଦିଗ ବିଦିଗ ହସନ୍ତି
ଦୋଳଇ ଲତା ପତର ମନ୍ଦସମୀରେ ।୧ ।

ବସି ପାଦପଡାଳରେ ବିହଙ୍ଗ ଗାଏ ସୁସ୍ୱରେ
ହସଇ କୁସୁମଲତା ମହୋଲ୍ଲାସରେ ।୨ ।

ନୀଡ ତେଜି ପକ୍ଷୀଗଣ ହୋଇ ଉତ୍ସାହିତ ପ୍ରାଣ
ଉଡିଲେ ପ୍ରଫୁଲ୍ଲଚିତ୍ତେ ନୀଳ ନଭରେ ।୩ ।

ଧରଣୀ ଅଙ୍ଗ ଶୀତଳ ମନ ଜୀବନ ଶୀତଳ
ପ୍ରଫୁଲ୍ଲ ମାନସ ଯେତେ ସ୍ନାନ ଅନ୍ତରେ ।୪ ।

## ଦୁର୍ଗାବତୀ-ପ୍ରତି

(ପିଲୁ-ଖେମଟା “ତୁମ୍ଭ ସଙ୍ଗେ ପୀରତି କରି ମୋହନ” ବୃତ୍ତରେ ।)

ଧନ୍ୟ ରମଣୀମଣି ତୋର ଜୀବନ,
(ତୋର) ଅଳକାରେ ଝଳକେ ଯଶୋ-ରତନ ।ପଦ ।

ତବ ନାମେ ପୁଲକିତ ହୁଏ ଜୀବନ
ନାରୀକୁଳେ ଉଡାଇଲୁ ନାମ-କେତନ,
ମାନ ମାନସେ ଧରି ଭୀରୁତା ପରିହରି
ଦର୍ପେ ହୃଦୟ ଭରି କ୍ରୋଧେ ହରିଣୀ* ପରି
ଦମ୍ଭେ ବୀରତାଦରି ସ୍ୱକରେ ଅସ୍ତ୍ର ଧରି
ସମରଭୂମି କଲୁ ମଣ୍ଡନ ।୧ ।

(ତୋତେ) ବେନିବାର ରଣ-ଲକ୍ଷ୍ମୀ ହେଲେ ପ୍ରସନ୍ନ
ବେନିବାର ହାରିଗଲା ମୂଢ଼ ଯବନ,
ଧରି ନବସାହସ ପୁଣି ହେଲା ପ୍ରବେଶ

ଧରି ତୁ ପୂର୍ବବେଶ ହେଲୁ ରଣେ ଆବେଶ
ଶେଷେ ହାରି ସ୍ୱକରେ ପରାଣ କଲୁ ନାଶ
ମୁଦିଲୁ ଲଜ୍ଜାଭରେ ନୟନ ।୨ ।

(ଆଜି) ନାରୀଗଣେ ଶୁଣି ତୋର ଏହି ବଚନ
ବୋଲନ୍ତି ଅଳୀକ ଏହା କବିସପନ,
ହୃଦୟେ ନାହିଁ ବଳ ମାନସ ଟଳମଳ
ଶୃଗାଳ ରାବ ଶୁଣି ହରି ଭ୍ରମେ ବିହ୍ୱଳ
ହୃଦ-ସର କମ୍ପାଏ ସଦା ଭୀରୁତାନିଳ
ଆତଙ୍କ-ନୀରେ ଛନ୍ତି ମଗନ ।୩ ।

କଳ୍ପନା-ନୟନେ ମୂରତି ସ୍ୱଚ୍ଛ ନୟନଜ୍ୟୋତି
ହୃଦେ କରେ ଉତ୍ସାହ ତରଙ୍ଗ ଉତପତ୍ତି
ଧନ୍ୟ ମା ଦୁର୍ଗାବତୀ ! ଧନ୍ୟ ମା ଦୁର୍ଗାବତୀ !
ଘୋଷିବ ଚିରଦିନ ଭୁବନ ।୪ ।

## ମାତୃପ୍ରିୟାପ୍ରତି ପଦ୍ମାବତୀର ଉକ୍ତି

(ଆଦିତାଳ )

ସଜନୀ ରେ, ଆକୁଳେ କାନ୍ଦଇ ଆଜି ଜୀବନ,
ଭଗିନୀମାନଙ୍କ ଦଶା କରି ଅବଲୋକନ । ପଦ ।

ନ ଜାଣନ୍ତି ନିଜ ଧର୍ମ ନ ଜାଣନ୍ତି ନିଜ କର୍ମ
ଅଜ୍ଞାନ-ତିମିର ସରେ ସର୍ବେ ଛନ୍ତି ମଗନ ।୧ ।

ଅସମ୍ଭାଳ ମନ ଧନ ବିହ୍ୱଳ ସଦା ଜୀବନ
ଛଳେ ମରୀଚିକା ବେଶେ ହୃଦେ ପ୍ରେମ ରତନ ।୨ ।

ରମ୍ୟ ବଦନ-ନଳିନ ବିଷାଦେ ଦିଶେ ମଳିନ
ଫିକା ସେ ଗଣ୍ଡମଣ୍ଡଳ ଛଳଛଳ ନୟନ ।୩ ।

ଦେଖି ଦୁହିତାଙ୍କ ଦଶା ବିଷାଦଭରେ ବିବଶା
ଆକୁଳେ ଭାରତମାତା କରେ ଦୁଃଖେ ରୋଦନ ।୪ ।

## ପଦ୍ମାବତୀପ୍ରତି ମାତୃପ୍ରିୟାର ଉକ୍ତି

ସଜନୀ ରେ, କୁଟିଳଗାମିନୀ କାଳ-ତଟିନୀ,
କି ଥିଲା କି ହେଲା ଆଜି ଏ ଭାରତଅବନୀ ।ପଦ ।

ଜନମ ଲଭି ସୁକାଳେ ଖେଳୁଥିଲେ ଏହା କୋଳେ
କେତେ ମାନବତୀ ସତୀ ପତିବ୍ରତା କାମିନୀ ।୧ ।

ଦୟା-କ୍ଷମା-ଜ୍ଞାନବତୀ ପବିତ୍ରତା ସୀତା ସତୀ
ମଣ୍ଡିଲେ ଭାରତଅଙ୍କ ରଘୁବଂଶନନ୍ଦିନୀ ।୨ ।

ତେଜି ଜନକ ଜନନୀ କାନନେ ସାବିତ୍ରୀ ଧନୀ
କାନ୍ତେ କଲା ଜୀବଦାନ ସିଞ୍ଚି ଅଶ୍ରୁ-ଜୀବନୀ ।୩ ।

ଧରିଣ ହରିଣୀ*ବେଶ ସମରେ ହୋଇ ପ୍ରବେଶ
ଅସ୍ତକରେ ଯୁଦ୍ଧ କଲା ଦୁର୍ଗାବତୀ ମାନିନୀ ।୪ ।

ସେ ସୁଖ ସମ୍ପଦରାଶି କେଣେ ଆଜି ଗଲା ଭାସି
ଭାରତଲଳନାଗଣ ଦୁଃଖେ ଅଶ୍ରୁଲୋଚନୀ ।୫ ।

## କ୍ଷମା

(ରେଗୁପ୍ତ-ଆଠତାଳି ।)

ରାଜ ଜନକ ଜନନୀ-ଅନ୍ତରେ
ରାଜ; ରାଜ-ହୃଦେ ଅୟି ଦେବୀ କ୍ଷମେ
ମାତି ସେ ମୋହନମନ୍ତରେ ।ପଦ ।

ନାଶ ଦ୍ୱେଷ ଅହଙ୍କାର ମାନସୁ
ହର୍ଷ-କୁସୁମ ହୃଦୟେ ବିକାଶୁ
ପ୍ରେମ-ହେମହାର ଦୋଳାଇ ଗଳାରେ
ଖେଳ ସୋଦର ହୃଦୟ-ପ୍ରାନ୍ତରେ ।୧ ।

କର ଗୁରୁଜନ ମନ ରଞ୍ଜନ
କର ବନ୍ଧୁ ଅଭିମାନ ଭଞ୍ଜନ
ଏକତା-ପାଶରେ ବାନ୍ଧି ପ୍ରତିମନ
ଖେଳ ଦିବାରଜନୀ ମୋ ଚିତ୍ତରେ ।୨ ।

---

* ହରିଣୀ-ସିଂହୀ

## ଯାଅ ବିହଙ୍ଗ !

ଯାଅ ବିହଙ୍ଗ ! ଉଡି ନୀଳଗଗନେ,
ଜଣାଅ ବାରତା ମୋ ବନ୍ଧୁ ଛାମୁରେ
ମଧୁରଗାନେ । ପଦ ।

ମୋର ପରାଣ ଜଳେ
ଆଜି ବିରହାନଳେ
ପୂର୍ବେ ହରଷିତ ଥିଲା ଯାହା ସ୍ନେହ
ବାରି ସେଚନେ ।୧ ।

ଚିନ୍ତାକୁଳ ଅନ୍ତରେ
ଅବସାଦ ପ୍ରାନ୍ତରେ
ଏକାକୀ ବସିଛି ମନୋଦୁଃଖେ ଆଜି
ଦିବାବସାନେ ।୨ ।

ପଚାରିବୁ ତୁ ବାରେ
ତାଙ୍କୁ ବିନୟଗୀରେ
ମୋ ମନ ଜୀବନ ତୋଷିବେ କି ନାହିଁ
ମଧୁବଚନେ ।୩ ।

ମୋର ମନୋବେଦନା
ବନ୍ଧୁ ଜାଣନ୍ତି ସିନା
କହିବୁ କହିବୁ ବାରେ ହେଲେ ମୋତେ
କରିବେ ମନେ ।୪।

## ମାତୃପ୍ରିୟାପ୍ରତି ପଦ୍ମାବତୀର ଉକ୍ତି

('ରେ ଜୀବନ, ବନଜାକ୍ଷି ମୋର' ବୃତ୍ତରେ )

ରେ ସଜନୀ ! ମାନସ ବିବଶା
ଆଜି ଦେଖି ଭାରତର ଦଶା ।ପଦ ।

ନ ଖେଳେ ଭାରତେ ଆଜି ଆନନ୍ଦ-ଲହରୀ
ଆକୁଳିତ ପ୍ରାଣ କାନ୍ଦଇ ଭାରତ
ବିଷାଦ-ସରେ ସନ୍ତରି ।୧ ।

କାନ୍ଦନ୍ତି ଜାହ୍ନବୀ ଆଜି କଳକଳସ୍ୱନେ
କାନ୍ଦୁଛନ୍ତି ଦୁଃଖେ ଦେଖି ବନଦଶା
ମୃଗରାଜି ତପୋବନେ ।୨।

କାହିଁ ବନେ ଶାନ୍ତିମୟ ତାପସ ଆଶ୍ରମ
ଯହିଁ ବେଦଗାନ ଶୁଣୁଥିଲେ ସୁଖେ
ବୃକ୍ଷେ ବସି ବିହଙ୍ଗମ ।୩।

କାହାନ୍ତି କ୍ଷତ୍ରିୟଗଣ ଅରି-କରୀ-ହରି
(ଯାର) ଧନୁ ଆମନ୍ତନେ ଟଙ୍କାର ନିସ୍ୱନେ
କମ୍ପେ ଭୟେ ବନେ ହରି ।୪।

କ୍ଷୁଧାରେ ଆକୁଳ ଆଜି ଭାରତପରାଣ
ହେମ ରତ୍ନଯୋଗେ ହେଉଥିଲା ଯହିଁ
ରାଜସଦନ ନିର୍ମାଣ ।୫।

କି ଘେନି ସଜନୀ କହ ଭାରତ ସନ୍ତାନ
ତେଜି ବୁଦ୍ଧି ବଳ ଉତ୍ସାହ ଶକତି
ହରାଇଲେ ଧନମାନ ।୬।

□□

## ସୁଧାକର

(ଝିଞ୍ଜିଟ )

କିମ୍ପା ନୀରବେ ନୀଳଗଗନେ ଆହେ ସୁଧାକର,
କିବା ଭାବୁଅଛ ମନେ ଆହେ ସୁଧାକର ।ପଦ।

ଧରଣୀ କୋଳରେ ଶାୟିତ ଏବେ
ଜୀବ ଜନ୍ତୁ କୀଟ ଲତା ସରବେ
ଶ୍ରାନ୍ତ ମାନସେ, ଦିବାବସାନେ ଆହେ ସୁଧାକର ।୧।

ବିତରି ସତତ ପୀୟୂଷକର
ଉଜ୍ଜ୍ୱଳ କରିଛ ବିଶ୍ୱ-ଭଣ୍ଡାର
ସାରା ରଜନୀ ପ୍ରଶାନ୍ତମନେ ଆହେ ସୁଧାକର ।୨।

ଲଭି ତବ କର ଦିଶଇ ତୋରା
ଶୟନେ ସ୍ୱପନେ ହସଇ ଧରା
ମଣ୍ଡି ଶରୀର ଶୁଭ୍ରବସନେ ଆହେ ସୁଧାକର ।୩।

କାହାର ଆଦେଶ ଘେନିଣ ଶିରେ
ଅବିରତ ରତ ପରୋପକାରେ
ତୁମ୍ଭେ ପ୍ରହରୀ ବିଶ୍ୱଭବନେ ଆହେ ସୁଧାକର ।୪।

❑❑

## କୁମୁଦିନୀ !

("ଜୀବେଶ୍ୱରୀ, ବଞ୍ଚିବି ମୁଁ କିପରି" ବୃତ୍ତରେ)

କୁମୁଦିନୀ। ହସ ରେ ସୁହାସିନୀ
ବାସ ଆନନ୍ଦେ ଧନି ।ପଦ।

ନୀଳ ଗଗନେ ଆନନ୍ଦମନେ
ହସେ ତୋ ହୃଦମଣି ।୧।

ସୁଧାଂଶୁକରେ ଆନନ୍ଦଭରେ
ହର୍ଷେ ହସେ ଅବନୀ ।୨।

ପିନ୍ଧ ବହନ କାନ୍ତି-ବସନ
ଶୁଭ୍ର ହୃଦହାରିଣୀ ।୩।

ତୋ ଶୁଭ୍ର ଦଳ କେଡେ ମଞ୍ଜୁଳ
ନେତ୍ର-ମନ-ମୋହିନୀ ।୪।

ମୃଦୁ ସମୀରେ ନାଚ ସଧୀରେ
ହୋଇ ତୁ ଉଲ୍ଲାସିନୀ ।୫।

ଗାଏ ଚକୋରୀ ତୋ ସହଚରୀ
ନଭେ ମଧୁଭାଷିଣୀ ।୬।

❑❑

# ତଟିନୀ-ଧନୀ

(ଚନ୍ଦ୍ରନିଶା)

"ଯୁବତିମତି, କିଏ ଜାଣିବ ରେ" ବୃତ୍ତରେ ।
ମନମୋହିନୀ, ବିଧୂରଜନୀରେ
ଆହା କି ରୁଚିର ଅପରୂପ ଛବି
ଧରିଅଛି ଆଜି ତଟିନୀ ଧନୀ । ପଦ ।

ପିନ୍ଧିଛି କୌମୁଦୀ ରଜତ-ବାସ
କି ସୁନ୍ଦର ତାର ମଧୁର ହାସ
ଆନନ୍ଦ ଉଲ୍ଲାସେ ନାଚି ତାଳେ ତାଳେ
ଖେଳଇ ରୁଚିରେ ବୀଚିମାଳିନୀ । ୧ ।

ଶଶୀ ପ୍ରତିବିମ୍ବ ପଡି ତା ଅଙ୍ଗେ
ଝଲକଇ ଝକଝକେ କି ରଙ୍ଗେ
ବନ୍ଧା ହୋଇ ଅବା ଝଲକେ ରୁଚିରେ
ତାର କାନ୍ତି ନିନ୍ଦି ସଉଦାମିନୀ । ୨ ।

ବିସ୍ତାରିଛି ରମ୍ୟ ସୈକତ ଶେଯ
ବୁଣିଛି କି ତହିଁ ହୀରକ ରଜ
ସୁମଧୁର ସ୍ୱରେ ଆନନ୍ଦ ବିଭୋରେ
ଗାଉଛି ସଙ୍ଗୀତ କଳନାଦିନୀ । ୩ ।

ଗାଏ ଏ ମାଧୁରୀ ଦେଖି ଆନନ୍ଦେ
ଗଗନେ ଚକୋର ମଧୁରଛନ୍ଦେ
ହସନ୍ତି ପୁଳିନେ ଲତା ଦୋଳାସନେ
ଆନନ୍ଦେ କୁସୁମେ ମଧୁହାସିନୀ । ୪ ।

□□

# କୌମାର ପୂର୍ଣ୍ଣିମା - ଅର୍ଦ୍ଧରାତ୍ର

(କଳହଂସ କେଦାର)

ଖେଳେ କି ରଙ୍ଗେ ଆଜି ଶୋଭା ଲହରୀ,
ଭାବୁକ ଜନ ମନ-ରତନ ହରି ଯେ;
ଦେଖିଛି କେତେ ଶୋଭା ମୋର ନୟନ,
ଏ ମଧୁଛବି କରି ନାହିଁ ଦର୍ଶନ ଯେ । ୧ ।

ସୁନିର୍ମଳ ପ୍ରଶାନ୍ତ ନୀଳଗଗନ,
ମଧ୍ୟରେ ପୂର୍ଣ୍ଣଇନ୍ଦୁ କିବା ଶୋଭନ ଯେ;
ଇନ୍ଦୁ ସ୍ୱଦୂରେ ଲୁଚି ତାରକାପନ୍ତି,
ଲାଜେ ଦେଖନ୍ତି ପଡି ସୁରମ୍ୟ କାନ୍ତି ଯେ । ୨ ।

ଢ଼ାଳଇ ସୁଧାକର କର-ପୀୟୁଷ,
ହସଇ ମହାନନ୍ଦେ ଦିଶ ବିଦିଶ ଯେ,
'ଚନ୍ଦ୍ରଉଦିଆ' ଦୀପ ଜଳେ କି ନଭେ,
ଆଲୋକେ ହସ ହସ ଧରା ନୀରବେ ଯେ । ୩ ।

ଅବା ଗଢ଼ିଣ ବିହି ରଜତଥାଳୀ,
ତଥି ଅନ୍ତରେ ପୁଣି ପାରଦ ବୋଳି ଯେ;
ରସାଣି, ରଖିଛନ୍ତି ତହିଁ ପୀୟୁଷ,
ଦରଶନେ ମୋହିତ ହୁଏ ମାନସ ଯେ । ୪ ।
ପିନ୍ଧିଛି ବସୁନ୍ଧରା ଶୁଭ୍ରବସନ,
ଅବା ଲେପିଛି ହୃଦେ ସିତ ଚନ୍ଦନ ଯେ;
ଅଥବା କରୁ ଜ୍ୟୋସ୍ନା-ଅମୃତ ପାନ,
ଲଭିଲା ତାରକାନ୍ତି ମନମୋହନ ଯେ । ୫ ।

କଳଙ୍କେ ! ବୃଥା ଆଜି ତବ ପ୍ରୟାସ,
ନାହିଁ ଶକତି ତବ ବୃଥା ସାହସ ଯେ;
ଅନୁପମ ଏ ଛବି ଅଟେ ବିଶ୍ୱର,
ଖୋଲିଦେଲା ବିଧାତା ଶୋଭା ଭଣ୍ଡାର ଯେ । ୬ ।

ପ୍ରଫୁଲ୍ଲ କୁମୁଦିନୀ ସରସୀ ନୀରେ,
ପ୍ରାଣବଲ୍ଲଭ ଶୋଭା ଦରଶନରେ ଯେ;
ଖେଳଇ ଭେକ ଲମ୍ଫ ପ୍ରଦାନକରି,
ତୀରପାଦ ଯେ ଖେଳେ ପ୍ରଭାଲହରୀ ଯେ । ୭ ।

ଦାଡିମ୍ବବୃକ୍ଷେ ପଡି ଏ ମଧୁକର,
ଦିଶଇ ଝକଝକ କି ମନୋହର ଯେ
(କିବା) ଫଳିଛି ଥୋପି ଥୋପି ମୁକୁତାଫଳ,
କାନ୍ତି ସୁଷମା ତାର ଅତି ମଞ୍ଜୁଳ ଯେ । ୮ ।

ମହୀରୁହ ସମୂହ ହୋଇଣ ସ୍ଥିର,
ରଜତଜଳେ ରଞ୍ଜୁଛନ୍ତି ପତର ଯେ;
ଶୁଭଇ ସୁମଧୁର ଝିଲ୍ଲିନିସ୍ୱନ,
ନିଶା-କୁସୁମ ପ୍ରଫୁଲ୍ଲିତ ଆନନ ଯେ । ୯ ।

ହସେ ରଜନୀଗନ୍ଧା ଆନନ୍ଦ ଭରେ,
ମୃଦୁ ସୁବାସ ଚହଟଇ ମଧୁରେ ଯେ;
କ୍ରୀଡା କରନ୍ତି ପଥେ ବାଳକଗଣ,
ସୁମଧୁରେ ସଙ୍ଗୀତ କରି ଗାୟନ ଯେ । ୧୦ ।

ପାଦପଛାୟା ଶଶିକରେ ଚିତ୍ରିତ,
ପାଦପତଳ ଆହା କେଡେ ଶୋଭିତ ଯେ;
ଅୟି ଦେବୀ କମଳେ କରୁଣାମୟି !
(ଆଜି) ତବ ଶୁଭାଗମନେ ହସଇ ମହୀ ମା ! । ୧୧ ।

□□

## ହେମନ୍ତ

(କାମୋଦ-ଆଠତାଳି)

ରମ୍ୟ ଶାରଦ ଅନ୍ତେ ଉପଗତ ଜଗତେ
ଉତ୍ସାହମଦେ ମତ୍ତ ହେମନ୍ତ ହେ । ପଦ ।

ହିମ-ମୁକୁତା ହାର ଦିଶଇ କି ସୁନ୍ଦର
ପିନ୍ଧିଛି ଶ୍ୟାମ ଅଙ୍ଗେ ଜଗତ ହେ । ୧ ।

ବହେ ଧୀରେ ଉତ୍ତର ଦିଗୁଁ ଶୀତ ସମୀର
ପରଶେ ଅଙ୍ଗ ଶୀତେ ଆରତ ହେ । ୨ ।

ତେଜି ଅନିଳ ଜଳ ଆଦରିଲେ ଅନଳ
କଳେ ବସନେ ଅଙ୍ଗ ବରିତ ହେ । ୩ ।

ଦିଶେ ରୁଚିରତର ପକ୍ୱ ଧାନ୍ୟ କେଦାର
ଦେଖି ନୟନ ମନ ମୋହିତ ହେ । ୪ ।

ଶସ୍ୟ କାଟନ୍ତି ସୁଖେ ମହାନନ୍ଦେ କୃଷକେ
ଉତ୍ସାହଭରେ ହୋଇ ପ୍ରମତ୍ତ ହେ । ୫ ।

କମଳିନୀ ସଳିଳେ ଦଗ୍ଧ ହେଲା ଆକୁଳେ
ହେଉ ତା ଶିରେ ହିମ ପତିତ ହେ । ୬ ।

ହତଶିରୀ ନଳିନ ବଦନ ଦରଶନ
କରି ନଳିନୀ କାନ୍ତ ବ୍ୟଥିତ ହେ । ୭ ।

କଦମ୍ବ ଟମରସ ଭକ୍ଷି ମହାହରଷ
ନିଶିରେ ରଣଘଣ୍ଟା ପ୍ରମତ୍ତ ହେ । ୮ ।

ତାର ବିକଟସ୍ୱନେ ଭୀତି ଉପୁଜେ ମନେ
ସେ ରାବେ ନଭ ହୁଏ କମ୍ପିତ ହେ । ୯ ।

ବିହରିଲା ରଙ୍ଗରେ ବେନି ଜାୟା ସଙ୍ଗରେ
ଚଟକ ମାତି ପ୍ରେମେ ନିରତ ହେ । ୧୦ ।

ପ୍ରଭାତେ ନରମାନେ ରତ ହରିପୂଜନେ
ଶଙ୍ଖନାଦରେ ଦିଗ ପୂରିତ ହେ । ୧୧ ।

□□

## କୌଣସି ରମଣୀ ପ୍ରୀତି

(ଭୈରବୀ - ଝୁଲା)

କି ଘେନି ରେ ବାମା ! ଦେଲୁ କଟାକ୍ଷ ଢ଼ାଳି,
ମିଶାଇ ହସ-ପୀୟୂଷ, ମନେ କି ଭାଳି । ପଦ ।

ନୁହେ ଏ ଉଚିତ ତୋର
ମାନସେ କର ବିଗ୍ଭର
ନୁହଇଁ ମୁଁ ତୋର ଏହି
କଟାକ୍ଷ ଭଳି । ୧ ।

ତୋର ଏ କୁଟିଳ ଭଙ୍ଗି
ନୁହେ ମୋ କାମନାସଙ୍ଗୀ
ନ ପଡେ ତୋ ହାସେ
ପ୍ରତିହାସ ଉଛୁଳି । ୨ ।

ତୋ ମୃଦୁ କୁଟିଳ ହାସ
କରି ଦେଲାଣି ପ୍ରକାଶ
ଆଞ୍ଚାତେ ଲେପୁଛୁ
ନିଜ ବଦନେ କାକି । ୩ ।

ପୋଷିଛୁ ଏ କାଳଫଣୀ
ସୁଧାଭ୍ରମେ ହେଉ -
ଅଛୁ ଗରଳ ବୋଲି । ୪ ।

ଛାଡ ଏ ପାପ ବାସନା;
କା ଭୁଜଙ୍ଗେ ରସ ନା,
ପତି ପଦ ସୁଖ -
କର ସ୍ୱରଗୁଁ ବଳି । ୫ ।

□□

## ଲକ୍ଷ୍ମଣପ୍ରତି ରାମଚନ୍ଦ୍ରଙ୍କର ଉକ୍ତି

(ରାଗ ପୁରୀ - ଆଦିତାଳ)

ଉଲ୍ଲସିତ ହେଲା ପ୍ରାଣ ହେ ଲକ୍ଷ୍ମଣ
ଜୀବନ-ଅଇରୀ ସମ୍ପଦ ବଇରୀ
ମରିବାରୁ ଲଙ୍କରାଣ ହେ । ପଦ ।
ଗହନ ଭେଦିଣ ସାଗର ଲଙ୍ଘିଣ
ସହିଲୁ କେତେ କଷଣ । ୧ ।

ହୋଇଦୀନ ଅତି କରୁଥିଲୁ ନିତି
ଶୋକ-ସିନ୍ଧୁ ସନ୍ତରଣ । ୨ ।

ସେ ଶ୍ରମ ସକଳ ହେଲାତ ସଫଳ
ପୁଲକିତ ହେଲା ମନ । ୩ ।

ବୃଥାମଦେ ମାତି ମୂଢ଼ ଲଙ୍କପତି
ନେଲା ଜାନକୀ ହରିଣ । ୪ ।

ପରନାରୀ ଲୋଭ କରି କେଉଁ ଲାଭ
ଗଲା ଶମନ ସଦନ । ୫ ।

□□

## କହ ମା !

(କଳହଂସ କେଦାର)

କହ ମା ! ବ୍ରହ୍ମମୟୀ ବ୍ରହ୍ମବାଦିନୀ,
ହରାଇ କିମ୍ପା ତବ ପଦ-ନଳିନୀ ଗୋ,
ଦ୍ୱିଜସନ୍ତାନେ ଆଜି ଭବ-କାନନେ
ଭ୍ରମନ୍ତି ବଣା ହୋଇ ବ୍ୟଥିତ ମନେ ମା । ୧ ।

ଅଜ୍ଞାନ-ଅନ୍ଧକାରେ ଛନ୍ତି ମଗନ
ହରାଇ ଜ୍ଞାନାଲୋକ ମାନ-ରତନ ଗୋ,
ମାତିଣ ବୃଥା ମଦେ ନାମ-ସମ୍ପଦେ
ପଦ ପଦକେ ପଡୁଛନ୍ତି ବିପଦେ ଗୋ । ୨ ।

ହରାଇ ଶ୍ରଦ୍ଧା ଦୟା କ୍ଷମା-ରତନ
ହରାଇ ବୁଦ୍ଧି ସିଦ୍ଧି ସ୍ମୃତି ଯତନ ଗୋ,
ତେଜିଣ ଶମ ଦମ ବେଦପଠନ
ଷଡରିପୁ-ଶାସନେ ଅଥୟମନ ଗୋ । ୩ ।

ଭୁଲିଣ ପର ଉପକାର ମହିମା,
ହରାଇ ମନୁ ମାନ ଜ୍ଞାନ-ଗାରିମା ଗୋ,
ଭ୍ରମୁଅଛନ୍ତି ଦୀନହୀନ ବେଶରେ
ମାୟା-ମୃଗତୃଷ୍ଣିକା ଦରଶନରେ ଗୋ । ୪ ।

ନାହିଁ କି ମାତ ! ଆଉ ଭାଗ୍ୟେ ସୁଦଶା !
ନ ପୂରିବ କି ହୃଦ-ପୋଷିତ ଆଶା ? ଗୋ,
ନ ହେବ କି ଭୂଦେବ ନାମ ସଫଳ
ନ ହେବେ କି ମା ! ଦ୍ୱିଜେ ଯଶସମ୍ବଳ । ୫ ।

ꝏ

# କୌଣସି ଲଳନାପ୍ରୀତି

(ଲଳିତବସନ୍ତ - ଆଠତାଳି)

ରେ ଲଳନା, କି ଘେନି ଏତେ ଛଳନା,
ତୋ ହାସରେ ପରାଜିତ ମୋ କଳନା । ପଦ ।

ରୋପିଣ ବିଷ-ବଲ୍ଲରୀ ସିଞ୍ଚୁଛୁ ସ୍ନେହ-ବାରି
ବୃଥା ଅଟେ ସିନା ତୋର ଏ ଲାଳନା । ୧ ।

ନ ଜାଣୁ କି ଶିରୀଷାଙ୍ଗୀ (ତୋ) ନୟନସଙ୍ଗୀ ଭୁଜଙ୍ଗୀ
(ତୋର) ଜୀବନେ ଦଂଶୁଛି ଲଭି ତୋ ଘଳନା । ୨ ।

ରଖିଛି ହୃଦଭଣ୍ଡାରେ ସଦ୍‌ଧନ ମୁଁ ଆଦରେ
ବାସନା-ଅନଳ ତହିଁ ତୁ ଜ୍ୱାଳନା । ୩ ।

ରାଜସ ମାନସ ବିକା ମାୟା ମୋହ-ମରୀଚିକା
ପରକାଶି ମନ ମୃଗକୁ ଛଳନା । ୪ ।

□□

# ବିରହେ

(ଝୁଲା "କେତେ କାଳ ହେଲା ଦେଖି ନାହିଁ ସହି" । ବୃତ୍ତେ ।)

କହ କହ ବନ୍ଧୁ ! ବାରେ ଦୟା ବହି,
ମୋର ହୃଦନିଧି କାହିଁଛନ୍ତି ରହି । ପଦ ।

ବକୁଳିତ ରସାଳ ଡାଳେ ବସି କୋକିଳ
ପରିହାସ କିମ୍ବା କରି "କୁହୁ କୁହୁ" ।
(ଶୋକ) କହ କହ ଡାକୁଅଛି ମୁହିଁ ।୧ ।

ହରାଇଣ ରତନ ବିଷାଦିତ ମୋ ମନ
ମଣି ହରାଇଲା ଫଣୀ ପରି ଆଜି
ଏ ଜୀବନ ଭାର ନୁହେ ସହି । ୨ ।

ବିହରିଣ ଆକାଶେ ବୁଲୁଚ ଦେଶେ ଦେଶେ
ଦେଖୁଥିବୁ ପରା ନିଖିଳ ଭୁବନ
ସେ ସୌମ୍ୟଛବିକି ଦେଖି ନାହିଁ । ୩ ।

ନ କରି ପରିହାସ          ସଦୟଗୀର ଭାଷ
ଝୁରୁଅଛି ମନ ଥରୁଛି ହୃଦୟ
କରୁଛି ବିନତି ପ୍ରିୟ ଭାଇ । ୪ ।

□□

## ପୃଥ୍ୱୀରାଜ ପ୍ରତି

("ଗୋ ମଧୁମାସରେ ଆସ ମଧୁ -" ବୃତ୍ତେ ।)

ହେ ମନମୋହନ,          ତବ ଯଶ-କେତନ
ଧନ୍ୟ ବୀର ପୃଥ୍ୱୀରାଜ          ଧନ୍ୟ ତବ ଜୀବନ । ପଦ ।

ଅମୂଲ୍ୟ ସମ୍ପଦ ତବ ନାମ ରତନ
ହୃଦ ପଦକରେ ଝଲି ଦିଶେ ଶୋଭନ
ତବ ନାମ ସ୍ମରଣେ          ତବ ଗୁଣ ଗାୟନେ
କଲପନା-ନୟନେ          ତବ ରୂପ ଦର୍ଶନେ
ଇତିହାସ ବଦନେ          ତବ ବାଣୀ ଶ୍ରବଣେ
ଉତ୍‌ଫୁଲ୍ଲ ହୁଏ ଆଜି ହୃଦ-କାନନ । ୧ ।

ଧିକ ଜୟଚନ୍ଦ୍ର ପୁଣି ଧିକ ସେ ଜନ
"ଜୟଚନ୍ଦ୍ର" ନାମ ଯେହୁ କଲା ପ୍ରଦାନ
ପାଶୋରି ନିଜକୁଳ          ତେଜିଣ ବୁଦ୍ଧି ବଳ
ମାତି ମାତ୍ସର୍ଯ୍ୟେ, ହୋଇ          ଯବନ ସଙ୍ଗେ ମେଳ
କରିଣ କଳୁଷିତ          ପବିତ୍ର କ୍ଷତ୍ରି କୁଳ
ରସନା କଲା ନିଜ କରେ ଛେଦନ । ୨ ।

ଯବନ ସଙ୍ଗତେ ଯୁଦ୍ଧେ ହେଉଁ ପ୍ରବେଶ
ବୀରେନ୍ଦ୍ର ଅଗ୍ରଣୀ ! ହେଲ ଯୁଦ୍ଧେ ଆବେଶ
ହାରି ଅରି ସମରେ          ଶୋଇଲେ ଅବନୀରେ
ହୋଇ କରୁଣାବଶ          ନ ନାଶି ଜୀବନରେ
ଗର୍ବ କଲ ଖରବ          ବୀର ବାହୁବଳରେ
ଦୋଳାଇଲ ଗଳାରେ ମନ-ରତନ । ୩ ।

ପୁଣି ଯହୁଁ ଉପଗତ ହେଲା ଯବନ
ବଜାଇଲ ବୀରବାଜା ସାଜି ସଘନ
ଶୁଣି ବୀରବାଜଣା ହେଲା ତା ବୁଦ୍ଧି ବଣା
କୁଟୀଳତା-ଅଗଦେ ହେଲା ବିନତଫଣା
ଦଂଶିଲା ଗୋପନରେ ନାହିଁ ତୁମ୍ଭଙ୍କୁ ଜଣା
ତେଜିଲ ମାତି ଯୁଦ୍ଧେ ବୀର ଜୀବନ । ୪ ।

ଯାବତ ରାଜିବେ ନଭେ ଶଶୀ ତପନ
ତାବତ ଘୋଷିବ ତବ ଯଶ ଭୁବନ
(ଆଜି) ମେଘମନ୍ଦ୍ରନାଦରେ ଗାଉଛି ହେମଗିରି
ତବ ଗାମ୍ଭୀର୍ଯ୍ୟଛବି ଯଶରାଶି-ସୁମରି
କାନ୍ଦୁଛନ୍ତି ଜାହ୍ନବୀ ବିଷାଦେ ଝୁରି ଝୁରି
ମଳିନ ଦୁଃଖେ ମାତୃଭୂମି ବଦନ । ୫ ।

□□

## କୌଣସି ବନ୍ଧୁପ୍ରତି

(ଝୁଲା)

କିମ୍ପା ସଖା ! କାଳିମାଳ ହାରଛଳେ ଗଳେ ଗଳାଇଲ ହେ,
କାଳଭୁଜଙ୍ଗିନୀ ମୁଖ ଚୁମ୍ବନେ ମାନସ ବଳାଇଲ ହେ । ପଦ ।

ହରିଣୀର* ରୂପ ଦେଖି ଭୋଳରେ
ବସାଇଲ କିମ୍ପା ନିଜ କୋଳରେ
ହୃଦହାର ନେଇ ତାର ହୃଦରେ
ସ୍ନେହଭରେ କିମ୍ପା ଦୋଳାଇଲ ହେ । ୧ ।

କଣ୍ଟଭ୍ରମେ ଫେନପୁଞ୍ଜ ଦର୍ଶନେ
ସନ୍ତରିଲ ବିଷମୟ ଜୀବନେ
ଭେକ ସଙ୍ଗେ ମୋହମୟ ଜୀବନେ
ମାନସ-ଶଫରୀ ଖେଳାଇଲ ହେ । ୨ ।

ଦିଶେ ଆଜି ତବ ଅଙ୍ଗ ମଳିନ
ଫିକା ଅବସାଦେ ମୁଖ-ନଳିନ
ଲଘି "ନ୍ୟାୟବ୍ରତ" ସତ୍ୟବଚନ
କିମ୍ପା ମୋ ମାନସ ଛଳାଇଲ ହେ । ୩ ।

* ହରିଣୀ-ବାନରୀ

# ପୁତ୍ରଶୋକେ ସୁଭଦ୍ରାଙ୍କର ବିଳାପ

(ରାଗ ପଞ୍ଚମବରାଡି - ତ୍ରିପୁଟା)

ପାହିଲା କି ଯୋଗେ ନିଶା ଆସିଲା କି ଯୋଗେ ଉଷା
କି ଯୋଗେ ଉଦିତ ହେଲେ ରବି,
ଫଣୀ ହେଲା ମଣିହରା ତପୀହ୍ରଦ ପାପେ ଭରା
କୁସୁମଶିରେ ପଡିଲା ପବି ରେ । ପ୍ରାଣଧନ ।

ଭାଙ୍ଗି ଯାଉଅଛି ହୃଦ ମୋର
ନ ଦେଖି ଚନ୍ଦ୍ରବଦନ ତୋର
ଅନ୍ଧକାର ଦଶଦିଶ ଶିରରେ ଭାର ଆକାଶ
ହଳାହଳମୟ ଏ ସଂସାର ରେ । ୧ ।

ଆହା କି ରୁଚିରତର ଶାଳପ୍ରାଂଶୁ ବାହୁ ତୋର
ସୁରମ୍ୟ ବିଶାଳ ବକ୍ଷସ୍ଥଳ,
ରମ୍ୟ ବଦନ ସାରସ ରଙ୍ଗାଧରେ ମୃଦୁହାସ
ଦେଖି ହୁଏ ପରାଣ ଶୀତଳ ରେ । ପ୍ରାଣଧନ ।
ଦନ୍ତୀ-ଦନ୍ତପଲ୍ୟଙ୍କ ତେଜିଲୁ
କେଉଁ ଦୋଷେ ମୋ ଅଙ୍କ ବର୍ଜିଲୁ
ମନେ ଧରି କି ବିଚାର ବସୁମତୀ ଜନନୀର
ଧୂଳିମୟ ଅଙ୍କରେ ଶୋଇଲୁ ରେ । ୨ ।

ଦରଶନେ ମୋ ନୟନେ ଶାନ୍ତି ଉପୁଜାଏ ମନେ
ଯେଉଁ ଅଙ୍ଗେ ସୁଗନ୍ଧ ଚନ୍ଦନ,
ତା ବଦଳେ ସେହି ଅଙ୍ଗେ ଆହା ଆଜି ଧୂଳି ସଙ୍ଗେ
ହୋଇଥିବ ରୁଧିର ଲେପନ ରେ । ପ୍ରାଣଧନ ।
ଦିଶୁଅଛି ସେ ବିକଳଛବି
ପଡୁନାହିଁ କିମ୍ବା ହୃଦେ ପବି
ଦେଖି ତୋର ଏ ମୂରତି ଧରିବି କେସନେ ଧୃତି
ପାଷାଣ ହେଲେତ ଯିବ ଦ୍ରବି ରେ । ୩ ।

କି ଶୋଭା ହୁଏ ସଞ୍ଚିତ          ବାହୁ ପାର୍ଶ୍ୱ ସୁକୁଞ୍ଚିତ
କରୁ ଯେବେ ଧନୁ ଆମଞ୍ଚନ,
ସେକାଳେ ଗଣ୍ଡରଙ୍ଗିମା          ପ୍ରକାଶେ କିବା ସୁଷମା
ଦେଖାଇଣ ତରଙ୍ଗ ଲାଞ୍ଛନ ରେ । ପ୍ରାଣଧନ ।
କାହିଁ ଗଲା ଆଜି ସେ ସକଳ
ହୋଇଥିବ ସେ ବାହୁ ଶିଥିଳ
ଫିକା ସେ ଗଣ୍ଡ ମଣ୍ଡଳ          ବିକଳ ହେମକୁଣ୍ଡଳ
ଶୁଖିଥିବ ବଦନ-କମଳ ରେ । ୪ ।

ହୋଇ ବୀରତାବିଭୋଳ          ଖେଳିଲୁ ସମର ଖେଳ
ସୁକୁମାର ଚଉଦବରଷେ,
ଚାଲିଗଲୁ ଭବପାରେ          ନ ଚାହିଁଲୁ ଫେରି ଥରେ
ଉତ୍ତରା ଶୋକସାଗରେ ଭାସେ ରେ । ଅଭିମନ୍ୟୁ ।
ଉଜ୍ଜ୍ୱଳେ ଜଳଇ ଅନୁକ୍ଷଣେ
ଉତ୍ସାହ-ଆଲୋକ ଯେ ଭବନେ
ବିରାଜନ୍ତି ଯହିଁ ଇନ୍ଦ୍ର          ସୁରଗୁରୁ ରବି ଚନ୍ଦ୍ର
ବସ ଯାଇ ସେ ସୁରସଦନେ ରେ । ୫ ।

❑❑

## ଦୁଷ୍ମନ୍ତପ୍ରତି ଶକୁନ୍ତଳା

(ସାବେରୀ - ଆଠତାଳି)

ଜୀବେଶ୍ୱର ହେ, କେଉଁ ଦୋଷେ ଆଜି ଦାସୀ
ହେଲା ମନୁ ଦୂର । ପଦ

ତପୋବନେ ମାଳିନୀପୁଳିନେ
ଥିଲି ସଖୀଙ୍କ ସଙ୍ଗେ ବିଜନେ
ମନ-ଧନ ମଧୁର ବଚନେ
ହରିନେଲ ଚୂର କରି
ହୃଦୟ-ଭଣ୍ଡାର । ୧ ।

ମୁଁ ଯେ ସରଳା ତାପସବାଳା
କି ଜାଣଇଁ ତବ କୁଟଳୀଳା

ସମର୍ପିଲ ହୋଇଣ ବିହ୍ୱଳା
ଲତାକୁଞ୍ଜେ ହୃଦ-ଧନ
ତବ ଶ୍ରୀଛାମୁର । ୨ ।

ଯେବେ ହେଲି ଶ୍ରୀପଦ ସେବିକା
ତବ ନାମ ଅଙ୍କିତ ମୁଦ୍ରିକା
ପିନ୍ଧାଇଲ ସ୍ନେହଭରେ
କରେ ଏ ଦାସୀର । ୩ ।

କାହିଁ ସେ ମୁଦ୍ରିକା ହରାଇଲି
ଏବେ ପୁଣି ଶ୍ରୀପଦ ତେଜିଲି
ପୁଣି ସଖୀଙ୍କ ସଙ୍ଗ ଛାଡ଼ିଲି
କଳଙ୍କିନୀ ବାଦେ ହେଲି
ଛାମୁରୁ ଅନ୍ତର । ୪ ।

□□

## ଶିଶିର

(ବେହାଗ - ତାଳ ଯତ)

ପ୍ରବେଶ ଶିଶିର ଜଗତେ ହେମନ୍ତ ଅନ୍ତେ
କମ୍ପଇ ଦରିଦ୍ରତନୁ ଶୀତ ଆରତେ । ପଦ ।

ଶିଶିର ଝରି ନିଶିରେ ଖେଳି ପତ୍ରୁ ପତରେ
ପରକାଶେ ତାରକାନ୍ତି ଶଶିକର ସମ୍ପାତେ । ୧ ।

ଶିଶିରବିନ୍ଦୁର କାନ୍ତି ନିନ୍ଦଇ ମୁକୁତାପନ୍ତି
ହସହସ ହସେ ଶ୍ୟାମ ଦୂର୍ବାଦଳ ପ୍ରଭାତେ । ୨ ।

ଜଳ ସ୍ଥଳ ବନ ଗିରି ଅଛି କୁହେଳି ଆବରି
ପରଶେ ନୀର କରକା ସମ ହୁଏ ପରତେ । ୩ ।

'ଫୁଲଚୁଙ୍ଗି' ହରଷରେ ରମ୍ଭାପତରେ ଶିଶିରେ
ଅବଗାହେ ରମ୍ୟତନୁ ରବିକର ସମ୍ପାତେ । ୪ ।

କରି କୁସୁମବିହାର        କରେ ମଧୁରେ ଝଙ୍କାର
ମଧୁମକ୍ଷିକା ଭ୍ରମରୀ        ବନେ ଅନୁବରତେ । ୫ ।

ଶୁଭଇ ଅସି ପତର        ଯନ୍ତରଧ୍ୱନି ମଧୁର
ଖେଳଇ ଶୀତସମୀର        ଧୀରେଧୀରେ ନିରତେ । ୬ ।

ମିହିର ସଙ୍ଗେ ଶିଶିର        ନିରତେ କରେ ସମର
ଦୁହେଁ ହେବେ ପରାଜିତ        ମଧୁମୟ ବସନ୍ତେ । ୭ ।

❑❑

## ମୂଢ଼ ମନ

(ପୂରବୀ - ଆଠତାଳି)

ମୂଢ଼ ମନ, (କିମ୍ପା) ପାପ-ପଙ୍କେ ସଦା ନିମଗନ ରେ । ପଦ ।

ଘେନିଣ ଗିରରେ ଯାହାର ଆଦେଶ,
ଧରାଧାମେ ତୁହି ହୋଇଛୁ ପ୍ରବେଶ,
ହଜାଇଲୁ ମଦେ ହୋଇଣ ଆବେଶ,
ତାଙ୍କରି ନାମ-ରତନ ରେ । ୧ ।

ଯେ ତୋତେ ରସନା କରିଛି ପ୍ରଦାନ,
ନ କଲୁ ତୁ ବାରେ ତାର ଯଶୋଗାନ,
ସେ ରମ୍ୟମୂରତି ନ କଲୁ ଦର୍ଶନ,
ବହି ଅମୃତ ନୟନ ରେ । ୨ ।

ଘେନି ଦିବ୍ୟଶ୍ରୁତି ନ ଶୁଣିଲୁ, ବାରେ,
ସେ ଯଶସଙ୍ଗୀତ ବଂଶୀ ମଧୁସ୍ୱରେ,
ଲଳିତ ବସନ୍ତେ ମଧୁ ବସନ୍ତରେ,
କରୁଛି କୋକିଳ ଗାନ ରେ । ୩ ।

ବହିଅଛୁ କିମ୍ପା ବୃଥା ଏ ନାସିକା,
ଚିହ୍ନି ନ ପାରିଲୁ ଆଘ୍ରାଣି ମଲ୍ଲିକା,
ପ୍ରେମ-ସୁଧାମୟ ସେ ଶୁଭ୍ରକଳିକା,
ରମ୍ୟ କୀରତି-ସୁମନ ରେ । ୪ ।

(ସେ) ଜଗତଜୀବନ ଚରଣ - ନଳିନ,
କୋମଳ ତୁଳପ କରି ବରଜନ,
ବିଷାଦ ମରୁରେ କରିଛୁ ଶୟନ,
କରି କାମ-ସୁରା ପାନରେ । ୫ ।

ଏ କଣ୍ଟକମୟ ପ୍ରାନ୍ତରେ ବାସ ନା,
ବିଷମୟ ରସେ ଗଳ ନା ରସନା,
ଅବସାଦମୟ ସାଗରେ ଭାସ ନା,
ଯାଅ ପ୍ରେମ-ଉପବନ ରେ । ୬ ।

□□

## ଭାରତ ଭାବନା

(ପଦ୍ମାବତୀପ୍ରତି ମାତୃପ୍ରିୟାର ଉକ୍ତି ।)

"ହସି ହସି ନବଛଇଲା'' ବୃତ୍ତେ ।)
କାନ୍ଦି କାନ୍ଦି ଆଜ ସଜନୀ ରେ;
ବିଷାଦେ ବ୍ୟଥିତା ଜନନୀରେ । ପଦ ।

ଛିନ୍ନ କରି ଆଜି ଏକତାପାଶ,
ଭାରତ ସନ୍ତାନେ ବିଳାସବଶ,
ନାହିଁ ବୁଦ୍ଧି ବଳ ଧୃତି ସାହସ,
ଶିଥିଳ ହୋଇଛି ଧମନୀ ରେ । ୧ ।

ହେଲେଣି ଅଜେୟ ବଚନବୀର,
ଭାଷନ୍ତି ସତତ ବ୍ୟଥିତ ଗୀର,
(ଯେସନେ) ଲହସ ଉଠଇ ଅବନୀରେ । ୨ ।

ଦେଖିଣ ଆଗରେ କର୍ମ୍ମ-କାନନ,
ଚଞ୍ଚଳ ନୟନ ଅସ୍ଥିର ମନ,
ନ ଭାଷନ୍ତି ଏହା କରି ଲୋକନ,
ବୀରବାଣୀ ବୀର-କାମିନୀ ରେ । ୩ ।

ଅମୂଲ୍ୟ ସମ୍ପଦ ଧର୍ମ-ରତନ,
କାଳ ରତ୍ନାକରେ ହେଲା ପତନ,
ନ କରନ୍ତି ସୁତେ ନବ ଯତନ,
ପାହି କି ଦୁଃଖ-ଯାମିନୀ ରେ । ୪ ।

□□

## ଦଶରଥଙ୍କର ପୁତ୍ରଶୋକ

(“ଅନା ଲୋ ମିତ କଦମ୍ବମୂଳେ ବସିଛି କାଳିଆ’’ । ବୃତ୍ତେ ।)

ରାମ ବିରହେ ପରାଣସଖି ! ବଞ୍ଚିବି କେସନେ,
ଭାର ଏ ଜୀବନ ନ ରୁଚଇ ମନ ଅଶନ ବସନେ । ପଦ ।

ରାମ ଗୁଣଗଣ ପଡଇ ମନେ,
ସେ ମଧୁମୂରତି ନାଚେ ନୟନେ,
ବଚନ-ଲହରୀ ଖେଳେ ଶ୍ରବଣେ,
ଶୟନେ ସ୍ୱପନେ । ୧ ।

ଆହା ସୀତେ ! ନାରୀମୁକୁଟମଣି,
ଆହା ମୋ ଲକ୍ଷ୍ମଣ ହୃଦୟମଣି,
ଦେଖିବି କି ଆଉ ସେ ରମ୍ୟ ସୌମ୍ୟ
ମୂରତି ନୟନେ । ୨ ।

ତେଜି ରାଜହର୍ମ୍ୟ ରାଜ ଅଶନ
ତେଜି ରାଜଭୂଷା ରାଜବସନ,
କି ଦୁଃଖରେ ଆହା କାଟିବେ ଦିନ,
(ସେ) ବିଜନ କାନନେ । ୩ ।
ମୃଗୟା ଭ୍ରମଣେ ଋଷିନନ୍ଦନ,
କରୀଭ୍ରମେ କରିଥିଲି ନିଧନ,
ଶାପ ଦେଲେ ଋଷି କୁପିତ ମନେ,
ଆକୁଳ ଜୀବନେ । ୪ ।

ବୋଇଲେ ସେ ତପୀ “ହେ ନରରାଣ,
ପୁତ୍ର ଶୋକେ କଲ ବ୍ୟଥିତ ପ୍ରାଣ,
ପୁତ୍ର ଶୋକାକୁଳେ ଶୋଇବ ଜାଣ,
ଅନ୍ତିମଶୟନେ’’। ୫ ।

ଫଳିଲା ଦେବୀ ଗୋ ଏବେ ସେ ଶାପ,
ଅସହ୍ୟ ହେଉଛି ଯାତନା ତାପ,
ଜଳେ ଭୀମବେଶେ ବିରହାନଳ,
ହୃଦୟ-କାନନେ । ୬ ।



# କୌଣସି ରମଣୀର ଭାରତ ଭାବନା

(ରାଗ ଖମ୍ବାଜ - ଲକ୍ଷ୍ନୌ ଠୁଂରି)

ଏହି କି ଭାରତ ଥିଲା ଝଙ୍କାରିତ
ଦିଗଦିଗନ୍ତରେ ଯାର ଯଶୋଗୀତି । ଘୋଷା ।
ଏହି କି ଜାହ୍ନବୀ କଲୁଷନାଶିନୀ
ବିଷ୍ଣୁପଦାମ୍ବୁଁ ସ୍ରବି କରେ ଗତି । ୧ ।

ଏ କି ହିମାଳୟ ଔଷଧ ଆଳୟ
ଠିଆ ହୋଇ ଦେଖୁଅଛି କାଳରୀତି । ୨ ।

କେମନ୍ତେ ହେ ବିଧି ! କରିବ ବିଶ୍ୱାସ
ଦେଖି ଭାରତର ଏ ଦୀନ ମୂରତି । ୩ ।

କାହିଁ ରାମଚନ୍ଦ୍ର ଭାରତନରେନ୍ଦ୍ର
ଭୂଷଣ ଯାହାର ଥିଲା ରାଜନୀତି । ୪ ।

କାହାନ୍ତି ଲକ୍ଷ୍ମଣ ଭରତ ଶତ୍ରୁଘ୍ନ
ଦିଅଇ ଯାହା ଯଶ ବୁଦ୍ଧି ବଳ ଧୃତି । ୫ ।
ପବିତ୍ର ଚରିତ୍ରା ପତି ପରାୟଣା
ଏ ଭାରତ ବକ୍ଷେ କାହିଁ ସୀତା ସତୀ । ୬ ।

ଯୁଧିଷ୍ଠିରାର୍ଜୁନ ବୀର ଭୀମସେନ
ମାଦ୍ରୀ ସୁତ ବେନି ଭାରତେ କାହାଁନ୍ତି । ୭ ।

କାହାନ୍ତି ସେ ବୀରେ ଦ୍ୱାପରେ ସମରେ
ପଣ କଲେ ନିଜ ଜୀବନ ସମ୍ପତି । ୮ ।

କାହିଁରେ ଭାରତେ ସତ୍ୟ ନ୍ୟାୟ ଧର୍ମ
ପାପ ତାପ ଆଜ ବିଜଡିତ ମତି । ୯ ।

ଭାରତେ ଔଷଧ ନିର୍ବୀର୍ଯ୍ୟ ବିଲୁପ୍ତ
ରୋଗ ଶୋକ ଭୟେ ସନ୍ତାପିତ ଅତି । ୧୦ ।

କାହିଁ ଭାରତର ଆଉ ସେ ସୁଦଶା
ନାହିଁ ନାହିଁ ଆଉ ସେ ସୌମ୍ୟମୂରତି । ୧୧ ।

କାହିଁ ରାଜନୀତି ଯାକୁ ଆଶା କରି
ପ୍ରଜାକୁଳ ସୁଖେ ସମୟ କଟାନ୍ତି । ୧୨ ।

ବୁଦ୍ଧି ବଳ ଧୃତି ଭ୍ରାତୃ-ପିତୃ-ଭକ୍ତି
ହଜାଇ ଦେଇଛି ଭାରତର ସ୍ମୃତି । ୧୩ ।

ପାଶୋରି ଅଛନ୍ତି ଭାରତ ରମଣୀ
'ପତିଧର୍ମ ପତି ଅବଳାର ଗତି' । ୧୪ ।

ନାହିଁରେ ବୀରତା ନାହିଁ ସେ ଧୀରତା
ନାହିଁ ବୁଦ୍ଧି ଧୃତି ଉତ୍ସାହ ଶକତି । ୧୫ ।

ଜ୍ଞାନ ଧର୍ମ ବୁଡ଼ି ବିଷାଦ-ପଙ୍କରେ
ଜଡ଼ିଣ ଭାରତ ସକ୍ତିହୀନ ଅତି । ୧୬ ।

ଚିରପରାଧୀନ ଭାରତ ଅବନୀ
ଦୁଃଖ ସରୋବରେ ଭାସୁଅଛି ନିତି । ୧୭ ।

ହେ ବିଧି ସତେ କି ଭାରତ କଷଣୁ
ଚିରକାଳ ପାଇଁ ନୋହିବ ମୁକତି । ୧୮ ।

କାନ୍ଦି କାନ୍ଦି ଆଉ ହୃଦ ନ ସମ୍ଭାଳେ
ନ ଯାଏ ଜୀବନ ନ ଯାଏ ବିପତ୍ତି । ୧୯ ।

କର କୃପା ନାଥ ! ଦିଅ ଜ୍ଞାନ ଧନ
ଲଭୁ ଏ ଭାରତ ପୂରୁବକୀରତି । ୨୦ ।

□□

## ଅଶୋକ ବନେ ସୀତାଙ୍କ ଭାବନା

(ରାଗ ଶୋକକାମୋଦି- ଆଦିତାଳ)

ହେ ଜୀବେଶ, ଆଜି ଭାସୁଅଛି ଶୋକସାଗରେ,
ହରାଇଣ ତବ ଚରଣ ଯୁଗଳ
ରହି ଏ ରାକ୍ଷସପୁରେ ହେ । ପଦ ।

ମୁଁ ଯେ ସତୀ ପତିବ୍ରତା ରମଣୀ
ପତି ପଦ ମୋ ଅଳଙ୍କାର ମଣି,
ଆଜି ଅଭାଗିନୀ ସେ ପଦ ହରାଇ
(ଦୁଃଖେ) ବସିଛି ତରୁତଳରେ ହେ । ୧ ।

ଆହା ତବ ସେ ମଧୁର ବଚନ
ଶୁଣି ପରାଣ ଆନନ୍ଦେ ମଗନ,
କ୍ଷଣକ ଭିତରେ ବୁଡ଼ିଗଲା ଆହା,
(ସବୁ) ଅତଳ କାଳ ଜଳରେ ହେ । ୨ ।

ସୂର୍ଯ୍ୟବଂଶ ସୁବିମଳ ଚନ୍ଦ୍ରମା
ଅଙ୍ଗେ ଲାଗିଲା କଳଙ୍କ-କାଳିମା,
ମୋହ ଛାର ପାଇଁ ସିନା ପ୍ରାଣନାଥ
(ତବ) ନିନ୍ଦା ରଟିବ ବିଶ୍ୱରେ ହେ । ୩ ।

ପାପମୟ ଏ ରାକ୍ଷସ ସଦନେ
ରହି, ପରାଣ ଧରିବି କେସନେ,
କ୍ରୂର ବିହି ଏହି କଳଙ୍କ ଗରଳ
(କିମ୍ବା) ଢାଳିଦେଲା ମୋର ଶିରେ ହେ । ୪ ।

❑❑

## ପଦ୍ମାବତୀପ୍ରତି ମାତୃପ୍ରିୟାର ଉକ୍ତି

(ଭାରତ ଭାବନା, ଦକ୍ଷିଣୀ ତ୍ରିପୁଟା)

ଏ ଘେନି, ଆଜ ସଜନୀ ରେ ; ଝୁରୁଛନ୍ତି ନିରନ୍ତରେ
ଆକୁଳେ ଜନନୀ ରେ । ପଦ ।

ନାହିଁ ପୂର୍ବ ଜ୍ଞାନ ଧନ ନାହିଁ ପୂର୍ବ ମାନ ରେ
ଧରମ ଉଦ୍ୟାନ ତୃଣେ ହୋଇଛି ଆଚ୍ଛନ୍ନ ରେ
ଶୁଣି ଦର୍ଦ୍ଦୁର ରବ, ପିକ ହେଲା ନୀରବ,
ପୁଷ୍ପହାସ ଗରବ, କରପାତେ ଖରବ
(ହେଲା) ନାରଖାର ସରବ, ସଉନ୍ଦର୍ଯ୍ୟ ବିଭବ । ୧ ।

ବୀର ପ୍ରସବିନୀ ନାମ ଲାଗେ ବିଷ ସମରେ
ତେଜିଲେ ସେ ଅରିନ୍ଦମସୁତେ ଧରାଧାମରେ
ଆଖଡା କ୍ଷେତ୍ରେ ଆଜି, ହସନ୍ତି ତରୁରାଜି
ଦେଖିଣ ଭାରତର, ନବସନ୍ତାନରାଜି
(ଆଜି) ବୀରେ ବୀରଧରମ ଅଛନ୍ତି ମନୁ ତେଜି । ୨ ।

କ୍ଷୁଧାରେ ସନ୍ତାନଗଣ ଆକୁଳିତ ପ୍ରାଣରେ
ସ୍ୱର୍ଣ୍ଣପ୍ରସୂ ନାମ ଆଜି ଶୁଭେ ଅକାରଣରେ
ନାହିଁ ଭାରତେ ଧନ, ନାହିଁ ଭାରତେ ଧାନ୍ୟ
ନାହିଁ ହେମ ରତନ, ଅମଳାନବସନ
ହୋଇଛି ଆଜି ଶୂନ୍ୟ ଏ ଭାରତ-ସଦନ । ୩ ।

(ଆଜି) ବୀରକନ୍ୟାମାନେ ବସି ଅଛନ୍ତି ମଉନେ ରେ
ମାତୃଦୁଃଖ ବିମୋଚନେ ନ ଭାବନ୍ତି ମନେ ରେ
କାନ୍ଦିଣ ଅଭିମାନେ, ପତି ପଦ-କମଳ
ଧରି ଧୁଅନ୍ତି ନାହିଁ, ଭାଳିଣ ଅଶ୍ରୁଜଳ
ନ ଜାଳନ୍ତି ହୃଦୟେ, ଅହଙ୍କାର-ଅନଳ । ୪ ।

❑❑

## ପରାଣ ଆକୁଳ

(ରାଗଶଙ୍କରାଭରଣ-ଆଠତାଳି)

ସନ୍ତରି ଭବ-ସାଗରେ ପାଉ ନାହିଁ କୂଳ
ହରି ହେ, ପରାଣ ଆକୁଳ । ପଦ ।

ଭବ-ସାଗର କି ନାଥ ! ଅସୀମ ଅତଳ
ପୂରିଛି ତବ ଅନନ୍ତ କୀରତି-ସଲିଳ ।୧ ।

ଦେଖିଣ କାଳ-ତରଙ୍ଗ ମାନସ ବିହ୍ୱଳ
ସ୍ତମ୍ଭିତ ହେଲିଣି ନାଥ ! ନାହିଁ ବୁଦ୍ଧି ବଳ ।୨ ।

ଦେଇ ନ ପାରିଲି ଭବହିତେ ଅଶ୍ରୁଜଳ
ଏଘେନି ସିନା ନିରତେ ମାନସ ଚଞ୍ଚଳ ।୩ ।

ସନ୍ତରିବି ଯାହାହେଉ ଜୀବ ଯେତେ କାଳ
ଦିଅ ବୁଦ୍ଧି ବଳ ପ୍ରଭୋ ! ଜୀବନସମ୍ବଳ ।୪ ।

❑❑

# ଅଶୀତିବର୍ଷ ବୟସ୍କ ବୃଦ୍ଧର ଅନୁଚିନ୍ତା

(ରାଗ ପଞ୍ଚମବରାଡୀ-ଆଠତାଳି)

ଜୀବାବସାନେ; ଚିନ୍ତା-ଘନ ଘୋଟିଛି, ମନ-ଗଗନେ ।ପଦ ।

ଜନମି ସଂସାରେ ମାତିଲି ଅସାରେ
ବୃଥା ଷଡରିପୁ କୁଶାସନେ,
ଧର୍ମରୁ ହୋଇ ବିରତ ହେଲି ସଦା ପାପେ ରତ
ନ ଘୋଷିଲି ବିଷ୍ଣୁ ନାମ ବଦନେ ।୧ ।

ଶୈଶବ କାଳରେ ଖେଳିଲି ଭୋଳରେ
ପଡି ବାଲ୍ୟଲୀଳା ପ୍ରଲୋଭନେ,
ଜୀବନର ମଧୁମାସେ ମାତି ବାସନାବିଳାସେ
ଆନନ୍ଦେ ଭ୍ରମିଲି ମଦ-ଉଦ୍ୟାନେ ।୨ ।

ବସନ୍ତ ଅନ୍ତରେ ଦେଶ ବିଦେଶରେ
ଭ୍ରମିଲି ମୁଁ ଧନ ଅରଜନେ,
ଏବେ ତନୁ ଜରାଜୀର୍ଣ୍ଣ ରୋଗେ ଶୋକେ ହେଲା ଶୀର୍ଣ୍ଣ
(ଓହୋ) ବିକରାଳ ଛବି ନାଚେ ନୟନେ ।୩ ।

ଦନ୍ତ ବିଗଳିତ କୁନ୍ତଳ ପଳିତ
ନାହିଁ ସୁଜ୍ୟୋତି ବେନି ନୟନେ,
ଚରମ ହେଲା ଶିଥିଳ, ବଚନ ହେଲା ଦୁର୍ବଳ
ନାହିଁ ବଳ ସରପର ପବନେ ।୪ ।

ମାନବଜୀବନ ମାୟାରେ ଆଚ୍ଛନ୍ନ
ନାହିଁ ସୁଖ ଶାନ୍ତି ରାତ୍ରଦିନେ,
ଆଶା-ମରୀଚିକାମୟ ସଦା ମାନବହୃଦୟ
ଜଳେ ନଇରାଶ୍ୟ-ବହ୍ନି ଜୀବନେ ।୫ ।



# ପ୍ରାର୍ଥନା

(କଳହଂସକେଦାର "ଶ୍ୟାମ ଶିଖଣ୍ଡିଚୂଳ" ବୃତ୍ତରେ)

ହେ ପିତା, ରଖ ତବ ପଦ ପ୍ରାନ୍ତରେ
ମାଗୁଅଛି କାତରେ । ପଦ ।
ଯେଉଁ ଆଦେଶ ଘେନି ଆସିଲି ମୁହିଁ,
ଭବେ ପାଳନ କରି ପାରିଲି ନାହିଁ । ମାଗୁ ।୧ ।

କାମ କ୍ରୋଧରେ ମୋର ଜଡ଼ିତ ମତି,
ପାପେ ମାତି ଲଭିଲି ଶେଷେ ଦୁର୍ଗତି । ମାଗୁ ।୨ ।

ସ୍ୱର୍ଣ୍ଣମୟୀ ବସୁଧା ବିଷ ସମାନ,
ବିକଳ ମନ ମୋର ଭରା ଜୀବନ । ମାଗୁ ।୪ ।

ପାପମୟ ଜଗତ ମୋର ନୟନ,
କରିବ ନାହିଁ ନାଥ ! ଆଉ ଦର୍ଶନ । ମାଗୁ ।୫ ।

ଆଦେଶ ନ ପାରିଲି କରି ପାଳନ,
କ୍ଷମା କର ଏ ଦୋଷ ଜଗଜ୍ଜୀବନ । ମାଗୁ ।୬ ।

ଯଥାର୍ଥ ପଥ ମୋତେ ନ ଗଲା ଜଣା,
ଭବ-ଗହନେ ନାଥ ! ହୋଇଛି ବଣା । ମାଗୁ ।୭ ।

ସମ୍ପୂର୍ଣ୍ଣ

# ଜମ୍ଭୁଷ୍ଠ ଉଚର ପରିଣାମ ।

ବାମଣ୍ଡା ରାଜଧାନୀ ଦେବଦୁର୍ଗ ନିବାସି

ଶର୍ମ୍ମା ଶ୍ରୀ ହରିହର ମହାପାତ୍ର

କର୍ତ୍ତୃକ ରଚିତ ।

Printed at the Sudhal Press

BAMRA

1910

ମୂଲ୍ୟ ଦୁଇପଇସା ମାତ୍ର ।

# ଉତ୍ସର୍ଗ

ଉତ୍କଳ ତଥା ଉତ୍କଳ ସାହିତ୍ୟ
ପ୍ରେମିକ, ବିବିଧ ସଦ୍‌ଗୁଣାକର
ପ୍ରଥିତଯଶା, ଶ୍ରୀଶ୍ରୀଶ୍ରୀ ବୃହତ୍‌ଖେମୁଣ୍ଡି
ଧରାଧୀଶ୍ୱର ବୀର ଶ୍ରୀ କୃପାମୟ
ଅନଙ୍ଗଭୀମ ଦେବ ଗଜପତି ମହାରାଜା
ମହୋଦୟ ଉଦାର ହୃଦୟେଷୁ ।
ସବିନୟ ପୁରଃସର ନିବେଦନ ମିଦଂ

ମହାରାଜା !
କ୍ଷୁଦ୍ର ପୁଷ୍ପଦଳ ଦେଇ ବିଭୁପଦ ତଳେ
ମୁକତି-ଆଶାୟୀ, ଭକ୍ତ ଭକ୍ତି-ଶ୍ରଦ୍ଧା ବଳେ;
ଭକ୍ତିର ଆଦର ଯେଣୁ ମହତ-ହୃଦୟେ,
ଭକ୍ତି ଉପାୟନ ମୋର ଘେନନ୍ତୁ ସଦୟେ

ତା ୫-୯-୧୯୧୦
ଦେବଗଡ-ବାମଣ୍ଡା

ଶ୍ରୀ ଛାମୁଙ୍କର ଅନୁଗ୍ରହାକାଂକ୍ଷୀ
ଶ୍ରୀ ହରିହର ମହାପାତ୍ର

ସରସ୍ୱତ୍ୟୈ ନମଃ

# ବିସ୍ମୃତିର ପରିଣାମ

ଆଗତ ବସନ୍ତଋତୁ ନବୀନ ହରଷେ
ହରଷ ଅବନୀ ନବ ପୀରତି ପରଶେ ।

ଲଳିତ ଲୀଳାରେ ମାତି ମଳୟ ସମୀର
ଏନବ ମାଧୁରୀ ମୋଦେ ଆନନ୍ଦେ ଅଧୀର ।

ଯୁବକ-ଯୁବତୀ-ଜନ-ମାନସ-ରଞ୍ଜନ
ଶୁଭଇ କୁସୁମ କୁଞ୍ଜେ ମଧୁପ ଗୁଞ୍ଜନ ।

ରସାଳ ନିକୁଞ୍ଜେ ମଞ୍ଜୁ ମଞ୍ଜରୀ-ସୁରସେ
ମାତି ପ୍ରୀତିଗାନେ ପିକ ରତ ପ୍ରୀତିବଶେ ।

ସେ ତାନ ଅନ୍ତରେ ଶୁଭେ ଶୁଭ ଉପଦେଶ
ଅମୃତ ପୀରତି ମୟ ଶାଶ୍ୱତ ଆଦେଶ ।

ଶୁଭଇ ଅବ୍ୟକ୍ତ ଭାଷେ "ହେମର୍ତ୍ତ୍ୟ ପ୍ରବାସୀ
ହୁଅହେ ଶାଶ୍ୱତ ଭକ୍ତ ମିଥ୍ୟା ମୋହନାଶି" ।

ସେ ନବ ଅମୃତମୟୀ ଘୋଷଣା ଉଦାର
ଶୁଣି କି ନବୀନ ପ୍ରେମେ ପ୍ରଫୁଲ୍ଲ ସଂସାର ?

ଏ ମଧୁର ମଧୁକାଳେ ଜାହ୍ନବୀ-ପୁଳିନେ
ତରୁତଳେ ଛନ୍ତି ମୁନି ବସି କୃଷ୍ଣାଜିନେ ।

ପବିତ୍ର ଜାହ୍ନବୀ ନୀରେ ଖେଳୁଛି ନୟନ
ପବିତ୍ର ତରଙ୍ଗେ ରଙ୍ଗେ ଖେଳୁଅଛି ମନ ।

ଶୋଭଇ ବିଶାଳ ବକ୍ଷେ ରୁଦ୍ରାକ୍ଷର ହାର
ମୁକତି ଧାମର କିବା ଭକତିର ଦ୍ୱାର ?

ସୁଦୀର୍ଘ ଶ୍ମଶ୍ରୁମଣ୍ଡଳ ବଦନ-ମଣ୍ଡନ
କି ଅବା ସେ ପୁଣ୍ୟ ପୁଞ୍ଜ ତ୍ରିତାପ-ଖଣ୍ଡନ ।

ସ୍କନ୍ଧଦେଶେ ଉପବୀତ ଦିଶେ ମନୋହର
କନକ-ଅଚଳୁ କିବା ଝରେ ପ୍ରେମଝର ?

ନିରେଖି ଜାହ୍ନବୀ ଶାନ୍ତ ପ୍ରସନ୍ନ-ବଦନ
ଭାଷେ କଲଧ୍ୱନି ବ୍ୟାଜେ ବିବିଧ ବଚନ ।

ଅତୀତର ଇତିହାସ, ବର୍ତ୍ତମାନ କଥା
ଭବିତବ୍ୟ ଅନୁମାନି ଗାଏ ମର୍ମବ୍ୟଥା ।

ନଶ୍ୱର ବିଶ୍ୱର ଚିତ୍ର ହୃଦ-ଦରପଣେ
ବିମ୍ବିତ ବିବିଧ ଲୀଳା ଦେଖାଏ ଯତନେ ।

ଏମନ୍ତ ସମୟେ ଆସି ପୃଷ୍ଠ ଦେଶେ ଉଭା
ଭକ୍ତିଭରେ ଯୁକ୍ତ କରେ କିଏ ଏହୁ ଯୁବା ?

ପିନ୍ଧି ଅଛନ୍ତି ତ୍ରିକଚ୍ଛେ କଷାୟ ବସନ
କଷା ବାସ ଉତ୍ତରୀୟ ଦିଶେ ସୁଶୋଭନ ।

କାନନ-କୁସୁମ ମାଳା ଦୋଳେ ଗଳଦେଶେ
ଆଗତ ଏ ଯୁବା କାହୁଁ ବ୍ରହ୍ମଚାରୀ ବେଶେ ।

ଦେଖିଲେ ସହସା ମୁନି ସେ ସୌମ୍ୟ ମୂରତି
ଭାଷିଲେ ସ୍ନିଗ୍ଧ ଗମ୍ଭୀରେ ଲଳିତ ଭାରତୀ ।

ସାଷ୍ଟାଙ୍ଗେ ପ୍ରଣମି ଯୁବା ମୁନିଙ୍କ ଚରଣେ
ଅବହିତ ନତ ହୃଦେ ମୁନିଙ୍କ ବଚନେ ।

ଭାଷନ୍ତି ମହର୍ଷି "ବତ୍ସ ! କର ବିଲୋକନ
ପୂତ ନାରୀ ଜାହ୍ନବୀର ଗତି ବିମୋହନ ।

କୁନ୍ଦେନ୍ଦୁ - ଗଞ୍ଜନ- କାନ୍ତି ନୟନ -ରଞ୍ଜନ
ପୁଣ୍ୟ ମୋତିମାଳ-ଗୁଚ୍ଛ ପରାଏ ଶୋଭନ ।

ଭାରତ-ବକ୍ଷ-ଶୋଭିନୀ କଲୁଷ ହାରିଣୀ
ମୁକ୍ତି ବିଧାୟିନୀ ହର-ଶିର-ବିହାରିଣୀ ।

ଶାନ୍ତି-ସ୍ୱରୂପିଣୀ ଏହି କଳ ନିନାଦିନୀ
ଭାରତ ମାତାର ଚିର-ବକ୍ଷ-ବିଳାସିନୀ ।

ଭାରତର ଅତୀତର ସମ୍ପଦ ଗରିମା
ଜାଣଇ ଜାହ୍ନବୀ ତାର ମହତୀ-ମହିମା ।

ଭାରତ ଗୌରବ ରବି ବ୍ରହ୍ମଋଷି ଗଣ
ସେବିଲେ ଭକତି ଭରେ ଜାହ୍ନବୀ ଚରଣ ।

ଜାହ୍ନବୀ-ଶୀକର-ପୂତ ମୃଦୁଲ ସମୀରେ
ଥିଲେ ବିମୋହିତ ତାର ସୁଧାମୟ ନୀରେ ।

ତଟେ ପର୍ଣ୍ଣ କୁଟି ରଚି ଯାପୁଥିଲେ ଦିନ
ଶୋଭୁଥିଲା ପୂତ ବେଶେ ସୁରମ୍ୟ ପୁଳିନ ।

ନିତି ନିତି ତୋଳୁଥିଲେ ଏଥି ବେଦଧ୍ୱନି
ଯା ଶ୍ରବଣେ ଉତ୍‌ଫୁଲ୍ଲିତ ନିଖିଳ ଅବନୀ ।

ତାପସ-ତନୟାଗଣ ଖେଳି ଏହା ତଟେ
ସୁଧାମୟ ସୁଶୀତଳ ବାରି ଘେନି ଘଟେ ।

କରିଥିଲେ ସ୍ନେହେ ଲତା ପାଦପେ ସେଚନ
ଭାଷି ପରସ୍ପରେ କେତେ ପୀରତି ବଚନ ।

କୁରଙ୍ଗମ-ଶିଶୁ ସଙ୍ଗେ ଖେଳି ନାନା ରଙ୍ଗେ
ଦୋଳୁଥିଲେ କୁତୁହଳେ ଆନନ୍ଦ ତରଙ୍ଗେ ।

ସମର-କେଶରୀ ଭାରତର ମହାବୀରେ
ପୁଷ୍ଟ କଲେ ବାହୁବଳ ଜାହ୍ନବୀର ନୀରେ ।

ଭୀଷଣ ସମର - ଅନ୍ତେ ଅରିନ୍ଦମ ବୃନ୍ଦ
ଏହା ନୀରେ ସନ୍ତୋଷନ୍ତି ସନ୍ତାପିତ ହୃଦ ।

ଆହା ! ହା ! ! ସେଦିନ ବସ୍ତୁ ଯାଇଅଛି-ଚାଲି
ଉଦ୍‌ବେଳିତ ହୃଦ ଆଜି ସେ ସମ୍ପଦ ଭାଳି ।

ବସନ୍ତ-କେଳି-ନିଳୟ ତପୋବନ ରାଜି
ମରୁଭୂମି ରୂପେ ଆହା ପରିଣତ ଆଜି ।

ନ ତୋଳେ ବସନ୍ତ ସଖା ବସନ୍ତ ରାଗିଣୀ
ନ ଖେଳେ କୁସୁମ-ହୃଦେ ପ୍ରୀତି ତରଙ୍ଗିଣୀ ।

ଆଜ୍ୟପୂତ ହୋମ-ଧୂମ-ରାଶି ନଭୋଦେଶେ ।
ନଖେଳେ ଭକତି ପ୍ରେମ ବିଲୋଳିତ ବେଶେ ।

ନ ହୁଅଇ ଏବେ ତହିଁ ବେଦ-ପାରାୟଣ
ନାହାନ୍ତି ଶୁକ, ସନକ, ସେ ବାଦରାୟଣ ।

ଜ୍ଞାନ-ମହୋଦଧି ସେହି ବ୍ରହ୍ମଋଷିଗଣ
ତେଜିଛନ୍ତି ଜାହ୍ନବୀର ପୁଳିନ-ଭ୍ରମଣ ।

ମୃଗଶିଶୁ ସଙ୍ଗେ ତପୀ-ବାଳା ବୃନ୍ଦ ଆଜି
ନ ଖେଳନ୍ତି ଆହା ! ବନ-ଫୁଲେ ତନୁ ସାଜି ।

ନାହିଁ ସେହି ଅରିନ୍ଦମ ମହାବୀର ବାଣ
ଦେଶ ରକ୍ଷାଲାଗି ଯାର ତୁଚ୍ଛ "ପ୍ରାଣ ପଣ" ।

ପରଧର୍ମ୍ମେ, ଉପଧର୍ମ୍ମେ ମାତିଛନ୍ତି ନରେ
ଶାଶ୍ୱତ ଭକତି ପ୍ରେମ ନାହିଁ ହୃଦୟରେ ।

ଧରମର ଅର୍ଥ 'ଧର' 'ମର' ବୋଲିଭାଳି
ବୃଥା ଈର୍ଷା ବାଦେ ଦେଉଥାନ୍ତି କରତାଳି ।

ଅମୂଲ ଶାନ୍ତି-ରତନ ପୀରତି-ସମ୍ପଦ
ନାହିଁ ହୃଦୟେ ଭକତି ଆନନ୍ଦ-ଆସ୍ୱଦ ।

ଶମ ଦମ ନ୍ୟାୟ ଧର୍ମ୍ମ ସତ୍ତ୍ୱ ଲଂଘି ହେଲେ
କୁବୃତ୍ତି - ପାଳନେ ରତଛନ୍ତି ସବୁବେଳେ ।

ବଦନେ ସଚ୍ଚିଦାନନ୍ଦ ନାମ ଘୋଷି ନିତି
କୁଟୀଳ-ନିଟିଳ ହୃଦେ ଲୋଡୁଥାନ୍ତି ପ୍ରୀତି ।

ହୃଦୟେ ନାହିଁ ଭକତି ନାହିଁ ଧର୍ମ୍ମଭୟ
ସ୍ୱାର୍ଥ ସିଦ୍ଧି ଯାଏ ମାନସର ଅବଳୟ ।

ଦେଖ ବତ୍ସ ! ଜାହ୍ନବୀର ସ୍ରୋତ ଗତି ସରି
ଧାଏଁ କାଳ ବିଧାତାର ବିଧି ଅନୁସରି ।

ଜଳ ବିମ୍ବ ପରି ଏହି ନଶ୍ୱର ଜୀବନ
ଜଳବିମ୍ବ ପରି ଧନ, ମାନ, ଯଉବନ ।

ନ ବୁଝି ନଶ୍ୱର ଭାବ ମଦେ ହୋଇ ଭୋଳ
ତୋଳୁଥାନ୍ତି ଖଳେ ଆତ୍ମ-ଗରିମାର ରୋଳ ।

ଅତୁଳ ବିଭବ-ଶାଳୀ ଥିଲା ଯେ ଭାରତ
ଉଦର ଜ୍ୱାଳାରେ ଆଜି ଆହା ! ଭିକ୍ଷାରତ !

ପୁଲକେ ମଳୟାନିଳେ ମନ୍ଦେ ମନ୍ଦେ ହସି
ପଲକେ ପଡେ କୁସୁମ ଧରାତଳେ ଖସି ।

ପୁଲକେ ସଉଦାମିନୀ ଅନନ୍ତ ଗଗନେ
ପଲକେ ଖେଳି ମିଶଇ ଅନନ୍ତେ ଯେସନେ ।

ପୁଲକେ କୋକିଳ-କଳଗୀତି ଖେଳିରଙ୍ଗେ
ପଲକେ ମିଶଇ ଯଥା ସମୀର ତରଙ୍ଗେ ।

ପୁଲକେ ତେସନ ହସି ଗୌରବ ସୁମନ
ପଲକେ ମଉଳି ତଳେ ହୋଇଛି ପତନ ।

* * * *

ଆକାଶ କୁସୁମ ଆଜି ତୋଳୁଛି ମାନସ
ଗୁନ୍ଥୁଛି ଯତନେ ବସି ରଜନୀ ଦିବସ ।

ମାତିଅଛି ସ୍ୱପନର ଆଶା – ସଉରଭେ
ଜଳୁଛି ନୈରାଶ୍ୟ-ବହ୍ନି ବିସ୍ମୃତି-ଗରଭେ ।''



# ହେମ କମଳିନୀ ।

ବାମଣ୍ଡା ରାଜଧାନୀ ଦେବଦୂର୍ଗ ନିବାସି
ଶର୍ମ୍ମା ଶ୍ରୀ ହରିହର ମହାପାତ୍ର କର୍ତ୍ତୃକ
ରଚିତ ।

ହିତୈଷିଣୀ ଇଲେକ୍‌ଟ୍ରିକ୍ ମେସିନ ପ୍ରେସରେ
ଶ୍ରୀ ଦୀନବନ୍ଧୁ ଗଡନାୟକଙ୍କ ଦ୍ୱାରା ମୁଦ୍ରିତ ।
ବାମଣ୍ଡା ।
୧୯୧୧

ମୂଲ୍ୟ ଟ ୦ / ୬

କବିବର ଶ୍ରୀ ଯୁକ୍ତ ରାୟ ରାଧାନାଥ ରାୟ ବାହାଦୂର
ମହୋଦୟଙ୍କ ମନ୍ତବ୍ୟ ।

"ହେମ କମଳିନୀ" କାବ୍ୟ ମୁଁ କବିଙ୍କ ମୁଖରୁ ଆଦ୍ୟୋପାନ୍ତ ଶ୍ରବଣ କରି ପ୍ରୀତ ହୋଇ ଅଛି । "ହେମ କମଳିନୀ" ହରିହର ବାବୁଙ୍କର ରଚନାର କ୍ରମୋତ୍କର୍ଷ ପରିଚାୟକ ।

ଦେବଗଡ
୪-୪-୧୯୦୮ ଶ୍ରୀ ରାଧାନାଥ ରାୟ

# ଉତ୍ସର୍ଗ ପତ୍ର

ଦୀନଜନ-ଦୁଃଖ-ଭଞ୍ଜନ, ବିଦ୍ୱଜ୍ଜନ-ମନୋରଞ୍ଜନ,
ବିବିଧ ସଦ୍‌ଗୁଣ-ନିଧାନ, ମହାମାନନୀୟ
ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ
ବାମଣ୍ଡାଧୀଶ୍ୱର ମହୋଦୟ -
ମହୋଦାର ହୃଦୟେଷୁ ।

ଦେବ !
ଲଳିତ ଲାବଣ୍ୟମୟୀ 'ହେମ-କମଳିନୀ' କୁକ୍ଷଣେ
ବିକଶିତ ହୋଇ ନିଷ୍ଠୁର ନିୟତିର ଦାରୁଣ ସନ୍ତାପରେ
ଅକାଳରେ ମଉଳି ଯାଇଅଛି । ତା'ର ମଧୁର ଛବିର
ଶାଶ୍ୱତ ସୁଷମା ଅଙ୍କନ କରିବା ମୋର ପାଟବହୀନ
ଲେଖନୀର ସାଧ୍ୟ ନୋହିଲେ ହେଁ ଅବସାଦର ଆବେଗରେ
ଏହା ଲେଖି ଛାମୁଙ୍କର ପରିଦର୍ଶନ ନିମନ୍ତେ ଭବଦୀୟ
କର-କମଳରେ ଅର୍ପଣ କରୁଅଛି଼ଁ ।
କୃପା ପୂର୍ବକ ଗ୍ରହଣ କଲେ ଆନନ୍ଦିତ ହେବି । ଇତି ।

ତା ୨୫।୯।୧୯୦୯ — ଛାମୁଙ୍କର କୃପାଭିକ୍ଷୁ
ଦେବଗଡ଼,ବାମଣ୍ଡା — ହରିହର

ଓଁ

# ହେମ କମଳିନୀ

## ପ୍ରଥମ ସର୍ଗ

(ବଙ୍ଗଳାଶ୍ରୀ ବୃତ୍ତ)

ଶାରଦ ସମୀର ବହେ ଧୀରେ ଧୀରେ,
ମଧୁର ଶାରଦ ଉଷା,
ଶାରଦୀୟ ଲୀଳା ରଚଇ ଆନନ୍ଦେ
ପିନ୍ଧି ଶାରଦୀୟ ଭୂଷା । ୧ ।

ତରୁଡାଳେ ବସି ବିହଙ୍ଗମ ରାଜି
ଢାଳନ୍ତି ଶାରଦ ଗାନ,
ସେମଧୁର ଗାନେ ମାନସ ବିହଙ୍ଗ
ନୀରବେ ତୋଳଇ ତାନ । ୨ ।

ଶ୍ୟାମଳ ବସନା ସୁରସା* ଲଳନା
ମୋତି ମାଳ ଘେନି କରେ,
ଉଷାସୁନ୍ଦରୀଙ୍କୁ ଭୂଷା କରିବାକୁ
ଚାହିଁ ଅଛି ସ୍ନେହଭରେ । ୩ ।

ଉତ୍ତରା ସମୀର ବିଞ୍ଚେ ଧୀରେ, ଧରି
ରମ୍ଭା ପତର-ବ୍ୟଞ୍ଜନ,
ହରଷେ ସରସେ କୁମୁଦିନୀ ଧନୀ
ଜଣାଏ ଅଭିବାଦନ । ୪ ।

ହୃଦୟ-କାସାରେ ଘନ ଘନତର
ହେବାର ପ୍ରେମ ଲହରୀ,
ମୃଦୁହାସେ ମନ- ସ୍ନେହ ଜଣାଇଲା
ବଚନେ ଭାଷି ନପାରି । ୫ ।

ପୂରବ ବିମାନେ କନକ ବିମାନ
ଆରୋହୀ ନଳିନୀଧନ,
ଶାଶ୍ୱତ ବିମଳ ହେମମୟ କରେ
ଚୁମ୍ବିଲେ ପ୍ରିୟା ବଦନ । ୬ ।

* ଦୂର୍ବା

ପତି ଅନୁରାଗେ ଫୁଲ୍ଲ କମଳିନୀ
ହାସ-ସୁଧା ଦେଲା ଢ଼ାଳି,
ଘନ ପ୍ରେମ-ବୀଚି ହୁଅଇ କି ରଖି
ଗୋପନେ ହୃଦେ ସମ୍ଭାଳି । ୭ ।

ଏରମ୍ୟ ପ୍ରଭାତେ ସରସୀ ଅନ୍ତରେ
ଲଳିତ ବୃନ୍ତ-ଆସନେ,
କଳିକାଏ ବସି ରତ ଯୋଗ ଧ୍ୟାନେ
ଶାଶ୍ୱତ ପ୍ରେମେ ଗୋପନେ । ୮ ।

ପୀରତି କୁସୁମେ ମାଳା ଗୁନ୍ଥି, ବାଳା
ଘୋରି ପୀରତି ଚନ୍ଦନ,
ପ୍ରୀତିମୟ ପୂଜା ସମ୍ଭାର ସଜାଉ
କରଇ ପ୍ରୀତି-ବନ୍ଦନ । ୯ ।

କରୁଣ ନୀରବେ ଜଣାଏଁ କଳିକା
"ପ୍ରଭୋ ! ଜଗତ ଜୀବନ,
ଏ ଘୋର କଷଣୁ ରକ୍ଷାକର ନାଥ !
ଘେନ ଦୁଃଖୀ-ନିବେଦନ । ୧୦ ।

ମଧୁମୟ ତବ ବିଧିକି ଲଂଘିମୁଁ
ଲଭିଲି ଏ ଘୋର ଦୁଃଖ,
ଏ ଦୁଃଖ - ସାଗରେ ଡାକଇଁ କାତରେ
ଦେଖାଅ ଜଗତ-ସୁଖ । ୧୧ ।

କ୍ଷୀଣା, ହୀନା, ଦୀନା, ଅଟେ ଅଭାଗିନୀ;
ତଥାପି ଭବ କୁମାରୀ,
ପଙ୍କ ଅଙ୍କେ ଶଙ୍କେ ଆତଙ୍କେ ଡାକୁଛି
ଶୁଣ ଦୁଃଖିନୀ ଗୁହାରି " । ୧୨ ।

## ଦ୍ୱିତୀୟ ସର୍ଗ

ପଳକ ଅନ୍ତରେ ପଳକ ପ୍ରବେଶ
ଦିନପରେ ଆସେ ଦିନ,
ମାସ ପରେ ମାସ ବରଷ ଅନ୍ତରେ
ବରଷ ଆସେ ବହନ । ୧୩ ।

କ୍ରମେ ବିଭାକର ଗମି ମଧ୍ୟ ନଭେ
ଖର ରଶ୍ମି ଜାଳ ଢ଼ାଳି,
ବାରୁଣୀ ଗଗନେ ପ୍ରବେଶନ୍ତି ଯାଇ
ବିଧିବିଧି ମନେ ଭାଳି । ୧୪ ।

ଚରା ସାରି ପକ୍ଷୀ ଗାଇ ପ୍ରେମ ଗୀତି
ପ୍ରଶାନ୍ତ ନୀଳ ଗଗନେ,
ଉଡ଼ନ୍ତୁ ପକ୍ଷରାଜ ସଞ୍ଚାଳି, ଗମନ୍ତି
ବାସମୁଖେ ଫୁଲ୍ଲ ମନେ । ୧୫ ।

ପ୍ରଦୋଷ ସମୀରେ ତରଙ୍ଗେ ତରଙ୍ଗେ
ଖେଳଇ ଧାନ୍ୟ-କେଦାର
ଅଭିନବ ଲାସ୍ୟେ ଖେଳାଇ ସ୍ୱତନୁ
ପ୍ରକାଶେ ଭାବ ଉଦାର । ୧୬ ।

କନକ କିରଣ - ସମ୍ପାତେ ଗଗନେ
ଖେଳ ଖେଳି କାଦମ୍ବିନୀ,
ପ୍ରବେଶଇ ଆସି, ରାଜେ ଯହିଁ, ନବ-
ବିରହିଣୀ କମଳିନୀ । ୧୭ ।

ତପନ ଆଦେଶେ ଆସି ସଖି ପାଶେ
ଖେଳି ତରଙ୍ଗେ ତରଙ୍ଗେ,
ବିରହ ଯାତନା ଭୁଲାଇବା ଲାଗି
କେତେ ଭଙ୍ଗିରଚେ ରଙ୍ଗେ । ୧୮ ।

କର୍ମ ଅବଶେଷେ ନର, ପଶୁ, ପକ୍ଷୀ-
ଆଦି ସର୍ବେ ଧରାବାସୀ,
ପ୍ରବେଶନ୍ତି ଆସି ନିଜ ନିଜ ବାସେ
ଶାନ୍ତି ବିଶ୍ରାମ ମନାସି । ୧୯ ।

ଗୋଟି ଗୋଟି ହୋଇ ତାରା ଫୁଟି ନଭେ
ଦେଖନ୍ତି ଅବନୀ ମୁଖ,
ସହସ୍ର ନୟନେ ଚାହେଁ କି ଗଗନ
ଦୁଃଖିନୀ ଅବନୀ ଦୁଃଖ । ୨୦ ।

ଅନୁରାଗ ଭରେ ସୁଧା ଥାଳି ଧରି
ଢ଼ାଳିଦିଏ ସୁଧା ରାଶି,
ନୀରବେ ଆନନ୍ଦ ଭୁଞ୍ଜାଇ ଅବନୀ
ସୁଷମା-ସାଗରେ ଭାସି । ୨୧ ।

ନବ ଅନୁରାଗେ ନାଚେ ପ୍ରେମାବେଗେ
ହାସମୟୀ କୁମୁଦିନୀ,
କ୍ଳାନ୍ତି ଅବଶେଷେ ନବ ଶାନ୍ତି ଲଭି
ଶୋଇଛି ସୁଖେ ମେଦିନୀ । ୨୨ ।

ନବଶାନ୍ତି ମୟୀ ପ୍ରକୃତି ଅନ୍ତରେ
ଲଳିତ ବୃନ୍ତ-ଆସନେ,
ବସି ସେ ଦୁଃଖିନୀ "ତ୍ରାହି କୃପାନିଧି !"
ଡାକୁଛି ଖେଦ-ବଚନେ । ୨୩ ।

ନିବିଡ ବିଜନ ଅନ୍ଧକାର ମୟ
ଅଟଇ ଆଶ୍ରମ ତାର,
ବିଭୁ ପାଦପଦ୍ମେ ଢ଼ାଳି ଅଛି ମନ
ହୃଦେ ବହି ଦୁଃଖ ଭାର । ୨୪ ।

ଦେଖରେ ମାନସ ! ଏ ଲଳିତ ଛବି
ମେଲି ତୋ ଜ୍ଞାନ-ନୟନ,
ଏନବ ଯୋଗିନୀ ରତ ଯୋଗଧ୍ୟାନେ
ତେଜି ଅଶନ ଶୟନ । ୨୫ ।

ଏ ଭୀମ କନ୍ଦରା- ମଧ୍ୟରେ ବସିଛି,
ଶାଶ୍ୱତ ଲଳିତ ବେଶେ,
ଶାଶ୍ୱତ-ଭକତି କୁସୁମ ମାଳିକା
ଦୋଳାଇଛି ଗଳ ଦେଶେ । ୨୬ ।

ଭାଇ, ବନ୍ଧୁ, ଦାରା, ସୁତ, ସୁତା ମେଳେ
ପଡି ମାୟା-ମୋହ-ଜାଲେ,
ବାସନା ଗଣିକା- ସଙ୍ଗେ ଲୀଳାରଙ୍ଗେ
ସନ୍ତରନ୍ତୁ ମଦ-ଜଳେ । ୨୭ ।

ଲୋଭ, ମୋହ ବଶେ ଆଳସ୍ୟ, ବିଳାସେ
ମାତିଛୁ ତୁ ଦିନ ରାତି,
ବିଷାଦ ସନ୍ତାପେ ହୋଇ ଜରଜର
ଶୁଖିଛି ତୋ ମୁଖଭାତି । ୨୮ ।

ଥିଲ ଦିନେ ତୁହି ନିବିଡ ନିର୍ଜନେ
ଯୋଗ ଧ୍ୟାନେ ଏହିପରି,
ଡାକୁଥିଲୁ ସେହି ଜଗତତାତଙ୍କୁ
କଷଣୁ ହେବାକୁ ପାରି । ୨୯ ।

ତୋ ଆରତ ବାଣି କୃପାନିଧି ଶୁଣି
ଫେଡିଛନ୍ତି ତୋର ଦୁଃଖ,
ବାସନା କୁହୁକେ ତାଙ୍କ ପଦ ଧ୍ୟାନେ
କିପାଁ ତୁ ସଦା ବିମୁଖ । ୩୦ ।

ଦେଖରେ ତୁ ବାରେ ଶରତ ଅନ୍ତରେ
ପ୍ରବେଶ ହେମନ୍ତ କାଳ,
କମଳିନୀ ଧନୀ ଆକୁଳ ହୃଦୟା
ଲଭି ଶିରେ ହିମକାଳ । ୩୧ ।

ବିଧିବିଧି ବଶେ ଶିଶିର ଆଗତ
ହେମନ୍ତ ଋତୁ ଅନ୍ତରେ,
ଦାରୁଣ ଶିଶିର ଶାସନ ଜଗତ
ସହେ ଆକୁଳ ଅନ୍ତରେ । ୩୨ ।

ଶିଶିର ଅନ୍ତରେ ନବୀନ ହରଷେ
ପ୍ରବେଶେ ଋତୁ ରାଜନ,
କୁଞ୍ଜେ କୁଞ୍ଜେ ବୁଲି ଖେଳନ୍ତି ବିହଙ୍ଗେ
ମଧୁରେ କରି କୂଜନ । ୩୩ ।

ମଞ୍ଜରଇ ତରୁ, ଗୁଞ୍ଜରଇ ଅଳି,
ହସନ୍ତି କୁସୁମ ରାଜି,
ହସଇ ଆନନ୍ଦେ ପ୍ରକୃତି ସୁନ୍ଦରୀ
ନବବେଶେ ତନୁ ସାଜି । ୩୪ ।

ବକୁଳ-ଦୂକୂଳ ପିନ୍ଧି ଚୂତ କୁଳ
ବିତରନ୍ତି ମଧୁବାସ,
କାନ୍ତି ମଦେ ମୋଦ କିଂଶୁକ ସୁମନ
ପରକାଶେ ମଧୁହାସ । ୩୫ ।

ଏହି ରୂପେ ସିନା ଗୁଣହୀନ ଜନେ
ରୂପମଦେ ହୋଇ ଭୋଳ,
'ଅହଂ'କାର ବଶେ ଟେକୁଥାନ୍ତି ବୃଥା
ଆତ୍ମ ଗରିମାର ରୋଳ । ୩୬ ।

ମଳୟ ବିଭୂତି ଘେରାଇ ସମୀର
ଦିଅଇ କୁସୁମ କରେ,
କୁସୁମ-କାନନୁ ବାସଘେନି ପୁଣି
ବିତରେ ଆନନ୍ଦ ଭରେ । ୩୭ ।

ଝରଣା ନିକୁଞ୍ଜେ ଦୋଳି ମନ୍ଦବାତେ
ଲତା-ଦୋଳାସନେ ବସି,
ସ୍ୱପ୍ନ-କେତନ ସଞ୍ଚାଳି ଯୋଗିଆ
ମଧୁରେ ବଜାଏ ବଂଶି । ୩୮ ।

ମଞ୍ଜୁଳ ରସାଳ - ନିକୁଞ୍ଜେ କୋକିଳ
ତୋଳଇ ପଞ୍ଚମ ତାନ,
ସେ ଲଳିତ ଗୀତି ପୁଲକେ ଜଗତ
ଶୁଣେ କିବା ଡେରି କାନ ? । ୩୯ ।

ମଧୁର ହାସିନୀ ମାଧବୀ ରଜନୀ
ମଧୁର ସୁହାଗ ଭରେ,
ବେଢ଼ାଇ ଅବନୀ - ଗଳେ ଭୁଜବଲ୍ଲୀ
ପ୍ରେମେ ଆଲିଙ୍ଗନ କରେ । ୪୦ ।

ଚନ୍ଦ୍ରିକା ପୀୟୂଷ ପିଅଇ ଚକୋର
ନୀଳ ଗଗନେ ବିହରି,
ମହୋଲ୍ଲାସେ ଉଚ୍ଚେ ରଟଇ ଟେଣ୍ଟୋଇ
ଖେଳାଇ ସ୍ୱର ଲହରୀ । ୪୧ ।

ନବ ହାସମୟୀ ପ୍ରକୃତି ଅନ୍ତରେ
ଲଳିତ ବୃନ୍ତ ଆସନେ
ବସି ସେ ଦୁଃଖିନୀ ରତ ଯୋଗଧ୍ୟାନେ
ଶାଶ୍ୱତ ପ୍ରେମେ ଗୋପନେ । ୪୨ ।

ନବ ବସନ୍ତର ମଧୁର କଲ୍ଲୋଳ
ନଖେଳଇ ହୃଦେ ତାର
ମୁକତି ଆଶାରେ ଭକତି କେବଳ
କରିଛି ଜୀବନେ ସାର । ୪୩ ।

ଦଇବ ବିଧାନେ ଦିନୁ ଦିନୁ ତାର
ପୁଷ୍ଟି ଲଭୁଅଛି ଅଙ୍ଗ,
ତମୋରାଶି ମଧ୍ୟେ ଦ୍ୟୁତି ସଦା, ହୃଦେ
ନଖେଳେ ତୃଷ୍ଣି-ତରଙ୍ଗ । ୪୪ ॥

ଦିନ ପରେ ଦିନ ମାସ ପରେ ମାସ
ଯାଉଅଛି କ୍ରମେ ଚଳି,
କରୁଣ ନୀରବେ ଡାକେ ସେ ଦୁଃଖିନୀ
"ହେ ଦେବ ବିଶ୍ୱ ସଞ୍ଚାଳି ! ୪୫ ।

କେତେକାଳ ଆଉ ଭୋଗିବି ଏ ଦୁଃଖ
ବିଜନ ଭୀମ ଗହନେ,
ତ୍ରାହିକର ନାଥ ! କରୁଣା ବାରିଧି !
ଚାହିଁ କରୁଣ ନୟନେ" । ୪୬ ।

ମଧୁ ଅନ୍ତେ ବହି ବିଷମ ମୂରତି
ପ୍ରବେଶ ଗ୍ରୀଷମ କାଳ,
ନଦୀ ସରୋବର ତନୁ ହୁଏ କୃଶ
ପତ୍ର ଶୂନ୍ୟ ତରୁ ଡାଳ । ୪୭ ।

ନିଦାଘ ସନ୍ତାପେ ଜଗତ ଆକୁଳ
ସକଳେ ଲୋଡନ୍ତି ବାରି
ଏବେ ହେଁ ଦୁଃଖିନୀ ବୃନ୍ତାସନେ ବସି
ଡାକେ "ତ୍ରାହି ଦୁଃଖହାରି" । ୪୮ ।

## ଦ୍ୱିତୀୟ ସର୍ଗ

ଗିରିଷମ ଶେଷେ ବରଷା ଆସଇ
ଘେନି ସଙ୍ଗେ ବାରିବାହ,
ନବ ନୀରଧାରେ ତରୁ ଲତା-ହୃଦେ
ଖେଳେ ପୁଲକ ପ୍ରବାହ । ୪୯ ।

ଆଷାଢ଼ ମାସର କୃଷ୍ଣାଷ୍ଟମୀ ତିଥି
ମଧୁର ପ୍ରଦୋଷ କାଳ,
ଖଣ୍ଡ ଖଣ୍ଡ ହୋଇ ସୁନୀଳ ଗଗନେ
ଖେଳନ୍ତି ଜଳଦ ମାଳ । ୫୦ ।

ଅନୁରାଗେ ଚହିଁ ଅସ୍ତାଚଳେ ଗଲେ
କମଳିନୀ-ପ୍ରାଣଧନ,
ହେମମୟ କରେ ସୁଲଳିତେ ଥରେ
ଚୁମ୍ବି ନଳିନୀ-ବଦନ । ୫୧ ।

ଧୀରେ ଧୀରେ ଆସି କଲା ଆଚ୍ଛାଦନ
ଅବନୀ-ମୁଖ୍ୟ ରଜନୀ,
ଉଠିଲା ସଘନେ "ଗୋପାଳଜୀ ମଠେ"
ସନ୍ଧ୍ୟା-ଆଳତିର ଧ୍ୱନି । ୫୨ ।

ବରଷା ସମୟ ହେଲେ ହେଁ, ଗଗନେ
ନାହିଁ ଏବେ ଘନ ଘନ,
ସ୍ଥାନେ ସ୍ଥାନେ ନଭେ ଖଣ୍ଡ ମେଘସଙ୍ଗେ
ଖେଳୁଛନ୍ତି ତାରାଗଣ । ୫୩ ।

ଜଳଦ ଗବାକ୍ଷ - ଅନ୍ତରାଳେ ଲୁଚି
ସୁର ସୀମନ୍ତିନୀ ଗଣ,
ଅନିମେଷ ନେତ୍ରେ ଚହାନ୍ତି କି କା'ର
ଲଭିବାକୁ ଦରଶନ ? ୫୪ ।

ଗୋଟି ଗୋଟି ହୋଇ ସଦନେ ସଦନେ
ଆଲୋକ ଉଠିଲା ଫୁଟି,
ଖେଳିଲା ସମୀର ଯଶୋମାଇନର*
ସୁରଭି ଭଣ୍ଡାର ଲୁଟି । ୫୫ ।

ଦେବଦୁର୍ଗ ମଧ୍ୟେ ଉଠିଲା ସଘନେ
'ଇଞ୍ଜିନ'* ର 'ସିଟି' ବାଜି,
ହସିଲା ଉଲ୍ଲାସେ ସ୍ଥିର ସୌଦାମିନୀ*
ହସାଇ ସଉଧ ରାଜି । ୫୬ ।

ବିକଶି ଉଠିଲା ଚପଳା-ଆଧାର
ରୁଚିର ଗୋଲକ ରାଶି,
ଫୁଲ୍ଲ ହାସମୟ ବହୁ ଶଶଧର
ଉଦିତ ହେଲେ କି ଆସି । ୫୭ ।

ହେଲା କ୍ରମେ ନିଶି ବେନି ଯାମଗତ
ଗଗନେ ରାଜିଲା ଶଶି
ପୀୟୂଷେ ପୀୟୂଷେ ମିଶାଇଲା କିବା
ବିମଳ କର ବରଷି । ୫୮ ।

ସଦନେ ସଦନେ ପ୍ରଦୀପ ଲିଭିଲା
ନୈଶ କର୍ମମାନ ସାରି,
ନିଦ୍ରାଦେବୀ-ଅଙ୍କ- ପଲଙ୍କ ଆଶ୍ରିଲେ
ନାଗରିକ ନରନାରୀ । ୫୯ ।

ହେଲାଣି ଯାମିନୀ ତିନି ଯାମ ଗତ
ସୁପ୍ତ ଜୀବ ଜନ୍ତୁମାନେ,
ଏ ଦ୍ୱିଜ ସଦନ ଜାଗରିତ କିପାଁ
ଜଳେ ଦୀପ ସ୍ଥାନେ ସ୍ଥାନେ । ୬୦ ।

---

ବାମଣ୍ଡାଧୀଶ୍ୱର ଶ୍ରୀମାନ୍ ସଚ୍ଚିଦାନନ୍ଦ -ତ୍ରିଭୁବନ ଦେବଙ୍କ ଦ୍ୱାରା 'ଯଶୋମାଇନ୍' ନାମକ ସୁବାସ କୁସୁମ ଓ ଇଲେକ୍‌ଟ୍ରିକ୍ ଅର୍ଥାତ୍ ବୈଦ୍ୟୁତିକ ଆଲୋକପ୍ରଭୃତି ଦେବଦୁର୍ଗକୁ ଆନୀତ ହୋଇଅଛି ।

ଘନୁ ଘନତର ହେଲାଣି ପଲକେ
ଗଗନେ ଜଳଦ ରାଶି
ବେଳେ ବେଳେ ସ୍ୱପ୍ନେ କୁହୁକେ କୋକିଳ
ରସାଳ ନିକୁଞ୍ଜ-ବାସୀ । ୬୧ ।

ସୁଶୀତଳ ବାରି ଘେନି ଘନମାଳ
ଧରାମୁଖେ ଦେଲେ ବିଞ୍ଚି
ପତ୍ରଲତା ଭାଙ୍ଗି ମାତିଲେ ଲୀଳାରେ
ପୁଣି ନଭେ ହୋଇ ବିଞ୍ଚି । ୬୨ ।

ଝଟକିଲା କିବା ସେ ଦ୍ୱିଜ ସଦନେ
ପ୍ରଭାମୟୀ ସୌଦାମିନୀ,
ନବୀନ ଆଲୋକେ ହେଲା ବିଭାଷିତ
ନବ ହରଷେ ଯାମିନୀ ? । ୬୩ ।

ସରସୀ ଅନ୍ତରେ ଥିଲା ସଂଗୋପନେ
ଯେ କଳିକା ଯୋଗ ଧ୍ୟାନେ
ପଙ୍କ ରସେ ଗଢ଼ା ନୁହଇ ତା ତନୁ
ଗଢ଼ା ହେମ ଉପାଦାନେ । ୬୪ ।

ଏହି ସେ କଳିକା ହେଲା ବିକଶିତ
ମହେଶ କରୁଣା-ବଳେ,
ମଧୁମୟ ଯୋଗେ ସଦନ-ସରସୀ
ପୂରିଲା ଆନନ୍ଦ ରୋଳେ । ୬୫ ।

ମନ୍ଦେ ଧୀରେ ଧୀରେ ସୁଗନ୍ଧ ସମୀର
ନବ ଅନୁରାଗ ଭରେ,
ସ୍ନେହ-ପରସାଦ ପଠାଇଛନ୍ତି କି
ବିଭୁ, ସମୀରଣ-କରେ । ୬୬ ।

ନବ ବିକଶିତା ହେମ ନଳିନୀର
ଲଳିତ ମଧୁର ରୋଳ,
ଚୁମ୍ବି ଶ୍ରୁତି ମନ, ସ୍ୱର୍ଗୀୟ ସମ୍ପଦେ
ପ୍ରାଣ ମନ କଲା ଭୋଳ । ୬୭ ।

ସେ ମାଧୁରୀ-ସୁଧା ନାହିଁ ବୀଣା ତାରେ
ନାହିଁ କୋକିଳର ଗାନେ

କବି ଲେଖନୀର ଅଗୋଚର ତାହା
ଗଢ଼ା କେଉଁ ଉପାଦାନେ । ୬୮ ।

ଭୂତଳ ଶୟନେ ଢଳ ଢଳ ଆହା
ଏ ନବ ଲାବଣ୍ୟ ଲତା,
ହେମକାନ୍ତି ଲଭି ଅବତୀର୍ଣ୍ଣା କିବା
ମୂର୍ତ୍ତିମତୀ କୋମଳତା । ୬୯ ।

ଏ ଅପୂର୍ବ ଛବି ଦେଖ ହେ କୋବିଦେ
ମହୀରୁହେ ବଲ୍ଲୀ ରଙ୍ଗେ
ଉପବୀତ ପରି ବେଷ୍ଟିତ ଅମରା *
ସେ ଚାରୁ ଲଳିତ ଅଙ୍ଗେ । ୭୦ ।

ବିହିତ ବିଧାନେ ନାଭି ଛେଦନାଦି
କର୍ମ କରି ସମାପନ,
ନବ କୁମାରୀକୁ କରାଇଲେ ଶୀତ
ସଲିଳେ ଅବଗାହନ । ୭୧ ।

ଏ ବାହ୍ମ ମୁହୂର୍ତ୍ତେ ପୁର ପ୍ରାଙ୍ଗଣରେ
ହସୁଛି ହେମନଳିନୀ
ଜଳଦ ଗବାକ୍ଷେ ଦେଖୁଛନ୍ତି ଲୁଚି
ଗଗନେ ତାରା-କାମିନୀ । ୭୨ ।

ନୀଳ ନଭେ ରହି ଥରେ ଥରେ ଶଶି
ଜଳଦେ ଲୁଚାଏ ମୁଖ
ନେତ୍ର ପିପାସାରେ ଢ଼ାଳିଦିଏ ପୁଣି
ଶୀତଳ ସୁଧା ମୟୂଖ । ୭୩ ।

ହେମ ନବଜାତ ଶୋଭା ପିତୁଳାର
କରାଇ ଅବଗାହନ
ଝିନ ବାସେ ତନୁ- ମୁଛି କରାଇଲେ
ତୁଳାଧାରେ କ୍ଷୀରପାନ । ୭୪ ।

କି ଦୁର୍ଲଭ ଏହି ସ୍ୱର୍ଗୀୟ ମାଧୁରୀ
ନାହିଁ ଭବେ ପଟାନ୍ତର
ଲଳିତ ଅଧରେ କ୍ଷୀର ବିନ୍ଦୁ ଲାଗି
ଦିଶଇ କି ମନୋହର । ୭୫ ।

* ନାଭି ରଜ୍ଜୁ ।

କହ ସୁକୁମାରୀ ! ବିଜନେତ ତହିଁ
କରୁଥିଲୁ ଅବସ୍ଥାନ
ଜନନୀ ଜଠରେ କାହୁଁ ଶିଖିଲୁତୁ
କରିବାକୁ କ୍ଷୀରପାନ । ୭୬ ।

ଜାଣିଲି ମୁଁ ସେହି କରୁଣା-ବାରିଧି
ଶୁଣି ତୋ ଆର୍ତ୍ତ ବଚନ
ସେ ସଙ୍କଟୁ ତୋତେ ମୁକ୍ତକଲେ ଦେଇ
ସ୍ୱର୍ଗୀୟ ଜ୍ଞାନ-ରତନ । ୭୭ ।

ଆହା କି ଉଦାର ଅଟେ ସେ କରୁଣା
ଯାର ଅଦଭୁତ ବଳେ
ବିରାଟ ଗଗନେ ଖେଳେ ଭରତିଆ
ଭାତି ତେଜ କୁତୂହଳେ । ୭୮ ।

ମହା ସରୋବରେ ଖେଳଇ ସଫରୀ,
କୁରଙ୍ଗୀ ଭୀମ ଗହନେ,
କୋଟି କୋଟି ତାରା ଗ୍ରହ ଉପଗ୍ରହ
ବିରାଟ ଭୀମ ଗଗନେ । ୭୯ ।

ଯାର କୃପାବଳେ ଖେଳେ ମରୁ ମଧେ
ସ୍ୱଚ୍ଛତୋୟା କଲ୍ଲୋଳିନୀ
ତା'ର ଦତ୍ତ ଜ୍ଞାନ ଧନେ ମହାଧନୀ
ତୁହିକି ହେମନଳିନୀ । ୮୦ ।

## ଚତୁର୍ଥ ସର୍ଗ

ଧୀରେ ଧୀରେ ଶଶି ତାରାଗଣ ସଙ୍ଗେ
ଦେଖି ଏ ଦିବ୍ୟ ମାଧୁରୀ
ଗୋଟି ଗୋଟି ହୋଇ ସୁନୀଳ ଗଗନେ
ଗଲେ ସର୍ବେ ଅପସରି । ୮୧ ।

ଉଷା ସମୀରଣ ଜନମାଏ ସ୍ନେହେ
ତରୁ ଲତା-ହୃଦେ ଶାନ୍ତି
ହସଇ ଆନନ୍ଦେ ପ୍ରକୃତି ସୁନ୍ଦରୀ
ପ୍ରକାଶି ବିମଳ କାନ୍ତି । ୮୨ ।

ନିଶି-ନିପତିତ ସଲିଳର ବିନ୍ଦୁ
ଖସେ ପତରୁ ପତରେ,
ପ୍ରଭାତ ଅରୁଣ - ମୟୂଖ ସମ୍ପାତେ
ସ୍ୱଚ୍ଛ ହୀରା ଛବି ଧରେ । ୮୩ ।

ବାଳକ ବାଳିକା ଯୁବତୀ ଜରତୀ
ପ୍ରତିବେଶୀ ବନ୍ଧୁଜନେ,
ନବ କୁମାରୀର ଦରଶନ ଆଶେ
ଆସନ୍ତି ଉତ୍ସୁକ ମନେ । ୮୪ ।

ଦେଖନ୍ତି ହରଷେ ହେମ-ନଳିନୀର
ଲଳିତ ରମ୍ୟ ବଦନ,
ସରଳ ସୁନ୍ଦର ଅଙ୍ଗ ପ୍ରତିଅଙ୍ଗ
ସୁକୃଷ୍ଣ ଗୁରୁ ନୟନ । ୮୫ ।

ଦିନ ପରେ ଦିନ ନେଲା କ୍ରମେ ଗତ
"ଷଠି" ଆଦି "ଉଠିଆରି"-
ସମ୍ପାଦି ଯତନେ ଆନନ୍ଦ ଲଭିଲେ
ପୁରବାସୀ ନର ନାରୀ । ୮୬ ।

ସୁଲକ୍ଷଣେ ପୂର୍ଣ୍ଣ ଦେଖି ପିତା ମାତା
ଦେଲେ ଅନ୍ନପୂର୍ଣ୍ଣା ନାମ
ଯତନେ ଲଳିତା ହେଲା ଦିନୁ ଦିନୁ
ହୋଇ ହୃଦ ଅଭିରାମ । ୮୭ ।

ଦିନୁ ଦିନୁ ତାର ସୁଲଳିତ ବପୁ
ପ୍ରକାଶିଲା ନବଠାଣି,
ନବ ନବ ବେଶେ କଲେ ଆଲିଙ୍ଗନ
ଅନୁରାଗେ ଶୋଭା ରାଣୀ । ୮୮ ।

ମହାନନ୍ଦେ ବାଳା ଦୋଳୁଥାଏ କେବେ
ଜନନୀ କୋଳରେ ବସି,
ଦୋଳୁଥାଏ ଯଥା କୁମୁଦିନୀ ଧନୀ
ମୃଦୁ ସମୀରେ ଲହସି । ୮୯ ।

କୋମଳ ତଳପେ କରିଥାଏ ଯେବେ
ଏକାକି ବାଳା ଶୟନ,
ଜନନୀ ଆହ୍ୱାନେ ଚହେଁ ଚଉଦିଗେ
ବୁଲାଇ ବ୍ୟଗ୍ର ନୟନ । ୯୦ ।
ସେକାଳେ ସମୀପେ କଲେ ଦରଶନ
ମାତାଙ୍କ ସୌମ୍ୟ ବଦନ
ଆନନ୍ଦେ ତଳପେ ଦନ୍ତି ବାମପଦ
ବକ୍ଷ କରେ ଉତ୍ତୋଳନ । ୯୧ ।
ସେ ଲଳିତ ଭଙ୍ଗୀ ଭାଷୁଥାଏ ଯେହ୍ନେ
"ନିଅ ଜନନୀ ଗୋ କୋଳେ,"
ଲଳିତ ବଦନେ ଚୁମ୍ବନ ଯେସନେ
ମାଗୁଥାଏ ସ୍ନେହ ଭୋଳେ । ୯୨ ।
କେବେ ସହୋଦରା କରେ ଭରାଦେଇ
ରଚୁଥାଏ ନୃତ୍ୟ ଲୀଳା,
ଥରେ ଥରେ ଗଣ୍ଡ ଢାଳି ସ୍କନ୍ଧଦେଶେ
ସେ ବାଳା ସୁହାଗ ଶୀଳା । ୯୩ ।
ଥରେ ଥରେ ପୁଣି ଝରି ପଡୁଥାଇ
ସୁଲଳିତ ହାସ ସୁଧା,
ସେ ମଧୁର ହାସେ ସ୍ୱର୍ଗୀୟ ବାତ୍ସଲ୍ୟେ
ହସଇ କିବା ବସୁଧା । ୯୪ ।
ଦିଶେ କି ସୁନ୍ଦର ହେମ ନଳିନୀର
ଭାଲେ ଗୋରଚନା ବିନ୍ଦୁ
ଯାର ଦରଶନେ ହୃଦୟ-ଗଗନେ
ହସେ ଅନୁରାଗ-ଇନ୍ଦୁ । ୯୫ ।
ବାଛି ଦେଇଥିଲେ ଆପଣା ଭଣ୍ଡାରୁ
ଶୋଭାରାଣୀ ସାର ଧନ,
ସେହି ଧନେ ଧନୀ ହେମ-କମଳିନୀ
ହସାଇଲା ସେ ସଦନ । ୯୬ ।
ଖେଳିଲା ନିଃସଙ୍କେ ପୁରଜନଙ୍କର
ହୃଦ-କାନନେ ବିହରି,
ପୂଜିଲେ ଆଦରେ ବନଦେବୀ, ମଣି
ଶୋଭାରାଣୀ-ସହଚରୀ ।୯୭ ।

ବାଳାର ମଙ୍ଗଳ- କାମନା କୁସୁମ
ଢାଳିଦେଲେ ଶିର ପରେ,
ବାତ୍ସଲ୍ୟ ସୁଗନ୍ଧ ଫୁଲ୍ଲ କରେ ମନ
ପ୍ରସରି ପ୍ରେମ ସମୀରେ । ୯୮ ।

ମାନସ ବିହଙ୍ଗ ତରୁ ଡାଳେ ବସି
ଜଣାଏଁ ଅଭିବାଦନ
ସ୍ନେହ-ମକରନ୍ଦ ଝରି ପଡୁଥାଏ
ଗହିଁ ସେ ସୌମ୍ୟ ବଦନ । ୯୯ ।

ସିଞ୍ଚି ଶୋଭା-ଜଳ ହୃଦୟ-କାନନେ
ସ୍ନେହ-ଲତା ଯତ୍ନେ ପାଳି
ଜନକ ଜନନୀ ଭାଇ ଭଗିନୀଙ୍କ
ହେଲା ସେ ହୃଦ ସଙ୍ଗାଳି । ୧୦୦ ।

## ପଞ୍ଚମ ସର୍ଗ

ବେନି ମାସ ସାତ ଦିନ ହେଲା ଗତ
ଭାସି ସୁଖ-ସରେ ଆହା,
ଘଟିଲା ଅଚେଯା ଦାରୁଣ ଘଟନା
କେମନ୍ତେ ବର୍ଣ୍ଣିବି ତାହା ।୧୦୧ ।

କେଉଁ ସ୍ୱରେ ଆଜି ବାନ୍ଧିବି ଏ ବୀଣା
କହ ଦୟାମୟୀ ବାଣୀ,
କେମନ୍ତେ ଗାଇବି ସେ ଦାରୁଣ ଗୀତ
ହୃଦୟ ହେଉଛି ହାଣି ।୧୦୨ ।

ଅଷ୍ଟମ ଦିବସେ ନବ କୁମାରୀର
ଅଙ୍ଗେ ସଞ୍ଚରିଲା ଜ୍ୱର,
ଦାରୁଣ ସନ୍ତାପେ ଶିରୀଷ କୋମଳ
ତନୁ ହେଲା ଜର ଜର ।୧୦୩ ।

ଏକାଳେ ଜନକ ନଥିଲେ ସଦନେ
ଯାଇଥିଲେ ଦେଶାନ୍ତରେ,
ପ୍ରତିକାରେ ପ୍ରାଣ ଢାଳିଲେ ଜନନୀ
ଚିନ୍ତା ବହ୍ନିଣ ଅନ୍ତରେ ।୧୦୪ ।

ଚାରିଦିନ ଅନ୍ତେ ସଦନ ସମୀପେ
ନାରିକେଳ ବୃକ୍ଷ'ପରେ,
ବସି ଚିଲ୍ଲ ପକ୍ଷୀ ଘୋର ଅମଙ୍ଗଳ
ରଟିଲା ବିକଟ ସ୍ୱରେ ।୧୦୫।

କାନ୍ଦିଲେ ଆକୁଳେ ଉଚ୍ଚେ ଶ୍ୱାନରାଜି
ମୁଖ କରି ଉତ୍ତୋଳନ
ଛଅ ଦିନ ପରେ ଶୋକେ ଦିଗଙ୍ଗନା
ଶୁଖାଇ ଦେଲେ ବଦନ ।୧୦୬।

ଅଷ୍ଟମ ଦିବସେ ବ୍ୟାଧିର ସନ୍ତାପ
କିଞ୍ଚିତେ ହେଲା ନିଉନ,
ହେଲେ ହେଁ, ବିଷର୍ଣ୍ଣା ପ୍ରକୃତି ସୁନ୍ଦରୀ
ବଦନ କରି ମଣ୍ଡନ ।୧୦୭।

ବ୍ୟାଧି ଲଘିମାରେ ପୁରଜନ-ହୃଦେ
ଜାଗିଲା ନବୀନ ଆଶା,
ଆଶା ସଙ୍ଗେ ପୁଣି ଦୁରାଶା ଯୁଝିଲା
ଭାଷା ସଙ୍ଗେ ପ୍ରତି ଭାଷା ।୧୦୮।

କେତେ ଦେବ ଦେବୀ ସୁମରି ଜନନୀ
ଯାଚୁଥାନ୍ତି କେତେ ଭୋଗ,
କେତେ କାକୁ ବାକ୍ୟେ ଶରଣ ପଶନ୍ତି
ଆରୋଗ୍ୟ ହେବାକୁ ରୋଗ ।୧୦୯।

ପ୍ରାଣପଣେ ଯେତେ କଲେ ପ୍ରତିକାର
ସକଳ ହେଲା ବିଅର୍ଥ,
ଜୀବନୀ ଶକତି ବଢ଼ାଇବା ପାଇଁ
ନୋହିଲେ କେହି ସମର୍ଥ ।୧୧୦।

ଦୁଃଖେ ବିଷାଦିତା ଅବନୀ ବଦନ
ଅନୁରାଗେ ଥରେ ଚାହିଁ,
ଅସ୍ତାଚଳ ପାରେ ପ୍ରବେଶିଲେ ଯାଇ
କମଳିନୀ ପ୍ରାଣସାଇଁ ।୧୧୧।

ଧୀରେ ବିଭବରୀ କଲା ଆଚ୍ଛାଦନ
ବିଷର୍ଣ୍ଣ ଧରା ବଦନ,
କି ଘୋର ବିପଦ ଶଙ୍କାରେ ଯେସନେ
ବିଷାଦେ କରେ ରୋଦନ ।୧୧୨।

ଗୃହ ଚରିଦିଗେ ଖଣ୍ଡିଉତା ଦେଇ
ରସାଳ ପାଦପ ପରେ,
ପରୁଛି କା'ର ଆୟୁଷ ପେଚକ
କରୁଣ ବିକଟ ସ୍ୱରେ ।୧୧୩।

ହେଲା ଗତ ପ୍ରାୟ ବେନୀଯାମ ନିଶି
ଭାଦ୍ରବ ଶୁକ୍ଳ ଦଶମୀ,
କି ଘୋର ଉଦାସ ଭାର ବହ ହୃଦେ
ହେଉଛି ଭୟେ ଭରମି ।୧୧୪।

ଦକ୍ଷିଣାଶା ମୂଳୁ ଉପୁଜିଲା ଏକ
ଅଦ୍ଭୁତ ଭୈରବ ରବ
ଝଞ୍ଜାନିଳ ବୋଲି ଭ୍ରମ ଉପୁଜିଲା
ସ୍ତମ୍ଭିତ ଦିଗ ସରବ ।୧୧୫।

ବାଜି ଉଠିଲା କି ଅନନ୍ତ ଗଗନେ
ଅନନ୍ତ ଦୁନ୍ଦୁଭି ଧ୍ୱନି,
କା'ର ଆବାହନ ପାଇଁ ଆସିଛନ୍ତି
ଦିବୁଁ କି ସୁର ରମଣୀ । ୧୧୬ ।

ସେ ଗମ୍ଭୀର ଧ୍ୱନି ଶୁଣି ସୁକୁମାରୀ
ଚହିଁ ଜନନୀ ବଦନ,
ସତୃଷ୍ଣେ ଅଗ୍ରଜ ମୁଖ ଚହିଁ ପୁଣି
ମୁଦିଲା ବେନି ନୟନ । ୧୧୭ ।

କରୁଣେ ବିଷାଦ ପରଶି ନଥିଲା
ବାଳାର ଚରୁ ବଦନ,
ଦାରୁଣ ସଂଶୟ ଉର୍ମି ଅଟ୍ଟହାସେ
ଦୋଳାଇଲା ପ୍ରାଣମନ । ୧୧୮ ।

ରୋଧ-ଯବନିକା କରି ପ୍ରସାରିତ
ଉଡିଗଲା ପ୍ରାଣ ବାୟୁ
ଅକ୍ଷୟ ଅକ୍ଷରେ ଲେଖି ଦେଇ ତହିଁ
"ସରିଗଲା କ୍ଷୀଣ ଆୟୁ" । ୧୧୯ ।

ଉଠିଲା ସହସା ସେ ପୁର କାନନେ
ଶୋକ ହୁତାଶନ ଜଳି
ବହିଲା ସହସା ଶୋକ-ଝଞ୍ଜାନିଳ
ଶତ ହୃଦ-ଲତା ଦଳି । ୧୨୦ ।

ଏ କିରେ ! ଦଇବ ଦାରୁଣ ବିଧାନ
ରୋପି ଲତା, ଯତ୍ନେ ପାଳି
ଲଳିତ କଳିଟି ନଫୁଟୁଣୁ, ମୂଳେ
ଦିଏ ହୁତାଶନ ଜାଳି । ୧୨୧ ।

ଦରିଦ୍ରର କରେ ଦେଇ କୋଟିନିଧି
ନିଅଇ ପୁଣି ଛଡାଇ
ଅନ୍ଧଜନେ ନେତ୍ର ଦେଇ, ପୁଣି ଦିଏ
ଅନ୍ଧ ପୁଟଳି ଜଡାଇ । ୧୨୨ ।

କେଉଁ ସୁବିଧରେ ନାଶିଲା ଏ ଲତା
ଦାରୁଣ ଅଶନି ପାତେ
ଶତ ହୃଦ-ତରୁ ଛେଦିଲା କି ଘେନି
ଦାରୁଣ କୁଠାର ଘାତେ । ୧୨୩ ।

ହୃଦେ କର ମାରି କାନ୍ଦନ୍ତି ଜନନୀ
ଧରା ପରେ ଢାଳି ଶିର,
ଆୟସୀ ଲେଖନୀ ପାରିବ କି ଲେଖି
ସେ ଶିଳାଦ୍ରାବକ ଗୀର । ୧୨୪ ।

ଭାଷନ୍ତି ଆକୁଳେ "ତେଜି ଗଲୁ ମୋତେ
ସତେକି ପରାଣ ଧନ ?
ଦେଖାଇବୁ ନାହିଁ ସତେକି ତୋହର
ସହସ ଝରୁ ବଦନ । ୧୨୫ ।

ନଯା ଛାଡି ମାଗୋ ! ମାଗୁଛି ଆକୁଳେ
ରଖ ମୋ ବିନତି ବାଣୀ
ଏ ବିକଳ ବେଶ ଦେଖାଇ କିପାଁ ମୋ
ହୃଦୟ ଦେଉଛୁ ହାଣି" ।୧୨୬ ।

ଏହି ରୂପେ କେତେ ରୋଦନ୍ତି ଜନନୀ
ଭାଷି ଶୋକ ପାରାବାରେ,
ଦାରୁଣ ଶୋକର ଦାରୁଣ ଉଚ୍ଛ୍ୱାସ
ଉଠିଲା ସେ ପରିବାରେ । ୧୨୭ ।

ଜ୍ଞାତି ଜନେ ମିଳି ସମାଧି ନିମନ୍ତେ
ନେଲେ ସେ ମୃତ ଶରୀର
"ହେମ ତନୁ ମାଟି ହୁଅଇ କ୍ଷଣକେ"
ଏହି କି ବିଧି ବିଧିର ? ୧୨୮ ।

ହା ! ହା ! ! ରେ ଦଇବ ! ! ଏହି ଲୀଳାତୋର
କେଉଁ ସୁବିଚାରେ ଆହା !
ହରି ନେଲୁ ଆଜି ଏ କନକ ଲତା
ଦେଇଥିଲୁ ଦୀନେ ଯାହା । ୧୨୯ ।

ସନ୍ତାପ ସାଗରେ ସନ୍ତରି ଜନନୀ
ଦେଖିଲେ ଉଷା ଆଲୋକ
ଉଷା ସମୀରଣ ଜନମାଇଁ ଦେଲା
ଦୁଇଗୁଣେ ହୃଦେ ଶୋକ । ୧୩୦ ।

ରୋଦନ୍ତି ଆକୁଳେ "ପାହିଗଲା ରାତି
ଆହାରେ ପରାଣ ଧନ !
ଆକୁଳେ ମୋହୃଦ ଭସାଇ କାକୋଳେ
କରିଛୁ ସୁଖେ ଶୟନ । ୧୩୧ ।

ଆହା ପୂର୍ଣ୍ଣ ମୋର ଦେଖାଅ ମା ବାରେ
ତୋ ଚାରୁ ଲଳିତ ମୁଖ
କାହିଁ ଯାଇ ସତେ ରହିଛୁ ଗୋପନେ
ନଦେଖୁ କି ମୋର ଦୁଃଖ ? ।୧୩୨।

ମୋହରି କୋଳରେ ବସିଥିଲୁ ତୁହି
କାଲି ଏ ଉଷା ଆଲୋକେ,
ତେଜି ଧରାଧାମ ଆଜି ଏବେ କାହିଁ
ବିହରୁଛୁ କେଉଁ ଲୋକେ ? ।୧୩୩ ।

ଏତେବେଳ ଯାଏ କେଉଁ ତରୁତଳେ
ଶୋଇଛୁ ମା ! ଅନଶନେ,
ବାରେ ହେଲେ ଆସି କରି କ୍ଷୀରପାନ
ଫେରିଯାଅ ତୋ ଭୁବନେ । ୧୩୪ ।

'ମା !' ବୋଲି ତୋତେ ଡାକୁଥାଇ ସଦା
ନଧରଇ ତାର ନାମ,
କେଉଁ ଅନାଦର ଲଭି ଅପମାନେ
ହେଲୁ ମାତ ମୋତେ ବାମ । ୧୩୫ ।

"ଚରିଦିନେ ଧରା ତେଜିଯିବି ବୋଲି
ଜାଣିଥିଲୁ କି ମା ସତେ ?
ତେଣୁ କି ନୟନେ ଦିବ୍ୟ ଲୀଳାମାନ
ନଚଉଥିଲୁ ନିରତେ । ୧୩୬ ।

ଅମୃତ ସୁଷମା - ମୟି ଅନୁପମା
ତୋର ସେ ରୂପ-ମାଧୁରୀ,
ଦରଶନ ମାତ୍ରେ ହରଷ ପୀୟୂଷେ
ହୃଦ ଯାଉଥିଲା ପୂରି । ୧୩୭ ।

ସୁଲକ୍ଷଣେ ପୂର୍ଣ୍ଣ ଦେଖି ତୋର ଅଙ୍ଗ
ଭାଷୁଥାନ୍ତି କେତେ ଜନେ,
ସୁର ପୁର ତେଜି ନିଷ୍ଠେ ଏ କୁମାରୀ
ଜନମିଛି ଏ ସଦନେ । ୧୩୮ ।

ଶାପବଳେ ପାପ ମେଣ୍ଟାଇବା ପାଇଁ
ଆସିଥିଲୁ କି ମା ! ସତେ
ଚରିଦିନ ଭବେ ରହି ଚଳିଗଲୁ
ଜ୍ୟୋତିର୍ମୟ ଦିବ୍ୟ ପଥେ । ୧୩୯ ।

କାହିଁ ଯାଇ ଏବେ ନାଚୁଅଛୁ କାହିଁ
ଆହାରେ "ନାଚୁଣି ଘୁଡା'',
ସେ ମଧୁର ଛବି ଦେଖିବାକୁ ମୋର
କପାଳତ ହେଲା ପୁଡା । ୧୪୦ ।

କାହିଁଯାଇ ସତେ ଝୁଲୁଅଛୁ କାହିଁ ?
ଆସ ମୋ "ଝୁଲୁଣି ହାତୀ'',
ସେ ମଧୁର ଛବି ନଦେଖି ତୋହର
ଫାଟିତ ଯାଉଛି ଛାତି । ୧୪୧ ।

କାହିଁ ଯିବି ମାଗୋ ? କାହିଁ ଗଲେ ସତେ
ଲଭିବି ତୋ ଦରଶନ,
ଏ ବିଷମ ବିଷ- ଜ୍ୱାଳା ନିବାରିବି
ଚାହିଁ ତୋ ସୌମ୍ୟ ବଦନ । ୧୪୨ ।

ମଧୁମୟ ତୋର ଭାବ ଭଙ୍ଗିମାନ
ଖେଳୁଛି ମା ! ସ୍ମୃତିପଟେ
'ନାଗେଶ୍ୱର' ହାର ନାଗବେଶେ ଆଜି
ବିହରୁଛି ହୃଦ ତଟେ । ୧୪୩ ।

କଥାଛଳେ ଦିନେ କି ଲୋଡା ବୋଲିଣ
ପଚାରିଲା ତୋ ସୋଦର,
କୋମଳ ଅଧରେ "ଉଖୁଁ'' ବୋଲି ଆହା
ଦେଇଥିଲୁ ତୁ ଉତ୍ତର । ୧୪୪ ।

ଆହା ଅନୁ ମୋର ! କେଉଁ ତରୁ ତଳେ
ପିଉଅଛୁ ଏବେ ଉଖୁଁ,
ଭାଳିଥିଲି ତୁମୋ ଆଶା-କଳ୍ପ-ଲତା
ନତାରିଲୁ ମା ! ଏ ଦୁଃଖୁଁ ? ୧୪୫ ।

ସହୋଦରା କୋଳେ ଝୁଲୁଥାଉ ଯେବେ
ପରକାଶି ମୃଦୁ ହାସ
ହୃଦ-ନଭେ ମୋର ଆନନ୍ଦ ଚନ୍ଦ୍ରମା
ହେଉଥାଏ ପରକାଶ । ୧୪୬ ।

ଜାଣିତ ନଥିଲି          ଅକାଳେ ତୋହର
        ସରିଯିବ ଜୀବଲୀଳା
ଜାଣି ନଥିଲି ମା          ହୃଦ-ମଣି ମୋର
        ମରକତ ହେବ ଶୀଳା । ୧୪୭ ।

"ଷଠୀପୂଜା'' ବେଳେ କୋଳେଧରି ତୋତେ
        ବସିଥିଲି ମୁହିଁ ଆହା !
'ଷଠୀ ଡୋର' ଗଳେ          ପିନ୍ଧି ଚାଲିଗଲୁ
        ସେହିତ ନୋହିଲେ ସାହା । ୧୪୮ ।

ସତ୍ୟ ନାରାୟଣ -          ଶ୍ରୀପଦେ ଶରଣ
        ପଶି ମାଗିଥିଲି କେତେ !
ସବୁ ହେଲା ବୃଥା          ଦେବ ଦେବୀ ପଦେ
        ସେବା କରିଥିଲି ଯେତେ । ୧୪୯ ।

ଆହା ! ଅନ୍ନପୂର୍ଣ୍ଣା ! !          ପଲକ ମାତ୍ରକେ
        ସାରିଦେଲୁ ସବୁ କଥା,
ପଲକ ମାତ୍ରକେ          ହୃଦ-ଦେଶେ ମୋର
        ଢାଳିଦେଲୁ ଆହା ମଥା । ୧୫୦ ।

କେମନ୍ତେ ଭୁଲିବି ?          ଏ ଦାରୁଣ ଦୁଃଖେ
        କେମନ୍ତେ କରିବି ଛାତି
ଦେଇଗଲୁ କିମା          ଏ ଦାରୁଣ ଗୀତି
        ଗାଇବାକୁ ଦିନରାତି" । ୧୫୧ ।

ସେ କରୁଣ ବାଣୀ          କବି ହୃଦେ ଆଜି
        ଜନମାଏ ଘୋର ବ୍ୟଥା,
ନୀରବ ନିଷ୍ପନ୍ଦ          ନିଶ୍ଚଳ ଲେଖନୀ
        ଚଳି ନପାରଇ ମଥା । ୧୫୨ ।

## ଷଷ୍ଠ ସର୍ଗ

ଏ ଦାରୁଣ କାଳେ ଆସ ହେ ଅଙ୍ଗିରା !
ଶୁଣ ଏ କରୁଣ ବାଣୀ,
ଆସ ପୁନର୍ବସୁ ! କରୁଣା-ନିଧାନ
ଭେଷଜ-ପୀୟୂଷ-ପାଣି । ୧୫୩ ।

ଆସ ଜମଦଗ୍ନି ! ଅସତ ! ଅଗସ୍ତ୍ୟ !
ବଶିଷ୍ଠ ! ବାଦରାୟନ !
ଶାଣ୍ଡିଲ୍ୟ ! ଶୌନକ ! କାଶ୍ୟପ ! ଗାଲବ
କାଙ୍କାୟନ ! କାତ୍ୟାୟନ ! ।୧୫୪ ।

ଜ୍ଞାନ-ମହୋଦଧି ମହାଋଷି ବୃନ୍ଦ
ଆହେ ବ୍ରହ୍ମଜ୍ୟୋତି ପୁଞ୍ଜ
କୃପାବହି ଆଜି ଦେଖ ବାରେ ଆସି
ଭାରତ-ହୃଦୟ-କୁଞ୍ଜ । ୧୫୫ ।

ଝାଉଁଳି ଯାଇଛି ତରୁ ଲତା ରାଜି
ନଖେଳେ ମୃଦୁ ମଳୟ,
ଶୁଖି ଯାଇଅଛି କୁସୁମ ବଦନ
ଶାଶ୍ୱତ ଶୋଭା ନିଳୟ । ୧୫୬ ।

ତେଣାତଳେ ମୁଖ ଲୁଚାଇ ବିହଙ୍ଗ
ବସିଅଛି ତରୁ ଡାଳେ
ମନୋଦୁଃଖେ ଅଳି ନକରେ ଗୁଞ୍ଜନ
ଲୁଚି ପତ୍ର ଅନ୍ତରାଳେ । ୧୫୭ ।

ଏକେତ ବସନ୍ତ ଯାଇଅଛି ଚାଲି
ଆସିଛି ନିଦାଘ କାଳ,
ଆସୁଛନ୍ତି ପୁଣି ସହଚର ବେଶେ
ନବ ନବ ବ୍ୟାଧି ଜାଳ । ୧୫୮ ।

ବିଭୀଷିକା ମୟ ଭୀମ କଳେବର
ବିକଟ ହାସ୍ୟ ପ୍ରକାଶି,
ଢାଳି ଦେଉଛନ୍ତି ଭାରତ ହୃଦୟେ
ସନ୍ତାପ-ଅନଳ ରାଶି । ୧୫୯ ।

ବିକଟ ବଦନ କରଜ, ଦଶନ,
ବିକଟ ନୟନ ଖେଳା
ନୈରାଶ୍ୟ - ସାଗରେ ବୁଡ଼ାଏ ହୃଦୟ
ଭାଙ୍ଗି ସୁଖ ଶାନ୍ତି ମେଳା । ୧୬୦ ।

ପିନ୍ଧି ଚର୍ମ ବାସ । ଶାର୍ଦ୍ଦୂଳ, ଶୃଗାଳ
ଭଲ୍ଲୁକ, ଗୃଧ୍ର ବାହନେ
କରବାଳ କରେ ନିର୍ଭୀକ ହୃଦୟେ
ବିହରନ୍ତି କ୍ରୁରମନେ । ୧୬୧ ।

ପଶି ଗ୍ରାମେ ଗ୍ରାମେ ସପନେ ସପନେ
କିବା ନର କିବା ନାରୀ,
କି ବୃଦ୍ଧ ବାଳକ ଯୁବକ ଯୁବତୀ
ବଳେ ନିଅନ୍ତି ଓଟାରି । ୧୬୨ ।

ଶତ ଜନ ଆଶା - ବଲ୍ଲରୀ ବେଷ୍ଟିତ
ନନ୍ଦନ ପ୍ରତିମା ମାନ,
ବଳେ ଧରିନେଇ ଚିରି ବକ୍ଷସ୍ଥଳ
କରନ୍ତି ରୁଧିର ପାନ । ୧୬୩ ।

ମହାଭୟେ ଦୀନ ମହାଶୋକେ ହୀନ
ଭାରତ ସନ୍ତାନ ମୁଖ,
କୃପାବହ୍ନି ଆସି କର ଦରଶନ
ଏ ହୃଦୟ ଭେଦି ଦୁଃଖ । ୧୬୪ ।

ଜଳୁଛି ତ ଆଜି ସେହି ପୁଣ୍ୟସ୍ଥଳୀ
ସେହି ଗିରି ହିମାଳୟ,
ଧୋଇଦେବେ ଜହ୍ନୁ ନନ୍ଦିନୀ ତବସେ
ଚରଣ-କରୁଣା ମୟ । ୧୬୫ ।

ତୁମ୍ଭ ବିହୂନରେ ବନସ୍ପତି ବୃନ୍ଦ
ଲୁଚିଛନ୍ତି ଘୋର ବନେ,
ତୁମ୍ଭରି ଓଁକାର ଶୁଣି ଭୀତି ତେଜି
ହସିବେ ପ୍ରଫୁଲ୍ଲ ମନେ । ୧୬୬ ।

ଆସ ଆସ ବାରେ ଘେନ ନିବେଦନ
ମିଳି ସେ ପୁଣ୍ୟ ପ୍ରାନ୍ତରେ ।
ଦୀକ୍ଷିତ କରାଅ ଭାରତ ସନ୍ତାନେ
ସେହି ଅମୃତ ମନ୍ତ୍ରରେ । ୧୬୭ ।

ସେ ଅମୃତ ଧାରା ବରଷି ଭାରତେ
ଲିଭାଅ ଶୋକ ଅନଳ,
ମହା ମହୋତ୍ସାହେ ମାତୃ ଏ ଭାରତ
ଲଭି ନବ ତେଜ ବଳ । ୧୬୮ ।

ମାନ ଦ୍ୱେଷ ହିଂସା ଆଳସ୍ୟ ବିଳାସ
ତେଜି ଭାରତ ସନ୍ତାନେ,
ଗମନ୍ତୁ ଆନନ୍ଦେ ତବ ବିରଚିତ
ସେ ଶୁଭମୟ- ସୋପାନେ । ୧୬୯ ।



ଓଁ

# କଲ୍ୟାଣ କୁସୁମ ।

ବାମଣ୍ଡା ଯୁବରାଜ
ଶ୍ରୀମାନ୍ ଦିବ୍ୟଶଙ୍କର ଦେବ ମହୋଦୟଙ୍କ
ଶୁଭ ପରିଣୟୋତ୍ସବ ଉପଲକ୍ଷେ
ବିରଚିତ ।

ଓ

ତା ୧ – ୩ – ୧୯୧୯ ମଃ ପରିଣୟ ବାସରେ
ପଠିତ ।

ଶର୍ମ୍ମା ଶ୍ରୀହରିହର ମହାପାତ୍ର ।
ଦେବଗଡ଼

Printed by D. Gamayak
The Hitaishini Electric Machine Press
BAMRA, 1919

# କଲ୍ୟାଣ କୁସୁମ

## ୧ ମ ଦଳ

(" ବନ୍ଦେ ଅରବିନ୍ଦ-ବାସିନୀ" ବୃତ୍ତରେ)

ବନ୍ଦେ ମାତ। ହଂସବାହିନୀ

ଜୟ ବିଶ୍ୱକାମଧେନୁ ବିଶ୍ୱ-ମୋହିନୀ । ପଦ ।

ଜୟ ବିଶ୍ୱ ପ୍ରସବିନୀ ଥୟ ଲୟ ବିଧାୟିନୀ
ଅପାର ରହସ୍ୟମୟୀ ଦ୍ୟୁତିନାଶିନୀ । ୧ ।

ବ୍ରହ୍ମାଣ୍ଡ-ପରିବାଦିନୀ- ବାଦନ-ପରିମୋଦିନୀ
ଜୟପ୍ରଜ୍ଞା-ପ୍ରଚ୍ଛେଦିନୀ ପ୍ରାଣ-ନନ୍ଦିନୀ । ୨ ।

ବିଶ୍ୱ-ଅକ୍ଷ ସୂତ୍ରଧରା ସୁଧା କମଣ୍ଡଳୁ-କରା
ନିଖିଳ ନୟନ ତାରା ବେଦ-ବାଦିନୀ । ୩

ସିଦ୍ଧି-ସୁଧା-ନିସ୍ୟନ୍ଦିନୀ ହୁଅମା। ବିଶ୍ୱବନ୍ଦିନୀ
ଏଶୁଭ ଉତ୍ସବେ ଆଜି ସିଦ୍ଧି ଦାୟିନୀ। ୪ ।

## ୨ୟ ଦଳ

କାମୋଦୀ-ତାଳଝୁଲା

ବାଜରେ ଆଜ ମୋ ବୀଣା ଲଳିତ ପଞ୍ଚମତାନେ
ଏ ପରିଣୟ ଉତ୍ସବେ ମାତି ସୁଖେ ଜୟଗାନେ । ପଦ ।

ବାମଣ୍ଡା ଧରାମଣ୍ଡନ ପରଜା ଦୁଃଖ ଖଣ୍ଡନ
ଶ୍ରୀମନ୍ତ ସଚ୍ଚିଦାନନ୍ଦ ନରେଶ ହୃଦ-ବନ୍ଦନେ । ୧ ।

ଦୟାକ୍ଷମା ଜ୍ଞାନବତୀ ପରଜା-ବତ୍ସଳା ସତୀ
ଖଡିଆଳ ଧରା-ଅଧୀଶ୍ୱରୀ ଚିତ୍ତ ବିନୋଦନେ । ୨ ।

ବାମଣ୍ଡା ନେତ୍ର- ନନ୍ଦନ     ଶୀତଳ ହୃଦ-ଚନ୍ଦନ
ଶ୍ରୀଦିବ୍ୟଶଙ୍କର ଦେବ -     ହୃଦୟ ଅଭିନନ୍ଦନେ । ୩ ।
ରୂପେଗୁଣେ ଅନୁପମା     ଖଡିଆଳ ରାଜଜେମା
ବାମଣ୍ଡା ଅବନୀ-ଯୁବରାଜ୍ଞୀ ଚିତ୍ତ ଆହ୍ଲାଦନେ । ୪ ।

ଶାନ୍ତ,ସୁଶୀଳ,ବିନୟ     କ୍ଷମା କରୁଣା ଆଳୟ,
ପ୍ରବୋଧ୍ୱ ଖଡିଆଳୟ     ଗଗନ ନବତପନେ । ୫ ।

ବେନିଧରା ରାଜସୁତ     ରାଜସୁତା ରାଜଭ୍ରାତ
ପ୍ରିୟ ବନ୍ଧୁଗଣ-ହୃଦ     ଆହ୍ଲାଦି ପ୍ରୀତି-ଚନ୍ଦନେ । ୬ ।

## ୩ୟ ଦଳ

ଆନନ୍ଦ ଭୈରବ-ତାଳ ତ୍ରିପଟା

ଆଜଏ ଶୁଭମୟ ପରିଣୟ ଉତ୍ସବେ
ଗାଅ ମଙ୍ଗଳ ଗାନ ହେ । ପଦ ।

ଏମଧୁର ବସନ୍ତେ ପୁଷ୍ପିତ ଲତା କୁଞ୍ଜେ
କରେ ବିପଞ୍ଚୀ ଧରି ହେ,
ମନ୍ଦ ମନ୍ଦ ସମୀରେ     ଭସାଇ ପୂର୍ଣ୍ଣତାନ
ରସାଇ ଜନମନ     ହେ ବନ-ବିଦ୍ୟାଧରି
(ପଢି)
"ଜୟ ନବ ନଳିନୀ     ଖଡିଆଳ ଦୁର୍ଗର,
ଶ୍ରୀମତୀ ରାଜ ଜେମା     ହୃଦ-ପଦ୍ମ ଭାସ୍କର-
ଜୟ ଶ୍ରୀ ଯୁବରାଜ     ଦେବ ଦିବ୍ୟ ଶଙ୍କର"
ବୋଲି ହରଷ ମନେ     ତୋଳି ପଞ୍ଚମ ସ୍ୱର । ୧ ।
ସେ ସମୀର ଲହରେ     ପ୍ରସରୁ ଦଶଦିଗେ
ଏ ପୁଣ୍ୟ ମଧୁ ତାନ ହେ,
ଶୁଣି, ତାରକା ସଙ୍ଗେ     ବିହରି ନଭେ ରଙ୍ଗେ
କରି କୁସୁମ ବୃଷ୍ଟି     ସୁରରମଣୀ ଗଣ,
(ପଢି)
ଜୟ ନବନଳିନୀ...     ପଞ୍ଚମ ସ୍ୱର । ୨ ।
କରି ଶୁଭ କାମନା     ବାରାନିଧି-ବକ୍ଷରେ
ଗମ୍ଭୀର ଶଙ୍ଖନାଦେ ହେ,

ବରୁଣ ପୁରେ ସୁଖେ ବାରୁଣୀ ବାମାଗଣ
ନାଚି ତ୍ରିପଟା ତାଳେ ମଞ୍ଜୁ ମଞ୍ଜୀର ପାଦେ;

(ପଡି)

ଜୟ ନବ ନଳିନୀ... ପଞ୍ଚମ ସ୍ୱର । ୩ ।
ଆଜି ଏ ସଭାସ୍ଥଳେ ଦିଅ ହେ ବନ୍ଧୁଗଣ
ଆନନ୍ଦେ କରତାଳି ହେ,
ଲଳନା କୁଳ ସୁଖେ କରି ଶୁଭ କାମନା
ମଧୁର ଉଚ୍ଚ ରବେ ଦିଅ ଗୋ ହୁଳହୁଳି;

(ପଡି)

ଜୟ ଜୟ ନଳିନୀ... ପଞ୍ଚମ ସ୍ୱର । ୪ ।

## ୪ର୍ଥ ଦଳ

(ଝିଞ୍ଜିଟ୍-ଝୁଲା)

ବାଜିଉଠେ ଆଜି ଶୁଭ ଶଙ୍ଖ ନାଦ
ଖଡିଆଳ ରାଜ ଭବନେ
ଖେଳୁଛିରେ ନବ ଆନନ୍ଦ ତରଙ୍ଗ
ସର୍ବ ନର ନାରୀ ଜୀବନେ
ଆଜି ଏ ଶୁଭ ମଧୁର ମିଳନେ । ଘୋଷା ।
ଏନବ ବସନ୍ତେ ଫଲ୍ଗୁ ଚୂତ ବନେ
କବି ହୃଦ-କୁଞ୍ଜେ କୋକିଳ କୂଜନେ
ତରଙ୍ଗେ ତରଙ୍ଗେ ବହେ ପ୍ରୀତିସୁଧା
ପ୍ରସରି ମଳୟ ପବନେ । ୧ ।

ମନ୍ଦେ ମନ୍ଦେ ହସି ସୁମନା କାମିନୀ
ଏପୀୟୂଷ ମୋଦେ ହୋଇ ଆହ୍ଲାଦିନୀ
ନାଚଇ ହରଷେ ସମୀର ପରଶେ
ବିତରି ସୁବାସ ଯତନେ
ମଧୁବିଳାସିନୀ ମାଧବୀଯାମିନୀ
ତାରା-ହାରାମୟୀ ହେମ-ଦୁକୂଳିନୀ
ତେଜି ତମବାସ ହରଷେ ଆଶୀଷ
ପ୍ରକାଶେ ଲଳିତ ଚୁମ୍ବନେ । ୩ ।

ବାମଣ୍ଡା ମଣ୍ଡଳ  ନୟନ-ନନ୍ଦନ
ଯୁବରାଜ,ରାଜ  ହୃଦୟ-ଚନ୍ଦନ
ସୁଶୋଭିତ ହେଲେ,  ଖଡିଆଳ ଧରା-
ରାଜଜେମା-ହୃଦ ରତନେ । ୪ ।

ଦିଅ କରତାଳି  ପ୍ରିୟ ବନ୍ଧୁଗଣ
ଶୁଭମୟ ହେଉ  ଏନବ ମିଳନ
ନବଦମ୍ପତିଙ୍କି ଆଶୀଷନ୍ତୁ ବିଭୁ
କଲ୍ୟାଣ କୁସୁମ ଚନ୍ଦନେ । ୫ ।

## ୫ମ ଦଳ

(ଶଙ୍କରାଭରଣ - ତାଳ-ଝୁଳା)
ଉଚ୍ଚେଦିଅ ହୁଳହୁଳି

ଏଶୁଭ ଉତ୍ସବେ ଆଜି  ସର୍ବବାମା ମିଳି । ପଦ ।

ଖଡିଆଳ-ରାଜଜେମା  ହୃଦୟ ରତନେ
ବାମଣ୍ଡା ଅବନୀ  ଯୁବରାଜଙ୍କ ମିଳନେ । ୧ ।

ବାଜି ଉଠେ ଶୁଭ  ଶଙ୍ଖ ବେଦଧ୍ୱନି ସଙ୍ଗେ
ମଧୁରବେ ମଧୁରିକା  ମାଳଶ୍ରୀ ତରଙ୍ଗେ । ୨ ।

ନଚ୍ଚଇ ହୃଦୟ ପଦ  ଉନ୍ନତ ବିଷାଣ
ବାଜି ଉଠେ ଢୋଲ  ସଙ୍ଗେ ଉନ୍ନତ ନିଶାଣ । ୩ ।

ନଭେ ଉଠେ ଏନିର୍ଘୋଷ  ନିଖିଳ ହୃଦୟ
ଅପୂର୍ବ ଉତ୍ସାହେ କରି  ଉତ୍ସବେ ତନ୍ମୟ । ୪ ।

ପୂର୍ଣ୍ଣଘଟ, ରମ୍ଭାତରୁ,  ଚୂତପତ୍ରେ ଶୋଭା
ସଘୃତ ଜାଗରେ  ପ୍ରତିଦ୍ୱାର ମନୋଲୋଭା । ୫ ।

ନାଚନ୍ତି ମଙ୍ଗଳଗାନେ  ବାରାଙ୍ଗନାଚୟ
ଝଲି ତାଳେ ପଦ କରି  ଭାବେ ଅବଳୟ । ୬ ।

କରି କଲ୍ୟାଣ କାମନା     ପବିତ୍ର ମାନସେ
ଗାଇ ସୁମଙ୍ଗଳ ଗୀତି     ନବୀନ ହରଷେ । ୭ ।
ଅରପନ୍ତୁ ଦୟାମୟ     ଜଗତବନ୍ଦନ
ନବ ଦମ୍ପତିଙ୍କ ଶିରେ     କୁସୁମ ଚନ୍ଦନ । ୮ ।

## ୬ଷ୍ଠ ଦଳ

(ଲକ୍ଷ୍ନୌ-ଠୁମ୍ରି)

ବହେ ପୁଣ୍ୟ ପ୍ରେମ ମନ୍ଦାକିନୀ ଧାରା
ନାଚନ୍ତି ଉଲ୍ଲାସେ ନଭେ କୋଟିତାରା । ପଦ ।

ଫୁଟି ଉଠେ ଦିବ୍ୟ ପାରିଜାତ ଫୁଲ
ନିଖିଳ ହୃଦୟ କରାଇ ପ୍ରଫୁଲ୍ଲ
ସୁରଭି ଆମୋଦେ     ମନ୍ଦ ଗନ୍ଧବହ
ଲୋଟି ଖେଳେ ହୋଇ     ଜନ ମନୋହରା । ୧ ।

ଦିଗ୍‌ବଧୂ କୁନ୍ତଳେ ମଣି ପୁଞ୍ଜ ଖଞ୍ଜି
ମଞ୍ଜୁ ବେଶେ ହସି ଜନ ମନ ରଞ୍ଜି
କରେ ଜୟନାଦ     ସୁମଙ୍ଗଳ ବାଦ
ଫେଡି ଜନ ମନ     ଦୁଃଖାଧ୍ୟାନ-କାରା । ୨ ।

ଦୀପ୍ତ ଦୀପାବଳି-ଶୋଭି ସୌଧମାଳା
ପ୍ରକାଶେ ରୁଚିରେ ବିଳାସିନୀ ଲୀଳା
ଏମଙ୍ଗଳ ଘୋଷେ     ତୋଳି ପ୍ରତିଧ୍ୱନି
ଖେଳାଏ ପ୍ରମୋଦ-     ନଭେ ମନ-ପାରା । ୩ ।

ଖଡିଆଳ-ରାଜକୁମାରୀ ରତନ
ସଙ୍ଗେ ଯୁବରାଜ ବାମଣ୍ଡା ମଣ୍ଡନ
ସ୍ୱୟମ୍ଭୂ ଆଶୀଷେ     ଲଭନ୍ତୁ ଦୀର୍ଘାୟୁ
ହେଉ ତାଙ୍କ ଭାଗ୍ୟେ     ସୁଖମୟୀ, ଧରା । ୪ ।

## ୭ମ ଦଳ

(ଭୈରବୀ-ଏକତାଳୀ)

ଫୁଟି ଉଠେ ହୃଦ କାନନେ, ପ୍ରୀତି ସୁମନ,
ଆଜ ଏମନ ମୋହନ     ସୁଷମା କରି ଲୋକନ । ପଦ ।
ଖଡିଆଳ ଧରା ଆଜି     ହାସନୀରେ ମୁଖମାଜି
ନବ ବେଶେ ତନୁ ସାଜି
ପିନ୍ଧିଛି କରି ଯତନ     ଜ୍ୟୋତି-ରତନ-ବସନ । ୧ ।
ବିବିଧ ବାଜଣା ନାଦ     ନିବାରି ହୃଦୁଁ ବିଷାଦ
ଜନ୍ମାଏ ନବ ଆହ୍ଲାଦ
ସଉଧେ ସଉଧେ ଖେଳି     କରି ମନ ଉଚ୍ଚାଟନ । ୨ ।

ନବ ସୁଖେ ନବହାସେ     ନବବେଶେ ପ୍ରୀତିଭାଷେ
ବିହରନ୍ତି ସହରଷେ
ହୋଇ ନରନାରୀ ଆଜ     ପୁଲକ-ସରେ ମଗନ । ୩ ।

ଆଜ ଏ ସଭା ସଦନେ     ସର୍ବ ପ୍ରିୟବନ୍ଧୁ ମାନେ
ଶୁଭବାଞ୍ଛି, ଜୟସ୍ୱନେ
ନବ ଦମ୍ପତିଙ୍କି କର     ଆନନ୍ଦେ ଅଭିନନ୍ଦନ । ୪ ।

## ୮ମ ଦଳ

(ପୁନାଙ୍ଗ - ଝୁଲା)

ବାଜ ଆଜ ବୀଣା ମଧୁତାନରେ
ସେ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ
ବାମଣ୍ଡା ଭୁପଙ୍କ ଜୟଗାନରେ । ପଦ ।
ବ୍ରାହ୍ମୀ ସମଲୋଟେ     ଶାନ୍ତି ତଟିନୀ
ରାଜ୍ୟେ ଯା'ର     ହୋଇ ମୃଦୁ ବାହିନୀ
ପ୍ରଧାନ ପ୍ରପାତ     ସମ ଭକ୍ତିଝର
ଝରେ ଯା'ର ପ୍ରଜାଜନ ମନରେ । ୧ ।

ନବ ନୀତିବଳେ     ରାଜ୍ୟ ଶାସନେ

ରତ ଯେ ନିରତେ ପ୍ରଜା ରଞ୍ଜନେ
ନୀରମ୍ବୁ ପ୍ରଦେଶେ କୁଲ୍ୟାମ୍ବୁ ଖେଳାଇ
ରତ ଯେ ସ୍ୱରାଜ୍ୟ ସୁଖ-ଦାନରେ । ୨ ।

ବିଜ୍ଞାନ-ଆମୋଦେ କବିତ୍ୱ-ରସେ
କାଟନ୍ତି କାଳ ଯେ ଅତି ନିରସେ
ସୁଜନ ମଣ୍ଡଳୀ କୃତାର୍ଥ ହୁଅନ୍ତି
ସନ୍ନିଧାନେ ଯା'ର ସନମାନରେ । ୩ ।
ପରିଚାରୀ ରୂପେ ସଉଦାମିନୀ
ସେବାକରେ ଯା'ର ସର୍ବ ଯାମିନୀ
ନାନାଯନ୍ତ୍ର ଆଣି ରତ ଯେ ପ୍ରଜାଙ୍କୁ
ଶିକ୍ଷା ଦାନେ ନବ ନବ ଜ୍ଞାନରେ । ୪ ।

ଯା' କରୁଣା ଧାରା ହୃଦୟେ ଥାଇ
ଫୁଟାଏ ଆନନ୍ଦ କୁସୁମ ରାଜି
ଯା' ଯୋଗୁଁ ହୃଦୟ ଏଶୁଭ ଉତ୍ସବେ
ପୁଲକିତ ନବ ପ୍ରୀତି-ଧନରେ । ୫ ।

"ଜୟ ଦୀନଜନ- ଦୁଃଖ ଭଞ୍ଜନ
ଜୟ ସୁଧୀକୁଳ- କୁମୁଦ ଚନ୍ଦ୍ରମା"
ବୋଲି ସହରଷେ ଉଚ୍ଚସ୍ୱନରେ । ୬ ।



# ପ୍ରତିଭା ମୁକୁଳ ।

ବାମଣ୍ଡା ସ୍ୱତ୍ତଧାମୀ ଦେବଗଡ଼ନିବାସୀ

ଶର୍ମ୍ମା ଶ୍ରୀହରିହର ମହାପାତ୍ର
କର୍ତ୍ତୃକ ବିରଚିତ ।

Printed by D. Garnayak
The Hitaishini Electric Machine Press
BAMRA, 1919

# ଭକ୍ତି-ଉପହାର

ଅଶେଷ କରୁଣାମୟୀ, ଆଶ୍ରିତ ବତ୍ସଳା,
ମହାମାନନୀୟା ଶ୍ରୀମତୀ ବାମଣ୍ଡାଧୀଶ୍ୱରୀ-
ମହୋଦୟା-ସନ୍ନିଧାନେଷୁ

ଜନନୀ।

ଭୂରାବି ସବିତା-ଦିବ୍ୟ ମରିଚୀର ଭାତି
ବିକାଶେ ଚନ୍ଦ୍ରମା-ବକ୍ଷେ ଚନ୍ଦ୍ରିକା ସୁକାନ୍ତି
ସ୍ମରି, ଏ ପ୍ରତିଭା-ବିମ୍ବ ଏ କ୍ଷୁଦ୍ର ମୁକୁରେ
ସମର୍ପିଲି ଭକ୍ତିଭରେ ତବ ଶ୍ରୀ ଛାମୁରେ।

ବିନୀତ
ରଚକ।

# ପ୍ରତିଭା ମୁକୁର

ପରାଚୀ-ଲଲାଟେ ତରୁଣ ଅରୁଣ
କନକ କିରଣ ବୁଣି ଯେସନେ
ଉଦ୍ଭାସନ୍ତି ବିଶ୍ୱ ସଞ୍ଚାରି ପଲକେ
ସଞ୍ଜୀବନୀ ସୁଧା ସର୍ବ ଜୀବନେ ।
ସେ ଅମୃତପାନେ ସ୍ଥାବର ଜଙ୍ଗମ
ଉଲ୍ଲସି ପୁଲକେ ଜଡତା ତେଜି
ବିହରନ୍ତି ନିଜ ନିଜ କର୍ମ ପଥେ
ବିଶ୍ୱ ରାଜଙ୍କର କରୁଣା ହେଜି ।
ତେସନେ ସ୍ୱରାଜ୍ୟେ ସୁରାଜା-ଶାସନ
ସୁନୀତି ପ୍ରଭାବେ ସୁ ପ୍ରଭାମୟ ।
ଉଦ୍‌ବୋଧିତକରେ ପରଜା ହୃଦୟ
ନାଶି ନୀଚନୀତି ଦୂରିତ ଚୟ ।
ପରଜାର ଦୁଃଖେ କାନ୍ଦେ ଯା'ହୃଦୟ,
ପ୍ରଜାକୁଳ-ଦୁଃଖ ନପାରି ସହି
ନିରତେ ଯେରତ ଦୁଃଖ-ତମନାଶେ
ନୀତିଦୀପ୍ତ ନେତ୍ର ସୁଧାଂଶୁ ବହି,
ନୁହନ୍ତିତ ସେହୁ ଇତର ମାନବ,
ଅଟନ୍ତି ସେ ପ୍ରଜା-ହୃଦୟେଶ୍ୱର
ପ୍ରତି ପ୍ରଜାଙ୍କର ଭକତି ଚନ୍ଦନେ
ପବିତ୍ର ଶୀତଳ ପଦ ତାଙ୍କର
ଏମନ୍ତ ସୁନୀତିମନ୍ତ ପ୍ରଭା ଦୀପ୍ତ
ପ୍ରଜା ହୃଦେଶ୍ୱର, ରାଜ ଆସନେ
ଲଭି ଧନ୍ୟା ଆଜି ବାମଣ୍ଡା ଅବନୀ
ହସଇ ଗରବେ ଫୁଲ୍ଲ ଆନନେ

ବିଗତ ଶରଦେ ବିମୁଖ ମଘବା
ଦେଖି ଅବନୀର ଦୁରିତ ରାଶି
ନିରୋଧିଲେ ଯେବେ ଜଳଦ ଭଣ୍ଡାର
କୃଷି ଜୀବୀକୁଳ କରି ହତାଶୀ
ପାଣ୍ଡୁରୀତହେଲା ଶ୍ୟାମ କ୍ଷେତ୍ର ରାଜି
ବହିଲା ପ୍ରକୃତି ବିକୃତ ରୂପ
ବିଶ୍ୱଲୟଙ୍କରୀ ଶଙ୍କରୀ-କିଙ୍କରୀ
ଯୋଗିନୀଙ୍କ ନାଟ ଦେଖିଲେ ଭୂପ ।
ପୁଞ୍ଜ ପୁଞ୍ଜହୋଇ ଇନ୍‌ଫ୍ଲୁଏଞ୍ଜାରୂପରେ
ବ୍ୟାପିଲେ ଅବନୀ ଖପରଧରି
ପିଇଲେ ରକତ କୋଟି କୋଟି ନର-
ହୃତ୍‌ପିଣ୍ଡ ବିଦାରି କଲିଜାଚିରି ।
ଗଡାଇ ସଢ଼ାଇ ଶ୍ମଶାନେ ସ୍ୱଦେହ
କୋଟି କୋଟି ନର ଆତ୍ମ ରୂପରେ
ରୋଦିଲେ ଗଗନେ ଅଭିଶାପ-ବିଷ
ଢାଳି କ୍ରୂରକର୍ମା ଜର୍ମ୍ମଣୀ ପରେ ।
ତାହାରି ଉନ୍ମତ୍ତା ଦୁର୍ନୀତି ଦୁରାଶା
ବିଶ୍ୱଲୟଙ୍କରୀ ଚଣ୍ଡୀକି ଡାକି
ଦେଖାଇଲା ସିନା ଏଭୀମା ତାଣ୍ଡବୀ
ବିଶ୍ୱହୃଦେ ତପ୍ତ ଶଲାକା ଯାକି
ସେହିତପ୍ତ ବିଷ- ଶଲାକା ତାପନେ
ହୋଇ ନିଜେ ଦଗ୍ଧ ସ୍ୱକର୍ମ୍ମ ଦୋଷେ
କୋଟି ଅଭିଶାପେ ମୁମୂର୍ଷୁ ସେ ଏବେ
ବ୍ରିଟନେଶ୍ୱରଙ୍କ ଦାରୁଣ ରୋଷେ ।
ସେ କ୍ରୂର ଦୁଷ୍କୃତି- ଗାହୁକବଳରୁ
ମୁକ୍ତ କଲା ବିଶ୍ୱ, ବିକ୍ରମ ଯାର,
ଶୋଭୁ ସଦା ସେହି- ବ୍ରିଟୀଶକେତନେ
ବିଶ୍ୱ ପ୍ରୀତି କୀର୍ତ୍ତି-କୁସୁମହାର ।

ହେ ବାମଣ୍ଡାବାସୀ ! ପ୍ରତି ହୃଦେ ଆଜି
ଭକତି-କୁସୁମେ କରି ଅର୍ଚ୍ଚନା
ସେ ବ୍ରିଟନେଶ୍ୱର ଭାରତେଶ୍ୱରଙ୍କୁ
ଉଦ୍ଦେଶି ଗାଅହେ ଜୟ ବନ୍ଦନା
'ଜୟ ଜୟ ଜୟ ଶାନ୍ତି ସୁଖଦାତା
ନ୍ୟାୟ ଦଣ୍ଡଧର ବ୍ରିଟନ ପତି
ଚିର ଅନାମୟ ତବ କୀର୍ତ୍ତି ଧ୍ୱଜା-
ସଙ୍ଗେ ଘେନ ଆମ୍ଭ ପ୍ରାଣ-ଭକତି''
ଏ ଜୟ ବନ୍ଦନା ଗାଅ ଚଉଦିଗେ !
ଗାଅ ହର୍ଷେ ଆମ୍ଭ ନରେଶ-ପାଶେ ! !
ଏ ଭକ୍ତି-କୁସୁମ ବିକାଶେ ନୃମଣି
ପ୍ରମୋଦିତ ହେବେ ମହାଉଲ୍ଲାସେ ।
ତୁମ୍ଭ ଉଚ୍ଚଶିକ୍ଷା କର୍ମେ ଉଚ୍ଚଦୀକ୍ଷା
ନ୍ୟାସ ଅଟେ ସଦା ହୃଦେ ତାଙ୍କରି
ତୁମ୍ଭ ଉଚ୍ଚ ବୃତ୍ତି ଭକ୍ତିମତି ନୀତି
ମଣିବେ ସେନିଷ୍ଟେ ପ୍ରମୋଦଙ୍କରୀ ।
ତୁମ୍ଭରି ନିମନ୍ତେ ଅବାରିତ ଦ୍ୱାର,
ଅବାରିତ ଶ୍ରୁତି, ଧନ ଭଣ୍ଡାର,
ତୁମ୍ଭରି ମଙ୍ଗଳ- ମୟୀ ରାଜଚିନ୍ତା
ନିତ୍ୟ ସହଚରୀ ହୃଦେ ଯାହାର ।
ଭୁଲିବକି ? ଭୁଲି - ପାରିବକି ? ଯେବେ
ଆସିଲା ଇନ୍‌ଫ୍ଲୁଏଞ୍ଜା ଗର୍ଜ୍ଜନ ଛାଡି
କମ୍ପାଇ ଭାରତ ସର୍ବଜନପଦ-
ସଙ୍ଗେ ଏ ବାମଣ୍ଡା-ହୃଦୟମାଡି ।
ଭୁଲିବାର ନୁହେଁ ସେକଥା ପାଠକେ !
ଜାଣିଲେ ଯେକାଳେ ନରେନ୍ଦ୍ର ମଣି
"ଆସି ଇନ୍‌ଫ୍ଲୁଏଞ୍ଜା ପ୍ରଜା ପୁଞ୍ଜ ଗ୍ରାସେ"

ପ୍ରତିକାରେ ହେଲେ କୃପାଣ ପାଣି
ଅନାୟସୀ ତୀକ୍ଷ୍ଣ ସୁନୀତି କୃପାଣ
ପାଣି ଯୁକ୍ତ କରି କରୁଣା-ଜଳେ
ସୁବୁଦ୍ଧି ଶାଣରେ କରି ସୁଶାଣିତ
ଚଳାଇଲେ ଖରେ ଅତି-କୌଶଳେ ।
ନିଜେ ସୌଦାମିନୀ ରାଜ ଆଜ୍ଞା ଘେନି
ବ୍ରିଟିଶ ନିଯୋଗେ ଚଳିଲା ଖରେ
ଭେଷଜ କୃପାଣ- ପାଣି ରଥୀବୃନ୍ଦ
ନିମନ୍ତ୍ରି ଆଣିଲା ଅତି ସତ୍ୱରେ ।
ଗ୍ରାମେ ଉପଗ୍ରାମେ ନଗରେ ନଗରେ
ବାଜିଲା ଭୀଷଣ ସମର ଭେରୀ
ଯୁଝିଲେ ସାହସେ ଅରାତି ସଙ୍ଗତେ
କୌଶଳେ ରଥୀଏ ଚୌଦିଗେଫେରି ।
ପ୍ରଜାଙ୍କର ଦୁଃଖ, ଅବସାଦ, ଚିନ୍ତା
ଅଭାବ-ମୋଚନେ ହୋଇ ସଦୟ
ସ୍ୱେଚ୍ଛା ପ୍ରଣୋଦିତେ ଖୋଲିଦେଲେ ନିଜ-
ଶ୍ରୀକୋଠ ଭଣ୍ଡାର କରୁଣାମୟ ।
(ହେ କରୁଣାମୟ ଶ୍ରୀ ଦିବ୍ୟଶଙ୍କର-
ଦେବ ! ଭୁଲିବୁଁ କି ସେ କୃପାରାଶି
ହୃଦେଶ୍ୱର ରୂପେ ପାଇଣ ତୁମ୍ଭଙ୍କୁ
ଧନ୍ୟ ଆଜି ଆମ୍ଭେ ବାମଣ୍ଡା ବାସୀ)
ଆଦେଶିଲେ ନୃପ :- ଦୁଗ୍ଧ ସାଗୁ ବାଲି
ଚିନି ବାଇଗଣ ମୁଗ ଚଉଳ
ଯାହାର ଯେଲୋଡ଼ା ଖଟଣିଏ ବୁଝି
ଘରେ ଘରେ ଯୋଗାଉନ୍ତୁ ସକଳ ।
ଘରେ ଘରେ ବୁଲି କରନ୍ତୁ ଚିକିତ୍ସା
କରିଣ ଭିଷକେ ପରିଦର୍ଶନ
ଭୈଷଜ୍ୟ ଆଳୟ ଦିବାରାତ୍ର ମୁକ୍ତ-
ରଖିଣ ଔଷଧ କର ପ୍ରଦାନ ।

ଏସନେ ନରେଶ ଅସୀମ ଯତନେ
ରକ୍ଷାକଲେ ନିଜ ପରଜାଚୟ
ବସନ୍ତ, କଲେରା ଆଦି-ନିର୍ଯ୍ୟାତନୁ
ପିତାରୂପେ ପାଳି ଦେଲେ ଅଭୟ ।
ରୋଧିଥିଲେ ତେଣେ ନୀରଦ ଭଣ୍ଡାର
ଶରଦ ମୁଖରୁ ନୀରଦପତି
ଦେଶେ ଦେଶେ ତେଣୁ ଭ୍ରମିଲା ନିଃଶଙ୍କେ
ଦୁର୍ଭିକ୍ଷ-ରାକ୍ଷସ ଦୁର୍ବାର ଗତି ।
କାଳଚକ୍ର-ବିପର୍ଯ୍ୟୟ- ଆବର୍ତ୍ତନ
ଆଗୁଁ ନରମଣି କରି ଲୋକନ
ସାଜି ରଖିଥିଲେ ରାଜକୋଷ ସମ
ହୃଦୟ ଭଣ୍ଡାରେ ବହୁ ରତନ ।
ଦେଖିଲେ ଦୁର୍ଭିକ୍ଷ ବ୍ୟାପିଗଲା ରାଜ୍ୟେ
ଭିକ୍ଷାଦାନ ପାତ୍ର ଧରି ସ୍ୱକରେ
ଡାକି ଅଯାଚିତେ ଭିକ୍ଷୁକ ଦରିଦ୍ର
କଲେ ଭିକ୍ଷା ଦାନ ହରଷ ଭରେ ।
(ରାଜ ଅନ୍ତଃପୁରେ ଅନ୍ନପୂର୍ଣ୍ଣା ବ୍ରତ
ଆଚରନ୍ତି ତେଣେ ରାଜ ଜନନୀ
'ଅନସୂୟା' ସମ କୁଲ୍ୟାମ୍ବୁ ଖେଳାଇ
ବାମଣ୍ଡା ବକ୍ଷେ, ଯେ କୀର୍ତ୍ତି ଶାଳୀନୀ
ମାତଃ । ତବ ଏହି କରୁଣା କୁଲ୍ୟାମ୍ବୁ
ସ୍ନିଗ୍ଧ କରି ସଦା ବାମଣ୍ଡା ହୃଦ
କଳନାଦେ କୀର୍ତ୍ତି- ଲତିକା ବଢ଼ାଇ
ବିତରିବ କୃପା-କୁସୁମ ବୃନ୍ଦ ।)
ମଘବା ବିମୁଖେ ଶୁଖିଗଲା ସିନା
କୁଲ୍ୟା ନିର୍ଝରିଣୀ ସର ତଟିନୀ
ନରେଶ କରୁଣା- ସରିତେ ବାମଣ୍ଡା
ଏବେ ସ୍ନିଗ୍ଧପ୍ରାଣା ଋଦ୍ଧ ହାସିନୀ
ବହୁଅର୍ଥ ବ୍ୟୟେ ଉଚ୍ଚ ମୂଲ୍ୟେ ଆଣି

ବହୁଧାନ୍ୟ ରାଶି ପରଜା ହିତେ
ସୁଲଭେ ବିତରି ଟେକିଲେ ଗୌରବ
କୃପା-ଅକୂପାର-ବିପ୍ଳୁତ ଚିତ୍ତେ ।
କୃଷିଜୀବୀକୁଳ କଲେ ହାହାକାର
ଶୁଣି ଯେବେ ଘନ-ଘୋର ଗର୍ଜନ
ବୀଜାଭାବେ ଜୀବ୍ ଯା' ହୁଏ କୃଷୀର
ଜାଣେ ତାହା ଏକା କୃଷକର ମନ
ଦେଖିଲେ ନରେନ୍ଦ୍ର ଏ ଦୁଃସହ ରୀତି
ଦେଖିଲେ ପରଜାଙ୍କର ବିକଳ
ପ୍ରତି ଗ୍ରାମେ ପ୍ରତି ପରଜାଙ୍କୁ ଡାକି
ଯୋଗାଇଲେ ବୀଜ ଧାନ୍ୟ ସକଳ
ନୀରଦର ନୀର ସଙ୍ଗେ ନୃପଙ୍କର
କରୁଣା-ଅମୃତ ହେଉଁ ମିଳିତ
ଶ୍ୟାମଳ କେଦାରେ ସୁସ୍ନିଗ୍ଧ ବାମଣ୍ଡା-
ବକ୍ଷେଆଜି ନୀଳନଭ କଳିତ ।
ହୃଦୟ ଈଶ୍ୱର ହେ ଦିବ୍ୟ ଶଙ୍କର
ଦେଖୁଛି ପୁଲକେ ମୋର ନୟନ
ପ୍ରଜାକୁଳ ଦୁଃଖ - ତମସ ଖଣ୍ଡଇ
ରାଜଦଣ୍ଡ ତବ ଦୀପ୍ତ ଦର୍ଶନ
ଝଟକେ ସମ୍ମୁଖେ ପ୍ରତିଟୀ-ମୟୂଖ
ହୃଦେ ସୁବିମଳ ନୀତି ପ୍ରତିଭା
ଉର୍ଦ୍ଧ୍ୱେବେନି ନେତ୍ରେ ନୀଳମଣି ସଙ୍ଗେ
ଖେଳେ ସୁରୁଚିର କନକ ବିଭା
ସେହି ପ୍ରଭା ପୁଞ୍ଜ କରୁ ଆଲୋକିତ
ସୁବିଶାଳ ତବ କର୍ମ-ସରଣୀ
ବିପୁଳ ଗୌରବେ ଅନାମୟ ପ୍ରାଣେ
ଚଳାଅ ତବ ଏ ରାଜ୍ୟ ତରଣୀ ।



# ବିବୃତା ଭାରତୀ



ଓଡ଼ିଶା ପ୍ରଦେଶାନ୍ତର୍ଗତ

ବାମଣ୍ଡା ରାଜଧାନୀ ଦେବଦୁର୍ଗ ନିବାସୀ

ଶର୍ମ୍ମା ଶ୍ରୀ ହରିହର ମହାପାତ୍ର, କବିରାଜଙ୍କ ଦ୍ୱାରା

ପ୍ରଣୀତ ଓ ପ୍ରକାଶିତ

ପ୍ରଥମ ସଂସ୍କରଣ

୧୯୩୩

ମୂଲ୍ୟ—ଦୁଇ ପଇସା ମାତ୍ର

Printed by B.K. Kar B.A
The Saraswata Press, Cuttack, 1933

ଯେଉଁ ପଞ୍ଚନରେନ୍ଦ୍ରଙ୍କୁ ଭାରତୀ ତାର ହୃଦୟ ବେଦନା ଜଣାଇଅଛି,
ସେହିମାନଙ୍କର ସୁମହତ୍ କରକମଳରେ ଏହା ଉତ୍ସୃଷ୍ଟ ହେଲା ।
(ପ୍ରଣେତା-୧।୧୦।୧୯୩୩)

# ବିବ୍ରତା ଭାରତୀ

ଉଠ ଉଠ ମା ଗୋ ! ଉତ୍କଳ ଭାରତୀ,
ଧୁଅ ମା ବଦନ ତୁଷାର ନୀରେ,
ପିନ୍ଧ ଗୋ ବହନ ଏ ଦୀନ ବସନ
ଧୂଳି-ବିମଳିନ ଶୀର୍ଣ୍ଣ ଶରୀରେ । ୧ ।

ରୁକ୍ଷକୁନ୍ତଳିନୀ ଛବିଟି ତୋହର
ଶ୍ରୀକରେ ସାଉଁଳି ରଖ ସଂହରି,
ରୁଦ୍ର ଅପରୂପ ଦେଖିଲେ ନୟନେ
ଦୂରୁଁ ଅବା ଜନେ ରହିବେ ଡରି । ୨ ।

ମଳିନ ବସନେ ନୋହି ସଙ୍କୁଚିତା
ଶୁଷ୍କ ଦରହାସେ ବିରସ ମୁଖେ,
ଯାଆ ଜୀର୍ଣ୍ଣ ତନ୍ତ୍ର ଜୀର୍ଣ୍ଣ ବୀଣା ଧରି
ବକ୍ଷେ ବାନ୍ଧି ହୃଦ ଦାରୁଣ ଦୁଃଖେ । ୩ ।

ବିଷାଦ, ଲାଞ୍ଛନା, ନୈରାଶ୍ୟ, ବଞ୍ଚନା,
ମାନ, ଅପମାନ, ଔଦାସ୍ୟେ ଦଳି,
ଉତ୍କଳ ଭୁବନେ ଭ୍ରମି ଘରେ ଘରେ
ଉତ୍କଳ ସନ୍ତାନେ ଜଣାଅ ଅଳି । ୪ ।

କହିବୁ ବିନୟେ- "ହେ ଉତ୍କଳବାସି,
ଦେଖ ବିଭୀଷିକା ମନ୍ଦିରେ ମୋର,
ବିଶ୍ୱରଙ୍ଗ ଭୂମେ ମୋ ସାହିତ୍ୟ କୁଞ୍ଜେ
ଘୋଟୁଛି ଆଜି କି ଦୁର୍ଦ୍ଦଶା ଘୋର । ୫ ।

ଭାଳୁଛ ବିଦେଶୀ ବସନ ଭୂଷଣେ
ସଜାଇବ, ମୋତେ କରି ଶ୍ରୀହୀନ,

କର୍ମଭୂମି ବିଶ୍ୱେ    ହୋଇଅଛ ଆଜି
ଉତ୍କଳ ସନ୍ତାନ ।    କେସନ ଦୀନ । ୬ ।

ସାହିତ୍ୟ-ନିକୁଞ୍ଜେ    ନବ ପାରିଜାତ
ନ ଫୁଟେ ସୁଷମା    ସୁରଭିମୟ,
ମୋ ପୂଜା ନିମନ୍ତେ    ପଡୋଶୀ ପ୍ରାଙ୍ଗଣୁଁ
ଆସେ ପର୍ଯ୍ୟୁଷିତ    କୁସୁମଚୟ । ୭ ।

'ସୁବିଧା ଯୋଗ' ତ    ଚୌର୍ଯ୍ୟ, ପରିଗ୍ରହ
ହରେ ମାନବର    ହୃଦ-ଶକତି,
ଭାବଦୈନ୍ୟେ ଆଜି    ମୁମୂର୍ଷୁ ଓଡ଼ିଆ
ଭିକ୍ଷା ଆଶେ ଯାଏ    ପଡୋଶୀ କତି । ୮ ।

ନବୀନ କୁସୁମ    ବିକାଶେ ସତେ କି
ଲଭିଛି ପ୍ରକୃତି    ଦାରିଦ୍ର୍ୟ ଦଶା ?
ଗୂଢ଼ ଶିଳ୍ପ କଳା-    କଳ୍ପନା ବଦଳେ
ଗଳ୍ପ-ଉପନ୍ୟାସ    ହେଲା ବ୍ୟବସ୍ଥା । ୯ ।

ପ୍ରକୃତି ଭଣ୍ଡାର    ଖୋଲି ସଯତନେ
ଆହରି 'ଓଡ଼ିଆ'    ଜ୍ଞାନ-ସୁମନ,
ସେ ସୁମନେ ମଣ୍ଡି    ପୁଣ୍ୟ ପୀଠ ମୋର
କରୁଥିଲା ଦିନେ    ପଦ ପୂଜନ । ୧୦ ।

ଅଧ୍ୟାତ୍ମ ନିକୁଞ୍ଜେ    ଶିଳ୍ପଶିରୀ ଯାର
ବିଲୋକି ଗୋଲୋକେ    ଗୋଲୋକପତି,
ଗୋଲୋକୁ ଓହ୍ଲାଇ    ସ୍ୱରୂପ ପ୍ରକାଶି
ନୀଳାଚଳେ ଆସି    କଲେ ବସତି । ୧୧ ।

ଅସୀମ ଅନନ୍ତ    ବ୍ରହ୍ମାଣ୍ଡ-କଟାହେ
କାହିଁ ଅଛି ତାଙ୍କ    ଗନ୍ତବ୍ୟ ସ୍ଥଳ,
ବିଶ୍ୱବ୍ୟାପୀ ସେହି    ବିରାଟ ସ୍ୱରୂପେ
କି ଲୋଡା ଖଞ୍ଜିବା    ପଦକମଳ । ୧୨ ।

ଇଙ୍ଗିତେ ଯାହାର    ସୃଜିତ ଏ ବିଶ୍ୱ
କି ଲୋଡା ତାହାର    କରପଲ୍ଲବ,
ଅନନ୍ତ ଶକତି-    ଦ୍ୟୋତକ ସିନା ସେ
ଶୋଭେ ଯାହା ବେନି    ଭୁଜ ଭୈରବ । ୧୩ ।

ସର୍ବଦ୍ରଷ୍ଟା ରୂପେ ବିଶାଳ ନୟନ
ସର୍ବବ୍ୟାପୀ ଯେଣୁ ବିରାଟ ଛବି,
ବିଶ୍ୱରାଜ ଯେଣୁ ରାଜ-ଉପଚ୍ଚରେ
ପୂଜିଲା ଓଡ଼ିଆ ପୁଲକେ ଦ୍ରବି । ୧୪ ।

ଘଟରୂପୀ ରଥେ ଆରୋହିଲେ ବିଭୁ
ପ୍ରକାଶନ୍ତି ସିନା କର ଚରଣ,
ସୃଷ୍ଟି ସ୍ଥିତି ଲୟ - ପ୍ରତୀକ ତ୍ରିମୂର୍ତ୍ତି
ଏକୀଭୂତେ ବିଶ୍ୱ ଆଦିକାରଣ । ୧୫ ।

ନିଭୃତେ ସୃଜଇ ସୃଜନ ଶକତି
କେ ଦେଖିଛି ତାର ବିକ୍ରମ-ଛାୟା ?
ଦୁଷ୍ଟ ରିପୁ ନାଶେ ପାଳନେ ପ୍ରକଟେ
ଭୀମ ଭୁଜେ ବିଶ୍ୱ ବିରାଟ କାୟା । ୧୬ ।

ପ୍ରଳୟ ତାଣ୍ଡବେ ଏ ବ୍ୟୋମ ଡମ୍ବରୁ
ଭୀମ ଭୁଜେ ଯାର ବାଜଇ ରଙ୍ଗେ,
ରୁଦ୍ରରୂପୀ ମହା - ବଳୀ ବଳଭଦ୍ର
ବିରାଜନ୍ତି ଏବେ କାଳିଆ ସଙ୍ଗେ । ୧୭ ।

ପ୍ରଳୟ ତାଣ୍ଡବ ତାଳେ ଆନ୍ଦୋଳିତ
ରଥଧ୍ୱଜ ତାଙ୍କ ଡମ୍ବରୁ-ନାଦେ,
ଲୟ ପଛେ ପୁଣି ଚଳଇ 'ବିଜୟା'
ଘେନ ତତ୍ତ୍ୱ ସୃଷ୍ଟି ବିବର୍ତ୍ତବାଦେ । ୧୮ ।

ପରିବୃତ୍ତିମୟ ଚକ୍ର ସୁଦର୍ଶନ
ଘୂର୍ଣ୍ଣିତ, ଆବରି ସୃଷ୍ଟିକମଳ,
ଶୁଭ ଶଙ୍ଖ ଘୋଷେ ଚଳେ ନନ୍ଦିଘୋଷ
ବିତରି ଆନନ୍ଦ ଶାନ୍ତି ମଙ୍ଗଳ । ୧୯ ।

ସ୍ୱରୂପ ଦର୍ଶନେ ଏ ମହାମନୀଷା
ବିକଶିଲା ଯେଉଁ 'ଓଡ଼ିଆ' ନେତ୍ରେ,
ଅଧ୍ୟାତ୍ମ-ନିକୁଞ୍ଜ ବିସ୍ମରି ସେ ଆଜି
ଭ୍ରମେ ପୁଷ୍ପ ଆଶେ ଊଷର କ୍ଷେତ୍ରେ । ୨୦ ।

*ସ୍ୱ-ପରମାତ୍ମା

ନିଖିଳ ଭାରତେ ବ୍ୟାପ୍ତ ତୀର୍ଥରାଜି
ଆଣି ଯେ ଓଡ଼ିଆ ଥୋଇଲା ଦେଶେ,
ବାରାଣସୀ ଧାମୁ ଆସି ବିଶ୍ୱେଶ୍ୱର
ରହିଲେ ଭୁବନ- ଈଶ୍ୱର ବେଶେ । ୨୧ ।

ମହୋଦଧି-ନୀରେ ଅବଗାହି ଯେବେ
ଉଷାବାଳା ସଙ୍ଗେ ଉଠନ୍ତି ରବି,
ଯେଉଁ 'ଓଡ଼ିଆ'ର ଅର୍ଘ୍ୟ ଘେନୁଥିଲେ
କୋଣାର୍କେ ପ୍ରକାଶି ଉଦୟ ଛବି । ୨୨ ।

ଦେଖୁଥିଲା ନିତ୍ୟ ନୀଳାଚଳ ନଭେ
ନବୋଦିତ ରବି କୋଣାର୍କ କୂଳେ,
ସଜୀବ ସରଳ ଶିଳ୍ପ ଓଡ଼ିଆର
ଖେଳୁଥିଲା ରଙ୍ଗେ ସେ ସିନ୍ଧୁକୂଳେ । ୨୩ ।

ଜାଣି ଓଡ଼ିଆର ଭବିଷ୍ୟ ଦୁର୍ଗତି
ନ ଇଛି ଦୁର୍ଦ୍ଦଶା- ଲୋକନ ପ୍ରାସ,
ସୁବଳିତ ସେହି ପ୍ରାଣମୟ ଶିରୀ
କାଳସିନ୍ଧୁ ନୀରେ ଦେଇଛି ଝାସ । ୨୪ ।

ଭାବଦୈନ୍ୟେ ଆଜି ବିସ୍ମୃତି ଅନ୍ଧାରେ
ନାହିଁ ତ ତାହାର ରୋଦନ ଶକ୍ତି,
ଜାତି ପ୍ରାଣେ ଉଠେ କି କରୁଣ ବାଣୀ !
ଲଲାଟେ ଲେଖା କି ପଙ୍କିଳ ପଙ୍କ୍ତି । ୨୫ ।

କେ କହୁଛି ଚାଲ ପୁରାତନ ପଥେ
କେ କହୁଛି ଗଢ଼ ନୂଆ ସଡକ,
କେ କହେ ଏ ବାଟେ ! ନା ନା ନା ସେ ବାଟେ !
ଏଣେ ସ୍ୱର୍ଗ-ଶିରୀ ତେଣେ ମଡକ । ୨୬ ।

ପ୍ରତିଭା ମୁଖେ କି ଅଛି ଅନ୍ତରାୟ
ସାଧକ ଭୁଲେ କି ସାଧନା ପଥ ?
ଶୈଳ ସିନ୍ଧୁ ଭେଦି ବିରାଟ ଗଗନେ
ନ ଚଳେ କି ହେଲେ ତା ମନୋରଥ । ୨୭ ।

ଶ୍ରମ-ଶାଠ୍ୟ ତେଜି    ଉଠ ହେ ଓଡ଼ିଆ,
ସାଧନା-ସରଣୀ    ଅନୁସରଣେ
ନାମ ଯଶ ମୋହେ    ଗିଳିଟୀ ନ ବରି
ପୂଜ ସାରସ୍ୱତ    କଞ୍ଜଚରଣେ । ୨୮ ।
ଦୁର୍ବଳ ଶରୀର    ପର୍ବତ ଲଙ୍ଘନେ
ସାହସବିହୀନେ    ହୁଏ କାତର
ଦୁର୍ବଳ ମାନସ    ସାହିତ୍ୟ ଗାମ୍ଭୀର୍ଯ୍ୟେ
ଭାସି ବୁଲେ ଯେହ୍ନେ    ଶୁଷ୍କ ପତର । ୨୯ ।

ପ୍ରାଣମୟ ଜ୍ଞାନ-    ସମ୍ପଦେ ଗମ୍ଭୀର
ଗୀର୍ବାଣ ସୁସାଞ୍ଚେ    ସାହିତ୍ୟକୁଞ୍ଜ
ଗଢ଼ି ସଯତନେ    ଖଞ୍ଜି ଦିଅ ତହିଁ
ସ୍ୱର୍ଗୀୟ ସୁଷମା    କୁସୁମପୁଞ୍ଜ" । ୩୦ ।

କହ ମା ! ସୁରଙ୍ଗୀ,    ଚିକିଲୀ, ଚିକିଟୀ,
ଧରାକୋଟ-ପତି    ଛାମୁରେ ଯାଇ,
ଜୟପୁର-ପତି    ପ୍ରାସାଦେ ପ୍ରବେଶି
ଜଣାଇବୁ ଦୁଃଖ -    ବୀଣା ବଜାଇ । ୩୧ ।

ଗାଇବୁ କରୁଣେ-    "ହେ ନରେନ୍ଦ୍ରବୃନ୍ଦ
ଶୁଣିବ କି ଥରେ    ମୋର ଗୁହାରି ?
ବିଶ୍ୱଲୀଳା ଭୂମେ    ଭୋଗୁଅଛି ଲଜ୍ଜା
ସପତ୍ନୀ ଗୌରବେ    ନିରତେ ହାରି । ୩୨ ।

ଥିଲା ଦିନେ କାଳ,    ବନ ଗିରି କୁଞ୍ଜେ
ବାଜୁଥିଲା ମୋର    ଲଳିତ ବୀଣା,
ଝରି ପଡୁଥିଲା    ପ୍ରେମ-ମନ୍ଦାକିନୀ
ବିଭୁପଦୁଁ, ବିଶ୍ୱ-    ସନ୍ତାପ-ଜିଣା । ୩୩ ।

ମଣିମୁକ୍ତା ଦାମ    ନଥିଲା ତ ଲୋଡା
ବିଳସୁଥିଲି ମୁଁ    ପର୍ଣ୍ଣ କୁଟୀରେ,
କାଳ ଭ୍ରୂକୁଟିରେ    ଦଗ୍ଧ ସେ କୁଟୀର
ଭାସୁଛି ଆଜି ମୁଁ    ମୋ ଅଶ୍ରୁନୀରେ । ୩୪ ।

ଆଜି ବୈଶ୍ୟ ଯୁଗ ଉନ୍ନତ ତାଣ୍ଡବେ
ଝୁଣି ହେଉଅଛି ଧରଣୀ ଶିର,
ଦରିଦ୍ର ପିଠିରେ ପିଟିଦିଏ ଲାଠି
ନ ଶୁଣେ ଦାରୁଣ କରୁଣ ଗୀର । ୩୫ ।

ହୃଦୟ-ପଙ୍କଜ ମଞ୍ଜୁଳେ ବିକଶି
ହସିବାର ଦେଖି ଆସିଛି ଧାଇଁ
ଚିରକାଳ ମୁହିଁ ପଙ୍କଜପ୍ରିୟା ତ
ଆଶ୍ରୟେ ବିଶ୍ରାମ ଲଭିବା ପାଇଁ । ୩୬ ।

ହରି ମୋ ଗରବ ଆସିଛି କମଳା
ଗନ୍ତାଘରେ ବସି ହସୁଛି ଲୁଚି,
ପୂର୍ବ ଅପମାନ ପ୍ରତିଶୋଧ ଦାନେ
ବହିଛି ହୃଦୟେ କୁଟିଳ ରୁଚି । ୩୭ ।

ସଞ୍ଚୟତେ ମୋର ସପତ୍ନୀ କଳହ
ଭାଙ୍ଗିଦିଅ ପଞ୍ଚ ନରେନ୍ଦ୍ର ମଣି,
ଗୌରବ ଗରବ ଦିଆଇଦେଲେ ତ
ଧନ୍ୟ ହେବ ମୋର କର୍ମସରଣୀ । ୩୮ ।

ତା ବିନା ଏ ଯୁଗେ ନ ବାଜେ ମୋ ବୀଣା
ଦେଇଥିଲି ତାରେ ଯେଉଁ ବେଦନା,
ଦ୍ୱିଗୁଣେ ଫେରାଇ ଦେଲାଣି ତ ସେହୁ
ନୋହୁ ଆଉ ମୋରେ କ୍ରୁଦ୍ଧବଦନା । ୩୯ ।

ଏ କଳହ ଯେବେ ନ ହେବ ସମାଧା
ପ୍ରାଣାନ୍ତ ଯତନେ କରିବି କିସ ?
କେମନ୍ତେ ସହିବି ଜଗତବଦନ
ଅନୁତାପ ହେବ ଜୀବନେ ବିଷ” । ୪୦ ।

ଜଣାଇବୁ ମା ଗୋ ! ସର୍ବ ସୁଧୀବୃନ୍ଦେ
ସଞ୍ଚରି ସଧୀରେ ମଧୁର ବାଣୀ,
“ସଞ୍ଚି ରଖିଅଛି କେତେ ଦୀପ୍ତ ମଣି
ମୃଣ୍ମୟ ଗରଭେ ଧରଣୀ ରାଣୀ । ୪୧ ।

ସୁଦୂର ଗଗନେ ନୀଳିମା ଉଦ୍ୟାନେ
ଲୁଚି ଖେଳୁଛନ୍ତି ଅସଂଖ୍ୟ ତାରା,
କେ ଦେଖିଛି ତାଙ୍କ ଭାସ୍ୱର ମୂରତି
କେ ଗଣିଛି ତାଙ୍କ କିରଣଧାରା । ୪୨ ।

ଧରଣୀ ଗଗନ ପରାଏ ମହତ
ଥିଲା ଆର୍ଯ୍ୟଙ୍କର ମନୀଷାବଳ
ରଚିଛନ୍ତି ଯେଉଁ ପ୍ରଜ୍ଞାନ ଜଗତ
ଦେଖୁଛି କେ ତାର ବିଭା ବିମଳ । ୪୩ ।

କକ୍ଷୁ କକ୍ଷାନ୍ତରେ ବିଜ୍ଞାନେ ବିଚରି
ବିଶ୍ୱ ପ୍ରତି ରନ୍ଧ୍ର ପର୍ଯ୍ୟବେକ୍ଷଣେ,
ପଶୁ ଯାଇଛନ୍ତି ଯେଉଁ ସାର ତତ୍ତ୍ୱ
ନ ଦିଶେ ତ ଆଜି ସ୍ଥୂଳ ଈକ୍ଷଣେ । ୪୪ ।

କାହିଁ ସେ ସାଧନା କାହିଁ ସ୍ମୃତି ମେଧା
ଦିଏ ଯେ ମାନବେ ଦୈବ ଶକତି ?
ଶ୍ରେୟ ତେଜି ଆଜି ପ୍ରେମ ଧନ ମଦେ
ବାଢ଼େ ସିନା ନର ବ୍ୟର୍ଥ ପ୍ରକୃତି । ୪୫ ।

ରୂପକ ପ୍ରଚ୍ଛଦ ଆଚ୍ଛାଦନେ ଆର୍ଯ୍ୟେ
ସଞ୍ଚଗଲେ ଯେଉଁ ଜ୍ଞାନ-ରତନ,
ପଟ ଉନ୍ମୋଚନେ ଆୟାସ ବରଣେ
ଆର୍ଯ୍ୟସୁତଙ୍କର କାହିଁ ଯତନ । ୪୬ ।

ଶରୀର ସଙ୍ଗତେ ମାନସ ଶକତି
ଲଭିଅଛି ଦୈନ୍ୟ ଏ ଆର୍ଯ୍ୟକୁଳେ
ସୁଗମ୍ଭୀର ଜ୍ଞାନ - ସମୁଦ୍ରେ ନ ବୁଡ଼ି
ଭାସୁଛନ୍ତି ସିନା ତା କୂଳେ କୂଳେ । ୪୭ ।

ଗଗନ ମାଡ଼ିଛି ସୁବର୍ଣ୍ଣ କଠାଉ
ଆର୍ଯ୍ୟଭୂମି ଆଜି ଶିମିଳୀ ତୂଳା,
ଅକ୍ଷର ପରମ ବଡ ମାକଡସା*
ଜଗନ୍ନାଥ ମୂର୍ତ୍ତି କାଠ ପିତୁଳା । ୪୮ ।

* ଜଣେ ପାଶ୍ଚାତ୍ୟ ଜ୍ଞାନୀ ଆର୍ଯ୍ୟଗ୍ରନ୍ଥ ପଢ଼ି କହିଛନ୍ତି -
"Hindu's God is a great spider."

ତପସ୍ୟା ନୁହଇ ସନ୍ଧାନ ସାଧନା
ସେ ତ ନାସାପୁଟେ ଅଙ୍ଗୁଳି ଖୋଲା,
ଅବିଦ୍ୟା-ଅର୍ଣ୍ଣବ ତରିବାକୁ ଆଜି
କାମିନୀ କାଞ୍ଚନ ହୋଇଛି ଭେଳା । ୪୯ ।

ନୁହେ ତ ଏ ଆର୍ଯ୍ୟ ଉତ୍‌ଥାନ ସଙ୍କେତ
ଆତ୍ମହତ୍ୟା ସିନା କରେ ସୂଚନା,
ସାଧନା ବିନା ତ ସଂହତି ଶକତି-
ବିଲୟେ ଘଟାଏ ଆତ୍ମବଞ୍ଚନା । ୫୦ ।

ଏହି ଧରାପୃଷ୍ଠେ ଅମର ଜୀବନେ
ରଚିଥିଲେ ଯେହୁ ନନ୍ଦନବନ,
ସେହି ଆର୍ଯ୍ୟକୁଳେ ଜନମି ଓଡ଼ିଆ
ବହିଛି ଆଜି କି ଦୀନ ଜୀବନ । ୫୧ ।

ସ୍ମୃତିର ଝଲକ ସଞ୍ଚାରଇ ଆଶା
ସ୍ମୃତି ଆଣିଦିଏ ହୃଦ ସମ୍ପଦ,
ଶ୍ରେୟ ପଥ ସେ ତ ଦେଖାଏ ଯତନେ
ପ୍ରାଣ ରଖେ, ନାଶି ଶତ ବିପଦ । ୫୨ ।

ସେ ସ୍ମୃତି-ତପନ ଅତୀତ ଗଗନୁଁ
ଉଇଁ ଆସୁ ହୃଦ - ଅନ୍ଧାର ଭେଦି,
ସେ ଜ୍ୟୋତି ଝଲକେ ଉଦ୍‌ବୋଧିତ ପ୍ରାଣେ
ଜାଗୁ ଏ ଓଡ଼ିଆ ଜଡତା ଛେଦି । ୫୩ ।



# ଶାନ୍ତରସ

[ କବିତାବଳୀ ]

ଓଡ଼ିଶା ପ୍ରଦେଶାନ୍ତର୍ଗତ ବାମଣ୍ଡା-ରାଜଧାନୀ
ଦେବଦୁର୍ଗ ନିବାସୀ
ଶର୍ମ୍ମା ଶ୍ରୀହରିହର ମହାପାତ୍ର କବିରାଜ କର୍ତ୍ତୃକ

ରଚିତ ଓ ପ୍ରକାଶିତ

ପ୍ରଥମ ସଂସ୍କରଣ
୧୯୩୩

*Printed by B. K. Kar, B. A.*

THE SARASWATA PRESS
CUTTACK

ମୂଲ୍ୟ—ଦଶ ଅଣା ମାତ୍ର

## କୃତଜ୍ଞତା

ବିବିଧ ସଦ୍‌ଗୁଣାଧାର ରାଜକୁମାର

**ଶ୍ରୀମାନ୍ ଲଳିତମୋହନ ଦେବ ଲାଲ***

ମହୋଦୟ - କରକମଳେଷୁ ।

ମାନନୀୟ ଶ୍ରୀମାନ୍ ଲାଲସାହେବ !

ଋଣର ଦାରୁଣ ଅରୁଣ ନୟନ
ଉଗାରେ ଗରଳ ଅନଳ ସରି,
ତା ଭୀମ ଭ୍ରୁକୁଟି ବିଲୋକି ତୂଳୀଟି
ଖସିପଡେ ତଳେ ମୋ କରୁଁ ଥରି ।
ବାର ବାର ତଳୁଁ ତୋଳି ସେ ତୂଳୀଟି
ଦେଇଛ ମୋ କରେ ବୀରେନ୍ଦ୍ର ମଣି !
ଆଦର ସୋହାଗେ ଉତ୍ସାହ ଅମୃତେ
ସ୍ନିଗ୍ଧ କରି ମୋର କର୍ମ ସରଣୀ ।
ଶତସ୍ନେହ ଋଣ ସ୍ମରଣେ ମୁଁ ଲାଜେ
ଶାନ୍ତିଭିକ୍ଷା ଥାଳ ସ୍ୱ କରେ ଧରି
ତୁମ୍ଭରି ସମ୍ମୁଖେ ଯାଉ ନଥିଲେ ହେଁ
ଅକସ୍ମାତେ ଦେଇ ଅଞ୍ଚଳ ଭରି ।
ଥାଳେ ଭିକ୍ଷାଦାନେ ଦେଖିବ ଜଗତ
ରଖିଲ ହୃଦେ ଏ ଉଦାର ଭାବ,
ଅଧୋମୁଖ କଲେ ବହ୍ନି ଶିଖା, ଊର୍ଦ୍ଧ୍ୱେ
ନ ଉଠେ କି ଘେନି ନିଜ ପ୍ରଭାବ ?
ଲଳିତ ମୋହନ କଳା-ବିଚକ୍ଷଣ
ବିବେକୀ ଶେଖର ରାଜନନ୍ଦନ !
କେନ୍ଦ୍ରେ ଜୀବରାଜି ରଞ୍ଜି ଦେଉଛନ୍ତି
ମଞ୍ଜୁ ଭାଲେ ତବ ଜ୍ୟୋତି-ଚନ୍ଦନ ।
ସେ ଜ୍ୟୋତି-ଝଟକେ କି ଦେଖି ଛଟକେ
ବନ ଫୁଲହାର ଭାରତୀ-ଉରେ

*** *ବାମଣ୍ଡାର ସ୍ୱର୍ଗତ ରାଜା ସାର୍ ବାସୁଦେବ ସୁଡ଼ଳ ଦେବ K.C.I.E. ମହାରାଜ ମହୋଦୟଙ୍କ ପୁତ୍ର ।***

ଖଞ୍ଜିବାକୁ ଏତେ ବଳିଲା ଶରଧା
ଦେଖିବାକୁ ରହି ଗୋପନେ ଦୂରେ ।
ଭାରତୀ-ମଣ୍ଡପେ ଯୋଗ୍ୟ ଉପହାର
ହେବ କି ଏ କ୍ଷୁଦ୍ର କୁସୁମହାର ?
ହରିବ କି ଚିତ୍ତ ନବ ଉତ୍କଳର
ମୋ ହୃଦ-ବୀଣାର କ୍ଷୀଣ ଝଙ୍କାର ?
ସଜାଇ ମୋ କରେ ଯେ ଆରତି-ଡାଲା
ପଠାଇଲେ ବାଣୀ-ମଣ୍ଡପେ ଆଜି
ଶ୍ରଦ୍ଧା ଉପାୟନ କି ଅଛି ମୋହର
ବିନା ସେ କାନନ-କୁସୁମରାଜି ?
ଶୋଭୁ ଶ୍ରୁତିତଟେ ଭାରତୀ-ପ୍ରସାଦ
ମୃଦୁ ସୁରଭିତ ଏ ପୂଜା ଫୁଲ
ମୃଦୁଳ ସୌରଭେ ସୌହୃଦ୍ୟ-ଗୌରବ
ସୁମରାଇ ପ୍ରାଣ କରୁ ପ୍ରଫୁଲ୍ଲ ।

ଭବଦୀୟ ସୌଜନ୍ୟକ୍ରୀତ
ପ୍ରଣେତା

## ମୁଖବନ୍ଧ

ସୃଷ୍ଟିକ୍ରମ ସମ୍ବନ୍ଧେ ପାଶ୍ଚାତ୍ୟ ମତ ସଙ୍ଗେ ପ୍ରାଚ୍ୟ ମତର ସାମଞ୍ଜସ୍ୟ ଯଥେଷ୍ଟ ପରିଲକ୍ଷିତ ହୁଏ । ଆଧୁନିକ ଅଭିବ୍ୟକ୍ତିବାଦ ସଙ୍ଗେ ଦଶାବତାର ତତ୍ତ୍ୱର ତୁଳନା କଲେ ଏହା ସମ୍ୟକ୍ରୂପେ ସମର୍ଥିତ ହେବ । ସେହି ସାମଞ୍ଜସ୍ୟର ଆଭାସ ଦେଖାଇବାକୁ ମୋର କ୍ଷୀଣ ଶକ୍ତି ନିଯୋଗ କରିଅଛି । ତହିଁର ସମନ୍ୱୟ ସୌକର୍ଯ୍ୟ ନିମନ୍ତେ କେତେକ ସ୍ଥଳରେ ପାଶ୍ଚାତ୍ୟ ନାମ ବ୍ୟବହାର କରିଅଛି । ଆଶା କରେ, ଏହା ଦୋଷାବହ ହେବ ନାହିଁ ।

ପାଶ୍ଚାତ୍ୟ ସମାଜ ଭୂଗର୍ଭ ସନ୍ଧାନରେ ଯେଉଁ ସ୍ଥାନରେ ଯେଉଁ ଜୀବର କଙ୍କାଳ ପାଇଅଛନ୍ତି, ସେ ସ୍ଥାନର ନାମ ଆଶ୍ରୟରେ ସେହି ଅଜ୍ଞାତ ଲୁପ୍ତ ଜୀବର ନାମକରଣ କରିଅଛନ୍ତି; ମାତ୍ର ଆମ୍ଭମାନଙ୍କର ଆର୍ଯ୍ୟ 'ଋଷି'ଗଣ ଉକ୍ତ ଜୀବମାନଙ୍କର ଆକୃତି ଓ ଲକ୍ଷଣଗତ ଅର୍ଥସାମଞ୍ଜସ୍ୟ ରଖି ନାମକରଣ କରିଥିବାରୁ ଉକ୍ତ ଜୀବମାନଙ୍କର ପରିଚୟ ଲାଭର ପନ୍ଥା ସୁଗମ କରି ଦେଇଅଛନ୍ତି । ସୂକ୍ଷ୍ମତଃ ତହିଁର ସୁନ୍ଦର ଇତିହାସ ରଖି ଯାଇଅଛନ୍ତି ବୋଲାଯାଇପାରେ । ଉଦାହରଣ ସ୍ୱରୂପ ଲକ୍ଷ୍ୟ କରାଯାଉ- ପାଶ୍ଚାତ୍ୟ ପଣ୍ଡିତ ଓୟାଲେଶ୍ ଆଦିମ ମାନବ (କ୍ୟାନ୍ଷ୍ୟାଡ୍ ମାନବ)ର

ଗାତ୍ରବର୍ଣ୍ଣ ହରିଦ୍ରାଭ ଥିବାର ଲେଖନ୍ତି । ସେ ସ୍ଥଳେ ପ୍ରାଚ୍ୟଋଷି ନରସିଂହର ପୂର୍ବବର୍ତ୍ତୀ ନରଭୂକ୍ ଆଦିମ ମାନବକୁ "ହିରଣ୍ୟକଶିପୁ" ଆଖ୍ୟା ପ୍ରଦାନ କରିଅଛନ୍ତି । 'କଶିପୁ' ଶବ୍ଦର ଅର୍ଥ- ଆଚ୍ଛାଦନ ।

ପୁନଶ୍ଚ- ତତ୍ପରବର୍ତ୍ତୀ ଆଦର୍ଶ ଅର୍ଦ୍ଧ ମାନବର ନାମ ପାଶ୍ଚାତ୍ୟ ମତରେ କ୍ରୋମ୍ୟାଗ୍ନନ୍ (Cromagnon) । ଏହାକୁ ପ୍ରାଚ୍ୟଋଷି 'ନରସିଂହ' ଆଖ୍ୟା ପ୍ରଦାନ କରିଅଛନ୍ତି । ଏହି ନାମରୁହିଁ ଜଣା ପଡୁଅଛି- ସେ ଜାତି ନର + ସିଂହ ପ୍ରକୃତିବିଶିଷ୍ଟ ଭୀଷଣ ଶକ୍ତିଶାଳୀ ଥିଲା । ଇତ୍ୟାଦି ।

ଆଧୁନିକ ସାହିତ୍ୟରେ ଆଧ୍ୟାତ୍ମିକ ଭାବର ସମାବେଶ ବିରଳ ଲକ୍ଷିତ ହୁଏ; ଅଥଚ ସେହି ଆଧ୍ୟାତ୍ମିକତାହିଁ, ମାନବତାର ପ୍ରତୀକ ସାର ବସ୍ତୁ । ସେହି ଆଧ୍ୟାତ୍ମିକତା ଏ ଗ୍ରନ୍ଥର ପ୍ରଧାନ ଅବଲମ୍ବନ ।

ପ୍ରାଚ୍ୟଋଷିଗଣ ରୂପକ ଆବରଣରେ ଅମୂଲ୍ୟ ଜ୍ଞାନ-ସମ୍ପଦ ରଖି ଯାଇଅଛନ୍ତି । ଆଧୁନିକ ଯୁଗରେ ଆମ୍ଭମାନଙ୍କର ଅନଧ୍ୟବସାୟ ସେ ସବୁର ବିକୃତାର୍ଥ ପୋଷଣ କରି ଆମ୍ଭମାନଙ୍କର ଦୁର୍ଦ୍ଦଶା ବୃଦ୍ଧି କରୁଅଛି । 'ମୋହିନୀ', 'ସିନ୍ଧୁ ମନ୍ଥନ' ପ୍ରଭୃତି କେତେକ କବିତାରେ କଥଞ୍ଚିତ୍ ସେ ଆବରଣ-ଉନ୍ମୋଚନର ଚେଷ୍ଟା କରିଅଛି । ଆଶା କରେ - ସମୟରେ ମୋଠାରୁ ସୁଦକ୍ଷ ହସ୍ତରେ ସେ ପ୍ରଚ୍ଛାଦନ ପଟମାନ ଉନ୍ମୋଚିତ ହୋଇ ଉକ୍ତ ଜ୍ଞାନରତ୍ନସମୂହ ମାନବ ଜାତିର ମଙ୍ଗଳ ନିମନ୍ତେ ନିଯୋଜିତ ହେବ ।

ଗ୍ରନ୍ଥଗତ ଭାଷା ବର୍ଣ୍ଣନୀୟ ବିଷୟାନୁରୂପ ହେବା ଉଚିତ୍ । ଦୁର୍ନିରୋଧ୍ୟ ବ୍ୟଥାର ପ୍ରାକୃତିକ ଦ୍ରବ୍ୟ ଗୋଟିଏ ପତ୍ର ପୁଡାରେ ରକ୍ଷିତ ହେଲେ ଯେଉଁ ଦଶାର ସମ୍ଭବ ହୁଏ, ଗୁରୁତର ବିଷୟକୁ ଲଘୁତର ଭାଷାରେ ରଖିବାକୁ ଚେଷ୍ଟା କଲେ ସେହି ଦଶାର ସମ୍ଭାବନା ତତୋଽଧିକ । ଶରୀର ଓ ମନ ପରସ୍ପରର ଅନୁରୂପ ଶକ୍ତିଶାଳୀ ହେବା ଉଚିତ୍ । ପୁନଶ୍ଚ ଲଘୁ ସାହିତ୍ୟ ଯୋଗେ ଜାତିର ମାନସିକ ଶକ୍ତି ଦୌର୍ବଲ୍ୟ ଲାଭ କରେ, ଏହା ସ୍ୱତଃସିଦ୍ଧ ବୋଧ ହୁଏ ।

ମୁଁ ଜ୍ଞାନ ରାଜ୍ୟରେ ଜଣେ ନଗଣ୍ୟ ଶିଶୁ ମାତ୍ର । କେବେହେଁ କବି (ସୃଷ୍ଟିକାରୀ) ଯଶଃ ପ୍ରତ୍ୟାଶୀ ନୁହେଁ । ସତ୍ୟକୁ ସମ୍ମୁଖରେ ରଖି ବର୍ଣ୍ଣନୀୟ ବିଷୟ ମଧ୍ୟରେ ଅମୂଳକ କଳ୍ପନାକୁ ପ୍ରଶ୍ରୟ ଦେଇନାହିଁ । ଜ୍ଞାନଜଗତର ଆଂଶିକ କ୍ଷୁଦ୍ର ସୂଚିରୂପେ ଏହାକୁ ପରିଣତ କରିବା ମୋର ଇଚ୍ଛା; ମାତ୍ର ନିଜର ଜ୍ଞାନ ଓ ଅର୍ଥଦୈନ୍ୟ ସେହି ବାସନାକୁ ସଙ୍କୁଚିତ କରି ଏହାକୁ ଅତି ନିମ୍ନ ସୋପାନରେ ରଖିଅଛି । ତଥାପି ଏଥିରେ ଯଦି ବାସ୍ତବ ଶିକ୍ଷଣୀୟ କିଛି ନିହିତ ଥିବାର ବୋଧହୁଏ, ତେବେ ଯେଉଁ ମନୀଷିବୃନ୍ଦଙ୍କର ହସ୍ତରେ ଦେଶର ଶିକ୍ଷାଭାର ନ୍ୟସ୍ତ ଅଛି, ସେମାନଙ୍କର ସଦୟ ସହାନୁଭୂତିରୁ ବଞ୍ଚିତ ହେବି ନାହିଁ, ଏହାହିଁ ଆନ୍ତରିକ ଆଶା ।

ଏହି ଗ୍ରନ୍ଥକୁ ୧ମ, ୨ୟ ଭାଗ କ୍ରମରେ କିଛି ବୃହତ୍ ଆକାରରେ ପ୍ରଣୟନ କରିବାର ବାସନା ଥିଲେ ହେଁ ଏହାକୁ ସଙ୍କୁଚିତ କରିବାର ଅପର କାରଣ ଏହି ଯେ, ଆର୍ଯ୍ୟକୂଳ-

ଗୌରବ ଭରତଙ୍କର ଭାରତ ପ୍ରତିଷ୍ଠା ଅବଲମ୍ବନରେ ଖଣ୍ଡିଏ କାବ୍ୟଗ୍ରନ୍ଥରେ ହାତ ଦେଇଅଛି- ଅଧା ଲେଖା ସରିଛି । ସେଥିରେ ଆର୍ଯ୍ୟଜାତିର ଆଦିମ ଇତିହାସ ବିଷ୍ଣୁଙ୍କର କ୍ଷୀରୋଦ ଶୟନର ନୈସର୍ଗିକତାଦି ପ୍ରଦର୍ଶନ ପ୍ରଭୃତି କେତେକ ଗୂଢ଼ତମ ବିଷୟର ସମାବେଶ କରିବାକୁ ପଡୁଥିବାରୁ ମୋ ପରି କ୍ଷୀଣମେଧା ବ୍ୟକ୍ତି ପକ୍ଷେ ତାହା ଦୁଷ୍କର ତପସ୍ୟା ରୂପେ ପରିଣତ ହୋଇଅଛି । ବିବିଧ ଅନ୍ତରାୟ ବିଦ୍ୟମାନ ସତ୍ତ୍ୱେ ବିଷୟର ମହୀୟାନତା ଏ ତପସ୍ୟାରେ ମୋତେ ପ୍ରଲୁବ୍ଧ କରିଅଛି । ଏ ତପସ୍ୟାର ସମାଧାନ ନିମନ୍ତେ ଉତ୍କଳର ବିଶିଷ୍ଟ ସୁଧୀଗଣଙ୍କର କରୁଣା ଓ ସହାନୁଭୂତି ଭିକ୍ଷା କରୁଅଛି । ଉଦ୍ଦେଶ୍ୟ ମହତ୍ ହୋଇଥିଲେ ସଙ୍କୋଚର ଅବକାଶ କାହିଁ ?

ଏ ଗ୍ରନ୍ଥର ଲେଖା ଆରମ୍ଭ ବହୁବର୍ଷ ପୂର୍ବରୁ ହୋଇଥିଲା । ଉତ୍କଳର ବରପୁତ୍ର ସ୍ୱନାମଧନ୍ୟ ରାୟ ମଧୁସୂଦନ ରାଓ ବାହାଦୂର ବାମଣ୍ଡାକୁ ଆସିଥିବା ବେଳେ ଏଥିର ଅଧିକାଂଶ ଦେଖି ଦେଇଥିଲେ । ଉକ୍ତ ମହାତ୍ମା ଓ ପ୍ରଖ୍ୟାତପ୍ରତିଭ ସ୍ୱର୍ଗତଃ ଭୋଳାନାଥ ସାମନ୍ତରାୟ ତଥା ରସଜ୍ଞ କବି ଲୋଚନପ୍ରସାଦ ପାଣ୍ଡେୟ କାବ୍ୟବିନୋଦ ମହାଶୟ ମୋତେ ମଧୁର ଉତ୍ସାହ ପ୍ରଦାନ କରିଥିଲେ । ବାମଣ୍ଡାର ଗୁଣଗ୍ରାହୀ ରାଜା ସ୍ୱର୍ଗତଃ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟଙ୍କର ତିରୋଧାନ ପରେ ମୁଁ ଲେଖନୀ ପରିତ୍ୟାଗ କରି ଦେଇଥିଲି । ବର୍ତ୍ତମାନ ମୋର କତିପୟ ବନ୍ଧୁ ଓ ବିଶିଷ୍ଟ ବ୍ୟକ୍ତିଙ୍କର ସ୍ନେହମୟ ପ୍ରୋତ୍ସାହନରେ ସ୍ଥଗିତ କ୍ଷୀଣ ଉଦ୍ୟମକୁ ପୁନର୍ବାର ଆରମ୍ଭ କରିଅଛି । ।ଇତି।

ତା ୫ ।୧୦ ।୧୯୩୩ — ବିନୀତ

ଦେବଦୁର୍ଗ, ବାମଣ୍ଡା — ପ୍ରଣେତା



# ଅଭିମତ

## ଉତ୍କଳ ଭାରତୀର ବରପୁତ୍ର

## ରାୟ ଶ୍ରୀ ମଧୁସୂଦନ ରାଓ ବାହାଦୁର ମହୋଦୟଙ୍କର ମନ୍ତବ୍ୟ

ଉତ୍କଳ-ସାହିତ୍ୟର ପରମ କଲ୍ୟାଣ-ସାଧକ ବାମଣ୍ଡା ମହାରାଜାଙ୍କର ଆନୁକୂଲ୍ୟ ଓ ପ୍ରୋତ୍ସାହନ ଯୋଗୁଁ ବାମଣ୍ଡାରେ କେତେଗୁଡିଏ ସୁଲେଖକ ଅଭ୍ୟୁଦିତ ହୋଇଅଛନ୍ତି । ସେଥିମଧ୍ୟରେ ଶ୍ରୀଯୁକ୍ତ ପଣ୍ଡିତ ହରିହର ମହାପାତ୍ର ବିଶିଷ୍ଟ ରୂପେ ଗଣନୀୟ । ତାହାଙ୍କର "ହେମ କମଳିନୀ" ଓ "ବିବିଧ ସଙ୍ଗୀତ"ର ରଚନାରେ ପ୍ରକାଶିତ ସୁରୁଚି, ସରସତା ଓ ଲିପି-କୌଶଳ ସର୍ବଥା ପ୍ରଶଂସନୀୟ ।

ସେ ଅଳ୍ପ ଦିନ ତଳେ "ଶାନ୍ତିଭିକ୍ଷା" ଏହି ନାମର ଅନ୍ତର୍ଗତ କେତେଗୁଡିଏ କବିତା ମୋତେ ଦେଖିବାକୁ ଦେଇଥିଲେ । କବିତାଗୁଡିକ ଶାନ୍ତି-ରସୋଦ୍ଦୀପକ-ସ୍ଥାନେ ସ୍ଥାନେ ରସର ସୌନ୍ଦର୍ଯ୍ୟ, ଭାବର ଗାମ୍ଭୀର୍ଯ୍ୟ ଓ ଛନ୍ଦର ଝଙ୍କାର ସମୀଚୀନ ରୂପେ ପରିସ୍ଫୁଟ

ହୋଇଅଛି । କେତେକ ସ୍ଥଳରେ ଲେଖା ଟିକିଏ ଦୁର୍ବୋଧ ହୋଇଥିବାର ଜଣାଗଲା । ଆଶା କରେ, ସେ ତ୍ରୁଟି ନିରାକୃତ ହେବ ଏବଂ କବିତାଗୁଡ଼ିକ କବିଙ୍କର ସୁପ୍ରତିଷ୍ଠା ବର୍ଦ୍ଧନ କରିବ ।

କଟକ ୨୬-୬-୧୯୧୧

## ସ୍ୱନାମଧନ୍ୟ ଶ୍ରୀ ଭୋଳାନାଥ ସାମନ୍ତରାୟ ମହୋଦୟଙ୍କର ଅଭିମତ

କବି ଶ୍ରୀଯୁକ୍ତ ହରିହର ମହାପାତ୍ରଙ୍କ ରଚିତ "ଶାନ୍ତିଭିକ୍ଷା" କବିତାଗୁଡ଼ିକ ପଢ଼ି ଆନନ୍ଦିତ ହେଲି । ରସାତ୍ମକ ବାକ୍ୟ ହିଁ କବିତା । 'ଶାନ୍ତିଭିକ୍ଷା' ରେ ଶାନ୍ତିରସର ଅଭାବ ହୋଇ ନାହିଁ । ଉତ୍କଳରେ ବାମଣ୍ଡା ବୀଣାପାଣିଙ୍କର ନିଭୃତ ଲୀଳାସ୍ଥଳୀ । ଏ ସ୍ଥାନରେ ଅକବି କବି ହୁଅନ୍ତି । ପୁଣି ଯେ ଭାବୁକ ଏବଂ ଯାହାଙ୍କର କବିତାରେ ରୁଚି ଅଛି, ସେ କବି ହେବେ, ଏଥିରେ ବିଚିତ୍ର କି ?

## 'କବିତାକୁସୁମ' ନାମକ ଓଡିଆ ଗ୍ରନ୍ଥ ଓ ବିବିଧ ହିନ୍ଦୀ ଗ୍ରନ୍ଥ ପ୍ରଣେତା କବି ଶ୍ରୀ ଲୋଚନପ୍ରସାଦ ପାଣ୍ଡେୟ କାବ୍ୟବିନୋଦ ମହୋଦୟଙ୍କ ଅଭିମତ-

କି ସୁନ୍ଦର ପ୍ରିୟବର ! ତୁମ୍ଭର କବିତା
ସହୃଦୟ କବି-ହୃଦ-ସରୋଜ-ସବିତା ।
ଅଶାନ୍ତି-ଅନଳ-ଦଗ୍ଧ-ପରାଣ-ନନ୍ଦନ
ଅଟେ ତୁମ୍ଭ ଗରୁ କାବ୍ୟ ଶୀତଳ ଚନ୍ଦନ ।
ବିମଳ କଳ୍ପନା ତବ ପ୍ରଶଂସ୍ୟ ଉତ୍କର୍ଷ
ଜନ୍ମାଇବ ମୋହପରି ସର୍ବ ମନେ ହର୍ଷ ।

ବାଳପୁର — ଚିରମମତାବଦ୍ଧ
ବିଳାସପୁର — ଲୋଚନପ୍ରସାଦ



## ଶାନ୍ତିଭିକ୍ଷା

# ସୂଚୀପତ୍ର





# ନିଭୃତ ଚିନ୍ତା

ଦେଖ ରେ ପାମର ମନ ! ମୋହ ପରିହରି
ଅଶାନ୍ତିର ଅଟ୍ଟହାସ୍ୟ ବିକଟ କୁଟିଳ ଆସ୍ୟ
ମର୍ମ୍ମାନ୍ତକ କ୍ରୂର ଛବି ହୃଦୟ ବିଦରି
ବିରଚେ ଭ୍ରୂକୁଟି ନାଟ ଅନ୍ତରେ ସଞ୍ଚରି ।

ଈର୍ଷା, ମଦ, କ୍ରୋଧ ଆଦି ପାର୍ଶ୍ୱ ଅନୁଚରେ
ହୋଇ ମୂଢ଼ ପରିବୃତ ବାଇ ବୀଣା କରଧୃତ
ଗାଇ କୋଳାହଳ ଗୀତି ନିରତେ ବିଚରେ
ପ୍ରଶସ୍ତି ପ୍ରସାରେ ଆତ୍ମଧନ୍ୟ ଧ୍ୱନି କରେ ।

ଏହାରି ଇଙ୍ଗିତେ ପାର୍ଶ୍ୱ ଅନୁଚରଗଣ
ମହୋତ୍ସାହେ ବୀରବେଶେ ଅସାଧ୍ୱସେ ଦେଶେଦେଶେ
ବିରଚି ତାଣ୍ଡବ ଲୀଳା କରନ୍ତି ଭ୍ରମଣ
କରି ଉଚ୍ଚେ ସଦା ତାର ବିଜୟ ଘୋଷଣ ।

ଚକ୍ରାନ୍ତର ଫଳେ ସିନା ଏହି ଦୁରନ୍ତର
କୁସୁମିତା ପ୍ରୀତିଲତା କ୍ଷଣେ ହୁଏ ପର୍ଯ୍ୟୁଷିତା
ସ୍ନେହମୟ ପିତା, ପୁତ୍ରେ ନିର୍ମ୍ମମ ଅନ୍ତର
ସହୋଦର ହୃଦୁଁ ଶ୍ରଦ୍ଧା ହୁଅଇ ଅନ୍ତର ।

ନବ ବିକଶିତ ପ୍ରେମ କୁସୁମ କାନନେ
କୀଟ ରୂପେ କୂଟ ଲକ୍ଷ୍ୟେ ପ୍ରବେଶି କୁସୁମ ବକ୍ଷେ
ଅବିରତ ରତ ମୂଢ଼ ସୁଷମା ନାଶନେ
ଲଗାଇ କଳଙ୍କ ଶୋଭା-କମଳା-ଆନନେ ।

ଅବଜ୍ଞାତା ହୋଇ ଦୁଃଖେ ଏହାରି ଶାସନେ
କବି-ହୃଦ-ପଦ୍ମବନ କରି ଖେଦେ ବରଜନ
ବୀଣା ତେଜି ନିବସନ୍ତି କଣ୍ଟକ କାନନେ
ଆବରି ଭାରତୀ ତନୁ ମଳିନ ବସନେ ।

ହୋଇ ଅବଜ୍ଞାତା ଦୁଃଖି-ଦୁଃଖ-ବିନାଶିନୀ
ପଦ୍ମାଳୟା ମନୋଦୁଃଖେ ବରଜି ବିଷଣ୍ଣ ମୁଖେ-
କୌବେର ସଦନ, ହୋଇ କୁଟୀରବାସିନୀ
ଯାପନ୍ତି ବିକଳେ ବସି ଦିବସ ଯାମିନୀ ।

ବାତ୍ସଲ୍ୟ କରୁଣା ପ୍ରୀତି ଭକତି ବିନୟ
ସନ୍ତୋଷ ପ୍ରଶାନ୍ତ ମତି ବୈରାଗ୍ୟର ଉପରତି
ଶ୍ରଦ୍ଧା କ୍ଷମା ଧୃତି ଆଦି ସଦ୍‌ଗୁଣନିଚୟ
ଏହାରି ଇଙ୍ଗିତ ମାତ୍ରେ ଲଭନ୍ତି ବିଲୟ ।

ଏହାରି ଚକ୍ରାନ୍ତ ଫଳେ ଉତ୍ସନ୍ନ ଅନ୍ତରେ
ପୁଣ୍ୟଶୀଳା କୁଳବତୀ ଦେବୀ ଖେଦେ ଛନ୍ନମତି
ହୋଇ ସତି ପଦାନ୍ତରା ବିଟପ ମନ୍ତରେ
ବିକଳେ ପ୍ରେତିନୀ ସମ ରୌରବେ ସନ୍ତରେ ।

ସୁତସୁତାଜାୟାବନ୍ତ ଭବ୍ୟ ଗୃହପତି
ଛିଣ୍ଡାଇ ମମତା-ପାଶ ଦୁଃଖେ କରେ ବନବାସ
ଦାରୁଣ ବୈରାଗ୍ୟ ବ୍ରତେ ଲିପ୍ତ କରି ମତି
ଅନୁତପ୍ତ ଅଶ୍ରୁଜଳେ ଲଭଇ ଦୁର୍ଗତି ।

ଲକ୍ଷ ଲକ୍ଷ ଶୂର ଶିର ପିଣ୍ଡୁଁ ହେଲେ ଖଣ୍ଡି
ଧରି କରେ କରବାଳ ପିନ୍ଧି ଗଳେ ମୁଣ୍ଡମାଳ
ପ୍ରଚଣ୍ଡ ତାଣ୍ଡବମତ୍ତା ରଣସ୍ଥଳୀ ମଣ୍ଡି
ବ୍ରହ୍ମାଣ୍ଡ ପ୍ରଳୟଙ୍କରୀ ବେଶେ ରଣଚଣ୍ଡୀ ।

ଉଦ୍‌ବେଗେ ବରଜି ରତ୍ନମୟ ସିଂହାସନ
ତେଜି ରାଜା ରାଜପଦ ରାଜ୍ୟ ଅତୁଳ ସମ୍ପଦ
ଦୀନ ବେଶେ ଦେଶାନ୍ତରେ କରନ୍ତି ଗମନ
କରି ଭିକ୍ଷାଶନ ଆହା, ଯାପନ୍ତି ଜୀବନ ।

ହରାଇ ମାଧୁରୀମୟ ମଧୁ ଶୋଭାଧନ
ଝଞ୍ଜାନିଳ ତୃଷାମୟ ନିଦାଘର ରଙ୍ଗାଳୟ
ମରୁଭୂମେ ପରିଣତ କୁସୁମକାନନ
କି ନ କରେ ଅଶାନ୍ତିର କରାଳ ଶାସନ !

ଅଶାନ୍ତିର ନାଟ୍ୟାଳୟ ଏ ଭବ ଭବନେ
ନିତ୍ୟ ନବ ନବ ଛବି ଶାନ୍ତି କାମେ ପରାଭବି
ପ୍ରକାଶର କାଳ, ମାୟା ମୁରଳୀ ବାଦନେ
ମୋହି ଅବହେଳେ ଗ୍ରାସେ ବିଶ୍ୱ ପରିଜନେ ।

ଦୁର୍ନିବାର ଗତି ତାର କୁଟିଳ ଚଞ୍ଚଳ
ରାଜା, ପ୍ରଜା, ଧନୀ ମାନୀ ସୁଖୀ, ଦୁଃଖୀ, ମୂର୍ଖ, ଜ୍ଞାନୀ
ଧାର୍ମିକ, ପାଷାଣ୍ଡ କିବା କୁଟିଳ, ସରଳ
ସେ ଦୁରନ୍ତ-ଗ୍ରାସେ ଭବେ ସମାନ ସକଳ ।

ବିକଚ ନଳିନ ସମ ଫୁଲ୍ଲ ଶିଶୁଗଣ
ହୋଇ ତାର ମାୟାଭୋଳ ସୁଖମୟ ମାତୃକୋଳ-
ପରିତ୍ୟାଗି ପ୍ରେତରୂପେ ଶ୍ମଶାନେ ଭ୍ରମଣ-
କରନ୍ତି ମୂରତି ବହି ବିକୃତ ଭୀଷଣ ।

ଯୌବନ-ଜୀବନ ସୁଧା-ଉତ୍‌ଫୁଲ୍ଲ ଜୀବନେ
ପତିହୃଦୁଁ ପ୍ରଣୟିନୀ ହୋଇ ଚିରବିଚ୍ଛେଦିନୀ
ଭୀଷଣ ଶ୍ମଶାନେ ଆହା, ଅନଳ ଶୟନେ
ଛିନ୍ନ କରେ ପତିହୃଦ ମୁଦ୍ରିତ ନୟନେ ।

କାହିଁ ପୁଣି ହୃଦଲକ୍ଷ୍ମୀ ଲଳନା ଲଲାମ
ଅବଳା ହୃଦ ସରଳା ଶିରୀଷପୁଷ୍ପ-କୋମଳା
ପ୍ରାଣସମ ପ୍ରିୟତମା-ଭାଗ୍ୟେ ହୋଇ ବାମ
ତେଜି ଭବବ୍ରତ ପତି ଗମେ ପ୍ରେତଧାମ ।

ମୂର୍ତ୍ତିମନ୍ତ ବିମୋହନ ବିମଳ ଉଦାର
ସଦ୍ୟୋସୂତ ଅରକ୍ଷିତ ପୁତ୍ରେ କରି ଉପେକ୍ଷିତ
ଜନକ ଜନନୀ କାହିଁ ତେଜନ୍ତି ସଂସାର
ଜନ୍ମାଇ ଆତ୍ମୀୟଜନ-ହୃଦେ ହା ! ହା ! କାର ।

ନିର୍ମ୍ମମ ସେ କାଳ ଅତି ନିଷ୍ଠୁର ହୃଦୟ
ଦୁଃଖୀର ଦାରୁଣ ଦୁଃଖ ଚିନ୍ତାପୂର୍ଣ୍ଣ ମ୍ଳାନ ମୁଖ
ଅନୁତାପ ଅବସାଦ ବିଳାସ ବିନୟ
ଦେଖି ନ କରଇ ଲବେ କରୁଣା ଉଦୟ ।

ଶିଶୁର ସରଳ ସ୍ନିଗ୍ଧ ଦରୋଟି ବଚନ
ଶାରଦ କୌମୁଦୀ ସମ ମୃଦୁ ବାସ ମନୋରମ
ପ୍ରଫୁଲ୍ଲ ପଙ୍କଜ ସମ ସସ୍ମିତ ବଦନ -
ନିରେଖି ନ ଲଭେ ମାୟା ତାର କ୍ରୂର ମନ ।

ଲଳନାର ସୁଲଳିତ ସୁଧାମୟ ବାଣୀ
ବିଶ୍ୱନେତ୍ର-ମନୋହର ଷୋଡଶୀର ପୟୋଧର
ଲଳିତ ଅପାଙ୍ଗ ଭଙ୍ଗୀ ସୁସ୍ନିଗ୍ଧ ଚହାଣୀ
ହୃଦୁଁ ତାର ଲବେ କୃପା ନ ପାରଇ ଆଣି ।

ପ୍ରାଣପ୍ରିୟା ପ୍ରେମେ ଚିର ବିରହ କାତର
ଶୂନ୍ୟଅଙ୍କ ଶୂନ୍ୟମନା ଯୁବାର ହୃଦ-ବେଦନା
'ଥମ ଥମ' ଦୃଷ୍ଟିଯୁଗ, ଶ୍ୱାସ ବିଷାଦର
ଲଭି ନ ପାରଇ ଦୟା ସେ ଦୁଷ୍ଟ ହୃଦର ।

ମୃତାପତ୍ୟ ସ୍ଥବିରର ବିଷଣ୍ଣ ବଦନ
କୁନ୍ତଳ-ପଳିତ ମୁଣ୍ଡ ଦଶନ-ଗଳିତ ତୁଣ୍ଡ
ଜରାଜୀର୍ଣ୍ଣ ଶ୍ଳଥଚର୍ମ୍ମ ବିକଳ ଜୀବନ
ନିରେଖି ନ ହୁଏ କାଳ କରୁଣ-ନୟନ ।

ନୁହ ବମୋହିତ ତାର ମାୟା-ବଂଶୀ-ସ୍ୱନେ
ଦେଖ ବିଶ୍ୱ-ନଶ୍ୱରତା ମୋହମୟୀ ଅସାରତା
ଖେଳେ ଦିଗଦିଗନ୍ତରେ ନୟନେ ନୟନେ
ସୃଷ୍ଟି ସ୍ଥିତି ଲୟରୂପେ ପ୍ରକୃତି ଜୀବନେ ।

ପ୍ରାତେ ହସି ପ୍ରୀତିଭରେ ମନୋଜ୍ଞ ସୁମନ
କରି କେତେ ଲୀଳା ଖେଳା ମାୟାମୟ ବିଶ୍ୱମେଳା
ଦିନାନ୍ତେ ମଉଳି ତଳେ ଲଭଇ ପତନ
ହରାଇ ଲଳିତ ଶୋଭା ଲଳିତ ଜୀବନ ।

ବ୍ୟୋମବାଳା ଉଷା ପିନ୍ଧି ଲୋହିତ ଅମ୍ବର
ନିତି ଭୂଇଁ ପ୍ରାଚୀଭାଳେ ମୋହି ବିଶ୍ୱ ମାୟାଜାଳେ
ହରେ ଅଷ୍ଟଯାମ ଆୟୁ ନିଖିଳ ବିଶ୍ୱର
ଜଣାଏ ପଲକେ ଲୁଚି ସକଳ ନଶ୍ୱର ।

ଉଷାର ଲୋହିତ ବାସ ହରି ରବି-କରେ
ପତି-ପ୍ରେମେ ସୋହାଗିନୀ ଶୋଭାମୟୀ କମଳିନୀ
ସାଜି ନିଜ ତନୁ ଖେଳି ସମୀର ଲହରେ
କାଳବଶେ ପଡେ ଝଡି ସରସୀ-ଜଳରେ ।

ଶାରଦ କୌମୁଦୀ ନୀରେ ହୋଇ ପ୍ରମୋଦିନୀ
ବିଲୋକି ଶଶି ବଦନ ପିନ୍ଧି ରଜତ ବସନ
ହସି ମନ୍ଦେ ମନ୍ଦେ ପତି-ପ୍ରେମ-ଗରବିଣୀ
କାଳବଶେ ପଡେ ଝଡି ଜଳେ କୁମୁଦିନୀ ।

ଢ଼ଳ ଢ଼ଳ ଜଳବିନ୍ଦୁ ଶତଦଳଦଳେ
ତରଳ ହୀରକ ଛବି ଶୁଭ୍ର ତେଜେ ପରାଭବୀ
ପ୍ରପଞ୍ଚର ମାୟାଚିତ୍ର ଦେଖାଇ କୌଶଳେ
ପଲକାନ୍ତେ ହୁଏ ଲୀନ ଜଳେ ବାୟୁବଳେ ।

ପ୍ରକୃତିର ଋତୁହାସ୍ୟ ନବ ବସନ୍ତର
ସୁମନାର ନବ ପ୍ରୀତି କୋକିଳର କଳଗୀତି
ମଳୟ ମୋହନ ଲୀଳା ମନ୍ଦ ମରୁତର
ଜଣାଏ ଯତନେ ବିଶ୍ୱେ ସକଳ ନଶ୍ୱର ।

ସୁନୀଳ ଜଳଦ-ବକ୍ଷେ ବିଶାଳ ଗଗନେ
ରବିରଶ୍ମି ରମ୍ୟ ତନୁ ପରକାଶି 'ରାମ ଧନୁ' ?
ଜନମାଇ କୌତୂହଳ ବିଶ୍ୱବାସି ମନେ
ନଶ୍ୱର ସକଳ ବିଶ୍ୱେ ଜଣାଏ ଯତନେ ।

ନଶ୍ୱର ଏ ଦେହ ଧରି ନଶ୍ୱର ଜଗତେ
ନଶ୍ୱର ସମ୍ପଦେ ମାତି କାଟୁଅଛୁ ଦିନ ରାତି
ନ ଦେଖୁ ପାପ-ପିଶାଚ ତୋହରି ପୁରତେ
ଦେଖାଏ ଦୂରଭିନୟ ଚୌଦିଗେ ନିରତେ ।
ମାୟାମୟ ସମ୍ପଦର ଅସାର ବାସନା
ନିଜ କରେ ଧରି କର ନିରତେ ସେ ପିଶାଚର
ପଥପ୍ରଦର୍ଶିକା ରୂପେ ମୃଗେନ୍ଦ୍ର ଗମନା
ଦେଖାଏ ଅୟନ, ସଦା ଲାଳାର୍ଦ୍ରରସନା ।

ଦରିଦ୍ର-କୁଟୀରେ କିବା ରାଜେନ୍ଦ୍ର-ଭବନେ
ଉତ୍ତୁଙ୍ଗ ଭୂଧର-ଶିରେ ଉତାଳ ଜଳଧି-ନୀରେ
ଶ୍ୱାପଦ-ସଙ୍କୁଳ ଭୀମ ନିବିଡ ଗହନେ
ଭ୍ରମଇ ବାସନା ସଦା ସତୃଷ୍ଣ ନୟନେ ।

ନୁହ ମୁଗ୍ଧ ମନ ! ସେହି ବାସନା କୁହକେ
ଆପ୍ତବାଣୀ ଗୁପ୍ତ ଧନ ଅମୂଲ୍ୟ ସ୍ୱର୍ଣ୍ଣ ରତନ
ରଖ ତୁ ହୃଦୟେ ସ୍ମରି ପଲକେ ପଲକେ
ଦଗ୍ଧ କର ପାପବୃତ୍ତି ସଂଯମ-ପାବକେ ।

କାଳନଟ-ରଙ୍ଗଭୂମି ଏ ଭବ-ଭବନେ
ନାହିଁ କି ରେ ଶାନ୍ତି-ଧନ ବ୍ୟର୍ଥ କି ଆପ୍ତ ବଚନ
ଖୋଜିନ୍ତୁ କି କେବେ ତୁହି ସାଗରେ ଗଗନେ
ବିଚରି ସରିତେ ସରେ ପର୍ବତେ କାନନେ ।

ସୁସ୍ନିଗ୍ଧ ସୁନୀଳ ତନୁ ବିଶାଳ ଅମ୍ବରେ
ନିତି ଉଇଁ ରବି ଶଶୀ ପ୍ରୀତିଭରେ କିମ୍ବା ହସି
ପ୍ରଫୁଲ୍ଲ କରନ୍ତି ବିଶ୍ୱ ସୁଧାମୟ କରେ
ହସେ କିମ୍ବା ସରୋଜିନୀ ସରସୀ-ଜଳରେ ?

ମନ୍ଦ ବାତ-ବିଧୂନିତ ଲଳିତ ବୃନ୍ତରେ
ପ୍ରେମ-ନୀରେ ମୁଖ ମାଜି ହସୁଥାନ୍ତି ପୁଷ୍ପରାଜି
କି ଅମୂଲ୍ୟ ରତ୍ନ ଲଭି ପ୍ରଫୁଲ୍ଲ ଅନ୍ତରେ
କି ଆନନ୍ଦେ ଗାଏ ପିକ ଋତୁ ବସନ୍ତରେ !

ଭୂଧରେ କନ୍ଦରେ ବନେ ସରିତେ ବିହରି
ସେ ଦିବ୍ୟ ଆନନ୍ଦ ଧନ ଅମୂଲ୍ୟ ଶାନ୍ତିରତନ
କର ରେ ଅନୁସନ୍ଧାନ ସ୍ଥିର ଲକ୍ଷ୍ୟ ଧରି
ଲଭିବୁ ଶାଶ୍ୱତ ଶାନ୍ତି ମୋହ ପରିହରି ।

## ନଳିନୀ ପ୍ରତି

କହ ଗୋ ନଳିନୀ ଧନୀ ! ଲଭି କିବା ଧନ
ହରଷ ରସରେ ତୁହି ନିରତେ ମଗନ ।
ପ୍ରେମେ ଢଳ ଢଳ ତୋର ପ୍ରଶାନ୍ତ ବଦନ
ଲଭି କି ଲାବଣ୍ୟ-ଲକ୍ଷ୍ମି ଲଳିତ ଚୁମ୍ବନ ?

ଶୂନ୍ୟ କାମେ କିବା କେଉଁ ଲକ୍ଷ୍ୟ ବହି ମନେ
ନିରତେ ନିରେଖୁ ଧନ ! ଅନନ୍ତ ଗଗନେ
ଲଭି କି ଶୁଭ ସଙ୍କେତ ଢଳି ଧୀରେ ଧୀରେ
ପ୍ରେମାନନ୍ଦେ ନାଚୁ ସୁଖେ ମୃଦୁଳ ସମୀରେ ।

ପଙ୍କରୁ ଜନମି ତୋର ନାମ ପଙ୍କଜିନୀ
ଶାଶ୍ୱତ ପ୍ରେମରେ ତୁହି ସଦା ଆହ୍ଲାଦିନୀ ।
କିଏ ତୋର ଗୁରୁ ? ଦେଲା ଶାଶ୍ୱତ ମନ୍ତର ?
ତାର ଦରଶନ ଆଶେ ଆକୁଳ ଅନ୍ତର ।

ଏ ଭବ-ସାଗରେ ମୋର ପଙ୍କିଳ ଜୀବନ
କାହିଁ ଗଲେ ଲଭିବି ମୁଁ ଶାନ୍ତି-ନିକେତନ ?

## କୋକିଳ ପ୍ରତି

ବଜାଇ ମାଧବୀ-ବୀଣା ରସାଳ-ନିକୁଞ୍ଜେ
କି ଆନନ୍ଦେ ରେ କୋକିଳ, ଗାଇ କିବା ଗୀତି
ଦୋଲୁଅଛୁ ସୁଖେ କିବା ପ୍ରେମ-ବୀଚିପୁଞ୍ଜେ
କାହୁଁ ତୁ ଶିଖିଲୁ ଏହି ସମ୍ମୋହନ ରୀତି ?

କି ପୀୟୂଷ-ନୀରେ ଧୁଆ ହୋଇ ମଧୁତାନ
ସଞ୍ଜୀବନୀ ସୁଧା ସମ ଅନିଳ ଲହରେ -
ସଞ୍ଚରି ନିଶାନ୍ତେ ମୋର ଆଧାତ୍ମିକ ଧ୍ୟାନ -
ଅନ୍ତରେ ବିଭେଦି ପ୍ରେମେ ପ୍ରାଣ ପୂର୍ଣ୍ଣ କରେ ।

ନ ଛୁଏଁ କି ହୃଦ ତୋର ବିଶ୍ୱ କୋଳାହଳ ?
ଗାଉଛୁ କି ସୁଖେ ତେଣୁ ମହା ପ୍ରେମଗୀତି ?
ନ ଦିଏ କି ତାପ ତୋତେ ପାପ-ହଳାହଳ ?
ଲଭିଛୁ କି ଶାନ୍ତିମୟୀ ପୁଣ୍ୟମୟୀ ପ୍ରୀତି ?

ପାପ-ହଳାହଳେ ମୋର ବ୍ୟଥିତ ଜୀବନ
କାହିଁ ଗଲେ ଲଭିବି ମୁଁ ଶାନ୍ତି-ନିକେତନ ?

## ମୟୂର ପ୍ରତି

ଶୁଣି ନୀଳ ଜୀମୂତର ଗମ୍ଭୀର ଗର୍ଜନ
କି ମହାହରଷେ ତୋର ମାନସ ମଗନ ?
ଦୋଳାଇ ମୃଦୁ ସମୀରେ ଖେଳାଇ ରୁଚିରେ
ପ୍ରସାରି ଶିଖଣ୍ଡରାଜି ନାଚୁ ଧୀରେ ଧୀରେ ।

କରି କେକାରବ ହୋଇ ମହାପ୍ରେମେ ମତ୍ତ
କାହାର କୀରତିଗାନେ ରତ ଅବିରତ ?
କିଏ ତୋ ବିରହ-ଭାର ଚିତ୍ରିଲା ଯତନେ
ବିଚିତ୍ର କରି ବିବିଧ ତରଳ ରତନେ ?

ଦେଖି ତୋ ମଧୁର ଲୀଳା ମାନସମୋହନ
ବିଷାଦ-ସାଗରେ ମୋର ମାନସ ମଗନ
ମହାପ୍ରେମେ କେକି ! ତୁହି ଯେଉଁ ବ୍ରତଧାରୀ
ସେ ମହାବିଭବେ କେହ୍ନେ ହେବି ଅଧିକାରୀ !

କ୍ଷୁଦ୍ରବୃତି କାରାବାସେ ରୁଦ୍ଧ ମୋର ମନ
କାହିଁ ଗଲେ ଲଭିବି ମୁଁ ଶାନ୍ତି-ନିକେତନ ?

## ସମୁଦ୍ର ଦର୍ଶନେ

ଅହୋ, କି ବିରାଟ ଦୃଶ୍ୟ । ଅନନ୍ତ ଅପାର
ଅନନ୍ତ ନୀଳିମାମୟ ବିଶାଳ ମୂରତି
ମହାପ୍ରେମେ ମହାଶଙ୍ଖ ଘୋଷେ ପାରାବାର
ଗାଏ କି ଅନାଦିଅନ୍ତ ମହେଶ କୀରତି !

କି ମହାମଦିରା ମଦେ ବିଲୋଳିତ ଶିର
ଉତ୍ତୁଙ୍ଗ ତରଙ୍ଗ ରାଜି ବୁଭୁକ୍ଷିତ ମନେ
ଯଷ୍ଟିହରା ଅନ୍ଧ ପ୍ରାୟେ ଭାଷି କିବା ଗୀର
ଧାମନ୍ତି ପଡନ୍ତି ପୁଣି ଦେଖନ୍ତି ଗଗନେ ।

ଉଦ୍‌ବେଳିତ ତରଙ୍ଗର ଉଦ୍‌ବୋଧନ ଗୀରେ
ହିଲ୍ଲୋଳ-ତାଣ୍ଡବେ ମାତି ଖେଳେ ପ୍ରଭଞ୍ଜନ
ଅନନ୍ତ ଶାଶ୍ୱତ ଗୀତି ଗାଇ ସୁଗମ୍ଭୀରେ
କରଇ ଶାଶ୍ୱତ ଭକ୍ତ ମାନସ ରଞ୍ଜନ ।

କହି ବା ପାରିବ ଏହୁ ଯଥାର୍ଥ ବଚନ
ବିରାଜଇ କେଉଁ ଧାମେ ଶାନ୍ତି-ନିକେତନ ?

* ପାଞ୍ଚୁଲି - ବାହ୍ଲୀତୀରସ୍ଥ ପର୍ବତ

# ସମୁଦ୍ର ପ୍ରତି

(୧)

ହେ ଅନନ୍ତ ପାରାବାର ! କରଇ ବିନତି
ଫେଡି କି ପାରିବୁ ତୁହି ଅନ୍ତର-ଆରତି ?
ଗମ୍ଭୀର ଉଦାର ତୋର ଅନନ୍ତ ହୃଦୟ
ମହତ ନାମରେ ତେଣୁ ଗଉରବମୟ ।

କୋଟି କୋଟି ଜୀବ ତୋର ବିଶାଳ କୋଳରେ
ଖେଳୁଛନ୍ତି ସୁଖେ ବିଭୁ କରୁଣାଭୋଳରେ
ବିବିଧ ରତନେ ପୂର୍ଣ୍ଣ ହୃଦୟ ତୋହର
ରତନନିଳୟ ନାମ ତେଣୁ ମନୋହର ।

ଜଗତଜୀବନ ଘନ ତୋହରି ଆଶ୍ରୟେ
ଢାଳଇ ପୀୟୁଷଧାରା ଅବନୀ ହୃଦୟେ
ଅନନ୍ତ ଗରଭେ ତୋର ଅନନ୍ତ ବିଜନେ
ନିବସନ୍ତି ପରା ବିଭୁ ଅନନ୍ତ ଶୟନେ ?

ଦେଇ କି ପାରିବୁ ତୁହି ତାଙ୍କ ଦରଶନ
ଲଭିବି କି ତୋ ପ୍ରସାଦେ ଶାନ୍ତି-ନିକେତନ ?

(୨)

ବୃଥା ଆଶା-ସ୍ରୋତେ ଆଜି ଭାସୁଅଛି ମନ
ତୋଳୁଛି ସୁରଭି ବାଞ୍ଛି ଆକାଶ-ସୁମନ ।

ନୋହୁ ତୁ ମହତ ଆରେ ଜଳଧି ଦୁର୍ମତି
କେସନେ ଫେଡିବୁ ମୋର ଅନ୍ତର-ଆରତି ?

ନିଦାଘ ସନ୍ତାପେ ଯେବେ ଜୀବନ ଅଥୟେ
ଶରଣ ପଶେ ପଥିକ ଆକୁଳ ହୃଦୟେ –
ଶାନ୍ତିସୁଧା ଦାନେ ତାର ତୋଷିବାକୁ ମତି
କାହିଁ ତୋ ବିଶାଳ ବକ୍ଷେ ସେ ମହାଶକତି ?
ଅପେୟ ଲବଣମୟ ଜଳରାଶି ତୋର,
ବହିଛୁ ବାଡବ ଛଳେ କ୍ରୋଧ ମହାଘୋର ।

ଦୂରନ୍ତ ପରାୟେ ସଦା କରି କୋଳାହଳ
ଢ଼ାଳୁଛୁ ଜୀବନେ ମୋର ଆଧି ହଳାହଳ ।
କାହୁଁ ବା କହିବୁ ତୁହି ସେ ଶୁଭ ବଚନ
ଯହିଁ ଗଲେ ଲଭିବି ମୁଁ ଶାନ୍ତି-ନିକେତନ ?

## ବ୍ରାହ୍ମୀତଟିନୀ ପ୍ରତି

(୧)

ଜନନୀ ! ବ୍ୟଥିତ ହୋଇ ଜୀବନ୍ତ ମରଣେ
ଶରଣ ପଶଇ ତୋର ଅଭୟ ଚରଣେ ।
ବହୁ ଦୂର ଭ୍ରମି ଭ୍ରମି ବ୍ୟଥିତ ଜୀବନ
ଲୋଡ଼ୁଛି ଆକୁଳେ ପୁଣ୍ୟ ଶାନ୍ତି-ନିକେତନ ।

ଶାନ୍ତିମୟୀ ଅଙ୍ଗ ତୋର, ଶାନ୍ତିମୟୀ ନାମ
କହ ମାତଃ ଶାନ୍ତିମୟି ! କାହିଁ ଶାନ୍ତିଧାମ ?
କରୁଣାରୂପିଣୀ ତୁହି କ୍ଷମାଶ୍ରଦ୍ଧାମୟୀ
ହୃଦ-ଆହ୍ଲାଦିନୀ ସୁଧା ତୋ ହୃଦେ ଖେଳଇ ।

ପ୍ରସାରି ସେ ହୃଦ ମା ଗୋ ! ଗିରି ବନଭାଗେ,
ତୋଷୁଅଛୁ କୋଟି ଜୀବ ମହା ଅନୁରାଗେ ।
ସଞ୍ଚରି ଶୀକର ରୂପେ ମୃଦୁଳ ମଳୟେ
ଢ଼ାଳୁ ଶାନ୍ତି ସୁଧା ଲତା-ପାଦପ-ହୃଦୟେ ।

କଳ କଳ ଧ୍ୱନି ଛଳେ କି ମହାମନ୍ତର
ଗାଇ ନିରନ୍ତରେ ପୁଲକଇ ତୋ ଅନ୍ତର ।

(୨)

କୁଶାସନେ ତୀରେ ତୋର କୁରଙ୍ଗମଚୟ
ଦେଖନ୍ତି ଶଫରୀଙ୍କର ଚାରୁ ଅଭିନୟ ।
ଦେଖାଇ ତରଙ୍ଗେ ରଙ୍ଗେ ଭବ ଭଙ୍ଗୁରତା,
ଭାଷୁଛୁ ନିରତେ କି ମା ! ଅମୃତ ବାରତା ?
ତେଣୁ କି ଶାଶ୍ୱତ ଶାନ୍ତି କରିଣ କାମନା,
ଶରଣ ଭଜଇ ତୋର ଶେଫାଳୀ ସୁମନା ।
କରି କେତେ ଲୀଳା, ଦୋଳି ମୃଦୁଳ ତରଙ୍ଗେ
ଗମଇ ଅନନ୍ତ ପଥେ ଶୁଭ୍ର ଫେନ ସଙ୍ଗେ ।

ସାରସ ଦମ୍ପତି ତୋର ସୁରମ୍ୟ ପୁଳିନେ
ବିହରନ୍ତି ଶାନ୍ତିସୁଖେ ମାତି ପ୍ରତି ଦିନେ ।

ତାଙ୍କରି ପରାୟେ ନିତି ଖେଳି ତୋର ତଟେ
ଅମୃତ ସୁଷମା ତୋର ସଞ୍ଚି ହୃଦପଟେ;
ତୋହରି ଅଭୟ ପଦେ ଢ଼ାଳି ଏ ଜୀବନ
ଲଭିବି କି ମା ଗୋ ! ପୁଣ୍ୟ ଶାନ୍ତି-ନିକେତନ ?

(୩)

ବନ୍ଧୁ ମେଳେ ବସି ଆଜି ପାଗ୍ଳିଂ-ଶିଖରେ
ଦେଖଇଁ ତୋ ଘରୁ ଗତି ଅବନୀ-ବକ୍ଷରେ ।

ସୁବିଶାଳ ଶାଳବନ ରାଜେ ଗିରିପଦେ,
ପଲ୍ଲବ ମଳୟ-ଲୋଳ କୁସୁମ-ସମ୍ପଦେ ।

ଦେଖି ଦେଖି ଏ ସୁଷମା ଖେଳି ନାନା ରଙ୍ଗେ,
କି ରଙ୍ଗେ ଆଳସ୍ୟ ଭାଙ୍ଗୁ ଅୟନର ଭଙ୍ଗେ ।

ସୁରମ୍ୟ ଫେନିଳ ବକ୍ଷେ ପଡି ରବିକର
ଝକଝକେ ପ୍ରକାଶଇ ସୁଷମା ଭାସ୍ୱର ।

ମାନସମୋହନ ତାର ପବିତ୍ର ସ୍ୱଭାବ
ସଞ୍ଚାରଇ ପ୍ରାଣେ କେତେ ଭାଷାତୀତ ଭାବ ।

ତୋର ନୀରପାନେ ଗିରି କନ୍ଦରେ ଆନନ୍ଦେ
ପର୍ଣ୍ଣବାସେ ଢ଼ାଳି ମନ ସେହି ଆଦିକନ୍ଦେ;

ଭୁଲି ଭବତାପ ସତେ ଯାପି ଏ ଜୀବନ
ଲଭିବି କି ମା ଗୋ । ପୁଣ୍ୟ ଶାନ୍ତି-ନିକେତନ ?

## କର୍ତ୍ତବ୍ୟ

ଏ କ୍ଷୁଦ୍ର ଜୀବନ ବହି ନଶ୍ୱର ଜଗତେ
କର୍ତ୍ତବ୍ୟ ଚିନ୍ତାରେ ମନ ବିଭ୍ରମେ ନିରତେ ।

କୁକର୍ମେ ମାତିଲେ ଧରା କାନ୍ଦିବ ସମ୍ମୁଖେ
ସୁକର୍ମେ ମାତିଲେ ଅନ୍ତେ ବିଳପିବ ଦୁଃଖେ ।

କୁପଥ ରୋଧନେ ସାଧୁ ମାନବେ ତତ୍ପର
ସୁପଥେ କଣ୍ଟକ ଦାନେ ଦୁଷ୍ଟେ ଅଗ୍ରସର ।

କି ଲାଗି ଭାବନା ତେବେ କର୍ତ୍ତବ୍ୟ ପାଳନେ
ହେବି ମୁଁ ନିରୀହ ପ୍ରଜା ବିଧିର ଶାସନେ ।

ନ ଲୋଡିବି ସୁଖ ଦୁଃଖ ଯଶ ଅକୀରତି
ନ ଇଚ୍ଛିବି ଲାଭେ ପ୍ରୀତି ବିପଦେ ଆରତି ।

ଅନ୍ତରେ ସହସ୍ର ଦଳେ ମୋ ପ୍ରାଣ-ସବିତା
ରାଜନ୍ତି ଚିନ୍ମୟ ବିଭୂ ବ୍ରହ୍ମାଣ୍ଡ-ବିଧାତା ।

ଆଦେଶିବେ ଯେବେ ଯାହା ପାଳିବି ଯତନେ
ବିଚରିବି ଚିନ୍ତା ତେଜି ଶାନ୍ତି-ନିକେତନେ ।

## ଦୂରବୀକ୍ଷଣ

ବିନୟ ବଚନ ଭବେ ମନୋଜ୍ଞ ସୁମନ,
ଲୋଭ ହିଁ ଗରଳ ସମ ବିନାଶେ ଜୀବନ ।

ଶାଣିତ କୃପାଣ ଅଟେ ପୁରୁଷ ଭାଷଣ
ପ୍ରବୃତ୍ତି ଅଟଇ ବହ୍ନି ପରାଏ ଭୀଷଣ ।

ଜଗତେ ତାମସୀ ନିଶି ଅଟେ ଅଜ୍ଞାନତା,
ସ୍ୱର୍ଗୀୟ ଭୈଷଜ୍ୟ ସଦା ଆତ୍ମପବିତ୍ରତା ।

ଧୈର୍ଯ୍ୟ ହିଁ ଅଭେଦ୍ୟ ବର୍ମ୍ମ ସୁଦୀର୍ଘ ଜୀବନେ,
ଧର୍ମ୍ମ ହିଁ ଅମୂଲ୍ୟ ନିଧି ନିଖିଳ ଭୁବନେ ।

କୁଚିନ୍ତା-ପିଶାଚ ପିଏ ହୃଦୟ-ଶୋଣିତ,
ବାସନା ଜନ୍ମାଏ ପ୍ରାଣେ ଗ୍ଲାନି ଅଗଣିତ ।

ସୁକୀର୍ତ୍ତି ଅଟଇ ସଦା ପରାଣ-ନନ୍ଦନ
ଦରିଦ୍ରର ଆଶୀର୍ବାଦ ଶୀତଳ ଚନ୍ଦନ ।

ବିବେକ- 'ଦୂରବୀକ୍ଷଣେ' ଚିହ୍ନି ସାରାସାର
ଶାନ୍ତି-ନିକେତନେ ସାଧୁ କରଇ ବିହାର ।

## ପ୍ରେମିକ

କେ ଅଛି ପ୍ରେମିକ ଭବେ ପ୍ରେମଧନେ ଧନୀ
ଶାରଦ ଚନ୍ଦ୍ରିକା ସମ ବିମଳ ମୋହନ
ନିରତେ ହୃଦୟ ଯାର, ଦିବସ ରଜନୀ
ଅମର୍ତ୍ତ୍ୟ ଔଦାର୍ଯ୍ୟ ପୂରେ ପବିତ୍ର ଜୀବନ ।

କେ ଅଛି ପ୍ରେମିକ ଭବେ, ହାସ୍ୟଜ୍ୟୋସ୍ନା ପୁରେ
ଆଲୋକି ଆପଣା ହୃଦ ବନ୍ଧୁ ହୃଦ ସଙ୍ଗେ
ମାନ ଲଜ୍ଜା ନିନ୍ଦା ଭୀତି ଭେଦ ଫିଙ୍ଗି ଦୂରେ
ନୟନ ମିଳନେ ନାଚେ ପୁଲକ-ତରଙ୍ଗେ ।

କେ ଅଛି ପ୍ରେମିକ ଭବେ, ମୋ କ୍ଷୁଦ୍ର ହୃଦୟ
ପ୍ରସାରିତ କରି ତାର ଚରଣ ପ୍ରାନ୍ତରେ
ଲୋଟାଇବି ପ୍ରେମମନ୍ତ୍ରେ ହୋଇ ମୁଁ ତନ୍ମୟ
ନିରେଖି ପ୍ରେମର ଜ୍ୟୋସ୍ନା ତା ହୃଦ ଅନ୍ତରେ ।

ପ୍ରପଞ୍ଚେ ପ୍ରପଞ୍ଚ ନୀତି କରି ପରାଜୟ
କରିଛି କେ ହୃଦ ପ୍ରେମ ଶାନ୍ତିର ନିଳୟ ?

## ଜନନୀର ସ୍ନେହ

ମାଧବୀ କୌମୁଦୀ, ସ୍ନିଗ୍ଧ ମଳୟ ସମୀର,
କୁମୁଦିନୀ ଚାରୁହାସ୍ୟ, ପୀୟୁଷ ମାଧୁରୀ -
ଜିଣି ଅବହେଳେ ଭବେ ସ୍ନେହ ଜନନୀର
ପ୍ରକାଶେ ପ୍ରସାଦମୟୀ ଚିନ୍ମୟୀ ଚାତୁରୀ ।

ନୁହଇ ଦାମିନୀ ପ୍ରାଣେ ସଞ୍ଚରି ପଲକେ
ଅବ୍ୟକ୍ତ ଆହ୍ଲାଦପୁରେ, ହୃଦୟ-ଗଗନ
ଆଲୋକି ସ୍ୱର୍ଗୀୟ ତେଜେ, ବିମଳେ ଝଲକେ
ସଂଜୀବନୀ ସୁଧାସରେ ଭସାଇ ଜୀବନ ।

କଳୁଷ ପଙ୍କିଳ-ଭବେ, କମଳ ଯେସନ
ବିକଶିତ ମାତୃସ୍ନେହ ଅମର୍ତ୍ତ୍ୟ ବିଭବେ,

ନିଖିଳ ରଞ୍ଜନ ଶକ୍ତି କରି ସଞ୍ଚାଳନ
ସ୍ୱୟମ୍ଭୂ ନିୟୋଗେ କରେ ରାଜତ୍ୱ ନୀରବେ ।

ନଶ୍ୱର ଶରୀର ଭବେ ଭଙ୍ଗଇ ବିଳୟ
ମାତୃସ୍ନେହ ସନାତନ ଶାନ୍ତିର ନିଳୟ ।

## ପରିଶ୍ରମୀ

ହେ ବୀରେନ୍ଦ୍ର ! କି ଅଭେଦ୍ୟ ବର୍ମ୍ମ ପିନ୍ଧି ବକ୍ଷେ,
ଦୁଷ୍ଟିତାର କୂଟ ଚକ୍ର ଏଡାଇ ଇଙ୍ଗିତେ,
ଆଳସ୍ୟର ଦୃଢ଼ ଦୁର୍ଗ ଭାଙ୍ଗି ତୀକ୍ଷ୍ଣ ଲକ୍ଷ୍ୟେ,
ଲଭୁଛ ବିମଳ ଶାନ୍ତି ବିଜୟ ସଙ୍ଗୀତେ ।

ସ୍ୱେଦସ୍ୱିନ୍ନ ଅଙ୍ଗ ତବ, ସ୍ୱେଦାର୍ଦ୍ର ବସନ,
ସ୍ୱେଦବିନ୍ଦୁ ଶୋଭୀ ଭୃରୁ ମଳୟ ପବନେ,
ସଂଜୀବନୀ ସୁଧାସମ ଘେନି ଶାନ୍ତି-ଧନ
ଶୀତଳାଏ ପ୍ରାଣ ତବ ସ୍ୱର୍ଗୀୟ ଚନ୍ଦନେ ।

ଶାକାନ୍ନେ ତୁମ୍ଭର, କିଏ ଅମୃତ ମାଧୁରୀ
ହଁସୁଳୀ ତୂଳୀର ସୁଖ ଭୂତଳ ଶୟନେ,
କେ ଦିଏ, ନବୀନ ବଳେ ଶ୍ରାନ୍ତ ହୃଦ ପୂରି,
କେ ଦିଏ ନବୀନ ଦୀପ୍ତି ସୁସ୍ନିଗ୍ଧ ନୟନେ ?

ସୁଖଶାନ୍ତି ଦାତା ଯେହୁ ତୁମ୍ଭ ଜୀବନର,
ନୁହେଁ କି ସେ ଶ୍ରମ ? ନିତ୍ୟ ଶାନ୍ତି ସହଚର ।

## ସ୍ମୃତି

ହେ ଦେବି ! କରୁଣାମୟ ! କୃପା କରି ବାରେ
ଘେନିଯାଅ ପ୍ରାଣ ମୋର ଅତୀତ ସଂସାରେ ।
ଶୈଶବର ଗ୍ଚରୁଚିତ୍ର, ସୁସ୍ନିଗ୍ଧ ନୟନ,
ସୁସ୍ନିଗ୍ଧ କୌମୁଦୀ ହାସ୍ୟ, ଦରୋଟି ବଚନ ।

ସ୍ୱର୍ଗୀୟ ସାତ୍ତ୍ୱିକ ଭାବେ ପବିତ୍ର ହୃଦୟ,
ମାତାର ଚୁମ୍ବନ ସୁଖେ ହରଷ ତନ୍ମୟ ।

ଲଜ୍ଜା ଘୃଣା ଭୀତିଶୂନ୍ୟ ସେ ବାଲ୍ୟ ଜୀବନ
ଦିଅ, ବିନିମୟେ ଘେନି ଦୁରନ୍ତ ଯୌବନ ।

ଭୂମା ରଙ୍ଗେ ଅଙ୍ଗ ମୋର ହେଉ ଧୂସରିତ,
ଭାଷାତୀତ ଛନ୍ଦେ ପ୍ରାଣ ହେଉ ଝଙ୍କାରିତ ।
ଭୂମାର ବାତ୍ସଲ୍ୟମୟ ପବିତ୍ର ଆହ୍ୱାନେ
କ୍ରୀଡାନ୍ତେ ଆଶ୍ରିବି ଭୂମା ଅଙ୍କ-ଉପଧାନେ ।

ମାତୃସ୍ତନ୍ୟପାନେ ପୁଣି ସୁଷୁପ୍ତି ଅନ୍ତରେ
ଅମୂଲ୍ୟ ଅମର୍ତ୍ତ୍ୟ ଶାନ୍ତି ଲଭିବି ଅନ୍ତରେ ।

## ବାସନା ପ୍ରତି

କେ ଗୋ ତୁମ୍ଭେ ଚାରୁନେତ୍ରା ବିଶ୍ୱମନୋରମା
ଅପାଙ୍ଗ ଇଙ୍ଗିତେ ମୋହି ବ୍ରହ୍ମାଣ୍ଡ ହୃଦୟ,
ପ୍ରକାଶି ଲଳିତ ହାସେ ସ୍ୱର୍ଗୀୟ ସୁଷମା
ଆହ୍ୱାନ କରୁଛ ମୋତେ ଆଶ୍ୱାସନାମୟ ?

ଭଣି ବାରମ୍ବାର ମୋତେ ମହା ଆଶ୍ୱାସନେ
ମଣ୍ଡି ଆଶା - ପୁଷ୍ପଦାମେ ମୋର ଶୂନ୍ୟ ବକ୍ଷ
ଖଣ୍ଡି ଶାନ୍ତି ଜନମାଇ ଅତୃପ୍ତି ଜୀବନେ
ଦଣ୍ଡି ଅଛ ଦେଇ ମନେ ଅନୁତାପ ଲକ୍ଷ ।

ସେ ସନ୍ତାପେ ଆଜି ଦେବି, ଅଥୟ ଜୀବନେ
କର ଯୋଡି ତୁମ୍ଭ ପଦେ କରଇ ବିନତି,
ଯାଅ ଗୋ କୌବେର ପୁରେ ସ୍ୱଲକ୍ଷ୍ୟ ସାଧନେ
ତୋଷ ଆଶା ପ୍ରରୋଚନେ ବିଳାସୀଙ୍କ ମତି ।

ଦୟା କର ମାୟାବିନୀ ! ଘେନ ନିବେଦନ
ଲୋଡିଛି ଆକୁଳେ ମୁହିଁ ଶାନ୍ତି-ନିକେତନ ।

## ପ୍ରାବୃଟ କୋକିଳ୍

ଆଜି ଏ ପ୍ରାବୃଟ କାଳେ ସୁଦୂର ପାଦପେ
'କୁହୁ' ଛଳେ ନିରନ୍ତର ଗାଇ ଭୂମା ଗୀତି,
ଏ ବ୍ରାହ୍ମ ମୁହୂର୍ତ୍ତେ କିଏ ରତ ମହାତପେ
ମାୟାମୟ ପ୍ରପଞ୍ଚର ତେଜି ପାପ ନୀତି ?

ତଡ଼ାଗ ପୁଳିନେ ବସି ପରସ୍ପର ବାଦେ
ରାବନ୍ତି ଦର୍ଦ୍ଦୁରଶ୍ରେଣୀ କାମେ ହୋଇ ମତ୍ତ
ଭିନ୍ନ କରି ଗଣ୍ଡସ୍ଥଳୀ ବିକଟ ନିନାଦେ
ଲଭନ୍ତି ଦୁର୍ଦ୍ଦଶା, ପାଳି ମହା ଈର୍ଷ୍ୟାବ୍ରତ ।

ଶିଶୁ ସଙ୍ଗେ ବାୟସାଳି ଉଡ଼ି ଘରେ ଘରେ
କରୁଛନ୍ତି ଶ୍ରୁତିକଟୁ ବିକୃତ ଆରାବ,
ଆତ୍ମ ପରିଚୟ ଶକ୍ତି ନାହିଁ ଯା ହୃଦରେ
ସେ କାହୁଁ ଜାଣିବ ଅବା ବିଶ୍ୱପ୍ରୀତିଭାବ ?

ହେ ଭୂମାସ୍ତାବକ ତପୀ ! ତବ ପୁଣ୍ୟ ତାନ
ସୁଧାନୀରେ ଧୋଇ ମୋର ସନ୍ତପ୍ତ ଅନ୍ତର
ପୁଲକାଏ ପ୍ରାଣ, ହରି ଦୁଃଖ ଚିନ୍ତାମାନ
ଏ ମହୀମଣ୍ଡଳେ କାହିଁ ତାର ପଟାନ୍ତର ?

'ଭୂମା' 'ଭୂମା' ଗୀତି ତୋର ବିଶ୍ୱ-ବିମୋହନ
ଶୁଣୁଥିବି ନିରନ୍ତର, ବାସନା ମୋହର;
ଭ୍ରମି ଉପବନ ଗିରି ନଗର କାନନ
ଅନନ୍ତ ଗଗନେ ହୋଇ ତୋର ସହଚର ।

କିନ୍ତୁ କାହିଁ ବକ୍ଷେ ମୋର ସେ ମହାଶକତି
ଲଭି ଯାହା ଭ୍ରମୁଅଛୁ ନିଖିଳ ଭୁବନ
ସେ ମହାରତନ ଲଭେ ଆକୁଳ ମୋ ମତି
ଲଭିବି ମୁଁ କେଉଁ ଧାମେ ତାର ଦରଶନ ?

'ଭୂମା' 'ଭୂମା' ଗୀତି କରି ପୁଲକେ ଗାୟନ
ଲଭିବି ମୁଁ କେବେ ପୁଣ୍ୟ ଶାନ୍ତି-ନିକେତନ ?

## ଶାରଦ ପ୍ରଦୋଷେ

ଦିବା ଅବସାନେ ଆଜି ଶାରଦ ଗଗନେ
ଲକ୍ଷ ଲକ୍ଷ କାଦମ୍ବିନୀ ଅନିଳ ଲହରେ
ଭାସଇ, ସହସ୍ର ଚିନ୍ତା ଭସାଇ ଜୀବନେ
ଔଦାସ୍ୟ ବିଷାଦ ଭାରେ ପ୍ରାଣ ପୂର୍ଣ୍ଣ କରେ ।

ବିଶାଳ ଅମ୍ବରେ ସୁଖେ କ୍ଷୁଦ୍ର ବିହଙ୍ଗମ,
କି ମଧୁର ଗୀତି ଗାଇ ଗଲା କାହିଁ ଉଡ଼ି,

ମୋ କ୍ଷୁଦ୍ର ଜୀବନ ବହି ସନ୍ତାପ ବିଷମ
କାହିଁ ଯିବି ଭାଳେ ବସି, ଗତିପଥ ହୁଡ଼ି ।

କୁସୁମ ବିକାଶ ଛଳେ ମନ୍ଦେ ମନ୍ଦେ ହସି
ଦୋଳଇ ସାନ୍ଧ୍ୟ ସମୀରେ ଏ କ୍ଷୁଦ୍ର ଲତିକା
କି ଦାରୁଣ ଝଞ୍ଜାନିଳେ ପଡ଼ୁଅଛି ଖସି
ହୃଦୟ-ଲତାରୁ ମୋର ଆନନ୍ଦ-କଳିକା ।

ସହସ୍ର ଅତୀତ ସ୍ମୃତି, ବର୍ତ୍ତମାନ ଦଶା,
ଭବିତବ୍ୟ ଭାବନାରେ ଏ କ୍ଷୁଦ୍ର ହୃଦୟ
ନିରନ୍ତରେ ଚିନ୍ତାକୁଳ ବିଷାଦେ ବିବଶା
ନୈରାଶ୍ୟ ଔଦାସ୍ୟ ପୂରେ ପରାଣ ଅଥୟ ।

କାହିଁ ଜୀବନର ଉଷା ସେହି ବାଲ୍ୟକାଳ,
କାହିଁ ସେ ଶୈଶବ ଲୀଳା ଦିଗମ୍ବର ବେଶ
ସ୍ପରଶି ନ ଥିଲା ଯେବେ ବିଷୟ ଜଞ୍ଜାଳ
ପୂର୍ଣ୍ଣ ଥିଲା ଦିବ୍ୟଗୁଣେ ହୃଦୟ ପ୍ରଦେଶ ।

ବର୍ଷୀୟସୀ ମେଳେ ପୁର ପ୍ରାଙ୍ଗଣରେ ବସି
ବାସନ୍ତିକ ରାତ୍ରେ ଯେବେ ଊର୍ଦ୍ଧ୍ୱ ନିରୀକ୍ଷଣେ
ଗଳ୍ପ ଶୁଣି, ତାରା ଗଣି, ଦେଖୁଥିଲି ଶଶୀ
ଉଦାସ ହୃଦୟ ଆଜି ସେ କାଳ ସ୍ମରଣେ ।

ସହଚର ବନ୍ଧୁ ମେଳେ କୈଶୋର ଜୀବନେ
ସନ୍ତରି ସରସୀ-ନୀରେ ତୋଳି କୁବଳୟ
ପୂଜି 'ସରସ୍ୱତୀ' ପଦେ ଭକ୍ତିପୂତ ମନେ
ଯାପୁଥିଲି କି ଆହ୍ଲାଦେ ସେ ମଧୁ ସମୟ ।

ଆଉ ନ ଆସିବ ଫେରି ସେ ମଧୁ ସମୟ
ସ୍ମୃତିରୂପେ ନିରନ୍ତର ସମ୍ପାଦି ଯତନେ
ସେ ସ୍ୱର୍ଗୀୟ ଲୀଳାରାଶି, ଏ କ୍ଷୁଦ୍ର ହୃଦୟ
କଟାଇବ କାଳ ଭବେ ସ୍ମୃତି-ଆରାଧନେ ।

ଏବେ ଏ ଯୌବନକାଳ-ମଧ୍ୟାହ୍ନ ଗଗନେ
ମାର୍ତ୍ତଣ୍ଡ ମଣ୍ଡଳେ ବସି ବ୍ରହ୍ମାଣ୍ଡ-ଜନନୀ

ଗଦା ପଦ୍ମ ଚକ୍ର କରେ ବିଶ୍ୱ ଉଚ୍ଚାଟନେ
କରନ୍ତି ବ୍ରହ୍ମାଣ୍ଡ ଘୋଷି ମହା-ଶଙ୍ଖଧ୍ୱନି ।

ଆବରି ବରାଙ୍ଗ ଦେବୀ କଷାୟ ବସନେ
ଅକ୍ଷ କମଣ୍ଡଳୁ କରେ ଯେବେ ପ୍ରାଚୀ ଭାଳେ
ଗାଉଥିଲେ ଶାନ୍ତିଗୀତି ବସି ହଂସାସନେ,
ସୁଧାମୟ ଥିଲା ବିଶ୍ୱ ସେହି ଉଷାକାଳେ ।

ସୁପର୍ଣ୍ଣ ଆସନେ ଏବେ ମହୋତ୍ସାହମୟ
ଢ଼ାଳନ୍ତି ବୋଧନ ନାଦ ବିଶ୍ୱ ମହାରଣେ,
ମହୋତ୍ସାହେ ପୁଲକିତ ବ୍ରହ୍ମାଣ୍ଡ-ହୃଦୟ,
କିନ୍ତୁ ଛନ୍ନ ମନ ମୋର ସେ ନାଦ ଶ୍ରବଣେ ।

ନାହିଁ ହୃଦୟର ତେଜ ବିବେକର ବଳ
କି ସାହସେ ପଶିଲି ଏ ଜୀବନ-ସଂଗ୍ରାମେ
ବୀର ବେଶେ କାମ କ୍ରୋଧ ଆଦି ରିପୁଦଳ
ନୃତ୍ୟନ୍ତି ସମର ମଦେ ଚିର ଅବିଶ୍ରାମେ ।

ଅପାର କରୁଣାମୟୀ ବ୍ରହ୍ମାଣ୍ଡ-ଜନନୀ !
ଦେ ମା ! ନବ ବଳ ଦିବ୍ୟ ପ୍ରଜ୍ଞା ପ୍ରଣୋଦନେ
ଦେ ମା ! ମହୋତ୍ସାହ ସୁଧାମୃତ-ସଂଜୀବନୀ,
ଜୟୀ ହେବି ବିଶ୍ୱରଣେ ଏ କ୍ଷୁଦ୍ର ଜୀବନେ ।

ପୋଷିଛି ପରମ ଆଶା ହୃଦୟେ ମୋହର
ବିଶ୍ୱରଣେ ଜୟୀ ହୋଇ ସ୍ୱର୍ଗୀୟ ଆନନ୍ଦେ
ବିଜୟ ନନ୍ଦନ ଗୀତି ଶୁଣିବି ତୋହର
ଗାଇବୁ ଯେ କାଳେ ମା ଗୋ ! ବିଶ୍ୱପ୍ରୀତି ଛନ୍ଦେ ।

ବିପଞ୍ଚୀ ପଞ୍ଚମେ ତୋଳି ସୁଗମ୍ଭୀର ତାନ
ଝଙ୍କାରିବୁ ବିଶ୍ୱପ୍ରାଣ ବସି ବୃଷାସନେ*,
ଶିଖାଇବୁ ଏ ଅଧମେ ସେ ଅମୃତ ଗାନ
କହ ମା ! ବିରାଜି କେବେ ପ୍ରତୀଚୀ ଗଗନେ ?
ସାରସ୍ୱତ ଛବି ତୋର କରି ବିଲୋକନ
ଲଭିବି ମା ! କେବେ ପୁଣ୍ୟ ଶାନ୍ତି-ନିକେତନ ?

*ଧର୍ମାସନେ

## ବାସନ୍ତୀ-ଅମାବାସ୍ୟା

ଏ ମଧୁ ବସନ୍ତେ ଆଜି ସୂର୍ଯ୍ୟେନ୍ଦୁ ସଂଗମେ
ସୁବିଶାଳ ନୈଶ ନଭେ ଦୀପ୍ତ ରକ୍ଷାବଳି,
ଅନିମେଷ ବିଲୋକନେ ଶାଶ୍ୱତ ସଂଯମେ
ସମାଧି ତତ୍ପର କିରେ ! ପ୍ରେମେ ହୋଇ ବଳୀ ।

କୋଳାହଳମୟ ବିଶ୍ୱେ ଏ କ୍ଷୁଦ୍ର ଜୀବନ
ଏ କ୍ଷୁଦ୍ର ଶରୀରେ ରହି କ୍ଷୁଦ୍ରେନ୍ଦ୍ରିୟ ଘେନି
ଦେଖୁଛି ଏ ଊର୍ଦ୍ଧ୍ୱ ଦୃଶ୍ୟ ବିରାଟ ମୋହନ
ଛି ଛି ଏ କି ଅନ୍ତରାୟ କ୍ଷୁଦ୍ର ଶ୍ରୁତି ବେନି !

ଶୁଣୁଅଛି କିମ୍ବା ଦୂରୁ ଜମ୍ବୁକ ହୋଂକାର
ସାରମେୟ ଧ୍ୱନି ସଙ୍ଗେ ଝିଲ୍ଲିର ଝଂକୃତି
ହେଲେହେଁ ପ୍ରଣତ ତାରେ କଲେହେଁ ଧିକ୍କାର
ସୁମରାଏ ଜଗତର ଜଘନ୍ୟ ବିକୃତି ।

ଭାଙ୍ଗି ମୋର ଏକାଗ୍ରତା ଏଡାଇ ନୟନ
ସେ ମୋହନ ଦୃଶ୍ୟ ନଭୁଁ ରଖଇ ହୃଦୟେ
ସହସ୍ର ପ୍ରପଞ୍ଚ ଚିତ୍ର କରାଇ ଲୋକନ
ବୁଡାଏ ପରାଣ ମନ ବିଷଣ୍ଣ ବିସ୍ମୟେ ।

ଭାଲୁଥିଲା ହୃଦ ଏହି ରକ୍ଷାବଳି ସମ
ବାନ୍ଧି ଏକାଗ୍ରତା ପାଶେ ଅସ୍ଥିର ମାନସ,
ଲଭିବି ଅଟଳ ଲକ୍ଷ୍ୟ ଶାଶ୍ୱତ ସଂଯମ
ଜିଣିବି ସାତ୍ତ୍ୱିକ ଧନେ ରାଜସ ତାମସ ।
ଇନ୍ଦ୍ରିୟର ବଶ ହେଲେ ମୋର କ୍ଷୁଦ୍ର ମନ
କାହୁଁ ବା ଲଭିବି ସେହି ଶାନ୍ତି-ନିକେତନ ?

## କଳ୍ପନା ପ୍ରତି

କହ ଗୋ କଳ୍ପନେ ! ମୋର ହୃଦୟର ଧନ,
ଅଛି କି ନା ବିଶ୍ୱଧାମେ ଶାନ୍ତି ନିକେତନ ?
ଚିରକାଳ ଅଟୁ ତୁହି ବାଣୀ-ପରିଚରୀ
ସ୍ୱର୍ଗୀୟ ପ୍ରତିଭାମୟୀ କବି ମନୋହାରୀ ।

ଯୋଗବାହୀ ଶକ୍ତି ତୋର ରବିରଶ୍ମି ସମ
ଦିବ୍ୟଦୃଷ୍ଟ ପ୍ରଦାୟିନୀ ବିଶ୍ୱେ ଅନୁପମ ।

ହସ ହସ ମଧୁ ନିଶି ସୁଧାକର ଭୂଷା,
ବିମଳ ଉଦାର କାନ୍ତି ଶାରଦୀୟା ଉଷା ।

ବିରାଟ ମଧ୍ୟାହ୍ନ ମୂର୍ତ୍ତି ରୁକ୍ଷ ନିଦାଘର,
ପ୍ରାବୃଟେ ଭୀଷଣ ଛବି ସାନ୍ଦ୍ର ଜଳଦର ।

ଶିଶିରେ କୁହେଳୀମୟ ପ୍ରକୃତିର ମୁଖ,
ହେମନ୍ତର ହିମକାଳ ପଦ୍ମିନୀର ଦୁଃଖ ।

ସକଳ ଋତୁର ସର୍ବ ଦୃଶ୍ୟ ବିମୋହନ,
ପଲକ ମାତ୍ରକେ ହେଲେ କରୁ ବିଲୋକନ ।

ଉଲ୍ଲୋଳ କଲ୍ଲୋଳମୟ ମୂର୍ତ୍ତି ଜଳଧିର,
ବ୍ୟୋମର ବିରାଟ ଛବି ଉଦାର ଗମ୍ଭୀର;
ଉଷାର ପାଟଳ ଶୋଭା ବାରୁଣୀର ହାସ
ପଲକେ ପ୍ରକୃତି କରେ ତୋ ଆଗେ ପ୍ରକାଶ ।

ଏ କ୍ଷୁଦ୍ର କୁଟୀରେ ଆଜି ବସିଛି ନୀରବେ
ଦେଖାଉଛୁ କେତେ ଦୃଶ୍ୟ ଏ ବିଶ୍ୱ-ଗରଭେ ।

ପ୍ରସାରିତ ଊର୍ଦ୍ଧ୍ୱେ ଏହି ସୁନୀଳ ଗଗନ,
ପ୍ରବାହିତ ମନ୍ଦେ ମନ୍ଦେ ମଳୟ ପବନ ।

ହସ ହସ ପୁଷ୍ପରାଜି ବିଟପୀ ବୃନ୍ତରେ
ଗାବନ୍ତି ଶକୁନକୂଳ ପ୍ରଫୁଲ୍ଲ ଅନ୍ତରେ ।

ବିଚରନ୍ତି କୁଶବନେ କୁରଙ୍ଗମଗଣ,
କରୁଛନ୍ତି ତପୀବୃନ୍ଦ ବେଦ ପାରାୟଣ
ଅଟଳ ସଂଯମେ କାହିଁ ବସି ବ୍ରହ୍ମ ଯତି
କଠୋର ତପସ୍ୟାରତ ବ୍ରହ୍ମେ ଢାଳି ମତି ।

ତାପସ-ଲଳନାକୁଳ ଖେଳି ତପୋବନେ
ରତ ଛନ୍ତି କୁତୂହଳେ କୁସୁମ ଚୟନେ ।

ପଲକ ଅନ୍ତରେ ପୁଣି ରାଜେନ୍ଦ୍ର ଭବନେ
ଲାଗିଛି ରାଜସ ଲୀଳା ବିମୁଗ୍ଧ ଜୀବନେ ।

ଜଳୁଅଛି ଧାଡି ଧାଡି ରତ୍ନଦୀପଚୟ
ଝଳକୁଛି ସୌଧଭିତ୍ତି ହେମରତ୍ନମୟ ।
ଦୋଳୁଅଛି କେରା କେରା ମୁକୁତାର ଦାମ,
ରାଜେ ଯେହ୍ନେ ରାଜସିକ ବିଳାସର ଧାମ ।
ହେମମୟ ସିଂହାସନେ ବିଜେ କ୍ଷିତିପତି,
ଅନୁରକ୍ତା ପରିଘେରେ ଲକ୍ଷ ରୂପବତୀ ।

ବାଜଇ ବିପଞ୍ଚୀ ବଂଶୀ ମନ୍ଦିରା ମର୍ଦ୍ଦଳ
ନାଚନ୍ତି ନୂପୁର ନାଦେ ବାରାଙ୍ଗନାଦଳ ।

ଉଠୁଛି ପଞ୍ଚମ ତାନେ ଗୁର୍ଜ୍ଜରୀ ରାଗିଣୀ
ନେଉଅଛି ତାଳେ ତାଳେ ପ୍ରାଣ ମନ କିଣି ।

ଏ ବିଳାସ-ସୌଧ ପ୍ରାନ୍ତେ ବିସ୍ତୀର୍ଣ୍ଣ ପ୍ରାନ୍ତରେ,
ଲାଗିଅଛି ଏ କି ଲୀଳା ପଲକ ଅନ୍ତରେ ।

ଧରି କରେ କରବାଳ ଲକ୍ଷ ଲକ୍ଷ ନର
କି ଭୀମ ନୃଶଂସ କର୍ମ୍ମ ସାଧନେ ତତ୍ପର ।

ଉତପ୍ତ ଶୋଣିତ-ଲିପ୍ତ ଶାଣିତ କୃପାଣ,
ଝଳକେ ଦାମିନୀ ସମ, ଘେନି ଶତ ପ୍ରାଣ -

ବିକଟ ଚିତ୍କାର ଧ୍ୱନି ସଙ୍ଗେ ସିଂହନାଦ
ଜନ୍ମାଏ ମୁମୂର୍ଷୁ ହୃଦେ ଦାରୁଣ ବିଷାଦ ।

ଫିଙ୍ଗି ଦୂରେ ନିଜ ଶିର ହୋଇ ଶୂନ୍ୟସ୍କନ୍ଧ
ଉଦ୍‌ଗାରଇ ରକ୍ତଧାରା ନର୍ତ୍ତିତ କବନ୍ଧ ।

ଏସନେ ବ୍ରାହ୍ମୀ, ବୈଷ୍ଣବୀ, ରୌଦ୍ରୀ, ଶକତିର
ଲୀଳା ସଙ୍ଗେ ଦେଖାଉଛୁ ଦଶା-ପ୍ରକୃତିର ।

ସତ୍ତ୍ୱରଜସ୍ତମୋଗୁଣେ ସୃଷ୍ଟି ସ୍ଥିତି ଲୟ -
ସାଧନେ କରଇ ବିଶ୍ୱ ବନ୍ଧୁ ଅଭିନୟ ।

ଘେନି ବିଶ୍ୱଜୟୀ ଶକ୍ତି ଅନନ୍ତ ଅକ୍ଷୟ
ଦେଖାଉଛୁ ସଦା ସେହି ବିଶ୍ୱ ଅଭିନୟ ।

ତୃପ୍ତ କର ବାରେ ମୋର ବ୍ୟାକୁଳ ଜୀବନ
କହ ଦେଖିଅଛୁ କାହିଁ ଶାନ୍ତି-ନିକେତନ ?

# ରାଜକନ୍ୟା ୰ ମନ୍ଦାକିନୀ ଦେବୀ

କେ ଗୋ ତୁମ୍ଭେ ପୁଣ୍ୟମୟି ! ହୃଦୟ-କାନନେ
ବସି ସ୍ମୃତି ତରୁମୂଳେ ସାରସ୍ୱତ ବେଶେ -
ନିରତା, ପ୍ରପଞ୍ଚ ଜିଣା ବିପଞ୍ଚୀ ବାଦନେ
ଝଲକାଇ ପୁଣ୍ୟ ମଣି ଅଳକ ପ୍ରଦେଶେ ।
* ସ୍ୱଭାବସୁଲଭ ତାନେ ଗାଇ ବ୍ରହ୍ମ ଗୀତି
ସ୍ୱଭାବସୁଲଭ ଜ୍ଞାନେ, ମହା ଭକ୍ତିବଳେ,
ରାଜକନ୍ୟା ମନ୍ଦାକିନୀ ଦେବୀ
ଲଭିଛ ସ୍ୱର୍ଗୀୟ ଶିରୀ ଭୁଞ୍ଜି ବ୍ରହ୍ମ ପ୍ରୀତି
ନିବେଦି ହୃଦୟାମ୍ବୁଜ ବିଭୁ ପଦତଳେ ।
କି ପୀୟୂଷମୟ ଦେବି ! ସେହି ପ୍ରୀତିଝର
ଇହଲୋକେ ଲଭି ଯାର ଦିବ୍ୟ ଆସ୍ୱାଦନ
ଗଲ ଦିବ୍ୟଧାମେ ଲଭି ବିଗ୍ରହ ଅଜର,
ତେଜି ମରତନୁ ସଙ୍ଗେ ନଶ୍ୱର ଭୁବନ ।
ଦେଲେ ବୃନ୍ତଚ୍ଛିନ୍ନ ସଦ୍ୟ ମାଳତୀ ସୁମନ
କ୍ଷୀରଚ୍ଛଳେ ନିରନ୍ତର ତେଜି ଅଶ୍ରୁ ନୀର,
ଝୁରଇ ଲତିକା ଯଥା, ଆତ୍ମପରିଜନ
ତବ ତିରୋଧାନେ ଆଜି ସନ୍ତାପେ ଅଧୀର ।
ଦିବ୍ୟ ଶକ୍ତିମତି ତୁମ୍ଭେ ଭବେ ଅନୁପମା
କୁସୁମ ପରାୟେ ଆହା ସର୍ବଜନ ହୃଦେ
ଫୁଟାଇ ଆହ୍ଲାଦମୟୀ ଅମୃତ ସୁଷମା
ମୋହିଥିଲ ଯେଣୁ ସେହି ପରିଜନବୃନ୍ଦେ ।
ଭ୍ରମି ମୋହ ଅନ୍ଧକାରେ ଭ୍ରମଇଁ ବିକଳେ
ବ୍ୟଥିତ ପରାଣ ମୋର ଏ ଭବଗହନେ
ଘୁଞ୍ଚାଇବ ମୋହ ମୋର ଦିବ୍ୟ ଜ୍ଞାନ ବଳେ
ଆସିଛ କି ତେଣୁ ଆଜି ମୋର ହୃଦ-ବନେ
ଭାଷ ଶାନ୍ତିମୟୀ ! ତେବେ ଅମୃତ ବଚନ
କାହିଁ ଗଲେ ଲଭିବି ମୁଁ ଶାନ୍ତି-ନିକେତନ ?

* ପ୍ରଥିତ ଯଶା ମନସ୍ୱିତାର ଅବତାର ବାମଣ୍ଡାରାଜ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କର ଦ୍ୱିତୀୟା କୁମାରୀ ଏହି ସପ୍ତମବର୍ଷୀୟା ବାଳିକା ଜୀବନର ଅନ୍ତିମ କାଳରେ କରପୁଟରେ "ନାରାୟଣ ! ମୋତେ ଝଟ୍ ନେଇଯା'' ବୋଲି ପ୍ରାଞ୍ଜଳ ସ୍ୱରର ବ୍ରହ୍ମଶରଣ ଭିକ୍ଷା କରି ଇହଧାମ ପରିତ୍ୟାଗ କରିଥିଲେ ।

# ମୋ ଜନନୀ

ଫିଟାଇ ନାହିଁ ତ ଏବେ ପରାଚୀ-ତୋରଣ
ବିଶ୍ୱ-ଉଦ୍‌ଭାଷିଣୀ ଉଷା ପାଟଳବସନା,
ବୁଣି ନାହାନ୍ତି ତ ରବି କନକ କିରଣ,
ବିଚ୍ଛେଦିନୀ ପଙ୍କଜିନୀ ବିଷାଦେ ମଗନା ।

ମାୟାମୟୀ ଯାମିନୀର ଝଙ୍କାର ନିଃସ୍ୱନ
ସମ୍ମୋହିନୀ ଶକ୍ତି ବିଶ୍ୱେ ପ୍ରକାଶି ଯତନେ
ସ୍ଥାବର ଜଙ୍ଗମ ଜୀବ କରି ଅଚେତନ
ସଞ୍ଚାରଇ ଭୀତି ମୋର ବ୍ୟଥିତ ଜୀବନେ ।

ଅସ୍ତାଚଳ ତଟେ ଏବେ ସୁମେରୁ ଗଗନେ
କେଉଁ ମହାସାଧବୀର ଦରଶନ ଆଶେ
ମହାସତୀ ଅରୁନ୍ଧତୀ ହୈମ ସିଂହାସନେ
ବସିଛନ୍ତି ରତ୍ନାସନ ପାତି ନିଜ ପାଶେ ।

ଯାମିନୀ ଅନ୍ତିମ ଯାମେ ଆଦ୍ୟ ମୁହୂର୍ତ୍ତରେ
କେ ଏ ଦେବୀ ହିରଣ୍ମୟୀ ହିରଣ୍ମୟ ରଥେ,
ଛେଦି ଭବ-ମାୟାପାଶ ପଲକ ମାତରେ
ତେଜି ମର ତନୁ ମର୍ତ୍ତ୍ୟେ ଗମେ ବ୍ୟୋମପଥେ ।

"ଜୟ ସାଧ୍ୱୀଶିରୋମଣି'' ସୁବର୍ଣ୍ଣ ଅକ୍ଷରେ,
ଅଙ୍କିତ ହୋଇଛି ତାର ବିମାନ-କେତନେ,
ରତ୍ନାଞ୍ଚିତ ମଣିବନ୍ଧୁ ମହାଜ୍ୟୋତି କ୍ଷରେ
ପରିହିତ ରକ୍ତାଂଶୁକ ସର୍ବାଙ୍ଗେ ଯତନେ ।

ଗାବନ୍ତି ଅଭିନନ୍ଦନ-ଗୀତି ମଧୁ ତାନେ
ସ୍ୟନ୍ଦନର ଚଉପାଶେ ସୁରବନ୍ଦିଗଣ,
ବିହରି ଅପ୍‌ସରାବୃନ୍ଦ ସ୍ୟନ୍ଦନ ବିତାନେ,
ପାରିଜାତ ପୁଷ୍ପ ସ୍ନେହେ କରନ୍ତି ବର୍ଷଣ ।

ମଞ୍ଜୁଳ ଲଲାଟ-ଶୋଭା ସିନ୍ଦୂରର ବିନ୍ଦୁ
ବାତ୍ସଲ୍ୟର ମୂର୍ତ୍ତିମତୀ ପୀୟୂଷ-ନିର୍ଝର

ଝରିପଡେ ଅବରୋହେ ଭେଦି ବ୍ୟୋମ-ସିନ୍ଧୁ
ଅମୃତ ବକ୍ଷରୁ ତୋର, ଭବ-ତୃଷାହର-
ତୁ ତ ଜନନୀ ମୋହର ।

ପୋଡିଗଲା ଜଡ ତନୁ କ୍ରବ୍ୟାଦ-ଅନଳେ
ଉଡ଼ିଗଲା ସ୍ୱାନ୍ତାସନେ ଜୀବାତ୍ମା ତୋହର,
ଜଡିତ ରହିଲା ଚୂଡି ମଣିବନ୍ଧ ଗଳେ
ଦଗ୍ଧୀଭୂତ ଅସ୍ଥି ବେଢ଼ି ପବିତ୍ର ସୁନ୍ଦର -
ଦେଖ ଜନନୀ ମୋହର ।

ମୂର୍ତ୍ତିମତି ନାରୀଧର୍ମ ଅବତୀର୍ଣ୍ଣା ଭବେ
ଆଦର୍ଶ ଜନନୀ ଶିରୀ, କର୍ତ୍ତବ୍ୟ ସୁନ୍ଦର,
ଫୁଟିଛି ଜୀବନେ ତୋର ଦୁଃଖ ପରାଭବେ
ଦେଖି ନାହିଁ କେବେ ମୁଁ ତ ତୋ ବକ୍ଷ କାତର-
ତୁ ଗୋ ଜନନୀ ମୋହର ।

ତେଜି ସ୍ୱର୍ଗଧାମ ମା ଗୋ ! ଆସିଥିଲୁ ଭବେ,
ଚାଲିଗଲୁ ସାଧି ଯତ୍ନେ ସାଧନା ତୋହର,
ବିଶାଳ ଔଦାର୍ଯ୍ୟ ଶିରୀ ଏ କ୍ଷୁଦ୍ର ବିଭବେ,
ଦେଖାଇ ଜିଣିଲୁ ଭବେ ଭେଦ ଆତ୍ମପର -
ଧନ୍ୟ ଜନନୀ ମୋହର ।

କ୍ଷୀରହୀନା ମାତୃକୋଳେ କ୍ଷୀରକଣ୍ଠ ଶିଶୁ
ଉଚ୍ଛୁଳାଏ ହେଲେ ତୋର ବାତ୍ସଲ୍ୟ-ନିର୍ଝର
ମୂର୍ତ୍ତିମତି ବିଶ୍ୱଧାତ୍ରୀ ଲକ୍ଷ୍ମୀ ପ୍ରାୟେ ଦିଶୁ
ପାଳୁ ଯେବେ ସୁଧାଦାନେ ନ ମଣି ଇତର -
ତୁ ଗୋ ଜନନୀ ମୋହର ।

ସ୍ମରାଇ ନିରତେ ମାତଃ ବିଶ୍ୱ ନଶ୍ୱରତା
ସ୍ନିଗ୍ଧ କରୁ ସ୍ମୃତି ତୋର ମୋ କ୍ଷୁଦ୍ର ଜୀବନ,
ଦିଅ ମା ଜାନକି ଦେବି, ପ୍ରାଣେ ପବିତ୍ରତା,
ଦେଖାଅ ମା ! ସଦା ବ୍ରହ୍ମସତ୍ତା ସନାତନ -
ସେହି ଶାନ୍ତି-ନିକେତନ ।

# ଭବିତବ୍ୟର ବିଚିତ୍ରତା*

(ମହାରାଜ ଅଜଙ୍କ ପ୍ରତି)

ଏ କି ହେ ବୀରେନ୍ଦ୍ର ମଣି ! ବିଷଣ୍ଣ ବଦନେ
ଅନିମେଷ ଊର୍ଦ୍ଧ୍ୱନେତ୍ରେ ପ୍ରସାରି ହୃଦୟ
ଅନନ୍ତ ବୈଚିତ୍ର୍ୟମୟ ଅନନ୍ତ ଗଗନେ
ଅସ୍ମିତା ବରଜି କିବା କରୁଅଛ ଲୟ ?
ଦକ୍ଷ ପ୍ରବେଶିନୀ ପ୍ରାନ୍ତେ ବିଶ୍ୱ ନଶ୍ୱରତା
ସର୍ବ୍ବେ ହଳାହଳମୟ ଭାଗ୍ୟ ପରିଣାମ,
ଦେଖାଇ ବରଜି ହୃଦୁଁ ବୀରତା ଧୀରତା,
ଜଣାଉଛ ଦେବଗଣେ ନିଜ ମନସ୍କାମ ?
ସୁବିଶାଳ ଶାଳପ୍ରାଂଶୁ ଅରାତି-ଦଳନ
ହର୍ଯ୍ୟକ୍ଷ-ବିକ୍ରାନ୍ତ ଭୁଜ, ମେରୁପମ ବକ୍ଷ
ପ୍ରକାଶଇ ସ୍ୱତଃ ଶକ୍ତି ଅରାତି-ସ୍ତମ୍ଭନ
କିନ୍ତୁ କାହିଁ ସେ କଟାକ୍ଷ ମହାଲକ୍ଷ୍ୟ ଦକ୍ଷ ?
ଭିନ୍ନ ହୋଇ ଦିଶେ ଆଜି ରଦନ-ଛଦନ
ନିଦାଘେ ବସନ୍ତ ରାଜେ ଯାହାର ଇଙ୍ଗିତେ
କାହିଁ ମୃଦୁ ହାସ୍ୟ ସେହି ହୃଦ-ଆହ୍ଲାଦନ
ନିଷ୍ପନ୍ଦ ବିଷାଦ ତହିଁ ରୋଦଇ ବ୍ୟଥିତେ ।
ଆଲୁଳିତ କୁନ୍ତଳିନୀ ଇନ୍ଦୁଜିତହାସୀ
ଇନ୍ଦୁମୁଖୀ ଇନ୍ଦୁମତି ପରାଣପ୍ରତିମା,
ଅଙ୍କାସନେ ଚିରସୁପ୍ତା ବିଶ୍ୱଶୋଭାରାଶି
ଲଳନାମୁକୁଟମଣି ସତୀତ୍ୱ ଗରିମା ।
ଶୋଭାମୟୀ ବିମଳତା ସରଳତା ଲତା
କୌମୁଦୀହାସିନୀ କିବା ମାଧବୀ ଯାମିନୀ,
ସତ୍ତ୍ୱମୟୀ ମୂର୍ତ୍ତିମତି କିବା କୋମଳତା
କରୁଣା ପ୍ରତିମା ତବ ପରାଣସଙ୍ଗିନୀ ।
ଦେବର୍ଷି-ବିପଞ୍ଚୀ-ଚ୍ୟୁତ ପାରିଜାତଦାମ
କି କୁକ୍ଷଣେ ହେଲା ତାଙ୍କ ଶ୍ରୀଅଙ୍ଗେ ପତନ
ପଲକ ମାତ୍ରକେ ଆହା, ବିଧି ହୋଇ ବାମ
ହରିନେଲା ତବ ସେହି ଅମୂଲ୍ୟ ରତନ ।

ମୃଦୁଳ ଅନିଳ ଦୋଳେ ଅଳକ କମ୍ପାଇ
କମ୍ପାଇ ଅଶନି ସହ ତବ ବୀର ବକ୍ଷ
ଭୁବନଭରଣକ୍ଷମ ଶ୍ରୀକର ଦେଖାଇ
କରାଉଛ ବିଶ୍ୱମୟୀ ନଶ୍ୱରତା ଲକ୍ଷ୍ୟ ।
ଲଳନା ହୃଦୟ ସମ କୋମଳ ସରଣ
ସ୍ୱର୍ଗୀୟ କୁସୁମଦାମ ଅଶନି ପରାୟେ,
ଉଦ୍‌ବେଳିତ କରି ତବ ବୀରେନ୍ଦ୍ର ମାନସ
ଭବିତବ୍ୟ ବିଚିତ୍ରତା ଅତୀତେ ଦେଖାଏ ।
ବାମ ହେଲେ ବିଧି, ଭାଗ୍ୟେ କାହିଁ ଶାନ୍ତି ସୁଖ
ଆତ୍ମହିତେ ଆତ୍ମା ନିଜେ ହୁଅଇ ବିମୁଖ ।

*ରବି ବର୍ମାଙ୍କ ଚିତ୍ର ଦର୍ଶନେ

## ନାୟେଗ୍ରା *

ବଜାଇ ଲକ୍ଷ ଦୁନ୍ଦୁଭି ଗୁରୁ ଗରଜନ-
ସଙ୍ଗତେ ସଙ୍ଗତେ ବୀଣା କଂସାଳ ଭୈରବେ
ମନ୍ଦ୍ର ନାଦେ ଧରାକେନ୍ଦ୍ର କରି ପ୍ରକମ୍ପନ
କି ମହାସଙ୍ଗୀତ ଗାଏ ଉନ୍ମତ୍ତ ତାଣ୍ଡବେ ।

ମହାପ୍ରେମେ ବିଗଳିତ ହୃଦୟ ପ୍ରସାରି
ବିଶାଳ ବିକ୍ରାନ୍ତ ଭୀମ ବିରାଟ ମୂରତି -
ପ୍ରକାଶି, ଭୀଷଣ ବାତ୍ୟା କନ୍ଦରେ ସଞ୍ଚାରି,
ଘୋଷେ ବିଶ୍ୱରାଜଙ୍କର ଶାଶ୍ୱତ କୀରତି !
ଧରଣୀର ଧନବତୀ ବିଜ୍ଞାନ ବିଦୂଷୀ
ଯନ୍ତ୍ରଧନ୍ୟା ପ୍ରଜାତନ୍ତ୍ର-ସାମ୍ୟମନ୍ତ୍ର-ପୂତା
ଆମେରିକା ଅବନୀର ଶକ୍ତି ଅମାନୁଷୀ -
ଜନୟିତ୍ରୀ ଏ ନାୟେଗ୍ରା ଉଗ୍ରା ଶକ୍ତିଯୁତା ।

ବିଶାଳ ବିଶ୍ୱପ୍ରକୃତି-ପ୍ରବାହରୂପିଣୀ
ଚିରୋତ୍ସାହ ମୂର୍ତ୍ତିମତି, ଚିରାଚଳ ଲକ୍ଷ୍ୟେ,
ଧାଇଁ ଅହର୍ନିଶ ସୁଧାଶୀକରବର୍ଷିଣୀ
ଦେଖାଏ ଆଦର୍ଶ ଦିବ୍ୟ ଆମେରିକା-ବକ୍ଷେ ।

ବେଗଉଗ୍ରା ହେ ନାୟେଗ୍ରା ତୀର୍ଥ କୁଳେଶ୍ୱରୀ !
ବିରାଟ ବିଭୂତି ତୁହି ବିଶ୍ୱରାଜଙ୍କର
ଅବନୀମଣ୍ଡଳେ ଛବି କାହିଁ ତୋହ ସରି
ବିଶାଳ କରୁଣ ମୂର୍ତ୍ତି ଘରୁ ଭୟଙ୍କର ?
କେ କହିବ ତୋ ବୟସ ଏରାଇ ନନ୍ଦନା !**
କେ ଦେଖିଛି କ୍ଷୁଦ୍ର ତୋର ସେ ଶୈଶବ ତନୁ,
ଥିଲୁ ଯେବେ ମାତୃକୋଳେ ସ୍ନେହ-ନିମଗନା,
ରଚିଲୁ ଅୟନ ଯେବେ ଜନନୀ-ଭବନୁଁ !
ନବୀନ ଯୌବନେ ଯେବେ ଉଦାମ ଉଲ୍ଲାସେ,
ସ୍ୱୟମ୍ଭୂ ନିୟୋଗେ ତୁଙ୍ଗ ଭୃଗୁପ୍ରସ୍ଥ ତେଜି
ମିଳିଲୁ ସାଯୁଜ୍ୟ ପ୍ରେମେ ଅଣ୍ଟେରିଓ[୧] ପାଶେ ପାଶେ
ସେ କାଳେ ମାନବ ନେତ୍ର ନଥିଲା ତ ଫେଇ ।

ଯେ କାଳେ ବରାହ ରୂପେ ଦେବ ଦଇତ୍ୟାରି[୨]
ପ୍ରଳୟ ଜଳଧି ଜଳେ ସୃଷ୍ଟି ନାଶ ଦେଖି;
ଦଂଷ୍ଟ୍ରାଗ୍ରେ ଉଦ୍ଧରି ଧରା, ଭାର ଅପସାରି
ରକ୍ଷିଲେ ଜଗତ, ମହା ବିପ୍ଳବ ଉପେକ୍ଷି ।

ସୁବିଶାଳ ବପୁଷ୍ମନ୍ତ ପାଶବ ବିଗ୍ରହୀ
ଭୀଷଣ ଦାନବକୁଳ ନାଶି ସେ ପ୍ରଳୟେ
ବିରଚିଲେ ସୃଷ୍ଟି ନବ ଜନ୍ମ ପରିଗ୍ରହି [୩]

ଦେଖିଥିଲୁ ତୁ କି ସେହି ଲୀଳା ସେ ସମୟେ ?
ଖେଳାଇ ଘତୁରୀ ପୁଣି ପ୍ରଭୁ ଆଦିମୂଳ
ଉଦ୍‌ବୋଧିଲେ ନରସୃଷ୍ଟି ସୁମେରୁ ପ୍ରାନ୍ତରେ,
ପରଶୁ ଶାସନ କାଳେ ନାଶି ଦୁଷ୍ଟକୁଳ
ସଞ୍ଚାରିଲେ ନବଶକ୍ତି ମାନବ ଅନ୍ତରେ ।

ମୋହିନୀ ପ୍ରକୃତି ରୂପେ ଶାଶ୍ୱତ ମନ୍ତରେ
ବିତରିଲେ ଚିଦମୃତ ସେହି ଆଦିକନ୍ଦ,
ପ୍ରବଞ୍ଚିତ ହେଲେ ଦୈତ୍ୟେ କଳୁଷିତାନ୍ତରେ
ଲଭିଲେ ବିବୁଧକୁଳ ଶାଶ୍ୱତ ଆନନ୍ଦ । [୪]

ସେହି ବ୍ରହ୍ମପ୍ରେମ ସୁଧା-ଅମୃତ ଶକତି
ଲଭିଛୁ କିଞ୍ଚିତେ ତୁ କି ବିଭୁଦୟାବଳେ ?
ତେଣୁ ତାଙ୍କ ପଦେ ରଖି ଅଖଣ୍ଡ ଭକତି
ସନ୍ତତେ କୀର୍ତ୍ତନେ ଲୋଟୁ ପ୍ରେମ-ଉତ୍ତରଳେ ?

ଭାସ୍ୱର ଭାସ୍କର ରଶ୍ମି ରଞ୍ଜିତ ମଞ୍ଜୁଳ
ସୁବର୍ଣ୍ଣ ବୈଭବେ ଝଳ ଇନ୍ଦ୍ରଧନୁ ସରି
ପୃଷତି ରତନମାଳା, ତୋ ବକ୍ଷ ପୃଥୁଳ
ମଣ୍ଡିଛି ସେ କାଳୁଁ କି ରେ ରମ୍ୟ ଶୋଭା ଧରି ?

ଦିବସେ ଦ୍ୟୁମଣି, ରାତ୍ରେ ବିମଳ ଚନ୍ଦ୍ରମା,
ଶରତେ ସୁନୀଳ ବ୍ୟୋମେ କାଦମ୍ବିନୀ ବାଳା,
ନିଶାନ୍ତେ ମଞ୍ଜୁ ହାସିନୀ ଉଷା ମନୋରମା,
ଅର୍ପନ୍ତି ତୋ ବକ୍ଷେ କେତେ ଦୀପ୍ତ ରତ୍ନମାଳା ।

ବ୍ରହ୍ମପ୍ରେମ-ସୁଧାପାନେ ଅଗାଧ ବିକ୍ରମେ
ପାଳୁଅଛୁ ନିତ୍ୟ ବ୍ରତ ସ୍ୱର୍ଗୀୟ ଆନନ୍ଦେ
ଦେଉଛୁ ପରମ ଶିକ୍ଷା ସତ୍ୟ ପୂତ କର୍ମେ
ମିଳଇ ଅଖଣ୍ଡ ଶାନ୍ତି ଶାଶ୍ୱତ ସମ୍ପଦେ ।
ସେହି ସତ୍ୟପୂତ କର୍ମେ ଏ କ୍ଷୁଦ୍ର ଜୀବନ
ଢ଼ାଳି କି ପାରିବି ଲଭି ଶାନ୍ତି-ନିକେତନ ?

---

* ଆମେରିକାସ୍ଥିତ ପୃଥିବୀର ବୃହତ୍ତମ ପ୍ରପାତ
** 'ଏରାଇ' ଆମେରିକାସ୍ଥିତ ବିଖ୍ୟାତ ହ୍ରଦ
୧- 'ଅଣ୍ଟେରିଓ ହ୍ରଦରେ ନାୟେଗ୍ରା ମିଳିତ ହୋଇଅଛି ।
୨- କୌର୍ମ ଯୁଗର ପରିଣାମ କାଳରେ ସ୍ଥୂଳଚର୍ମୀ ଜୀବମାନଙ୍କର ଅଭିବ୍ୟକ୍ତି ଘଟିଥିଲା । ଏଥିରୁ ସ୍ୱତଃ ପ୍ରମାଣିତ ହେଉଅଛି, ପ୍ରଳୟ ମୂର୍ତ୍ତି ଜଳଧି ସଙ୍କୁଚିତ ଓ ସଙ୍ଗେ ସଙ୍ଗେ ଭୂପୃଷ୍ଠ ଉତ୍ତୋଳିତ ହୋଇଥିଲା । ବରାହ ଏ ଯୁଗର ଆଦର୍ଶ ଜୀବଥିଲା ।
୩- ହିମାନୀ ଯୁଗରେ ସ୍ଥୂଳଚର୍ମୀ ଭୀଷଣକାୟ ବହୁ ଜୀବ ଲୁପ୍ତ ହୋଇଥିଲେ । 'ପ୍ରଦକ୍ଷିଣ' ଓ 'ଉନ୍ମେଷ' କବିତାରେ ଏ ବିଷୟ ବିଶଦୀକୃତ ।
୪- 'ସିନ୍ଧୁ ମନ୍ଥନ' କବିତାରେ ବିଶଦୀକୃତ

# ପ୍ରଦକ୍ଷିଣ

ବାଜିଲା ମଙ୍ଗଳ ଶଙ୍ଖ ଗମ୍ଭୀରେ ସଞ୍ଚରି
ସାଜିଲା ମୋ ମନୋରଥ ପ୍ରଜ୍ଞା ସହଚରୀ ।

ମାଜିଲା ମୁକୁର ପରି ଦିଶେ ଝଟ ଝଟ
ରାଜିଲା ମୋ କ୍ଷୁଦ୍ର ହୃଦ କୁଟୀର ନିକଟ ।

ଅପେକ୍ଷିବୁ ନାହିଁ କି ଗୋ ପ୍ରିୟସଖି ମୋର,
ବେଢ଼ିଛି ଗମନେ ଦେଖେ ଅନ୍ତରାୟ ଘୋର ।

ଉଭା ହୋଇଅଛି ମୁହିଁ ସମାର୍ଜନୀ-କରେ
ଅନ୍ତିକେ ବାସନା ବହ୍ନି ଜ୍ୱଳୁଛି ପ୍ରଖରେ ।

ବିଳାସ-ଚଞ୍ଚଳ ବାୟୁ ବହୁଛି ପ୍ରବଳେ
ପୋଡିପାରେ ମୋ ଉଟଜ ଉତ୍କ୍ଷିପ୍ତ ଅନଳେ ।

ପ୍ରାତଃକୃତ୍ୟ ସାରି ସିନା ଯିବି ସଙ୍ଗେ ତୋର
କିଞ୍ଚିତେ ବିଳମ୍ବ ସହ ପ୍ରିୟ ସଖି ମୋର ।

ସୁସଜ୍ଜିତା ହୁଅ ମୋର ପରାଣ ସଙ୍ଗିନି,
ସୁନ୍ଦରି କଞ୍ଚନେ, ହୃଦକୁଟୀର ବାସିନି ।

ଭ୍ରମିବାକୁ ଇଚ୍ଛିଅଛି ଅତୀତ ଗହନେ
ସୁମେରୁ ପ୍ରାନ୍ତରେ ଜଳେ ପର୍ବତେ କାନନେ ।

ବିଦ୍ୟୁଦ୍ଗତି ରଥ ଚଳେ ଇଚ୍ଛା ଅନୁସରି
ବସି ରଥେ ପାର୍ଶ୍ୱେ ମୋର ପ୍ରିୟ ସହଚରୀ ।

ଦେଖାଇବୁ ଯାହା ତାହା ଦେଖିବି ସୁନ୍ଦରୀ ।
ପୁଚ୍ଛିବି ଯା ପୁଣି ତାହା କହିବୁ ବିବରି ।

ଉଦୀଚୀ ଉଦଧି ତଟେ ପୁଣ୍ୟ ଜ୍ୟୋତିର୍ମୟ
କେ ମହାପୁରୁଷ ଧ୍ୟାନେ ଗାମ୍ଭୀର୍ଯ୍ୟେ ତନ୍ମୟ;

ବିଶାଳ ବିକ୍ରାନ୍ତ ଭୂଜ ଲୋଚନ କୃଶାନୁ-
ଉଜ୍ଜ୍ୱଳେ ଜ୍ୱଳଇ କି ସେ ଦୀପ୍ତ ଯୁଗ୍ମ ଭାନୁ ?

ସୁପ୍ରଶସ୍ତ ବକ୍ଷ ଦକ୍ଷ ସିଂହ ସିଂହାନନ
ଏହି କି ବୀରେନ୍ଦ୍ରମଣି ସେ କ୍ରୌମ୍ୟାଗନନ ?[୧]

ଭାଷେ ପ୍ରଜ୍ଞା : – ସିନ୍ଧୁବକ୍ଷେ ମଣିଶୈଳ ସରି
ଦେଖ କେତେ ହୈମ ଶୈଳ ଭାସଇ ସଞ୍ଚରି ।

ଗଳିତ ତୁଷାର ଝର ବେଳା ଶୈଳୁଁ ଝରି
ବିଶଦ ଶୈବାଳ–ଶେଯେ ଖେଳେ ଅବତରି ।

କୁଲ୍ୟା ପଥେ ବହି ଆସି ମିଶେ ସିନ୍ଧୁଜଳେ,
ତୀର ପ୍ରାନ୍ତେ ଶ୍ୱେତରକ୍ଷ ଛପିଛି କୌଶଳେ ।

ବିଦ୍ୟୁଝମେ ଝିଙ୍କିନେବ ପ୍ରିୟଭକ୍ଷ୍ୟ 'ଶୀଳ' 'ଶୀଲ'(୨)
ସନ୍ତେଦେ ହିମାନୀ ସ୍ରୋତେ ସଦା କ୍ରୀଡାଶୀଳ ।

ଉଲ୍ଲମେ ଉଡ୍ଡୀନ ମସ୍ୟ ନଭ ସଞ୍ଚରଣେ,
ଦେଖନ୍ତି ସ୍ୱଗାତ୍ର–ବିମ୍ବ ଅମ୍ବୁଧି ଦର୍ପଣେ ।

ବିସର୍ପି ସୈନ୍ଧବ ସର୍ପ ବିଶାଳ ଶରୀର
ସିନ୍ଧୁ ବକ୍ଷେ ଖେଳି ପିଏ ସୈନ୍ଧବ ସମୀର ।

ହିମାନୀ ମଣ୍ଡିତ ଶୁଭ୍ର ତରୁ ଗୁଳ୍ମ ବନ
ପ୍ରକାଶେ ରଜନୀ ଗର୍ଭେ ଛବି ସୁଶୋଭନ ।
ନୈଶ ନଭେ ଉଇଁ ଯେବେ ଭାସ୍ୱର ଅରୋରା(୩)

ସୁମେରୁ–ନୈସର୍ଗଛବି କରି ମନୋହରା –
କୋଟି ହୀରା ନୀଳା ମୋତି ମାଣିକ୍ୟ ଝଲକେ
ପିନ୍ଧାଏ ଦାମିନୀଦାମ ରଜନୀ–ଅଳକେ;
ମଣ୍ଡିଦିଏ ଶୁଭ୍ର ବାସେ ତାର ଶ୍ୟାମ ତନୁ
ଖଣ୍ଡି ଦିଏ ତମୋଭୀତି ମେରୁବାସୀ–ମନୁ ।
ସେ କାଳେ ଭାସ୍ୱର ବିମ୍ବ ଖେଳି ସିନ୍ଧୁଜଳେ
ତୁଷାର ବିଶଦ ଗିରିବନେ ପ୍ରତିଫଳେ ।
ରାଜରାଜେଶ୍ୱରୀ ଶିରୀ ପ୍ରକୃତିବାଳାର
ବଢ଼ାଏ ସୁଷମାସିନ୍ଧୁ ଲହରୀମାଳାର ।
ନିଶାନ୍ତେ ସୁଦୀର୍ଘ ଉଷା ବିଶ୍ୱ–ଉଦ୍ଭାସିଣୀ
ପ୍ରକାଶଇ ଘରୁ ସ୍ନିଗ୍ଧ ଛବି ସୁହାସିନୀ ।
ଚଞ୍ଚଳ ଅଞ୍ଚଳେ ବିଞ୍ଚି ପ୍ରକୃତି–ବଦନ,
ବୋଳିଦିଏ ଅଙ୍ଗେ ନବ ତୁଷାର ଚନ୍ଦନ ।

ଅରୁଣ ଚରଣ ବନ୍ଦି ବରୁଣ ରାଜନ
ରଶ୍ମି-ବିମ୍ବ-ବର୍ତ୍ତୀ-କରେ କରେ ନୀରାଜନ ।
ଦେଖାଇ ତୁଷାରଶୈଳ-ହୀରକଦର୍ପଣ
ଲହରୀ-ହୀରକହାର କରେ ସମର୍ପଣ ।
ଏବେ ଊର୍ଦ୍ଧ୍ୱ ପ୍ରସ୍ରବଣ ସୃଜି ସିନ୍ଧୁଜଳେ
ଖେଳଇ ବିଶାଳ ବର୍ଷ୍ମ ତିମି କୁତୂହଳେ ।
ସୁତୀକ୍ଷ୍ଣ ଖଡ୍‌ଗନାସିକ ଖଡ୍‌ଗୀ (୪)ଖଡ୍‌ଗ ମାରି,
ଯୁଝଇ ଭୀଷଣେ, ତିମି-ବିଗ୍ରହ ବିଦାରି ।
ନିର୍ଘାତେ ବିପକ୍ଷ ବକ୍ଷ ଲକ୍ଷି ପିଟି ପୁଚ୍ଛ,
ଉଡାଳେ ଉଲ୍ଲୋଳେ ତିମି ଭୀମ ଊର୍ମିଗୁଚ୍ଛ ।
ଚଳତ୍ତୁଙ୍ଗ ଶୈଳଶୋଭା ଉତ୍ତୋଳି ସାଗରେ
ବିଶାଳ ଜଙ୍ଗମ ଗିରି ଧାମଇ ପ୍ରଖରେ ।
ଚଞ୍ଚଳେ ବଞ୍ଚାଇ ବପୁ ବ୍ୟଗ୍ର ସଞ୍ଚରଣେ
ଆକ୍ରମେ ବିକ୍ରମେ ଖଡ୍ଗୀ ପୁଣି ପ୍ରହରଣେ ।
ଅର୍ଣ୍ଣବେ ବିଦୀର୍ଣ୍ଣ କରି ଉଦ୍‌ଗୀର୍ଣ୍ଣ ବିକଟ -
ଆରବେ ରାଘବ (୫) ରଚେ ସୈନ୍ଧବ ସଙ୍କଟ ।
ତିମି ତିମିଙ୍ଗିଳ ଆଦି ଗିଳି ଅବହେଳେ
ଉନ୍ମତ୍ତେ ଝସେନ୍ଦ୍ର ନୀଳ ସିନ୍ଧୁବକ୍ଷେ ଖେଳେ ।
ବିକୀର୍ଣ୍ଣ ସୁବର୍ଣ୍ଣ ଶଳ୍କ ଭାସ୍ୱର ଝଲକ
ମୁଦିଦିଏ ଠିକରାଇ ନୟନ ପଲକ ।
ବିସ୍ତୀର୍ଣ୍ଣ ଲୋହିତ କର୍ଣ୍ଣ ଆନ୍ଦୋଳେ ରୁଚିରେ
ଖେଳାଇ ମାଣିକ୍ୟ ପୁଚ୍ଛ ସୈନ୍ଧବୀ ବୀଚିରେ ।
କଳ୍ପାରମ୍ଭେ ମହାମାୟା (୬) ଭୀମ ବିବର୍ତ୍ତନେ
ସୃଜିଲେ ସୃଷ୍ଟିକି ଯେବେ ତାଣ୍ଡବ ନର୍ତ୍ତନେ;
ସୃଷ୍ଟି-ଦୃଷ୍ଟି ଯନ୍ତ୍ରରୂପୀ ବିଶ୍ୱ କଳ୍ପ ମଣି
ଆରୋହିଲେ ହଂସାସନ (୭) ଚିଦମୃତ ଖଣି ।
ସେ ମଣି ଝଟକେ ବହି ଯେ ଶାଶ୍ୱତ ଦ୍ୟୁତି
ଯେ ତେଜେ ପ୍ରକୃତି, ବିଶ୍ୱ ବ୍ରହ୍ମାଣ୍ଡ ପ୍ରସୂତି;
ସେ ବିଭା ବିଭୂତି ବକ୍ଷେ ବହିଛି ରାଘବ
ଆନ୍ଦୋଳେ ଜଳଧି ଝୁଲି ସ୍ୱଗାତ୍ର ଗୌରବ ।

ସେ ମଣି ଝଟକେ ଆଦ୍ୟା ମହାତମସ୍ୱିନୀ-
ତମଃସିନ୍ଧୁ ଅପସାରି ବିଶ୍ୱ-ଉଦ୍ଭାସିଣୀ
ଚିତ୍ରିଲେ ବିଚିତ୍ର ଛବି ଦିଗଦିଗନ୍ତରେ
ଫୁଟିଲା କୋଟି ବ୍ରହ୍ମାଣ୍ଡ ବ୍ୟୋମ ସରୋବରେ ।
ସ୍ଥାବର ଜଙ୍ଗମ ଜୀବ ଲୀଳାଚକ୍ର ଧରି
ଖେଳାଇଲେ ରଙ୍ଗେ, ମହା ପ୍ରକୃତିସୁନ୍ଦରୀ ।
ମେରୁପ୍ରାନ୍ତୁ ନିର୍ମୋଚ୍ଚଷ୍ଟ ମୋଳଷ୍ଟର (୮) ଲୀଳା
ଦେଖାଇ ଅବନୀ ବକ୍ଷେ, ମହୀ ମହାମେଳା -
ମଣ୍ଡିଲେ ଶମ୍ବୁକ କମ୍ବୁ ଆଦି ଜୀବକୁଳେ
ଖେଳାଇଲେ ରଙ୍ଗେ ତାଙ୍କୁ ଉଦଧି ଅକୂଳେ ।
ପ୍ରଳୟ ଅନଳ ଜ୍ୱାଳା ସନ୍ତପ୍ତା ଅବନୀ
ଲଭି ନାହିଁ ସ୍ନିଗ୍ଧ ଶାନ୍ତି ଦେଖନ୍ତି ଜନନୀ ।
ସୃଜିଲେ ମହୀର ମହା ଅଭିଷେକୋତ୍ସବ
ଖେଳିଲା ସଲିଳ-ଲୋଳ-କଲ୍ଲୋଳ-ଅର୍ଣ୍ଣବ ।
ପ୍ରକାଶିଲେ ନବଲୀଳା ନବ ଅନୁଭୂତି
ରୋହିତ ବିଗ୍ରହେ ହରି ହୃଷୀକ ବିଭୂତି ।
ଶଙ୍ଖ ଆଦି ମୂକ ଜୀବେ ଶାସି ହୃଷୀକେଶ
ଦେଖାଇଲେ ଦୀପ୍ତ ନେତ୍ରେ ଜ୍ଞାନର ଉନ୍ମେଷ ।
ରଚିଲେ ସୈନ୍ଧବୀ ଲୀଳା ମହାସିନ୍ଧୁ ଗର୍ଭେ
ବିଳସିଲେ ସଙ୍ଗେ ସୁଖେ ଯାଦଃକୁଳ ସର୍ବେ ।
ଇଙ୍ଗିତ ସଙ୍ଗୀତ ଶୁଣି ବିଶ୍ୱମାତାଙ୍କର
ସଙ୍କୋଚିଲା ସ୍ୱବିଗ୍ରହ ନୀଳ ରତ୍ନାକର ।
ସୃଷ୍ଟି କାଳକ୍ରମେ କୂର୍ମ ବିଗ୍ରହେ ଆଦରେ
ସମର୍ପି ଆତ୍ମବିଭୂତି, ଉଦିଚୀ-ସାଗରେ-
ଆସି ବିଶ୍ରମିଲେ, ଦେଖି କୂର୍ମ ପୃଷ୍ଠେ ଧରା
ବିମଳ ଶ୍ୟାମଳ ବାସେ ରମ୍ୟ କଳେବରା ।
ଜଳଇ କଳନା : - ଏହି ରାଘବ ବିଗ୍ରହ
କରିଛନ୍ତି ସେ ରୋହିତ ଏବେ ପରିଗ୍ରହ ।
ଏ ବିଗ୍ରହ ଏ ପୟୋଧି ଗର୍ଭେ ପରିହରି,
ଲୀଳା ସ୍ମୃତି ଦେଖାଇବେ କ୍ଷୁଦ୍ର ବପୁ ଧରି ।
ଭାଷେ ପ୍ରଜ୍ଞା : - ଏ ସାଗରେ ଆସନ୍ତେ ରାଘବ
ଲାଗିଲା ଅବନୀପୃଷ୍ଠେ କୌର୍ମ ମହୋତ୍ସବ ।

ଭୁଜଙ୍ଗ ଉରଗ ଖଗ ବ୍ୟାପିଲେ ଅବନୀ
ଦିଗେ ଦିଗେ ଶୁଭେ ଫଣି-ଫୁ ଫୁତ୍କାର ଧ୍ୱନି ।
ତକ୍ଷକ କୁଳିକକୁଳେ ପୂରିଲା ଅତଳ
ଜୀବକୁଳେ, ଜୀବନର ଯୁଦ୍ଧ କୋଳାହଳ-
ଉଠି ଅବିରତ, ଧରା କମ୍ପାଇଲା ତ୍ରାସେ,
ପଡିଲା ବିଶାଳ ଝସ କୁଳିକର ଗ୍ରାସେ ।
ଟଳିଯିବ ଜୀବସୃଷ୍ଟି ପ୍ରତେ ହେଲା ମନେ,
ଆସିଲା ସ୍ୱଦଂଷ୍ଟ୍ରା ତୋଳି ବରାହ (୯) ସଘନେ ।
ବହିଛି ବିରାଟ ବଜ୍ରଦୃଢ଼ କଳେବର
ଜଳଦଗମ୍ଭୀର କୃଷ୍ଣକାନ୍ତି ମନୋହର ।
ପ୍ରଚଣ୍ଡ ବିକ୍ରମେ ଦୃଢ଼ ପଦେ ମହାବଳୀ (୧୦)
ଦଂଷ୍ଟ୍ରା କୋଟି ଅଗ୍ରେ ସୃଷ୍ଟି ଧଇଲା ଉତ୍ତୋଳି ।
ସୁପୀବର ଚର୍ମ୍ମ ବର୍ମ୍ମ ଭୀମ ସଂହନନ
ଜୀବଚୟ ବିଚରିଲେ ପର୍ବତ କାନନ ।
ବିଚରେ ବିଶାଳ ବପୁ କରୀନ୍ଦ୍ରକୁ ବଳି
ଭୀମ "ଦୀନୋଭରି ଯମ'' (୧୧) ମହାବଳେ ବଳୀ ।
ଚତୁର୍ଦ୍ଦନ୍ତ ଦନ୍ତାବଳ (୧୨) ବିଶାଳ ବିକ୍ରମ
ଇଛିତେ ନିର୍ଜ୍ଜିତ କଲା କୃତାନ୍ତକ ସମ ।
ନମାନେ ବରଷା ଖରା ଶୀତ ସୁଦାରୁଣ
ପରାଭୂତ ପୁରହୂତ ତପନ ବରୁଣ ।
ବଳି-ଶୃଙ୍ଗ ସମ (୧୩) ଦଂଷ୍ଟ୍ରା ଦିଶଇ ବିକଟ
ତ୍ରାସି ସୃଷ୍ଟି ଜନ୍ମାଇଲା ବିଷମ ସଙ୍କଟ ।
ପ୍ରଳୟ ମୂରତି ଧରି ନିଜେ ମହାମାୟା
ଉଲଙ୍ଗ ପ୍ରକୃତି ରୂପେ ବିସ୍ତାରିଲେ କାୟା ।
ଦେଖାଇ ଚଣ୍ଡ ତାଣ୍ଡବ, ନାଚି ରଣ ରଙ୍ଗେ
ବଜ୍ର ଶୂଳ ପ୍ରହାରିଲେ ସେ ବଳୀନ୍ଦ୍ର ଅଙ୍ଗେ ।
ମଲା ସେ ଦାନବ ପଶୁ ପୂରିଲା ତା କାଳ
ଗଲା ଭୂଗରଭେ ରଖି ବିଶାଳ କଙ୍କାଳ ।
ବଢ଼ିଲା ହିମାନୀ ଘଟା ବର୍ଷି ବିବର୍ତ୍ତନ
ଦର୍ଶାଇଲା ହରିବର୍ଷେ ଯୁଗ ପ୍ରବର୍ତ୍ତନ ।
ହିରଣ୍ୟାକ୍ଷ ତନୁରୁହ ବୃଷାଳ କଶିପୁ (୧୪)

କନିଷ୍ଠାଦ ବିହରିଲା ହୋଇ ସୃଷ୍ଟି ରିପୁ ।
ବିଗ୍ରହ ଶଙ୍କର ଭକ୍ତ ମହାକୁକ୍ଷିମ୍ଭର
କମ୍ପାଇଲା ଭୀମବୀର୍ଯ୍ୟେ ବିଶ୍ୱ ଚରାଚର ।
ଜଗତ୍ପ୍ରିୟ ପ୍ରହ୍ଲାଦରେ ଦେଇ ନିର୍ଯ୍ୟାତନ
ତ୍ରାସିଲା ଜଗତ, ତୋଳି ଐଶ୍ୱର୍ଯ୍ୟକେତନ ।
ହିମାଚଳ ତଟେ ବହି ମୂରତି ଭୀଷଣ
ଇଳାବୃତ ଶୈଳସ୍ତମ୍ଭ କରି ବିଦାରଣ;
ପ୍ରଖର ନଖର ଅସ୍ତ୍ରେ ବିଦାରି ତା ବକ୍ଷ
ବସିଛନ୍ତି ଆସି ଏଥି ଏ ନର-ହର୍ଯ୍ୟକ୍ଷ ।
ରାଜୁଥିଲା ଯେ ଚିଦ୍‌ଜ୍ୟୋତିଃ ରୋହିତ ଅନ୍ତରେ
କୂର୍ମ୍ମ ବରାହାଦି ଭେଦି ଯୁଗ ଯୁଗାନ୍ତରେ;
ସଂକ୍ରମିତ ଏବେ ତାଙ୍କ ନୟନଯୁଗଳେ
ବୀର୍ଯ୍ୟ ବହ୍ନି ରଶ୍ମି ସମ ଝଳକେ ଉଜ୍ଜ୍ୱଳେ ।
ନିଟୋଳ ଲଲାଟ ପଟ ଦୀର୍ଘ ନାସାପୁଟ
ବିରାଜେ ଅଂଶକେ ରମ୍ୟ କେଶର ସମ୍ପୁଟ ।
ବିବିଧ ଭୂଷଣେ ଅଙ୍ଗ ଦିଶେ ସୁଶୋଭିତ
ଚକ୍ରାଦି ବିବିଧ ଅସ୍ତ୍ର କରେ ବିରାଜିତ ।
ସୌଚିକ ଚରିତ ରମ୍ୟ ସଦା ଅମଳିନ
ଉତ୍ତରୀୟ ରୂପେ ରାଜେ ରଞ୍ଜିତ ଅଜିନ ।
ବଦନେ ଅପୂର୍ବ ଦୀପ୍ତି, ଗାମ୍ଭୀର୍ଯ୍ୟ ଦର୍ଶନ
ସତ୍ୟଦୃପ୍ତ ହୃଦୟର ଋଜୁ ନିଦର୍ଶନ ।
ବିଚିତ୍ର ସାଧନା ତାଙ୍କ ଚରଣ ଯୁଗଳ
ଭୁଜସମ ଶତ୍ରୁକୁଳ ଧର୍ଷଣ କୁଶଳ । (୧୫)
ଶୁଣି ପ୍ରଜ୍ଞା ଦେବୀ-ବାଣୀ ନମିଲି ପୟରେ,
ସ୍ଫୁରିଲା ଭକ୍ତି ଭାରତୀ ଗଦ ଗଦ ସ୍ୱରେ ।
"ନମୋ ନମଃ ନରସିଂହ ବିକ୍ରାନ୍ତ ମୂରତି (୧୬)
ବିଶ୍ୱରାଜ-ମୂର୍ତ୍ତିମନ୍ତ ବିରାଟ ବିଭୂତି ।
କାଳରୂପୀ ମୂଳାଧାର ହେ ସଚ୍ଚିଦାନନ୍ଦ,
ଅନାଦି ଅନନ୍ତ ବିଭୁ ବିଶ୍ୱ ଆଦିକନ୍ଦ ।

ତୁମ୍ଭରି ବିରାଟ ବିଭା ବିଭୂତି ଗୌରବେ,
ସୃଜିତ କୋଟି ବ୍ରହ୍ମାଣ୍ଡ ପ୍ରକୃତି ଗରଭେ ।
ତୁମ୍ଭେ ତ ପରମ ପିତା ମୁଁ କ୍ଷୁଦ୍ର ସନ୍ତାନ,
ମାନବ ବିଗ୍ରହେ ଦେଇ ଯେ ପରମ ଜ୍ଞାନ;
ଆଦର୍ଶ ଜଙ୍ଗମ ସୃଷ୍ଟି ଦେଖାଇଛ ଭବେ,
ସେ ସୃଷ୍ଟି-କମଳ ତବ ସେ ଜ୍ଞାନ-ସୌରଭେ-
ସୁରଭିତ, ଉଦ୍‌ବୋଧିତ, ଉଲ୍ଲସିତ ଛବି,
ଦେଖଇଁ ପୁଲକ ନେତ୍ରେ ପ୍ରାଣେ ଅନୁଭବି ।
ତୁମ୍ଭରି ଇଙ୍ଗିତେ ତ୍ରସ୍ତ ଦୁଷ୍ଟ ରିପୁକୁଳ
ତୁମ୍ଭରି ଇଙ୍ଗିତେ ଚିତ୍ତ ହୁଏ ସୁନିର୍ମ୍ମଳ ।
ତୁମ୍ଭରି ବରେଣ୍ୟ ବିଭା ବିଲୋକି ଜୀବନ
ଲଭିବ କି ତବ ପଦ ଶାନ୍ତି-ନିକେତନ ?

---

୧ - * Cro-magnon- ନୃସିଂହ ମାନବ । ପୌରାଣିକ "ନୃସିଂହ' ନବ୍ୟ ଅଭିବ୍ୟକ୍ତିବାଦରେ ଏହି ନାମରେ ଅଭିହିତ । ସମନ୍ୱୟ ସୌକର୍ଯାର୍ଥେ ଏହି ନାମ ବ୍ୟବହୃତ ହୋଇଅଛି ।୨ - Seal - ଶୀଲ ନାମକ ସାମୁଦ୍ରିକ ମତ୍ସ୍ୟ ୩ - Aurora boraealis. ୪- ଖଡ୍‌ଗୀ - ମତ୍ସ୍ୟ, ୫ - ଏହି ବିଶାଳକାୟ ମତ୍ସ୍ୟ ଲୁପ୍ତ ହୋଇଅଛି । ପ୍ରକୃତିର ବିବର୍ତ୍ତନରେ ଏହି ଜୀବର ବଂଶ କ୍ଷୁଦ୍ର ବପୁ ଧାରଣ କରି 'ରୋହିତ' ନାମରେ ଅଦ୍ୟାପି ଅଭିହିତ ହେଉଅଛି । ୬- ପ୍ରକୃତି, ୭ - ସୂର୍ଯ୍ୟ ରୂପ ଆଧାର,୮- ଏହି ଜୀବ ଅଭିବ୍ୟକ୍ତ ଜୀବରାଜ୍ୟର ଆଦିମତମ ଜୀବ । Mollusk. ୯- ଏହି ଯୁଗରେ ବରାହ ଆଦି ସ୍ଥୂଳଚର୍ମୀ ଜୀବର ଅଭିବ୍ୟକ୍ତି ଘଟିଥିଲା । ମହାକାୟ ବରାହ ଆଦର୍ଶ ଜୀବଥିଲା । ବରାହଠାରୁ ଶକ୍ତିଶାଳୀ ଓ ମହାକାୟ ଜୀବ ଅନେକ ଅଭିବ୍ୟକ୍ତ ହୋଇଥିଲେ ହେଁ ପ୍ରକୃତିର ଶାସନ ସେମାନେ ସହ୍ୟ କରି ନପାରି ଲୁପ୍ତ ହେଲେ ।୧୦ - ବରାହ ଦ୍ୱାରା ସୃଷ୍ଟି ପ୍ରବାହ ରକ୍ଷିତ ହେଲା ।୧୧- Deinotherium - ଏ ଜୀବ ଅତି ଭୀଷଣକାୟ ଓ ଦୁର୍ବାର ଶକ୍ତିଶାଳୀ ଥିଲା । ହେଲେ ହେଁ ବିବର୍ତ୍ତନ-ଚକ୍ର-ଗତି ସହି ନ ପାରି ଲୁପ୍ତ ହୋଇଅଛି । ଭୂଗର୍ଭରୁ ଏହାର କଙ୍କାଳ ଭୂତତ୍ତ୍ୱବେତ୍ତାମାନେ ଉଦ୍ଧାର କରିଅଛନ୍ତି ।୧୨ - Mastodon. ୧୩- ଏ ଜୀବର ମହିଷ ଶୃଙ୍ଗ ଆକାରବିଶିଷ୍ଟ ଦୁଇଟି ଭୀଷଣ ଦୀର୍ଘ ବକ୍ର ଦନ୍ତ ଥିଲା । ଏହାହିଁ କି ରୂପକ ପ୍ରଚ୍ଛାଦନଚ୍ଛାଦିତ 'ମହିଷାସୁର' ।୧୪-ଆଦିମ ମାନବ ପୀତବର୍ଣ୍ଣ ଥିଲା । ଏହାର ସ୍ୱଭାବ ଉଗ୍ର ଓ ମାଂସପେଶିର ବଳ ଦୁର୍ଦ୍ଦମନୀୟ ଥିଲା । ପଶୁରୁ ଅଭିବ୍ୟକ୍ତ ଏହି ଅର୍ଦ୍ଧପଶୁ ମାନବ ନରଭୁକ୍ ଥିବାର ପ୍ରମାଣିତ ହୋଇଅଛି । "କୈମ୍ୟାଗନନ" ଯେ ନୃସିଂହ ମାନବ, ଏହା ପ୍ରମାଣିତ ହୋଇଥିବାରୁ କୈମ୍ୟାଗନନ ଦ୍ୱାରା କ୍ୟାନ୍‌ଷ୍ଟାଡ ମାନବ ପରାଭୂତ ହୋଇଥିବାରୁ ନୃସିଂହ ଦ୍ୱାରା ପରାଭୂତ ଜୀବ ହିରଣ୍ୟକଶିପୁ ନାମରେ ଅଭିହିତ ଓ ନିର୍ଣ୍ଣୀତ ହେବା ଯୁକ୍ତି ସଙ୍ଗତ । ହିରଣ୍ୟ-ସ୍ୱର୍ଣ୍ଣ । କଶିପୁ - ଆଚ୍ଛାଦନ । ୧୫- ଏହି ଯୋଗୁଁ ବୋଧହୁଏ ଚତୁର୍ଭୁଜ ବୋଲି ପୁରାଣୋକ୍ତି ଅଛି ।୧୬ - ନୃସିଂହ ମାନବ ଯୋଗେ ଜଗତ୍ ରକ୍ଷିତ ଓ ଆଧୁନିକ ମାନବ ଜାତି ଉଦ୍‌ବୁଦ୍ଧ । ଏଣୁ ବିଶ୍ୱରାଜଙ୍କର ଅବତାର ରୂପେ ତନ୍ନିହିତ ବ୍ରହ୍ମସତ୍ତା ପ୍ରତି ଏହି ସ୍ତୁତି ।

# ଉନ୍ମେଷ

ମେରୁତଟେ ଲୋଟେ କାଳ କୁଟିଳ ତଟିନୀ,
ପ୍ରାଚୀପଟେ ଫୁଟି ଉଠେ ଜ୍ୟୋତିଃ-କିରୀଟିନୀ-
ଜଗଦ୍ଧ୍ୱାନ୍ତ-ବିଧ୍ୱଂସିନୀ ଉଷା ମନୋରମା,
ସୃଜେ ନିତ୍ୟ ସୃଷ୍ଟିକ୍ଷେତ୍ରେ ଛବି ଅନୁପମା ।
ତୁଷାର-ସୁଷୀମ ସ୍ୱଚ୍ଛ ନୀରେ ଅବଗାହି,
ରଙ୍ଗବାସେ ମଣ୍ଡି ଅଙ୍ଗ ସରାଗେ ଅନାଇଁ;
କରି ବିଶ୍ୱ ସମ୍ମୋହନ ମାୟା ମୋହବଳେ
ଭକ୍ଷିଲା ଦକ୍ଷିଣାୟନ ତା ଅର୍ଦ୍ଧକବଳେ ।
ପ୍ରାଚୀ ଗିରି କୂଟେ ଏବେ ଅବାଚୀ ଲଲାଟେ
ଗ୍ରାସାର୍ଦ୍ଧେ ଉତ୍ତରାୟଣ ଗ୍ରାସିବ ଉଚ୍ଚାଟେ । (୧)
ତୁଙ୍ଗ ଭୃଗୁ ଶୈଳତଟେ, ପାଶବ ସରଣୀ-
ଲକ୍ଷି ଉଭା କେ ଏ ଯୁବା ବୀରେନ୍ଦ୍ର ଅଗ୍ରଣୀ ?
ମହାତେଜା ନାରସିଂହ ବଂଶ-ଅବତଂସ,
ଧରିଅଛି ଶୈଳଚକ୍ର ଇଚ୍ଛି ବୈରି-ଧ୍ୱଂସ ।
ରାଜଇ ସ୍ୱପାର୍ଶ୍ୱେ ବର୍ଶା ପାଷାଣ କୁଠାର
ଆକର୍ଣ୍ଣି ସ୍ୱକର୍ଣ୍ଣେ ଗୁହା (୨) ରକ୍ଷର ହୁଙ୍କାର;
ନିକ୍ଷେପିଲା ଚକ୍ର ଯୁବା ଅବ୍ୟର୍ଥ ସୁଲକ୍ଷ୍ୟେ
ଖୋଲିଦେଲା ମୃତ୍ୟୁଦ୍ୱାର ବାଜି ରକ୍ଷ ବକ୍ଷେ ।
ଅଦୂରେ ହାଏନା(୩) ସଙ୍ଗେ ମ୍ୟାମଥର(୪) ଯୁଦ୍ଧ
ଧାଇଁଲା ବୀରେନ୍ଦ୍ର ଜାଣି ହୋଇ ମହାକ୍ରୁଦ୍ଧ ।
ଫଟାଇ କରୋଟି ଫୁଟି କରୀନ୍ଦ୍ର ମସ୍ତକେ
ଶୈଳଚକ୍ର ବୀରେନ୍ଦ୍ରର, ବୈଦ୍ୟୁତ ପଲକେ ।
ବର୍ଶା ଭେଦି ହାଏନାର ବିଶାଳ ଶରୀରେ
ଲୋଟାଇଲା ବୈରି-ବପୁ ବେନିଙ୍କି ମହୀରେ ।
ଅବଲ୍ଗିତ ଗତି ବନ୍ଧ୍ୟା (୫) ତ୍ରାସେ ଆସେ ଧାଇଁ,
ଲୋଟିଲା ପଲକେ ହୋଇ ଧରାତଳଶାୟୀ ।
ଭୀମ ଭଲ୍ଲେ ମେରୁଦଣ୍ଡ ହେଲା ଦ୍ୱିଖଣ୍ଡିତ,
ବିଶାଳ ବିଷାଣ ହେଲା ରୁଧିରେ ପ୍ଲାବିତ ।

ଶୁଣି ଏ ପାରିଧି-ନାଦ ସଂତ୍ରାସେ ନିକଟେ
ଗର୍ଜିଲା ଗଣ୍ଡାର ମୁଖ ବ୍ୟାଦାନି ବିକଟେ ।
ଭୀଷଣ ଦାପଟେ ଦଳି ଶାଦ୍‌ବଳ ପ୍ରଦେଶ
ଧାଇଁଲା ବିଭ୍ରମେ, ପାଳି ଶମନ ନିର୍ଦ୍ଦେଶ ।
ଛିନ୍ନ ହେଲା ଖଡ୍ଗ ସଙ୍ଗେ ତା ଘୋଣାମଣ୍ଡଳ
ବୀରେନ୍ଦ୍ରର ଶୈଳଚକ୍ରେ ଭଜିଲା ଭୂତଳ ।
ସଙ୍କେତି ସିଂହ କୁହାଟେ ନିଜ ଅନୁଚର-
ଆହ୍ୱାନିଲା ସେ ବୀରେନ୍ଦ୍ର ଗିରୀନ୍ଦ୍ର କନ୍ଦର ।
ହେଲା ବିଧ୍ୱନିତ, ବନ୍ୟ ତୁରଙ୍ଗମଗଣ
ହ୍ରେଷିଲେ ସଂତ୍ରାସେ ଟେଳି ସ୍ୱପୁଚ୍ଛ ଶ୍ରବଣ ।
ଧାବନ୍ତି ବିଭ୍ରାନ୍ତ ଗତି ଜାନ୍ତବ ଅୟନେ,
ଯୁବା ଅଶ୍ୱେ ଲୋଟନ୍ତି ସେ ଅନ୍ତିମ ଶୟନେ (୬)
ପ୍ରସ୍ତର କର୍ତ୍ତରୀ ଛୁରୀ ଘେନି ଅନୁଚରେ,
ବିଲଗି ପ୍ରତ୍ୟଙ୍ଗ ମାଂସ ନେଲେ ସ୍ୱ କନ୍ଦରେ ।
ଉଲ୍ଲାସେ କେ ହଲ୍ଲୀଷକେ ଗୀତ ଗାଇ ରଙ୍ଗେ
ମଣ୍ଡିଦିଏ ବନମାଳା ମୃଗୟୁର ଅଙ୍ଗେ ।
ସଂଗ୍ରହେ ମଗଜ କେହୁ କରୋଟି ବିଦାରି,
ଫଟାଏ କେ ନଳକାସ୍ଥି ପ୍ରସ୍ତର ପ୍ରହାରି ।

ଦଗ୍ଧ କରି ସଦ୍ୟ ମାଂସ ମୁଗ୍ଧ କେ ଭକ୍ଷଣେ,
ସଞ୍ଚେ ମଞ୍ଚେ ଶୁଷ୍କ କରି କେହୁ ସଂରକ୍ଷଣେ ।

ଚର୍ମ୍ମପୁଟେ କେହୁ ମାଂସ ରଖି ବାରି ସଙ୍ଗେ
ସିଦ୍ଧ କରେ ଦଗ୍ଧ ଶିଳା କ୍ଷେପି ତହିଁ ରଙ୍ଗେ ।

ବସା ଘଷି ସାଧି କେହୁ ଶିଳା ସମ୍ମାର୍ଜନ
ସୂଚୀ କର୍ମେ ଶୁଷ୍କ ଚର୍ମ କରେ ସଂଯୋଜନ ।

ରଚିବ ସେ ଗାତ୍ରଛଦ ପତିପୁତ୍ର ପାଇଁ
ସୁଦାରୁଣ ଶୀତେ ତାଙ୍କୁ ରଖିବ ଘୋଡାଇ ।

ଆସିଲେ ଏକାଳେ ଏକେ ବୃଦ୍ଧ ମହାମନା,
ବିନୀତ ବୀରେନ୍ଦ୍ର କରେ ଭକ୍ତି ସମ୍ବର୍ଦ୍ଧନା ।

ସୁଦୀର୍ଘ ବିଶଦ ଶ୍ମଶ୍ରୁ, ଶୁଭ୍ର କେଶରାଶି
ଶୋଭଇ ବଦନେ, ତାଙ୍କ ମହିମା ଉଭାସି ।

ସୁପ୍ରଶାନ୍ତ ସୁଗମ୍ଭୀର ନୟନଯୁଗଳ
ପୁଣ୍ୟ ସରୋବରେ ସେ କି ଯୁଗ୍ମ ଶତଦଳ ?

ମଖୋଦ୍‌ଭୂତ ଭୂତିଭାଳେ ପ୍ରକାଶେ ପ୍ରତିଭା,
ସର୍ବାଙ୍ଗୁ ପ୍ରସରେ ଜ୍ଞାନ ବର୍ଷୀୟାନ ବିଭା ।

ଭକ୍ତି ସମ୍ଭାଷଣ କରି ବୀରେନ୍ଦ୍ର ସାଦରେ
ସାଷ୍ଟାଙ୍ଗେ ନମିଲା ବୃଦ୍ଧ ମୁନିଙ୍କ ପୟରେ ।

ମନୋଜ୍ଞ ଅଜିନାସନେ ବସାଇଲା ନେଇ
ସୁଶୀତଳ ବାରି ବନ୍ୟ ଫଳମୂଳ ଦେଇ ।

ବତ୍ସା କ୍ଷୀର (୭) ଦେଲା ଆଣି ବନ୍ୟ ପର୍ଣ୍ଣପୁଟେ
ଉଭା ହେଲା ଅଗ୍ରେ ନମ୍ରେ ବଦ୍ଧକରପୁଟେ

ନମିଲେ ପୟରେ ଆସି ପୁରଜନବୃନ୍ଦ
ଆହ୍ଲାଦିତ ହେଲା ମାନ୍ୟେ ବୃଦ୍ଧ ମୁନି-ହୃଦ । (୮)

ଭାଷଇ କଳ୍ପନା :-ଏହି ମହର୍ଷିସତ୍ତମ
କ୍ଷୀରୋଦଧି ତଟେ ଯାଙ୍କ ପବିତ୍ର ଆଶ୍ରମ
ପ୍ରକୃତି ବିପ୍ଳବେ ଜଳସ୍ଥଳ ବିବର୍ତ୍ତିତ
ହେଲେହେଁ ଅଦ୍ୟାପି ନାମେ ହୁଅଇ ସୂଚୀତ ।

କାଶ୍ୟପ ସାଗର ଯାର ପାବନ ସ୍ମରଣେ,
ନାମାଙ୍କିତ ବକ୍ଷେ ରାଜେ ଅବନୀ ଉରସେ ।

ସେ ଆଶ୍ରମବାସୀ ବୃଦ୍ଧ ଏ କାଶ୍ୟପ ମୁନି
ଆଗତ କି ଲାଗି ତାଙ୍କ ମୁଖୁ ନେବା ଶୁଣି ।

ଭାଷନ୍ତି କଶ୍ୟପ :-ବତ୍ସ ! ତୋ ଭୀମ ବିକ୍ରମେ
ଶାସିତ ତ୍ରାସିତ ସୃଷ୍ଟି-ଦୁଷ୍ଟକୁଳ କ୍ରମେ ।

ନାହିଁ 'ଦୀନୋଉରି ଯମ' ଭୀମ ସଂହନନ
ନାହିଁ ଗୁହାରକ୍ଷ ଦଂଷ୍ଟ୍ରା ବିକଟ ବଦନ ।

କନିଷ୍ଠାଦ ବଂଶ ଏବେ ଶିଷ୍ଟ ଶାନ୍ତମତି,
ତବ ପୁଣ୍ୟସ୍ପର୍ଶେ ସୃଷ୍ଟି-ପ୍ରହ୍ଲାଦ ମୂରତି ।

ଏ ଦୁର୍ଦ୍ଦନ୍ତ ଚତୁର୍ଦ୍ଦନ୍ତ ଦନ୍ତାବଳକୁଳ
ତୋହରି ଶାସନେ ଆସି ହେଲେଣି ନିର୍ମ୍ମୂଳ ।

ହେଲେ ଏ ଜଳଭେ ତୋର ସ୍ନେହେ ସୁପାଳିତ
ଆହ୍ଲାଦେ ସେବାରେ ତୋର ହେବେ ନିଯୋଜିତ ।

ବ୍ୟଗ୍ରଗତି ତୁରଙ୍ଗମେ, ପାଳିଲେ ଯତନେ
ହେବେ ଏ ସହାୟ ତୋର ତ୍ୱରିତ ଗମନେ ।

ଗବୀ ବଳଗା ଆଦି ଏହି ବନ୍ୟ ଜୀବକୁଳ
ମାନବର ଭାଗ୍ୟଚକ୍ରେ ହେବେ ଅନୁକୂଳ ।(୯)

ପାଳିତ ଏ ଶ୍ୱାନ ତୋର ପ୍ରଦୀପ୍ତ ନୟନ
ମୂର୍ତ୍ତିମନ୍ତ କ୍ରୋଧ ଯଥା ଜ୍ୱଳିତ ଜ୍ୱଳନ-

ହେଲେହେଁ, ନୟନେ ଦେଖ ଖେଳେ କୃତଜ୍ଞତା
ପ୍ରକାଶେ ସୁଶିକ୍ଷା ବଳେ ଆଜ୍ଞା-ଅଭିଜ୍ଞତା ।

ମୂର୍ତ୍ତିମନ୍ତ ବାୟୁସମ ବ୍ୟଗ୍ରଗତି ବାଜି
ବଳୀନ୍ଦ୍ର କଳଭ ଆଦି ବନ୍ୟ ଜନ୍ତୁ ରାଜି-

ପ୍ରକାଶନ୍ତି ନେତ୍ରେ ଯେଉଁ ବୁଦ୍ଧି ସୁଚାତୁରୀ
ଲଭିଲେ ଏ ଜୀବକୁଳ ବାତ୍ସଲ୍ୟ-ମାଧୁରୀ-

ମାନବର ବଶୀଭୂତ ହେବେ ଏ ନିଶ୍ଚୟ,
ନରହିତେ ନିଯୋଜିବେ ସ୍ୱଗୁଣନିଚୟ ।

ରକ୍ଷାକର ବୀରମଣି ଏହାଙ୍କ ଜୀବନ
ପଦାଶ୍ରିତ ରୂପେ କରି ସସ୍ନେହେ ପାଳନ ।

ଗତିଚକ୍ରେ ନର ସଙ୍ଗେ ଏହାଙ୍କ ମିଳନ
କରିବ ମାନବ ସୃଷ୍ଟି-ଉତ୍କର୍ଷ ସାଧନ ।

ବାତାତପ ଆପେ ପୁଷ୍ଟ ପ୍ରକୃତି-ବକ୍ଷରେ
ମନୋରମ ପୁଷ୍ପ ଫଳେ ଯେଉଁ ମଧୁକ୍ଷରେ;

ଗାବ ତୁରଙ୍ଗମକୁଳେ କର୍ଷିତା ଅବନୀ
ପ୍ରଦାନିବ ସେହି ମଧୁ ପ୍ରାଣ-ସଞ୍ଜୀବନୀ ।

କର୍ମେ ଯଜ୍ଞ ଯଜ୍ଞେ ପୁଷ୍ଟ ତୁଷ୍ଟ ଜୀମୂତେନ୍ଦ୍ର
ମୁହୁଁଲେ ଆସର ସଙ୍ଗେ ନାଦ ଆଦ୍ୟ ମନ୍ଦ୍ର

ସେ କାଳେ ବହିବ ରସା ସୁରସା ମୂରତି
ତାହାହିଁ ତ ଅବନୀର ଛବି ପୁଷ୍ପବତୀ ।

ସେ କାଳେ ବପନେ, ଶସ୍ୟଶାଳିନୀ ମେଦିନୀ
ହେବ ଏ ଜଙ୍ଗମ ପ୍ରାଣୀ ପ୍ରାଣ ପ୍ରମୋଦିନୀ ।

ଅନ୍ନେ ପ୍ରତିଷ୍ଠିତ ହେଲେ ବିବୁଧ ମାନବ
ଲୋଡିବେ ନିଷ୍ଠିନ୍ତେ ଶ୍ରେୟଃ ପନ୍ଥା ଅଭିନବ ।

ପ୍ରଣମି ଚରଣେ କହେ ସେ ବୀରେନ୍ଦ୍ର ମଣି
ଧନ୍ୟ ଆଜି ମୋ ଜୀବନ ହେ ଋଷି-ଅଗ୍ରଣୀ ।

ଲଭିଲି ଯେ ଉପଦେଶ ପାଳିବି ନିୟତ
ଲଭିବ ପରମ ଶ୍ରେୟଃ ମାନବ ଜଗତ ।

ନବ ଶିକ୍ଷା ନବ ବଳେ ମାନବ-ଭବନ
ହେବ ନବ ପୁଣ୍ୟ ତେଜେ ଶାନ୍ତି-ନିକେତନ ।

---

୧- ମେରୁ ପ୍ରଦେଶରେ ଉଷାର ଗୋଟିଏ ଗ୍ରାସରେ ଏକ ବର୍ଷ ଭୁକ୍ତ ହୁଏ ।
୨ - ଗୁହା ଋକ୍ଷ
୩- ଗୁହା ହାଏନା ବିଶାଳକାୟ ହିଂସ୍ରକ ଜୀବ
୪- ମ୍ୟାମଥ ମଧ ତଦ୍ରୂପ ଶକ୍ତି ଓ ଶରୀର ବିଶିଷ୍ଟ ଲୋମଶ ହସ୍ତୀ ।
୫- ବଲ୍ଗା ହରିଣ ବିଶେଷ । ଏ ଜୀବ ଅଦ୍ୟାପି ଲାପଲ୍ୟାଣ୍ଡ ପ୍ରଦେଶରେ ବିଦ୍ୟମାନ ଅଛନ୍ତି ।
୬ - ଘୋଡା ନୃସିଂହ ମାନବର ପ୍ରିୟ ଶିକାର ଥିଲା ।
୭-ବଲ୍ଗା କ୍ୱଚିତ ପାଳିତ ହେବାର ଆରମ୍ଭ ହୋଇଥିଲା ।
୮. ବୃଦ୍ଧ ମାନଙ୍କର ସମ୍ମାନ ରମଣୀୟ ଥିଲା ।
୯. ଏହାହିଁ ପଶୁ ପାଳନ ଓ କୃଷିଆରମ୍ଭ ସୂଚନାର ଯୁଗ । ବାମନ ଯୁଗରେ ତାହା ଉତ୍କର୍ଷ ଲାଭ କଲା ।

# ସିନ୍ଧୁମନ୍ଥନ

ଝଳକୁଛି ଅବରୋହେ ଶାନ୍ତି ସ୍ୱସ୍ତ୍ୟୟନ
ମେରୁ ଶୃଙ୍ଗେ ଧ୍ରୁବ ଜ୍ୟୋତି ପ୍ରଶାନ୍ତ ପାବନ ।

ଚକ୍ରାକାରେ ଧ୍ରୁବଚକ୍ରେ ମେରୁ-ସଂକ୍ରମଣ-
ବିରଚି ସପ୍ତର୍ଷି ନିଜ ସୃଷ୍ଟି ନିରୀକ୍ଷଣ -
କରୁଛନ୍ତି, ଜ୍ୟୋତିଧାରା ରୂପେ ଆଶୀର୍ବାଦ
ପ୍ରସରି ସୁମେରୁ ତଟେ ବିତରେ ଆହ୍ଲାଦ ।

'ପ୍ରଜା ସଞ୍ଜନନୀ' 'ତୃପ୍ତି' 'ପ୍ରୀତି' ବିଧାୟିନୀ,
'କ୍ଷମା' 'ନତି' 'ସ୍ୱଚ୍ଛନ୍ଦତା' 'ଲଜ୍ଜା' ସଞ୍ଚାରିଣୀ; (୧)
ସପ୍ତ ଜ୍ୟୋତିଧାରା ଢ଼ାଳି ଅବନୀ ବଦନେ
ନିରତେ ନିରତ ବିଶ୍ୱେ ସ୍ୱପ୍ରଜା ପାଳନେ ।

ଅନୁଲିତା ଲିତା ଦଣ୍ଡ ରଜନୀ ଦିବସ,
ପକ୍ଷ ମାସ ଋତୁ ଭେଦି ଅୟନ ବରଷ;
ଯୁଗ ଯୁଗାନ୍ତର ବ୍ୟାପି ଚିର ଅବିରାମେ
ବିତରନ୍ତି ଏ କରୁଣା-ଧାରା ଧରାଧାମେ ।

ଦେଖନ୍ତି ସପ୍ତର୍ଷି ଦୂରେ ଆପଣା ତନୟ
ବୃହସ୍ପତି ଢ଼ାଳୁଛନ୍ତି ପ୍ରଭା ପ୍ରଜ୍ଞାମୟ ।

ମହା ମହୀୟାନ କବି ଉଶନା ପ୍ରତିଭା
ସଞ୍ଚାରେ ପ୍ରକୃତି ବକ୍ଷେ କବିତ୍ୱର ବିଭା ।

ପ୍ରହ୍ଲାଦନ ବିଭା ବୁଧ-ନେତ୍ରୁ ପଡେ ଝରି,
ବାଛନ୍ତି ମଙ୍ଗଳ ମହୀ ଅନ୍ନେ ଯାଉ ଭରି ।

ମେରୁ ପ୍ରଦକ୍ଷିଣ କରି ହିରଣ୍ୟାଂଶୁମାଳୀ
ପ୍ରାଣ-ସଂଜୀବନୀ ରଶ୍ମି ଦେଉଛନ୍ତି ଢ଼ାଳି ।

ଝରି ପଡେ ଜ୍ୟୋତିଷ୍କଙ୍କ ବିଭୁ-ବିଭାମୃତ
ଅବଗାହେ ମହୀ ହୋଇ ଆହ୍ଲାଦେ ଆପ୍ଲୁତ ।

ମହାବ୍ୟୋମ ସରୋବରେ କୋଟି ପଦ୍ମ ସରି
ଫୁଟୁଅଛି କୋଟି ସୃଷ୍ଟି ପଡୁଅଛି ଝରି ।

ସୃଷ୍ଟି ସ୍ଥିତି ଲୟ ଲୀଳା ଚିର ଅବିଶ୍ରାମେ
ପ୍ରକାଶୁଛି କେତେ ଛବି ନିତ୍ୟ ଧରାଧାମେ ।

ହୂୟମାନ ବହ୍ନି ସମ ପ୍ରଦୀପ୍ତ ପ୍ରତିଭା
ମୂର୍ତ୍ତିମାନ ସୁନିର୍ମଳ ପୁଣ୍ୟ ଜ୍ଞାନବିଭା -

ପରାୟେ ତାପସକୂଳ ମହୋଦଧି ତଟେ
ସମାଗତ କିପାଁ ପିତାମହଙ୍କ ନିକଟେ ?

ନିଶାନ୍ତ ଗୋଧୂଳି କାଳ ପ୍ରଶାନ୍ତ ପାବନ,
ଏ ବ୍ରାହ୍ମ ମୁହୂର୍ତ୍ତେ ଖେଳେ ମୃଦୁଳ ପବନ ।

ସାରିଲେଣି ଉଷାକାଳ-ପୂଷା ନୀରାଜନ
ଜ୍ଞାନଜ୍ୟେଷ୍ଠ ପରମେଷ୍ଠି ପଙ୍କଜ ଆସନ ।

କୃଷ୍ଣାଜିନେ ଉପବିଷ୍ଟ ମହାଜ୍ଞାନ ବୃଦ୍ଧ,
ଅବହିତ ଚଉପାଶେ ବ୍ରହ୍ମରଷିବୃନ୍ଦ ।

ସୁବୁଦ୍ଧ ଗୌତମ ତପୀ ସାଙ୍ଖ୍ୟତତ୍ତ୍ୱନିଧି,
ଶାଣ୍ଡିଲ୍ୟ, କୌଣ୍ଡିଲ୍ୟ, ଧୌମ୍ୟ, ସୁଜ୍ଞାନ-ବାରିଧି ।

ମାର୍କଣ୍ଡେୟ, ବାମଦେବ, କାପ୍ୟ, କାତ୍ୟାୟନ,
କପିଳ, ବାଦରାୟନ, ପୈଙ୍ଗୀ, କାଙ୍କାୟନ;

ଭାର୍ଗବ, ଗାଳବ, ଗାର୍ଗ୍ୟ, ମୈତ୍ରେୟ, ଚ୍ୟବନ,
ସିଦ୍ଧ ଜ୍ଞାନୀ ବୃଦ୍ଧ ଭୃଗୁ, କଶ୍ୟପନନ୍ଦନ;

ଅତ୍ରିସୁତ ପୁନର୍ବସୁ ମହାଜ୍ଞାନମୟ,
ରୁଗ୍ଣ ନର ଦୁଃଖେ ଯାର କାନ୍ଦିଲା ହୃଦୟ;

କୈକଶେୟ, ବୈଜବାପି, ବୃଦ୍ଧ ଭରଦ୍ୱାଜ,
ଲୋକାକ୍ଷ, ଶୌନକ ଆଦି ତାପସ ସମାଜ -

ଉପବିଷ୍ଟ ଚତୁଷ୍ପାର୍ଶ୍ୱେ; ବୃଦ୍ଧ ପିତାମହ -
ପ୍ରକାଶିଲେ ଅତୀତର ଘଟନାନିବହ ।

ଉନ୍ମୋଚିଲେ ଯବନିକା, ସୁହାସିନୀ ବାଣୀ -
ଦେଖାଇଲେ ବିଶ୍ୱଚିତ୍ର ବିଶ୍ୱଶୋଭାରାଣୀ ।

ଭୀମଊର୍ମି କାଳସିନ୍ଧୁ ତାଣ୍ଡବ ନର୍ତ୍ତନେ
ନାଚୁଅଛି କେତେ ରଙ୍ଗେ ସୃଷ୍ଟି ବିବର୍ତ୍ତନେ ।

ମହାକଳ୍ପ ଅବସାନେ ବ୍ରହ୍ମ ଦିବା ଗତ (୨)
ତମୋମୟୀ ମହାନିଶି ହେଲା ସମାଗତ ।

କୋଟି ରବି ଶଶୀ ଲୁପ୍ତ ପ୍ରକୃତି-ଗରଭେ,
ଗ୍ରହ ଉପଗ୍ରହ ଉଲ୍କା ତାରକା ସରବେ ।

ମହାକାଳ ରୂପ ବହି ବ୍ରହ୍ମ ସନାତନ
କରିଛନ୍ତି ପ୍ରକୃତି କି ବକ୍ଷେ ନିମଗନ ।

ନିଜେ ହୋଇ ଭୀମରୂପ କାଳ ଭୁଜଙ୍ଗମ
ଅନନ୍ତ ଶୟନେ ସୁପ୍ତ ସେ ବ୍ରହ୍ମ ପରମ ।

ମହାନିଶି ଅବସାନେ ପୁଣି ମହାମାୟା
ଜଗତଜନନୀ ରୂପେ ବିଗ୍ରହିଲେ କାୟା ।

ସୃଜିଲେ କୋଟି ବ୍ରହ୍ମାଣ୍ଡ ପୂର୍ବ କଳ୍ପ ସମ
କୋଟି ଭାସ୍ୱତ୍ ମଣି ତେଜେ ବିଶ୍ୱ ମନୋରମ ।

ଦ୍ରବ ଧାତୁ ପିଣ୍ଡ ସମ ସନ୍ତପ୍ତ ଭୂତଳ
କୋଟି ବର୍ଷ ଅନ୍ତରାଳେ ହୋଇଲା ଶୀତଳ ।
ଉତ୍ତାଳ ତରଙ୍ଗ ତୋଳି ନୀଳ ରତ୍ନାକର
ପ୍ଲାବି ଧରାବକ୍ଷ ଚୁମ୍ବେ ସୁମେରୁ-ମନ୍ଦର ।

ମନ୍ଥ ଦଣ୍ଡ ସମ ରାଜେ ସୁମେରୁ ଅଚଳ,
କୂର୍ମ ପୃଷ୍ଠ ପ୍ରାୟେ ଦିଶେ ପୀଠ ଭୂମିତଳ ।

ବଜ୍ରନାଦେ ନାଦି ମନ୍ଦ୍ରେ ଆସେ ବଜ୍ରଧର
କମ୍ପି ଉଠେ ପ୍ରତିନାଦେ ସୁମେରୁ କନ୍ଦର ।

ଅକ୍ଷସୂତ୍ର କରେ ଧରି ମଧ୍ୟ ଆକର୍ଷଣ
କରୁଛନ୍ତି ମହାବଳେ ଦେବ ବିକର୍ତ୍ତନ ।
ଘୂର୍ଣ୍ଣିତ ସୁମେରୁ କେନ୍ଦ୍ରେ ଆହ୍ନିକ ଗତିରେ
ଆଲୋଡନ୍ତି ସିନ୍ଧୁ, ବଜ୍ରୀ ବଜ୍ର ଶକତିରେ ।

ମହାବଳେ ବାତ୍ୟାରୂପେ ଭୀମ ପ୍ରଭଞ୍ଜନ,
ଭୀମ ଭଙ୍ଗେ ରଙ୍ଗେ ସିନ୍ଧୁ କରେ ଆଲୋଡନ ।
ଖୁଆ ରଜ୍ଜୁ ରୂପେ ମେରୁ କରି ଆବେଷ୍ଟନ
ଆଲୋଡନ୍ତି ମହାସିନ୍ଧୁ ମହାନାଗଗଣ ।
ଉଦ୍ଗାରନ୍ତି କାଳକୂଟ ସେ ଉରଗକୁଳ,
ଶୁଖିଯାଏ ଜଳ, ସିନ୍ଧୁ ଘୂର୍ଣ୍ଣ ତେଜେ କୂଳ ।
ସ୍ଥଳେ ସ୍ଥୂଳଚର୍ମୀ ଯେତେ ଦାନବ-ବିଗ୍ରହୀ
ଏ ସିନ୍ଧୁ ମନ୍ଥନେ ଅହି-ମୁଖେ ଥିଲେ ରହି । (୩)
ତିମି ତିମିଙ୍ଗିଳ ମୀନ କଚ୍ଛପ ମକର
ପାଳିଥିଲା ଯେତେ ଯାଦଃ ନୀଳ ରତ୍ନାକର;
ସନ୍ତାପିତ ହେଲେ ଲଭି କାଳକୂଟ ଜ୍ୱାଳା,
ପିନ୍ଧାଇଲେ ଧରାବକ୍ଷେ କଙ୍କାଳର ମାଳା ।
ରକ୍ଷିଲେ ସୃଷ୍ଟିକି ବିଭୁ ଭକ୍ଷି ହଳାହଳ
ନୀଳକଣ୍ଠ ରୂପ ହେଲେ ଭକତବତ୍ସଳ । (୪)
ଉରଗ ଚରମେ ଉଭା ଯେ ବିବୁଧ ନରେ,
ନିଯୋଜିଲେ ନିଜ ଶକ୍ତି ସିନ୍ଧୁ ମନ୍ଥନରେ -
ନ ହେଲେ ସେ ବିଷତେଜେ ସନ୍ତାପିତ ଅତି,
ମନ୍ଥନ ସମ୍ପଦେ ହେଲେ ଆହ୍ଲାଦିତମତି ।
ପୁନରାଲୋଡନେ କମ୍ପେ ଅବନୀ ହୃଦୟ
ଉଦ୍‌ଗାରଇ ସିନ୍ଧୁ-ଭେଦୀ ବହ୍ନି ଦୀପ୍ତିମୟ ।
କ୍ଷୀଣ ହେଲା ନୀରନିଧି ତେଜି ମେରୁତଟ
କଲା ଧରା-ଉରେ ନବ ସୁଷମା ପ୍ରକଟ ।
ଆଲୋଡିତ ମହାସିନ୍ଧୁ କାଳସିନ୍ଧୁ ସଙ୍ଗେ
ପ୍ରକାଶିଲା ଧରାପୃଷ୍ଠେ ତୁରଙ୍ଗ ମାତଙ୍ଗେ । (୫)
ସେ ନବ ପୁଳିନେ ରଙ୍ଗେ ଶୁଭିଲା ସୁରଭି
ହମ୍ବାରବେ ମୁଖରିତ ନନ୍ଦନ ଅଟବୀ ।
ସିନ୍ଧୁଜାତ ବିଶ୍ୱମ୍ଭରା ବରୁଣନନ୍ଦିନୀ
ସୃଷ୍ଟି ଲକ୍ଷ୍ମୀ ରୂପେ ଉଭା ବିଶ୍ୱପ୍ରହ୍ଲାଦିନୀ ।
ପଦ୍ମରାଗ ଆଦି ମଣି ମୁକ୍ତା ତାରକିତ
ସିନ୍ଧୁଧୌତ ବେଳାଭୂମି ଦିଶେ ସୁଶୋଭିତ ।

ସୈନ୍ଧବ ପଙ୍କିଳା ଉର୍ବୀ ଉର୍ବରତାମୟୀ ।
ପାରିଜାତ ଆଦି ପୁଷ୍ପେ ସରାଗେ ହସଇ ।
ସୃଷ୍ଟିଶ୍ରେଷ୍ଠ ରତ୍ନହାରା ଅପ୍ସରା ରମଣୀ (୬)
ସୁଷମା ସମ୍ପଦେ ମୋଦେ ମଣ୍ଡିଲେ ଧରଣୀ ।
ଦେଖୁଛନ୍ତି ଋଷିବୃନ୍ଦ ଏ ମହାମନ୍ଥନ
ପ୍ରକୃତି ବିପ୍ଳବ ସୃଷ୍ଟି-ବିଧି ପୁରାତନ ।
ଦୁଷ୍ଟ ଶିଷ୍ଟ ଖଳ ସାଧୁ ଜୀବନ-ସଂଗ୍ରାମେ,
ଯୁଝୁଛନ୍ତି ଆଜୀୟାନ୍ତ ନିତ୍ୟ ଧରାଧାମେ
କରୁଛନ୍ତି କାଳ-ଜଳ-ଜଳଧି ମନ୍ଥନ
ଲଭୁଛନ୍ତି ବହୁ ଶକ୍ତି ସୁଷମା ରତନ । (୭)
ପ୍ରକୃତିର ପ୍ରତିକୂଳେ ଦୁଷ୍ଟେ ହେଲେ ବଳୀ
ଗରଳ ଉଦ୍‌ଗାରି ସେହୁ କ୍ରୋଧେ ଉଠେ ଜ୍ୱଳି ।
ସ୍ନିଗ୍ଧ ଶ୍ୟାମ ବ୍ୟୋମକାନ୍ତି ସୁଘରୁ ଗଠନ
ଉଠିଲେ କେ ସିନ୍ଧୁଗର୍ଭୁ ପୁରୁଷ ରତନ ?
ଜ୍ୟୋତିର୍ମୟ ପୀତପଟ ଶୋଭେ କଟିତଟେ
ଅନନ୍ୟରେ ରବିରଶ୍ମି ସୁଷମା ପ୍ରକଟେ ।
କମ୍ବୁଗ୍ରୀବ, ସୁକୁଞ୍ଚିତ ଅମ୍ବୁଦ କୁନ୍ତଳ,
ଗୁରୁ ଶୁକ୍ର ସମ ଦୋଳେ ଶ୍ରବଣେ କୁଣ୍ଡଳ ।
ରୁଚିର ତରୁଣ ବପୁ, ଅରୁଣ ଲୋଚନ,
ମହୋରସ୍କ ବୃଷସ୍କନ୍ଧ ସିଂହ ସିଂହନନ ।
ଜ୍ୟୋସ୍ନାସମ ମୃଦୁହାସ୍ୟ ନୈସର୍ଗ ସ୍ଫୁରିତ,
ବିଶଦ ଜ୍ୟୋତିର୍ବଳୟେ ମୁଖ ଉଦ୍‌ଭାସିତ ।
ରତ୍ନଦାମ ଦୁଲେ ଦୋଳେ ଗଳେ ବନମାଳୀ
ଅପାଙ୍ଗେ ଝଲକି ଉଠେ ସୌଦାମିନୀ ବାଳା ।
କୋକନଦ କଞ୍ଜ ଗଞ୍ଜେ ପାଣି ପାଦତଳ
ସୁବଳିତ ସୁବଳିଷ୍ଠ ପ୍ରବେଷ୍ଟାଯୁଗଳ ।
ପରିଗ୍ରହି ବିଗ୍ରହ କି ନିଜେ ଆୟୁର୍ବେଦ (୮)

ଆବିର୍ଭୂତ କରି କାଳ ଜଳଧି ଉଦ୍‌ଭେଦ ?
ନୈଋତ୍ୟେ ସମାଦି ଚିତ୍ତ ଶରୀର ସଂହତି
ଚିଦମୃତ ବିଭା ଶୁଭ୍ର ସୁନ୍ଦର ମୂରତି ।
ସୁସ୍ନିଗ୍ଧ ଶୀତଳ ସ୍ୱାଦୁ ଶମନ ଶମନୀ
ଆଣିଛନ୍ତି ଘଟେ ସୁଧା ବିଶ୍ୱ-ସଂଜୀବନୀ ।
ଝଟକୁଛି ବିଦ୍ୟୁଚ୍ଛଟା ଜିଣି କୋଟି ରବି,
ଢ଼ଳୁଛି ସୁଢ଼ଳେ ରମ୍ୟ ସୁନିର୍ମଳଛବି ।
ଉଲ୍ଲସିତ ଲସଲ୍ଲୋଳ ମଞ୍ଜୁଳ ଝଲକେ,
ଗନ୍ଧାମୋଦେ ଅନ୍ଧ ବିଶ୍ୱ ପୁଲକେ ପଲକେ ।
ନାଚନ୍ତି ଯେ ସୁଧାପାନେ ନଭେ କୋଟି ତାରା,
ଢ଼ାଳେ ବିଶ୍ୱବକ୍ଷେ ଶଶୀ ସୌମ୍ୟ ରଶ୍ମିଧାରା ।
ସୁରଭିତ ଅରବିନ୍ଦ ଯା ଲବ ସୌରଭେ,
ସମ୍ପୂରିତ ସେ ପୀୟୂଷ କଳସ ଗରଭେ ।
ଯା ପ୍ରଭାବେ କରେ ମୃତ୍ୟୁ ଦୂରେ ପଳାୟନ
ଜଗଦୁଦ୍ବୋଧନ ଏହି ମହାରସାୟନ ।
ଦେଖଇ ଚାଖଇ ଯେହୁ ଏ ପୀୟୂଷ ଲେଶ
ଇଷିତେ ସେ ଉପେଖଇ ପାପ ତାପ କ୍ଳେଶ ।
ନିରେଖଇ ବିଶ୍ୱବ୍ୟାପୀ ବ୍ରହ୍ମ ସନାତନ,
ସେ ବ୍ରହ୍ମ ଅନ୍ତରେ ବିଶ୍ୱ ଶାନ୍ତି-ନିକେତନ ।

---

୧. ସପ୍ତର୍ଷିଙ୍କର ସପ୍ତ ଜ୍ୟୋତିଧାରା ସପ୍ତ ଶକ୍ତି ଅର୍ଥାତ୍ ପତ୍ନୀରୂପେ ପୁରାଣରେ ବର୍ଣ୍ଣିତ । ୨. ସୃଷ୍ଟି ଓ ସ୍ଥିତିର ପରିମାଣ ଯେତିକି, ପ୍ରଳୟ ଓ ବିଶ୍ରାମ କାଳର ପରିମାଣ ସେତିକି । ୩. କୌର୍ମ ଯୁଗର ଶେଷରେ ସର୍ପକୁଳର ପ୍ରାବଲ୍ୟ । ତତ୍ ପୂର୍ବେ ଆବିର୍ଭୂତ ଜୀବ ଅହି ମୁଖେ ଓ ସର୍ବକୁଳର କ୍ଷୟ ପରେ ଆବିର୍ଭୂତ ଜୀବ ସର୍ପମାନଙ୍କର ପଶ୍ଚାତ ରହିଲେ । ୪. ନୀଳକଣ୍ଠ - ମହାଦେବ ଓ ମୟୂର । ଅଭିବ୍ୟକ୍ତି କ୍ରମରୁ ବୋଧହୁଏ ମୟୂର ସୃଷ୍ଟିପ୍ରତି ଶିବଶକ୍ତି ଅର୍ପଣକରି ନୀଳକଣ୍ଠ ନାମ ଗ୍ରହଣରେ ନିଜର ପ୍ରତିଷ୍ଠା ରଖିଅଛି । ଆର୍ଯ୍ୟ ମନୀଷିକୁଳ ସୃଷ୍ଟିର ରହସ୍ୟ କ୍ରମ ଲକ୍ଷ୍ୟରେ କି ସେହି ସୂଚନା ସ୍ମୃତି ରୂପେ ବାର କଳ୍ପନା କରି ଶିବ ମନ୍ଦିରରେ ମୟୂରପୁଚ୍ଛ ଉପହୃତ ହେବାର ପ୍ରଚଳନ କରିଅଛନ୍ତି । ଏହା ସାଧାରଣ ଲୌକିକ ପ୍ରତ୍ୟକ୍ଷ ବ୍ୟବହାର । ପୁନଶ୍ଚ ମୟୂର ସର୍ପଭୂକ୍, ଗରୁଡ ସର୍ପକୁଳର ହନ୍ତାରକ; କରଣ ପକ୍ଷୀର ସେହି ପ୍ରଶସ୍ତି ବିଦିତ । କାଳେ ଏହି ମୟୂର ଯେ ବିଶାଳକାୟ ନଥିଲା ଓ ଗରୁଡ ବା ଆଧୁନିକ କରଣ ପକ୍ଷୀ ପରି ବା ତତୋଽଧିକ ରୌଦ୍ରଶକ୍ତିଶାଳୀ ନଥିଲା, ଏହା କିଏ କହିପାରେ ? ବରଂ ପ୍ରକୃତି ସାମଞ୍ଜସ୍ୟ ପ୍ରତି ଲକ୍ଷ୍ୟ କଲେ ଏହି ତିନି ପକ୍ଷୀର ବଂଶଧାରାର ସାମଞ୍ଜସ୍ୟ ଓ ମୟୂର ବିଶାଳକାୟ ଥିବାର ସମ୍ଭବ ବୋଧ ହୁଏ ।୫ - କାଳକ୍ରମେ ଏହି ଜୀବମାନଙ୍କର ଉଦ୍ଭବ ଘଟିଲା । ୬ - ଚିର ଅପସାରଣକାରିଣୀ । ୭ - ବାଷ୍ପୀୟ ଓ ବୈଦ୍ୟୁତିକ ଶକ୍ତି ଓ ପ୍ଲାଟିନମ, ରେଡିୟମ୍ ପ୍ରଭୃତି ଲକ୍ଷିତ । ୮-ଏଭଳି ମହାପୁରୁଷଙ୍କର ଆବିର୍ଭାବ ହିଁ ଆୟୁର୍ବେଦ ବିଜ୍ଞାନର ଚରମ ଲକ୍ଷ୍ୟ । ଅର୍ଥାତ୍ ଆୟୁର୍ବେଦକୁ ପୂର୍ଣ୍ଣ ଆରାଧନା କଲେ ଏଭଳି ମହାପୁରୁଷ ଆବିର୍ଭୂତ ହେବା ସମ୍ଭବ ।

# ମୋହିନୀ

ଗଞ୍ଜିକା ମଦ ରଞ୍ଜିତ ମଞ୍ଜୁଳ ଲୋଚନ
ସୁରଙ୍ଗ, ଆସନ୍ତେ କିମ୍ବା ପ୍ରଭୁ ତ୍ରିଲୋଚନ ?

ବିଭୂତି-ଭୂଷିତ ରମ୍ୟ ରଜତ ଭୂଧର -
ଝରାଉଛି କିମ୍ବା ପ୍ରଭୁ ! ଶ୍ରମ ସ୍ୱେଦ ଝର ?

ଧକ ଧକ ବକ୍ଷ, ଦୋଳେ ପୃଥୁଳ ଉଦର,
ଉଲଙ୍ଗ ମୂରତି ତୁମ୍ଭେ ? ମହାଯୋଗେଶ୍ୱର ।

କାଳ ଫଣୀ ଆନ୍ଦୋଳିତ ବିଶାଳ ଜଟାରେ,
ଚରମେ ଅତନୁ ତର୍ଜେ ଦୁର୍ଜୟ ଛଟାରେ ?

ଅସ୍ଥିର ଅସ୍ଥିର ମାଳା ବକ୍ଷ ଆଲୋଡନେ
ପଦକ୍ଷେପେ ବସୁନ୍ଧରା କମ୍ପଇ ସଘନେ ।

ମୋହିନୀ ମୂରତି ଧରି ପ୍ରକୃତି ଲଳନା
ସମ୍ମୋହନ ମନ୍ତ୍ରେ ଆଜି ପ୍ରକାଶେ ଛଳନା ।

ସୁବର୍ଣ୍ଣ ଝୀନ ବସନ ଆନ୍ଦୋଳେ ଅଧୀରେ
ପ୍ରସାରି ପୁଷ୍ପ ସୁରଭି ମୃଦୁଳ ସମୀରେ ।
ଶୋଭେ ଭାଲେ ସୌର ଶିରୀ ସିନ୍ଦୂରର ବିନ୍ଦୁ
ପଦତଳେ ଖେଳେ ଲୋଟି ବିଶ୍ୱଶୋଭାସିନ୍ଧୁ ।

ଗୁରୁ ଶୁକ୍ର ସମ ଦୋଳେ ଭାସ୍ୱର କୁଣ୍ଡଳ
ଚନ୍ଦନର ବିନ୍ଦୁ ସେ କି ପୂର୍ଣ୍ଣେନ୍ଦୁ ମଣ୍ଡଳ ?

ଉଜ୍ଜ୍ୱଳ ଜ୍ୟୋତିଷ୍କରାଜି ପ୍ରାୟେ ରତ୍ନମାଳା
ଦୋଳଇ ମଞ୍ଜୁଳେ, ଧାଏଁ ସେ ମୋହିନୀ ବାଳା ।

ଅଳକାବତଂସ ସେ କି ତମସ୍ୱିନୀ ଘୋରା -
ଆହ୍ଲାଦୀ, ଉଦାଚୀ ଭୂଷା ଭାସ୍ୱରା ଅରୋରା ? (୧)

କୁଟିଳ କୁନ୍ତଳ ଦୋଳେ ନୀଳ ଘନ ସରି
ଶିରୋଭୂଷା ମୋତିହାର ପଡୁଅଛି ଝରି ।

ପ୍ରକାଶେ କରୁଣା ପ୍ରୀତି ଗଙ୍ଗାଧାରା ସମ,
ଅପାଙ୍ଗେ ଫୁଟାଏ ଫୁଲ ବିଶ୍ୱ ମନୋରମ । (୨)

ଲୀଳା ଅରବିନ୍ଦ କରେ ମୋହନ ଭଙ୍ଗିତେ
ସମ୍ମୋହନ କରେ ହୃଦ ମୋହନ ସଙ୍ଗୀତେ ।

ତାଳେ ତାଳେ ପଦ ଚଳି ଯାଉଅଛି ଧାଇଁ
ବିମୁଗ୍ଧ ଶଙ୍କର ପଛେ ଅଛନ୍ତି ଗୋଡାଇ ।

ଦେଖ ରେ ଜଗତ ଆଜି ପ୍ରଜ୍ଞା ଚକ୍ଷୁ ମେଲି,
ପ୍ରକୃତି ପୁରୁଷ ଦୁହେଁ ଯାଉଛନ୍ତି ଖେଳି ।

ସୁମେରୁ ପ୍ରାନ୍ତରେ ଆଜି ସମ୍ମୋହନ ଲୀଳା,
ଦେଖାନ୍ତି ପ୍ରକୃତିମାତା ବିଶ୍ୱସୃଷ୍ଟିଶୀଳା ।

ବିମ୍ବିତ ସ୍ୱୟମ୍ଭୁ ବିମ୍ବ ହୃଦୟ-ଦର୍ପଣେ,
କରୁଛନ୍ତି ଲୀଳା ମାତା ବିଭୂ-ସନ୍ତର୍ପଣେ ।

ଦେଖନ୍ତି ବିବୁଧବୃନ୍ଦ ନିଜେ ଭଗବାନ
ନାରୀ ରୂପେ ଆକର୍ଷନ୍ତି ବିବୁଧଙ୍କ ମନ ।

ମୋହିନୀ ଶଙ୍କର ରୂପେ ହୋଇ ମୁଗ୍ଧମନା,
ଦେଖାନ୍ତି ରୂପକ ମୋହ ଘୋର ବିଡମ୍ବନା ।

ଗୋଡାଅ ଗୋଡାଅ ପ୍ରଭୁ ମୋହିନୀ ମୋହନ
ସାର୍ଥ ହେଉ ଦେଖି କ୍ଷୁଦ୍ର ତାପସ ନୟନ ।

ଦେଖାଉଛ ଭର୍ଗ ଆଜି କି ଅପୂର୍ବ ଶୋଭା
ଏ ବିରାଟ ବିଶ୍ୱକ୍ଷେତ୍ରେ ପ୍ରାଜ୍ଞ ମନୋଲୋଭା ।

ସୁମେରୁ ଏ ବିଶ୍ୱକେନ୍ଦ୍ର ତୁମ୍ଭେ ମୂଳାଧାର
ଘୋଟିଛି ମହିମା ତବ ନିଖିଳ ସଂସାର ।

ଦେଖୁଛି - ମୋହିନୀ-ବକ୍ଷେ ଗୁରୁ ରତ୍ନହାରେ
ଶିର ଅବତଂସ ଆଦି ସର୍ବ ଅଳଙ୍କାରେ ।

ବିମ୍ବିତ ତୁମ୍ଭରି ବିମ୍ବ ମହାଜ୍ୟୋତିର୍ମ୍ମୟ
ଦେଖନ୍ତି ବିବୁଧବୃନ୍ଦ ବିସ୍ମୟେ ତନ୍ମୟ ।

ଚମକୁଛି ସେ ମୋହିନୀ କୋଟି ଭର୍ଗ ଦେଖି
ହସୁଛି କୌତୁକେ ପୁଣି ଧାଉଁଛି ଉପେକ୍ଷି ।

ନ ପାରିଲ ବ୍ୟୋମକେଶ, ତା ଅଞ୍ଚଳ ଧରି ।
ଲୁଚିଗଲା କେଣେ ତବ ମୋହିନୀ ସୁନ୍ଦରୀ । (୩)

ଶ୍ରାନ୍ତି ହର ଶ୍ରାନ୍ତ ହର ! କଳ୍ପବଟ ତଳେ,
ଭକ୍ତର ଭକ୍ତି ମନ୍ଦିରେ ଲୁଚି ବିଲ୍ୱଦଳେ -

ଆତ୍ମସଂଗୋପନ ଇଚ୍ଛି ଭସ୍ମ ବୋଳି ଅଙ୍ଗେ,
ଅସ୍ଥିମାଳା ମଧ୍ୟେ ଲୁଚି ବସିଥାଅ ରଙ୍ଗେ ।

କଳ୍ପାରମ୍ଭେ ନୀହାରିକା-କୁମାରିକା ନାଟ
ଦେଖାଇ ମୋହିନୀ ମନ କରିବ ଉଚ୍ଚାଟ ।

ଏବେ ଅନୁତପ୍ତ ଭଙ୍ଗୀ ଦେଖାଇ ଜଗତେ
ଲୁଚିବ କି ଲାଜେ ଘୋର ଗହନ ପର୍ବତେ ?

ଦେଖ ପ୍ରଭୁ ! ହୃଦ ମୋର ନିବିଡ ଗହନ
ଅଜ୍ଞାନ-ଅନ୍ଧାରେ ପୂର୍ଣ୍ଣ ନିଭୃତ ନିର୍ଜ୍ଜନ ।

ଆସି ତହିଁ ବସ ବାରେ ପ୍ରଭୁ ନିରଞ୍ଜନ !
ଦିଅ ଚିନ୍ତାମଣି ପଦ ଶାନ୍ତି-ନିକେତନ ।

---

୧ - Aurora borealis

୨ - ଉପମାନ୍‌କୁ ଉପମେୟ ରୂପେ ଗ୍ରହଣ କଲେ ରୂପକ ରହସ୍ୟ ଉଦ୍‌ଘାଟିତ ହୋଇ ପ୍ରକୃତି ଲଳନାର ମାଧୁରୀମୟ ରୂପ ଦୃଷ୍ଟିଗୋଚର ହେବ ।

୩. ପ୍ରଳୟକାଳ ଲକ୍ଷିତ

# କେ ରମଣୀ ?

ଉତ୍କଳନନ୍ଦିନୀ ଭଗ୍ନୀଗଣ !

(ଶଙ୍କରାଭରଣ)

ମହାଘୋର ଅରଣ୍ୟାନୀ ନୀରବ ନିଥର,
କୁସୁମ-ନୟନୁଁ ଝରେ ଲୋତକ-ନିର୍ଝର ଗୋ।
ମକରନ୍ଦ ସେ ନୁହଇ,
ତରୁଡାଳେ ବିହଙ୍ଗମ ନୀରବେ ଝୁରଇ ଗୋ
ନେତ୍ରୁଁ ଲୋତକ ଝରଇ । ୧ ।

ଗଗନେ ଜଳଦଜାଳେ ଲୁଚିଲେ ତପନ,
କି ଘୋର ବିଷାଦଭରେ ଥକିତ ପବନ ଗୋ
ବନଦେବୀ ଝୁରେ ଦୁଃଖେ
ଆକୁଳ କୁରଙ୍ଗକୁଳ ରହାନ୍ତି ବିମୁଖେ ଗୋ
ବନଦେବୀ ଝୁରେ ଦୁଃଖେ । ୨ ।

କଳ କଳ ସ୍ୱନେ କାନ୍ଦେ କ୍ଷୀଣା ଗିରିନଦୀ
କାନ୍ଦଇ ଲତିକା ତରୁ-ବକ୍ଷେ ଶିର ଲଦି ଗୋ
ଦେଖ ମୟୂର ମୟୂରୀ
ଶିରତୋଳି ରହିଁଛନ୍ତି ଦୁଃଖେ ଝୁରିଝୁରି ଗୋ
ଦେଖ ମୟୂର ମୟୂରୀ । ୩ ।

ଝାଇଁ ଝାଇଁ ସ୍ୱନେ ଧରା କାନ୍ଦଇ ବିକଳେ,
ଛିନ୍ନ ବାସେ କେ ଏ ନାରୀ ପଡିଛି ଭୂତଳେ ଗୋ
ଏ ଯେ ରୁକ୍ଷକୁନ୍ତଳିନୀ !
ପଡିଛି କି ତୃଣ-ଶେଯେ ସ୍ୱର୍ଣ୍ଣ କମଳିନୀ ଗୋ
ଏ ଯେ ରୁକ୍ଷକୁନ୍ତଳିନୀ । ୪ ।

ବିଷାଦେ ବଦନ-ଶିରୀ ଥିଲେ ହେଁ ଝାଉଁଳି,
ବସିଛି ସୁଷମା-ଲକ୍ଷ୍ମୀ ଶ୍ରୀଅଙ୍ଗ ସାଉଁଳି ଗୋ
ସୁପ୍ତ ବିଷାଦେ ଚେତନା,

ସୁରଙ୍ଗ ସୁନ୍ଦର ଭାଳେ ସିନ୍ଦୂର ରଚନା ଗୋ
ସୁପ୍ତ ବିଷାଦେ ଚେତନା । ୫ ।

ଜକ ଜକେ ଜଡି ଚୂଡି ବେଢ଼ୁ ମଣିବନ୍ଧ
ସାଧବୀର ତେଜେ ହେବ ମନ୍ଦମତି ଅନ୍ଧ ଗୋ
ଫେଡି ଘନ ବାତାୟନ
ବିଲୋକିଲେ ସତୀ-ଦୁଃଖ ଜଗତନୟନ ଗୋ
ଫେଡି ଘନ ବାତାୟନ । ୬ ।

ଅର୍ପିଲେ ସରାଗେ କର ଦୁଃଖିନୀ ଅଳକେ
ଉଠିଲେ ଶୟନ ତେଜି ସାଧବୀ ପଲକେ ଗୋ
ଧୀରେ ନେତ୍ରଯୁଗ ମଳି
ପୁଣ ପୁଣି ନିରେଖନ୍ତି ଚଉଦିଗ କଳି ଗୋ
ଧୀରେ ନେତ୍ରଯୁଗ ମଳି । ୭ ।

ରହିଛି ଝୀନ ବସନ ବେଢ଼ି ବକ୍ଷକଟି
ଦେଖିଲେ ଅଞ୍ଚଳ ଭାଗ ଯାଇଅଛି କଟି ଗୋ
ଯାହା ଥିଲା ପତି ଅଙ୍ଗେ
ବିସ୍ମୟେ ଘୂରିଲା ଧରା ବିଭ୍ରମ ତରଙ୍ଗେ ଗୋ
ସେ ଯେ ଥିଲେ ପତି ସଙ୍ଗେ । ୮ ।

ଶୋଇଥିଲେ ଶ୍ରମେ ସତୀ ଦଇତ-ଉସଙ୍ଗେ
ପିନ୍ଧିଥିଲେ ଏକବାସ ବେନି ଜନ ଅଙ୍ଗେ ଗୋ
ଏହି ନିଦ୍ରା ନିଶାଚରୀ
ବାଦ ସାଧି ନେଲା ତାଙ୍କ ପ୍ରାଣନିଧି ହରି ଗୋ
ଏହି ନିଦ୍ରା ନିଶାଚରୀ । ୯ ।

କାନ୍ଦିଲେ ବିକଳେ ସତୀ ସ୍ମରି ଦୁଃଖ ଘୋର
କେଣେ ଗଲ ତରୀ ତେଜି କର୍ଣ୍ଣଧାର ମୋର ହେ
ତୁମ୍ଭ ବିନା ପ୍ରାଣତରୀ
ଦୁଃଖ-ସିନ୍ଧୁଜଳେ ଆଜି ଉଠୁଅଛି ଥରି ହେ
ତୁମ୍ଭ ବିନା ପ୍ରାଣତରୀ । ୧୦ ।

ମହାବିଦ୍ୟାବନ୍ତ ତୁମ୍ଭେ ସତ୍ୟଗୁଣଶୀଳ
ତୁମ୍ଭ ନାମ ବଳେ ଜଳେ ଭାସଇ ଶଇଳ ହେ
ସିନ୍ଧୁ ବକ୍ଷେ ହୁଏ ସେତୁ
ଅପାର ଭବସାଗରେ ଉତ୍ତରଣ ହେତୁ ହେ
ସିନ୍ଧୁ ବକ୍ଷେ ହୁଏ ସେତୁ । ୧୧ ।

ତୁମ୍ଭେ ତ ମୋ ଧ୍ରୁବତାରା ନଳ ନରମଣି,
ଚିହ୍ନିବି କେସନେ ଆଜି ଜୀବନ-ସରଣୀ ହେ
ମୁଁ ଯେ ପଥହରା ନାରୀ
ଆକୁଳେ ଦିଗ ବିଦିଗ ନ ପାରୁଛି ବାରି ହେ
ମୁଁ ଯେ ପଥହରା ନାରୀ । ୧୨ ।

ଆସ ଆସ ମୋ ପ୍ରାଣର ଚିନ୍ତାମଣି ଧନ,
ଗ୍ରାସି ଦେଉଅଛି ମୋତେ ଏ ଘୋର ଗହନ ହେ
ବାରେ ରକ୍ଷା କର ଆସି
ଶ୍ରୀଚରଣ ଦାସୀ ପ୍ରାଣୁ ନାଶି ଦୁଃଖରାଶି ହେ
ବାରେ ରକ୍ଷା କର ଆସି । ୧୩ ।

ଶୁଣିଲି ଯେ ଦିନୁଁ ତବ ମହତ୍ତ୍ୱ ଗରିମା
ବଢ଼ିଲା ପ୍ରେମ-ପିପାସା ଲଙ୍ଘି ଧୃତି ସୀମା ହେ
ବ୍ୟାଧି ପକାଇଲା ଘାରି,
ତୁମ୍ଭ ପ୍ରେମବଳେ ଦେଲି ମୃତ୍ୟୁକୁ ନିବାରି ହେ
ବ୍ୟାଧି ପକାଇଲା ଘାରି । ୧୪ ।

ବିରହ-ଅନଳ ବହି ଭୀଷଣ ମୂରତି
ଜନ୍ମାଇଲା ପ୍ରାଣେ ମୋର ଦାରୁଣ ଆରତି ହେ
ନ ପାରିଲା ପ୍ରାଣ ହରି
ଲଙ୍ଘିଲି ସେ ଦୁଃଖ-ସିନ୍ଧୁ ତୁମ୍ଭ ନାମ ସ୍ମରି ହେ
ନ ପାରିଲା ପ୍ରାଣ ହରି । ୧୫ ।

ଦାରୁଣ ବରଷାକାଳେ ସ୍ନାନ ଜଳଘାଟେ
ବସିଥାଏ ନିରନ୍ତରେ ମାନସ ଉଚ୍ଚାଟେ ହେ
ସେ ପରମ ହଂସ ଆସି
ଢ଼ାଳିବାକୁ କର୍ଣ୍ଣେ ପୁଣି ତବ ଗୁଣରାଶି ହେ
ସେ ପରମ ହଂସ ଆସି । ୧୬ ।

ଲଭିଲି ମୁଁ ଅଭାଗିନୀ ତୁମ୍ଭର ଚରଣ,
ଦେବାପାଇଁ ପ୍ରାଣେ ତବ ଦାରୁଣ କଷଣ ହେ
ମୋହପାଇଁ କେତେ ଦୁଃଖ
ସହିଲ ଏ ବନେ ପ୍ରଭୁ, ନହୋଇ ବିମୁଖ ହେ
ମୋହପାଇଁ କେତେ ଦୁଃଖ । ୧୭ ।

ରାଜସିଂହାସନ ତେଜି ଭ୍ରମିଲ କାନନେ,
ଫୁଟିଗଲେ କଣ୍ଟା ତବ କମଳଚରଣେ ହେ
ଭାଳୁଥାଏଁ ନେତ୍ରଜଳେ
ବକ୍ଷ ପାତି ନ ଦେଲି ମୁଁ କିମ୍ପା ପଦତଳେ ହେ
ଭାଳୁଥାଏଁ ନେତ୍ରଜଳେ । ୧୮ ।

ମନେ ହେଉ ନାହିଁ କେବେ କହି କଟୁ କଥା
ଦେଇଛି କି ଦାସୀ ତବ ମହାପ୍ରାଣେ ବ୍ୟଥା ହେ
ତୁମ୍ଭେ କ୍ଷମା-ପାରାବାର
ତୁମ୍ଭ ବିନା ମଣେ ପ୍ରାଣ ସଂସାର ଅସାର ହେ
ଆହେ କ୍ଷମା-ପାରାବାର । ୧୯ ।

ପତି ଅବଳାର ବଳ, ପତି ଧୃତି ଗତି
ପତି ବିନା ମରୁଭୂମି ନିଖିଳ ଜଗତୀ ହେ
ପତି ବାଞ୍ଛାକଳ୍ପତରୁ
ପତି-ପଦୁଁ ଝରେ ସୁଧା ଭେଦି ଭବମରୁ ହେ
ପତି ବାଞ୍ଛାକଳ୍ପତରୁ । ୨୦ ।

କାହିଁ ଭବେ ପତିଦ୍ରୋହୀ ଅବଳାର ଗତି
ପତିପ୍ରେମେ ବହେ ନାରୀ ଅମରୀ ମୂରତି ହେ
ପୁଣ୍ୟ ସତୀତ୍ୱ-ରତନେ
ଉଦ୍ଘଳଇ ମୁକ୍ତିପଥ ପରମ ଯତନେ ହେ,
ପୁଣ୍ୟ ସତୀତ୍ୱ-ରତନେ । ୨୧ ।

ପତି ଦିଏ ପୁତ୍ରଧନେ ନରକ ନିବାରି
ପତିସ୍ନେହେ ସୋହାଗିନୀ ଭାଗ୍ୟବତୀ ନାରୀ ହେ
ସେ ଯେ ପୁଣ୍ୟ ଶତଦଳ
ନାରୀହୃଦ-ସରେ ପତି-ଚରଣଯୁଗଳ ହେ
ସେ ତ ପୁଣ୍ୟ ଶତଦଳ । ୨୨ ।

ରାଜଭୂତି ତେଜି ହେଲ ପଥର ଭିଖାରୀ
ଭାଗ୍ୟବଳେ ସେବୁଥିଲି ହୋଇ ଅନୁଗ୍ରାରୀ ହେ
ମୋର ଫୁଟାଇ ନୟନ
ନେଲା କେ ଅଞ୍ଚଳ ସଙ୍ଗେ ଅଞ୍ଚଳ-ରତନ ହେ
ମୋର ଫୁଟାଇ ନୟନ । ୨୩ ।

ପ୍ରତେ ହେଉ ନାହିଁ ମୋତେ ଯାଇଅଛ ଛାଡ଼ି
କି ଚତୁରୀ ଖେଳାଉଛ ଇନ୍ଦ୍ରଜାଲ କାଢ଼ି ହେ
ଦିଶୁଅଛ ଚଉପାଶେ
ଝଲକି ମୋ ଆଶା ପୁଣି ବୁଡ଼ୁଛି ନିରାଶେ ହେ
ଦିଶୁଅଛ ଚଉପାଶେ । ୨୪ ।

ଦାସୀ ଦୁଃଖେ ଦୟା ବହି ବୃକ୍ଷ ଅନ୍ତରାଳେ
ଦେଖା ଦେଇ କିମ୍ୱା ପୁଣି ଲୁଚୁଛ ଉହ୍ଲାଳେ ହେ
ମୁଁ ଯେ ବୁଦ୍ଧିହୀନା ନାରୀ
ଏ ଦୁଃଖ-ଜଞ୍ଜାଳଜାଲୁ କେହ୍ନେ ହେବି ପାରି ହେ
ମୁଁ ଯେ ବୁଦ୍ଧିହୀନା ନାରୀ । ୨୫ ।

ସଦା ପୂତ ସଦାଚାରେ ତୁମ୍ଭର ହୃଦୟ
ଧରା ଦୁଃଖ ବିନାଶନେ ତୁମ୍ଭର ଉଦୟ ହେ
ସହି ଏ ଘୋର କଷଣ
ଦେଖାଉଛ ଅବିଚଳ ସତ୍ୟନିଷ୍ଠାପଣ ହେ
ସହି ଏ ଘୋର କଷଣ । ୨୬ ।

ଉତ୍କଳ ଗରିମା ଆଗୋ ! ମୋ ଭଗିନୀଗଣ !
ଦେଖ ରାଜରାଣୀଙ୍କର ଏ ଘୋର କଷଣ ଗୋ
ଦମୟନ୍ତୀ ଘୋର ବନେ,
ଘୋର ଦୁଃଖେ ପତିତ୍ୟକ୍ତା ବ୍ୟଥିତ ଜୀବନେ ଗୋ
ଦମୟନ୍ତୀ ଘୋର ବନେ । ୨୭ ।

ଦୁଃଖେ ହୋଇ ଜରଜର ଆଜ ରାଜରାଣୀ
ନ ଭାଷନ୍ତି ପଦେ ମାତ୍ର ପତି-ନିନ୍ଦା-ବାଣୀ ଗୋ
ନାହିଁ ଭକ୍ତି ଊଣା ଲେଶେ,
ଦୀନା ଭିଖାରୁଣୀଠାରୁ ହୀନା ହୋଇ ବେଶେ ଗୋ
ନାହିଁ ଭକ୍ତି ଊଣା ଲେଶେ । ୨୮ ।

ସୁଷମା ଜଗତେ ବିଶ୍ୱେ ନାରୀ-ସୃଷ୍ଟି ସାର
ନାରୀହିଁ ଅଟଇ ଧରା-ଶିର-ଅଳଙ୍କାର ଗୋ
ନାରୀ ସତୀତ୍ୱର ଜ୍ୟୋତି
ନାରୀର ପରମ ଶୋଭା ଜିଣି ହୀରା ମୋତି ଗୋ
ନାରୀ ସତୀତ୍ୱର ଜ୍ୟୋତି । ୨୯ ।

ନାରୀ ପୁଣ୍ୟ ତେଜେ ଯହିଁ ପାଳଇ ସଂସାର
ପଶି ନ ପାରଇ ତହିଁ ପାପ ଦୁରାଚାର ଗୋ
ପୁଣ୍ୟ ସ୍ୱରଗ ସୁଷମା,
ପ୍ରକାଶଇ ସେ ସଦନେ ଛବି ଅନୁପମା ଗୋ
ପୁଣ୍ୟ ସ୍ୱରଗ ସୁଷମା । ୩୦ ।

ସୁଖଦୁଃଖେ ପରସ୍ପରେ ସାହା ସତୀ ପତି
ନିର୍ମ୍ମଳ ପ୍ରଣୟ କରେ ଜନ୍ମାନ୍ତର ଗତି ଗୋ
ସେ ଯେ ପୁଣ୍ୟ ଗଙ୍ଗାଝର
ପବିତ୍ର କରଇ ସଦା ଜଗତ ଅନ୍ତର ଗୋ
ସେହି ପୁଣ୍ୟ ଗଙ୍ଗାଝର । ୩୧ ।

ଏକମୁନା ତୀର ଏକସ୍ରୋତ କଲ୍ଲୋଳିନୀ
ଜାଣିଛ ତ ହୁଏ କେତେ ଶକତିଶାଳିନୀ ଗୋ
ଏକସ୍ରୋତ ପ୍ରେମବଳ
ଜିଣଇଁ ଦାମିନୀ ଦ୍ୟୁତି ଶମନ ଅନଳ ଗୋ
ଏକସ୍ରୋତ ପ୍ରେମବଳ । ୩୨ ।

ସେହି ପ୍ରେମବଳେ ଆଜି ଦମୟନ୍ତୀ ଧନୀ
ସହିଲେ କାନନେ ଦୁଃଖ ଦାରୁଣ ଅଶନି ଗୋ
ଦୁଃଖ ତୁଲେ ଧୃତି ବହି
କଟାଇଲେ ଦୁର୍ବିପାକ ପିତୃବାସେ ରହି ଗୋ
ଦୁଃଖ ତୁଲେ ଧୃତି ବହି । ୩୩ ।

ସତୀତ୍ୱର ପୁଣ୍ୟ ଶକ୍ତି ଆକର୍ଷଣ ବଳେ
ଲଭିଲେ ଅଞ୍ଚଳନିଧି ପୁଣ୍ୟ ସ୍ୱ ଅଞ୍ଚଳେ ଗୋ
ସୁଖେ ରାଜ-ସିଂହାସନେ
ବିରାଜିଲେ ମଣ୍ଡି ଶିର ଗୌରବ ରତନେ ଗୋ
ସୁଖେ ରାଜ-ସିଂହାସନେ । ୩୪ ।

ଘେନ ମୋ ଭଉଣୀମାନେ ତାଙ୍କରି ଗରିମା,
ସତୀତ୍ୱର ପୁଣ୍ୟତେଜ ପ୍ରେମର ମହିମା ଗୋ
ତୁମ୍ଭେ ଲଳନାରତନ,
କର ମାତୃବକ୍ଷ ପୁଣ୍ୟ ଶାନ୍ତି-ନିକେତନ ଗୋ
ତୁମ୍ଭେ ଲଳନା-ରତନ । ୩୫ ।

---

(* ଦମୟନ୍ତୀଙ୍କର ଯେଉଁ ଚିତ୍ର ଅଙ୍କିତ ହେଲା, ତାହା ଗ୍ରହଣ କର ଅର୍ଥାତ୍ ପଠନ କର, ଏହାହିଁ ଲେଖକର ପ୍ରାର୍ଥନା)

# ସତୀତ୍ୱର ମହିମା

ବିରାଜେ ସରଯୂ ତୀରେ ସାକେତ ନଗରୀ
ରଘୁକୁଳ ରାଜଧାନୀ ବୀର୍ଯ୍ୟ ଗଉରବେ,
ଅତୁଲ୍ୟ ବୈଭବେ ଭବେ ଧରା ଅଧୀଶ୍ୱରୀ
ପ୍ରମୋଦିତ ନିଜ କୀର୍ତ୍ତି ପଙ୍କଜ ସୌରଭେ ।

ଅଭିରାମ ରାଜଦଣ୍ଡ ରାମଚନ୍ଦ୍ରଙ୍କର
ସତ୍ୟ ନ୍ୟାୟ ଶାନ୍ତି ଜ୍ୟୋତ୍ସ୍ନା ପ୍ରକୃତି ଜୀବନେ,
ସଞ୍ଚାରି ରୁଚିରେ ପୁଣ୍ୟ ଧର୍ମ୍ମକ୍ଷେମଙ୍କର -
ପ୍ରସାରିଛି ଅକଳଙ୍କ କୀରତି କେତନେ ।

ଅନାଚାର ମୂର୍ତ୍ତିମନ୍ତ ତମୋମଦେ ଅନ୍ଧ
ସୃଷ୍ଟି ରିଷ୍ଟ ଦୁଷ୍ଟ ଦୈତ୍ୟେ ବିନଷ୍ଟ ଯା ବଳେ
ତପୋନିଷ୍ଠ ମହାବୀର୍ଯ୍ୟଦୃପ୍ତ ଦଶସ୍କନ୍ଧ
ଲୋଟାଇଲା କିରୀଟ ଯା କଟାକ୍ଷେ ଭୂତଳେ ।

ଶାନ୍ତି-ଗନ୍ଧସାର ବୋଳି ବସୁନ୍ଧରା-ଅଙ୍ଗେ
କୁଳକୃତ୍ୟ ଅନୁସରି ଯୋଗ୍ୟ ନିଯୋଜନେ
ପାତ୍ର-ମିତ୍ର-ଭ୍ରାତୃ-ମନ୍ତ୍ରୀ ଘେନି ନିଜ ସଙ୍ଗେ
ନିରତ ରାଜେନ୍ଦ୍ର ଆଜି ଯଜ୍ଞ ଆୟୋଜନେ ।

ବାଜଇ ମଙ୍ଗଳ ବାଜା ତ୍ରାସି ବୈରି-ହୃଦ,
ସମାଗତ ସିଦ୍ଧ ସାଧୁ ମୁନି ଋଷିଗଣ,
ଦର୍ଶକ ଯାଚକକୁଳ ନିଜ ପ୍ରଜାବୃନ୍ଦ,
ଯାଜ୍ଞିକ ଋତ୍ୱିକ ହୋତା ଉଦ୍‌ଗାତା ବ୍ରାହ୍ମଣ ।

କଷାୟ କୌଷେୟ ବାସେ ଆବରି ଶ୍ରୀଅଙ୍ଗ
ପ୍ରାଣପ୍ରିୟା ସାଧ୍ୱୀ ସତୀ ସୁବର୍ଣ୍ଣପ୍ରତିମା
ଲୋକନେ ନିରୁଦ୍ଧ ଅଶ୍ରୁ, ସୁଧୀର, ସୁରଙ୍ଗ -
ନୟନେ ଦେଖନ୍ତି ରାମ ପ୍ରକୃତି-ଲଘିମା ।

ଅଚ୍ଛେଦ୍ୟ ଧୈର୍ଯ୍ୟ-ରଜ୍ଜୁରେ ଚିତ୍ତବୃତ୍ତ ରୋଧି
କର୍ତ୍ତବ୍ୟର ଅବତାର, ଧୂର୍ତ୍ତ ଅପବାଦେ
ମୂର୍ତ୍ତିମନ୍ତ ତ୍ୟାଗମନ୍ତ୍ରେ ପ୍ରଜାଜନେ ବୋଧି
କର୍ତ୍ତବ୍ୟେ ନିରତ, ସୀତା-ବିଚ୍ଛେଦ-ବିଷାଦେ ।

ସମାରୋହେ ଯଜ୍ଞ ସଭା ଆଜି 'ଗହଗହ'
ଯୋଗ୍ୟାସନେ ଅବହିତ ଧୀରେନ୍ଦ୍ର ରତନ,
ଋତ୍ୱିକାଦି ଜନେ ବ୍ୟସ୍ତ କର୍ମେ ଅହରହ
ଆଚମ୍ବିତେ ସମ୍ଭ୍ରମିତ ଜନତା-ନୟନ ।

ଅବଦାତ ପୁଣ୍ୟ ଜ୍ୟୋତ୍ସ୍ନା ଗମ୍ଭୀରେ ବିଳସି
ଆସଇ କି ଲୋଟି ଧୀରେ ରାମ ଯଜ୍ଞସ୍ଥଳେ ?
ପ୍ରତିପଦେ ବସୁନ୍ଧରା ଉଠଇ ଉଲ୍ଲସି
ଫୁଟଇ କି ପ୍ରତିପଦେ ସ୍ନିଗ୍ଧ ଶତଦଳେ ।
କଷାୟ ମଳିନ ଦୀନ ଝୀନ ବାସେ ତନୁ
ଆବରି ସଞ୍ଚରେ କି ରେ ସ୍ଥିର ସୌଦାମିନୀ,
ଝରେ କି କରୁଣା-ମୋତି ବାରୁଣୀ ନୟନୁଁ
ସାୟାହ୍ନେ ଧରଣୀ-ଦୈନ୍ୟଦୁଃଖେ ବିଷାଦିନୀ ।

ବିରାଜ ବିରାଜ ଆଜ ରାମ ଯଜ୍ଞସ୍ଥଳେ
ରାମଚନ୍ଦ୍ର-ପୁଣ୍ୟ ଜ୍ୟୋତ୍ସ୍ନା ଆନନ୍ଦ ପ୍ରତିମା !
ଦେଖ ହିରଣ୍ମୟୀ ମୂର୍ତ୍ତି ଧୌତ ଲଜ୍ଜାଜଳେ
ତୋ ପ୍ରଭା ପ୍ରଭାବେ ମା ଗୋ ! ଭଙ୍ଗେ ପାଣ୍ଡୁରିମା ।

ଦୁର୍ଦ୍ଦାନ୍ତ ଦାନବ ଶକ୍ତି ଉପେକ୍ଷଣ ଦକ୍ଷ -
ଧୈର୍ଯ୍ୟର ହିମାଦ୍ରି ରାମ ଆଜି ତୋ ବିଚ୍ଛେଦେ
ରୁଦ୍ଧାଶ୍ରୁ ନୟନ ମା ଗୋ ପ୍ରକମ୍ପିତ ବକ୍ଷ
କର୍ତ୍ତବ୍ୟ ସାଧନ୍ତି ମାତ୍ର ଗୁପ୍ତ ଚିତ୍ତଖେଦେ !

ସୁତୀକ୍ଷ୍ଣ ରାବଣ ବାଣ ଜିଣି, କ୍ଷୁରଧାରେ
କର୍ତ୍ତଇ ହୃଦୟ ତାଙ୍କ, ବିଚ୍ଛେଦ-ଯାତନା
ଛିନ୍ନ ସେ ସୁଷୁମ୍ନା ବକ୍ଷ ସିକ୍ତ ରକ୍ତଧାରେ
ଦିଅ ମା ! ଅଞ୍ଚଳେ ପୋଛି, ଦିଅ ମା ! ସାନ୍ତ୍ୱନା !

ଏ କି ରାମ ଧୀରମଣି ।। ବୀରଅବତଂସ ।।।
ପ୍ରକୃତିର ବକ୍ଷୁ ଝରି ଗରଳ ନିର୍ଝର,
ସଞ୍ଚରି ତୂମ୍ବରି ନେତ୍ରେ, ଧୈର୍ଯ୍ୟ କରି ଧ୍ୱଂସ
କରେ ପ୍ରକମ୍ପନ ତବ ସୁରଙ୍ଗ ଅଧର ।

ରୁଦ୍ଧ କର ଏ ଉଚ୍ଛ୍ୱାସ ବୀରେନ୍ଦ୍ରମୁକୁଟ !
ଯେ ଭାବ ଉନ୍ମେଷ ତବ ଫୁଟୁଛି ନୟନେ,
ନ ଢ଼ାଳ ଏ ପାରିଜାତ ବକ୍ଷେ କାଳକୂଟ,
ମୂର୍ତ୍ତିମତୀ ଆର୍ଯ୍ୟ-ଶିରୀ ନ ଜାଳ ଜ୍ୱଳନେ !

ନ ପାରିଲ ରୋଧି ପ୍ରଭୋ ! ପଲ୍ଲବ-ଅଧର ?
ବିଭେଦି ଉଦ୍‌ଗାତା ବାଣୀ ରୁକ୍ଷକୁନ୍ତଳିନୀ ?
ଭାଷନ୍ତି ରାଜେନ୍ଦ୍ର : ଅୟି ଜନକ-ଦୁଲଣୀ !
ରୁକ୍ଷ ରକ୍ଷସ୍ପର୍ଶ ମିଥ୍ୟା କଳଙ୍କ-କାଳିମା
ଫୁଟାଇଛି ସତୀତ୍ୱର ଦୀପ୍ତି ଅତୁଳନା
ଘୋଷୁଛି ଅବାଚୀ ଅବଧି ତୋ ପୁଣ୍ୟ ଗରିମା ।

ସତୀତ୍ୱର ପୁଣ୍ୟତେଜେ ସଂହିତ ଚେତସି !
ଅନ୍ତରେ ଦାମିନୀ ଦ୍ୟୁତି ପ୍ରତିଭା ନଳିନ
ଅଙ୍ଗ ଆଲିଙ୍ଗନେ ରାଜେ ବାହ୍ୟେ ପ୍ରାଚେତସୀ
ନ ପାରିଲା ବହ୍ନି କରି ତୋ ପ୍ରଭା ମଳିନ ।

ଅର୍ଚ୍ଚିଲା ସପ୍ତାର୍ଚ୍ଚି ତୋର ଚରଣଯୁଗଳ,
ସୁଧାସ୍ନିଗ୍ଧ ଶୀତକରେ, ସୁବର୍ଣ୍ଣ ଆସନେ,
ସମର୍ପିଲା ମହିମାର ସୁବର୍ଣ୍ଣ ଆସନେ,
ସମର୍ପିଲା ମହିମାର ସ୍ୱର୍ଣ୍ଣ ଶତଦଳ
ମଞ୍ଜୁଳ ଅଳକେ ତୋର, ଦେଖିଛି ନୟନେ ।

ପୁଣ୍ୟନିଧି ବାଲମୀକ ତାପସସତ୍ତମ
ତୋ ମହିମା-ପାରିଜାତ ଅମର୍ତ୍ତ୍ୟ ଭାସ୍ୱର-
ସୁଷମା, କଳୁଷାଳୁନ, ସ୍ନିଗ୍ଧ ଅନୁପମ
କରାଇଅଛନ୍ତି ଜନ-ନେତ୍ରେ ସୁଗୋଚର ।

ତେବେହେଁ କଟାକ୍ଷ ତୀର ଜିହ୍ମ ଭୃରୁ ଭେଦି
ଆସଇ ଜନତାରଣ୍ୟୁ ତୀବ୍ର ଜ୍ୱାଳାମୟ
ରାଜ-ସିଂହାସନେ ମୋର ମର୍ମତନ୍ତୁ ଛେଦି
ଦାରୁଣ ସନ୍ତାପେ ପ୍ରାଣ କରଇ ଅଥୟ ।

ଯେ ମହିମା ଶତଦଳ ତୋ ଘରୁ ଅଳକେ
ଅବାଚୀ ଅର୍ଣ୍ଣବ ତଟେ ଖଞ୍ଜିଲେ ଅନଳ,
ଦେଖାଇ ସେ ପୁଣ୍ୟ କଞ୍ଜ, ମଞ୍ଜୁଳ ଝଲକେ
ପ୍ରଜାମନ ରଞ୍ଜି, କର ମୋ ବକ୍ଷ ଶୀତଳ ।

କି କହିଲ, କି କହିଲ ରଘୁ-କୁଳମଣି !
ଚଳିଲା ବିଶ୍ୱାସହନ୍ତୀ କେସନେ ରସନା ?
ଉଠିଲା ପ୍ରବଳ ବାତ୍ୟା କମ୍ପାଇ ଧରଣୀ,
ବ୍ୟାକୁଳେ ଦିଗବଧୂ ଦେଖ ବିସ୍ରସ୍ତବସନା ।

ଉତ୍ତାଳ ତରଙ୍ଗ ତୋଳି ଗିରୀନ୍ଦ୍ରକୁ ବଳି
ପିଟିଦିଏ ତଟେ ଶିର କ୍ରୁଦ୍ଧ ରତ୍ନାକର,
ପଡିଲା ହିମାଦ୍ରି ଗିରି ତୁଙ୍ଗ ଶୃଙ୍ଗ ଟଳି,
ଲୁଚିଲେ ଜଳଦଜାଳେ ନଭେ ବିଭାକର ।
ସ୍ତମ୍ଭିତ ତରଙ୍ଗ ଗଙ୍ଗା କ୍ଷୋଭେ ରୋଷେ ଫୁଲି
ଶମନଭଗିନୀ କ୍ରୋଧେ ଉଦ୍ଭ୍ରାନ୍ତ ଗମନେ-
ଧାମଇଁ ପ୍ରଖରେ, ଦେଖ ମେରୁ ହେଲା ଧୂଳି
ଫାଟିଲା ପାଷାଣ ବକ୍ଷ କୂର ଆଯୋଘନେ ।

ଭାଳନ୍ତି ଅନ୍ତରେ ସତୀ:-(କି ମୋହ-ସାଗରେ
ନିମଜ୍ଜିତ ଧରାବାସୀ ଅଜ୍ଞାନ-ତମସେ,
ମଳିନ ଚିତ୍ତ-ମୁକୁର ସନ୍ଦିଗ୍ଧ 'ଦାଗ'ରେ
ନ ଫଳେ ବିମଳ ବିମ୍ବ ଦୁର୍ବଳ ମାନସେ) ।

ଅବଧାରି କର୍ତ୍ତବ୍ୟର ପନ୍ଥା ସୁନିର୍ମଳ,
ନିରୋଧି ଅନ୍ତର-ବହ୍ନି, ନିରୋଧି ସନ୍ତ୍ରମେ,
ନିସ୍ତବ୍ଧ ମୁହୂର୍ତ୍ତେ; ରାମ-ଚରଣଯୁଗଳ
ପୂଜିଲେ ହୃଦୟ-ପଦ୍ମେ ଅଟଳ ସଂଯମେ ।

ବିଲୋକିଲେ ଥରେ ସତୀ ଶ୍ରୀରାମ ବଦନ
ଅର୍ଦ୍ଧ ଉନ୍ମୀଳିତ ନେତ୍ରେ ଶୁଦ୍ଧା ମେଧାବିନୀ,
ଅନ୍ତରେ ବାହାରେ ରାମ ରାଜୀବ-ଲୋଚନ
ରାମ-ସରେ ବିକଶିତା ସୀତା-କମଳିନୀ ।

ଭାଷିଲେ ସଧୀରେ - "ପ୍ରଭୋ ରବିବଂଶ-ରବି !
ଆରାଧ୍ୟ ଦେବତା ତୁମ୍ଭେ ଚିନ୍ତାମଣି ମୋର
ପ୍ରତି ଅଣୁ କେନ୍ଦ୍ରେ ମମ ତବ ସୌମ୍ୟଛବି
ବିଭାସି, ନାଶଇ ଦୂରୁଁ ତମସ୍ତାପ ଘୋର ।

ନିରନ୍ତର ସେହି ମୂର୍ତ୍ତି ଶୟନେ ଜାଗରେ
ସମ୍ପଦେ ବିପଦେ ବହି ହୃଦୟ-କମଳେ,
ନଗରେ କାନନେ ନଗେ ଗଗନେ ସାଗରେ
ପୂଜିଛି ସେ ପଦ ସଦା ମୋ ନୟନ-ଜଳେ ।
ଜୀବନ-ନିକୁଞ୍ଜେ ମୋର ବାଜୁଅଛି ସିନା
ନିରନ୍ତର ରାମ-ବଂଶୀ ସୁମଧୁର ସ୍ୱରେ,
ରାମପଦ ସୁମଞ୍ଜୁଳ ଶତଦଳ ବିନା
ଫୁଟି ନାହିଁ ଅନ୍ୟ ଫୁଲ ମୋ ହୃଦୟ-ସରେ ।

ସତ୍ୟ ଏ ବଚନ, ସାକ୍ଷୀ ସୂର୍ଯ୍ୟ ଚନ୍ଦ୍ର ତାରା
ଦିବସ ଯାମିନୀ କାଳ ଅନଳ ପବନ,
ଅନ୍ତରେ ହୃଦୟ, ବାହ୍ୟେ ନେତ୍ର-ରଶ୍ମିଧାରା
ନିମ୍ନେ ବସୁନ୍ଧରା, ଉର୍ଦ୍ଧ୍ୱେ ଜୀମୂତବାହନ ।

ସ୍ୱାନ୍ତାସନେ ଅଭିରାମ ରାମ-ପ୍ରତିଛବି
କରୁଛି ନିରତେ ଯେବେ ମୋ ହୃଦ ପାବନ,
ସତୀତ୍ୱର ତେଜେ ତୁଚ୍ଛ ଶଙ୍କା ପରାଭବି
ଏ ମିଥ୍ୟା କଳଙ୍କ-କାଳି କରିବି କ୍ଷାଳନ ।

ସତ୍ୟ ହିଁ ସହାୟ ମୋର, ବିଶ୍ୱ ବହ୍ନିରାଶି
ପରାଭୂତ ତେଜେ ଯାର, ସେହି ସତ୍ୟବଳେ
ନାରୀର ସତୀତ୍ୱ ତେଜ ଉଠିବ ଉଭାସି
ନବ ଶିକ୍ଷା ପ୍ରସରିବ ଆଜି ଧରାତଳେ ।

ମିଥ୍ୟା-ପଙ୍କେ ବୁଡ଼ିଗଲେ ସତୀତ୍ୱ ଗରିମା
ପ୍ରଣୟ-ଜାହ୍ନବୀଧାରା ହେବ କଳୁଷିତା,
ବ୍ୟାପିଯିବ ଧରା-ବକ୍ଷେ କଲ୍ମଷ-କାଳିମା
ବିଶ୍ୱମତୀ ସୃଷ୍ଟି ହେବ ଦୁଃଖେ ନିମଜ୍ଜିତା ।

ତବ ପ୍ରେମ-ପୁଣ୍ୟସ୍ପର୍ଶେ ରଘୁକୁଳ-ମଣି ।
ଅମଳ ଅନଳ-ଦତ୍ତ ଯେବେ ସେ କମଳ,
ଫାଟିଯାଉ ମିଥ୍ୟାବାଦେ ଆଜି ଏ ଧରଣୀ
ଲଭୁ ଏ ଦୁଃଖିନୀ ମାତୃକୋଳ ସୁକୋମଳ ।

ବିଭ୍ରମେ ଭ୍ରମିଲା ଧରା, ସ୍ତମ୍ଭିତ ଅନିଳ,
ସ୍ତମ୍ଭିତ ବାରିଧି ଊର୍ମି ସ୍ତମ୍ଭିତ ବାଡବ
ସ୍ତମ୍ଭିତ ଯମୁନା ବକ୍ଷ ଉଲ୍ଲୋଳ ଫେନିଳ
ଶୁଭିଲା ସହସା ନଭେ ନିର୍ଘାତ ଭୈରବ ।
ଫାଟିଗଲା ସର୍ବଂସହା, ଦେବୀ ବସୁନ୍ଧରା
ସତୀତ୍ୱ ଗରିମାମୟ ହୈମ ସିଂହାସନ,
ମଣ୍ଡି ସତୀ-ପଦାମ୍ବୁଜେ, ବାତ୍ସଲ୍ୟକାତରା
ନେଲେ ସେ ଅମୂଲ୍ୟ ବସ୍ତୁ ସ୍ୱବକ୍ଷେ ଯତନେ ।

ବିସ୍ମୟେ ଜନତା ସ୍ତବ୍ଧ, ରୁଦ୍ଧାଶ୍ରୁନୟନ
ଆତ୍ମକୃତ ଅପରାଧ ହୋଇ ମୂର୍ତ୍ତିମନ୍ତ;
ଉତପ୍ତ କର୍ତ୍ତରୀ ଘେନି କର୍ତ୍ତିଲା ଜୀବନ,
ପୈଶାଚିକ ବେଶ ବହି ଦାରୁଣ ଦୁରନ୍ତ ।

ଛିନ୍ନ ହେଲା ଭାରତୀର ବୀଣାତନ୍ତ୍ରରାଜି,
ଭିନ୍ନ ହେଲା ତୂମ୍ବୀଯୁଗ ପଡ଼ିଲା ଭୂତଳେ,
ଖିନ୍ନ ହେଲା ସିଦ୍ଧ ମୁନି ଋଷି ବକ୍ଷ ଆଜି,
କ୍ଲିନ୍ନ ହେଲା ପୁଣ୍ୟଜ୍ୟୋତ୍ସ୍ନା ଦିବୌକସଦଳେ ।

ନିର୍ନିମେଷ ଊର୍ଦ୍ଧ୍ୱନେତ୍ରେ ଭାଳନ୍ତି ଶ୍ରୀରାମ -
ପ୍ରକୃତିର ମୋହ ସତେ ହେବ ଉନ୍ମୂଳିତ
ସତୀତ୍ୱର ତେଜ, ନାରୀଧର୍ମ ଅଭିରାମ
ସତୀର ଏ ପ୍ରତିଶୋଧେ ହେବ ଉଦ୍‌ବୋଧିତ ?

ଥିଲେ ହେଁ ତାମସୀ ଗର୍ଭେ ଭାସ୍ୱର ତପନ
ହୁଏ କି ମଳିନତେଜା ତେଜି ଦୀପ୍ତିରାଶି ?
ନ କରେ କି ତମୋରାଶି ଦୂରେ ପଳାୟନ ?
ନ ଚିହ୍ନିଲେ ମୁଗ୍ଧ ଆଜି ବସୁନ୍ଧରାବାସୀ !

ହେବ କି ନିର୍ମ୍ମଳ ମର୍ତ୍ତ୍ୟ ହୃଦୟ ଦର୍ପଣ ?
ଚିହ୍ନିବି କି ସତ୍ୟସତ୍ତା ପ୍ରତିବିମ୍ବ ଦେଖି ?
କରିବ କି ସତୀ ପଦେ ଭକ୍ତି ସମର୍ପଣ
କିଳିଷ ଅସୂୟାଶଙ୍କା ମାନସୁ ଉପେକ୍ଷି ?

ପୂଜିବ କି ପ୍ରୀତିଭରେ ସତୀତ୍ୱ ରତନ ?
ହେବ କି ଧରଣୀ ପୂର୍ଣ୍ଣ ଶାନ୍ତି-ନିକେତନ ?

## ଛିନ୍ନତନ୍ତ୍ର ବୀଣାର ତାନ

ଜ୍ଞାନସିନ୍ଧୁ ବାଲମୀକ ବୃଦ୍ଧ ତପୋଧନ !
ବିଷର୍ଣ୍ଣ କି ଘେନି ତବ ପ୍ରସନ୍ନ ବଦନ ?
ତୁମ୍ଭ କୂଳେ କ୍ଷୁଦ୍ର କୀଟ ମୁହିଁ ଅର୍ବାଚୀନ
ଅଜ୍ଞାନ-ତମସେ ଅନ୍ଧ, ପୁଣ୍ୟ-ଧନେ ଦୀନ ।

ଧରି ତବ ପୂତପଦ କରଇଁ ବିନତି,
କହ କହ ପିତାମହ ସେ ପୁଣ୍ୟ ଭାରତୀ ।

ଦୁରନ୍ତ ଦୁଷ୍କୃତି ସାଧି ନବୀନ ଯୌବନେ
ପୁଣ୍ୟସ୍ପର୍ଶେ ଆତ୍ମକୃତି ବିଲୋକି ନୟନେ;
ଦୁଷ୍କର ତପସ୍ୟା ଚରି ଅଜିନ ଆସନେ
ଅଟଳେ ସମାଧି ବଳେ ବୃଜିନ ନାଶନେ;
ଚିତ୍ତ ଲୟେ ସମାଶ୍ରୟି ବଲ୍ମୀକ ମନ୍ଦିର
ସମାହିତ କଲେ ତବ ତାମସ ଶରୀର ।

ସାଧ୍ୱୀ ସୁକୁମାରୀ ତବ ମାନସ-ନନ୍ଦିନୀ
ସତୀତ୍ୱ ଗରିମା ସ୍ନିଗ୍ଧ ସୁଧା ନିସ୍ୟନ୍ଦିନୀ;
କଳୁଷ ଅଳୁନ ପୁଣ୍ୟ ମହିମାକମଳ

ଅମର୍ତ୍ତ୍ୟ ବିଭା-ବୈଭବେ ହୋଇ ଢଳଢଳ-
ମଣ୍ଡିଲା ମଞ୍ଜୁଳେ ଯାର ସୁନୀଳ ଅଳକ
ସଞ୍ଚାରି ଅବନୀ ଅଙ୍ଗେ ପାବନ ପୁଳକ;
ଯାର ପୁଣ୍ୟ ହିରଣ୍ୟାଂଶୁ ଭାସ୍ୱର ଝଲକେ
ସମ୍ଭ୍ରମିତ ଧରା-ନେତ୍ର ବିସ୍ମୟ ଛନକେ -
ଦେଖିଲା ସେ ଦୀପ୍ତ ରବି ମହାତମୋମୟ,
ଅସୂୟା କିଲିବଷେ ପୂରି ଆପଣା ହୃଦୟ ।

ସେ କିଲିବଷେ-ରାହୁମୁଖୁଁ ସେ ପୁଣ୍ୟ ତପନ
ମଧ୍ୟାହ୍ନ ଗଗନୁଁ କିମ୍ପା ଲଭିଲା ପତନ ?
ବଜାଇଲେ ଯେଉଁ ବୀଣା ଶ୍ରୀରାମ ଭାରତୀ
କେଉଁ ତାନେ ବାନ୍ଧିଥିଲ କହ ବ୍ରହ୍ମପତି ?
ମୃତ୍ତିକା ଗରଭେ କାଳେ ଲଭି ବ୍ରହ୍ମଜ୍ଞାନ
ଆର୍ଷସିଦ୍ଧି ଧନେ ତୁମ୍ଭେ ହେଲ ମହୀୟାନ ।

ତେଣୁ କି ମୃତ୍ତିକାଗର୍ଭେ ନିହିଲ କୌଶଳେ
ମୂର୍ତ୍ତିମତୀ ଆର୍ଯ୍ୟଶିରୀ ଅଗାଧ ଅତଳେ ?

ବ୍ୟଭିଚାର-ପାପପଙ୍କେ ଶଙ୍କିତା ଧରଣୀ
ଇଚ୍ଛିଲା ରୋଧନେ ଯେବେ ଦୁଷ୍କୃତି ସରଣୀ;

ତୁଚ୍ଛୀକୃତ ମାତୃଶିରୀ, ପିତୃଇଚ୍ଛା ବଳେ,
ଲୋଟାଇଲେ ଯାମଦଗ୍ନ୍ୟ ନିଜ ପଦତଳେ ।

ମୂର୍ତ୍ତିମନ୍ତ ନିର୍ଦ୍ଦୟତା ଦୋର୍ଦ୍ଦଣ୍ଡ ପରଶୁ
ହେଲା ବିମଳିନ ମାତୃ ରୁଧିର ସରଶୁ ।

ଛିନ୍ନମସ୍ତା ମୂର୍ତ୍ତି ବହି ଭାର୍ଗବ ଜନନୀ
ରଚିଲେ ତାଣ୍ଡବ, ତ୍ରାସେ ଶଙ୍କିଲା ଅବନୀ ।

(ପୁତ୍ର-ମାତୃହତ୍ୟା ମିଶି ଘୃଣ୍ୟ କଦାଚାରେ
କଳଙ୍କିତ ଲେଖନୀକି କରେ ନିର୍ବିଚାରେ ।

ଦୟା କ୍ଷମା ଘୃଣା ଲଜ୍ଜା କ୍ରୋଧ ବିଭ୍ରମତା,
ଉପୁଜାଏ ଚିତ୍ତପଟେ ପାପ ନିଷ୍ଠୁରତା ।

ପାପପଙ୍କେ ପାପପଙ୍କ କରୁଁ ପ୍ରକ୍ଷାଳନ
ପଙ୍କିଳ କର ଲଲାଟ ସେ ଭୃଗୁ-ନନ୍ଦନ ।

ବେନି କର ପ୍ରାୟଶ୍ଚିତ୍ତ ଘଟିଲା ସେ କାଳେ
ଲୁଚଇଲା ମୁଖ, ଧରା ଅଞ୍ଚଳ ଉତ୍ତାଳେ ।

ଗୁରୁତମ ଦୁରିତର ଯୋଗ୍ୟ ପ୍ରାୟଶ୍ଚିତ୍ତ
ଲଭିଲେ ଉଭୟେ, ତେବେ ହେଲା ବିପରୀତ -

ନିର୍ଦ୍ଦୋଷ ସରଳା ସୀତା ପତିବ୍ରତା ନାରୀ
ପ୍ରତିପଦେ ପତିପଦ ପ୍ରେମ ଅନୁସରି ।

ମୂର୍ତ୍ତିମନ୍ତ ନାରୀଧର୍ମ୍ମ ଥିଲେ ଯେ ଭୂତଳେ,
ସମାହିତ କିମ୍ପା ସେହୁ ଅକାଳେ ଅତଳେ ?
ଭାଷନ୍ତି ଋଷିସତ୍ତମ ସୁଦୂରଦରଶୀ
ପୁଣ୍ୟସ୍ନିଗ୍ଧ ବାମକରେ ମୋ ଶିର ସ୍ପରଶି ।

ପାପ ବିନା ଦଣ୍ଡ, ବିନା ପୁଣ୍ୟେ ପୁରସ୍କାର
ମନ୍ଦକୃତି ବିନା କାହିଁ ସନ୍ଥ ତିରସ୍କାର ।

ନ ହେବ ସେ ସତୀତ୍ୱର ମହିମା ମଳିନ
ଫୁଟାଇବ ଚିରୋତ୍‌ଫୁଲ୍ଲ ଗରିମା-ନଳିନ ।

କ୍ଷୀଣପ୍ରାଣ ତୃଣବୀଜ ଧରଣୀ ଗରଭେ
ଉଦ୍‌ବୋଧିତ ହୁଏ କାଳେ ସୁଷମାଗୌରବେ ।

ଉର୍ବୀଗର୍ଭେ ସମାହିତ ଯେଉଁ ପୁଣ୍ୟମଣି
ପ୍ରରୋହିତ ହୋଇ କାଳେ ମଣ୍ଡିବ ଧରଣୀ ।

ଶୋଭିବ ହିମାଦ୍ରି ଜିଣି ତୁଙ୍ଗ ମହୀରୁହ
ଝରାଇଲେ ନୀର ନର ନେତ୍ର-ନୀରରୁହ ।

ଉଦିବ ପ୍ରଜ୍ଞାନ-ରବି-ଭାରତ-ଗଗନେ
ହସିବ ସେ ପୁଣ୍ୟ ତରୁ ମହିମା-ସୁମନେ ।

ସେ ସୁମନ ମଞ୍ଜୁ ରାଗେ ହସିବେ ଦିଗ୍‌ବଧୂ
ହସାଇବେ କମଳିନୀ କମଳିନୀ-ବନ୍ଧୁ ।

ଝରିବ ନିରତେ ତହୁଁ ଅମୃତ-ନିର୍ଝର,
ପାବନ ଭାରତ ବକ୍ଷ କରି ନିରନ୍ତର ।

ଶୋଭିବ ଅମର୍ତ୍ତ୍ୟ କୀର୍ତ୍ତି କୋଟି ଯୁଗ ଭେଦି
ନର-ନେତ୍ରୁଁ ପାପମୋହ-ପଟଳ ଉଚ୍ଛେଦି ।

ନ ହେବ ସେ ସତୀତ୍ୱର ଗରିମା ଲାଞ୍ଛିତ
ନ ହେବ ପୁଣ୍ୟ ବିଭବ ଭବେ ଅବାଞ୍ଛିତ ।

ମହାପ୍ରାଣ ବହି ଯେହ୍ନେ ଆସିଥାଏ ଭବେ
ମଣ୍ଡଇ ସେ ଧରାଶିର ସ୍ୱର୍ଗୀୟ ଗୌରବେ ।

ଦିନେ ତ ଗ୍ରାସଇ ମୃତ୍ୟୁ ଏ ମର ଜୀବନ
ତେଜଇ କି ସାଧ୍ୱୀ କେବେ ଗୌରବ-ରତନ ?
ଏ ପୁଣ୍ୟ ଗରିମା ତୁଲେ ଅଛି କି ଉପମା
ଶୋଭଇ କି ମର୍ତ୍ତ୍ୟଧାମେ ଅମର୍ତ୍ତ୍ୟ ସୁଷମା ?

ଯେ ମଣି ପ୍ରୋଜ୍ଜ୍ୱିତ ଆଜି ଭାରତ-ଗରଭେ
ତା ତେଜେ ପ୍ରୋଜ୍ଜ୍ୱିତ ଦିନେ ହେବ ସେ ଗୌରବେ ।

ଅସ୍ତମିତ ହେଲେ ନଭୁଁ ଦ୍ୱାଦଶ ତପନ,
ବିଚ୍ଛୁରିବ ପୁଣ୍ୟ ବିଭା ଏ ଦିବ୍ୟ ରତନ ।

ରଖିବ ଭାରତ-ବକ୍ଷ କରି ସମୁଜ୍ଜ୍ୱଳ
ରାଜିବ ଭାରତ-ବକ୍ଷେ ଶାନ୍ତି ସୁମଙ୍ଗଳ ।

## ନିବେଦନ

ତୁଟି ଯାଉଅଛି ଏ ମୋ ଦୀପ୍ତି ନୟନର,
ହଟି ଯାଉଅଛି ଶକ୍ତି କରଚରଣର;

ଫାଟି ଯାଉଅଛି ବକ୍ଷ ବିଷୟବିଷରେ,
କାଟି ଯାଉଅଛି ମର୍ମ୍ମ, ବ୍ୟାଧି ସରୋଷରେ;

ଘୋଟି ଯାଉଅଛି ଅଙ୍ଗେ ଜରା ମାୟାବିନୀ,
ଲୋଟି ଯାଉଅଛି ଶକ୍ତି ପ୍ରାଣ-ଉଦ୍‌ବୋଧିନୀ;

ଫୁଟି ଯାଉଅଛି ପ୍ରାଣେ ଶଲ୍ୟ ବିଷାଦର
ଛୁଟି ଆସୁଅଛି ଶ୍ୱାନ କାଳ ନିଷାଦର;

ରଟି ଉଠୁଅଛି ଆର୍ତ୍ତେ ପ୍ରାଣ-ବିହଙ୍ଗମ
ଘଟି ଉଠୁଅଛି ମୋର ସୁକର୍ମେ ବିକର୍ମ;

ପିଟି ଦେଉଅଛି ସଙ୍ଗ ବ୍ୟାମୋହ ମୁଦ୍ଗର,
ଲୁଟି ନେଉଅଛି ପ୍ରଜ୍ଞା ଧୈର୍ଯ୍ୟ ହୃଦୟର ।

ଜଟି ଦେବ ଏବେ ମୃତ୍ୟୁ ପ୍ରଭୁ ନିରଞ୍ଜନ,
ଫିଟି ଯାଉ କୃପାଦ୍ୱାର ଶାନ୍ତି-ନିକେତନ ।

## କାଳସିନ୍ଧୁ

ଗର୍ଜ୍ଜଇ ବିଶାଳ କାଳ କରାଳ ଜଳଧି,
ଉତ୍ତୋଳି ଉତ୍ତାଳ ଲୋଳ କଲ୍ଲୋଳ-ଆବଳି
ତର୍ଜ୍ଜଇ ନିର୍ଜ୍ଜିତ କରି ମୋ ଧୈର୍ଯ୍ୟ-ବଳଧି,
ସର୍ଜ୍ଜଇ ତାଣ୍ଡବ ଏ କି ଶାନ୍ତି ପ୍ରୀତି ଦଳି ।

ଘୋଟିଅଛି ଊର୍ଦ୍ଧ୍ୱେକାଳ କରାଳ ଜଳଦ
କାଳଚକ୍ର ଚକ୍ରବାଳ ଉଭାରି ଗଗନେ,
କେ ଅଛି ଏ ଭୀମଭଙ୍ଗେ ସହାୟ ବଳଦ
ଉଦ୍ଧରିବ ଏଥୁ ମୋତେ ବାହୁ-ବିଳଗନେ ?
ଘୂର୍ଣ୍ଣୀଭୂତ ବିକରାଳ କାଳ-ପ୍ରଭଞ୍ଜନ,
ଦୂର୍ଣ୍ଣୀଭୂତ ପ୍ରାଣ-ପକ୍ଷୀ ଯିବ ସତେ ଉଡି ?
ପୂର୍ଣ୍ଣୀଭୂତ ନେତ୍ରେ ଜ୍ୱାଳା ଆସଙ୍ଗ-ଅଞ୍ଜନେ,
ଚୂର୍ଣ୍ଣୀଭୂତ ଆଶା-ତରୀ ଯିବ ମୋର ବୁଡି ?

ଆକଟେ ସ୍ୱକରେ ଘେନି ଭୀମ ମୃତ୍ୟୁ ପାଶ,
ନିକଟେ ମୋହର ଉଭା, କୁଟିଳ ନୟନେ
ବିକଟେ ତରାଟି କାଳ ଜନ୍ମାଏ ସଂତ୍ରାସ,
ପ୍ରକଟେ କଠୋର ଠାଣି ନିଷ୍ଠୁର ବଦନେ ।

ରହ ରହ ଅହରହ ଭୀମଦଣ୍ଡଧାରି !
ଦୂରନ୍ତରେ କୃତାନ୍ତକ ! ତେଜ ଏ ତର୍ଜନ,
ତେଜ ଏ କୁଟୀଳ ଦୃଷ୍ଟି ବିଶ୍ୱତ୍ରାସକାରୀ
କରାଳ ଏ ପାଶ ତୋର କରରେ ବର୍ଜନ ।

ତୁଚ୍ଛ ତୋର ଏ ବିକ୍ରମ, ବ୍ୟର୍ଥ ଅଭିଯାନ,
କ୍ଷଣିକ ମୋର ଧୃତି-ଚ୍ୟୁତି ଗଲାଣି ଅପସରି,
କାହିଁ ମୋର ମୃତ୍ୟୁ ମୁଁ ଯେ ଅମୃତ ସନ୍ତାନ,
ଭୀମ ଭଙ୍ଗେ ରଙ୍ଗେ ଏବେ ଖେଳିବି ସନ୍ତରି ।

ଅକ୍ଷର ପରମାନନ୍ଦ ସତ୍ୟ ସନାତନ,
ଅବ୍ୟକ୍ତ ବିରାଟ ବିଭୁ ଜନକ ମୋହର,
ଚିନ୍ମୟ ଅମର ଜ୍ୟୋତି ଚିନ୍ତାମଣି ଧନ,
ଦେଇଛନ୍ତି ଦେଖ ମୋତେ ଅବ୍ୟୟ ଭାସ୍ୱର ।

ଏହି ତ ସ୍ମରଣମଣି ଆଧିବ୍ୟାଧିହର,
ବିଶ୍ୱଗ୍ରାସୀ ତମୋରାଶି କରେ ପଳାୟନ
ଏହାରି ଝଲକେ, ମର୍ତ୍ତ୍ୟ ହୁଅଇ ଅମର
କଳ୍ପତରୁଫଳ ଏ ତ ମହାରସାୟନ ।

ଆସୁ ଏ ଜଳଦଘଟା ଆବରି ଗଗନ
ବିରଚୁ ପ୍ରବଳ ବାତ୍ୟା ପ୍ରଭଞ୍ଜନ ମେଳେ,
ବିଚୂରି ମୋ' ତରୀ କରୁ ସିନ୍ଧୁ-ନିମଜ୍ଜନ,
ବିଚରିବି ନବ ତରୀ ରଚି ଅବହେଳେ ।

ଦେଖୁଛି ନିୟୁତ କୋଟି ସଂଯାତ୍ରିକ ଦଳ
ଅନନ୍ତ ଉଦ୍ଦେଶେ କାଟି ଭୀମ ଭଙ୍ଗରାଜି,
ଧାଉଁଛନ୍ତି ଅବିରତ ଲଙ୍ଘି ସିନ୍ଧୁଜଳ,
କେ ଧାମଇଁ ନବ ପଥେ ନବ ତରୀ ସାଜି ।

ଲକ୍ଷ୍ୟଚ୍ୟୁତ କେତେ ତରୀ ସୈନ୍ଧବ ଶଇଳେ
ବାଜି ହୁଏ ଚୂର୍ଣ୍ଣୀଭୂତ ନିମଜ୍ଜିତ ଜଳେ,

ଅବଲମ୍ବି ଦାରୁତୃଣ କେ ଭାସେ ସଲିଳେ
ଆଶ୍ରେ କେ ପାଣ୍ଡବ ଶବ ସଂଯାତ୍ରିକ ଦଳେ ।

ବିଷୟ ବିଷାର୍ତ୍ତ କେହୁ ତୃଷାର୍ତ୍ତ କାତର
ଦୁଷ୍ପୂର କାମନାନଳେ ପିଏ ସିନ୍ଧୁଜଳ,
ଲବଣାକ୍ତ ତିକ୍ତ ସେ ତ ତୃଷା ଖରତର
ବଢ଼ାଇ ଅଧିକେ, ପ୍ରାଣ କରଇ ବିକଳ ।

ସୈନ୍ଧବ ବୈଭବପୂର୍ଣ୍ଣ ମନୋଜ୍ଞ ପୁଳିନ,
ବିଲୋକି ଆହରି ମୁକ୍ତା ମାଣିକ୍ୟ ପ୍ରବାଳ,
ପ୍ରଲୁବ୍ଧ ମାନସେ କେହୁ, ଲାଗି ନିଶିଦିନ
ବଢ଼ାଏ ଗୁରୁତା ବୃଥା ସରଣୀ ଜଞ୍ଜାଳ ।
ଈର୍ଷ୍ୟାମଦେ କ୍ରୋଧେ କେହି ଦାମ୍ଭିକ ଗରବେ
ସହଯାତ୍ରୀ ଦଳେ ବୃଥା ବିରଚି ବିଗ୍ରହ
କୋଟି କୃତ ବୈରି-ତରୀ ବୁଡାଇ ଅର୍ଣ୍ଣବେ
ସଲିଳ ସମାଧି ନିଜେ କରେ ପରିଗ୍ରହ ।

କେ ପୁଣି ଚତୁରୀ-ଜାଲେ ସଂଯାତ୍ରିକେ ରୋଧି
ସ୍ତମ୍ଭୀଭୂତ କରି କେବେ ଅସି ଆସ୍ଫାଳନେ,
ପ୍ରଗଲ୍‌ଭେ କୂଟ ବଚନେ କେବେ ପୁଣି ବୋଧି
ଶୋଷଇ ଶୋଣିତ, ରଦ-ପଲ୍ଲବ ଚାଳନେ ।

ହାୟ ସେ ମୂଢ଼ ମାନବ ନ ଭାଳଇ ମନେ
ମାତୃସ୍ତନ୍ୟ ଶୁଷ୍କ ଯାର କ୍ରୂର ବ୍ୟବହାରେ,
ଭ୍ରାତୃରକ୍ତ ପାନେ ତୃଷା ମେଣ୍ଟିବ କେସନେ
ବାହିବ କେସନେ ତରୀ ଭୀମ ଅକୂପାରେ ?

ନ ଜାଣେ ସେ କ୍ଷୁଦ୍ର ନର ପ୍ରକୃତି ଜନନୀ
ଅକ୍ଷୟ ଅମୃତ ରସେ ଭରିଅଛି ସ୍ତନ,
ଭ୍ରମୁଛି ହରାଇ ପଥ ଦିବସ ରଜନୀ,
ନ ଶୁଣଇଁ ମୋହେ ଶିଶୁ ମାତୃ ଆବାହନ ।

ପ୍ରକୃତିର ପ୍ରତିକୂଳେ ଅନ୍ଧ ହୋଇ ମଦେ
ଶ୍ରେୟ ତେଜି ପ୍ରେୟ ଲୋଡେ ବଡ଼େ ବିଡମ୍ବନା,
ହରାଇ ଅମୃତ ରସ ଶାଶ୍ୱତ ସମ୍ପଦେ
ଭକ୍ଷି କାଳକୂଟ ଭୋଗେ ବିଷମ ଯାତନା ।

ଧନ୍ୟ ତୁ ଗୋ ମାୟାବିନୀ, ମାତଃ ମହାମାୟା,
ଲକ୍ଷ୍ୟ ପଥେ ଦେଉ କିମ୍ବା ଭ୍ରାନ୍ତି-ପଟ ଟୋଳି ?
କି କୌତୁକେ ବହୁ ଏହି କୈତବିନୀ କାୟା
ନରନେତ୍ରେ ଦେଉ କିମ୍ବା ମୋହାଞ୍ଜନ ବୋଳି ?

କେ ପୁଣି ଆସଇ ରଙ୍ଗେ ଖେଳାଇ ତରଣୀ
ମୋହନ ମୁରଲୀ ସ୍ୱନେ ସୁଲଳିତ ତାନେ,
ନାଚଇ ତରଙ୍ଗ ତାଳେ ବିସ୍ମରି ସରଣୀ
ମୋହେ ଅନ ଚରେ ପଥ ପ୍ରଦର୍ଶକ ଜ୍ଞାନେ ।
ଭାଷଇ- "ଦେଖିଛି ମୁହିଁ ଭୀମ ସିନ୍ଧୁ ପାର,
ଜାଣିଛି ନିଖିଳ ତତ୍ତ୍ୱ ନିଗୂଢ଼ ବାରତା,
ବ୍ୟର୍ଥ ଲକ୍ଷ୍ୟେ ଧାଏଁ ମୁଗ୍ଧ ନିଖିଳ ସଂସାର
ଜଡ଼େ ଜଡୀଭୂତ ବିଶ୍ୱ, ଜଡହିଁ କରତା ।''

ଅର୍ବାଚୀନ ବାଣୀ ତାର ଭ୍ରାନ୍ତ ନିର୍ବାଚନ -
"ଅଚେତନ ଜଡ ଯୋଗେ ଉଦ୍‌ବୁଦ୍ଧ ଚେତନା ।"
କୋଟି ଶୂନ୍ୟେ କୋଟି ସଂଖ୍ୟା କରି ବିରଚନ
ପ୍ରକାଶେ ବାତୁଳ ବୁଦ୍ଧି ନିର୍ବୋଧ ଭାବନା ।

ନାହିଁ ଯାହା ବିଶ୍ୱକ୍ଷେତ୍ରେ ଜଡ ଅନ୍ତରାଳେ
କୋଟି ଜଡ ଯୋଗେ ତାହା ଜନ୍ମିବ କେସନେ,
ଧ୍ରୁବତାର ସତ୍ତା, ଯାହା ଉଦ୍‌ଭାସିତ କାଳେ
ସହଜ ଏ ଧ୍ରୁବ ସତ୍ୟ ନ ଦେଖେ ନୟନେ ।

କେ କୁଟିଳ ବାକ୍ୟକୂଟେ ଗୌରବ ମୁକୁଟେ
ମଣ୍ଡିବାକୁ ନିଜ ଶିର ପ୍ରବଞ୍ଚନା ବଳେ,

ଭୁଲାଇ ଇତରେ ଶୂନ୍ୟ ବନ୍ଧକରପୁଟେ
ଭାଷଇ ଅବ୍ୟକ୍ତ ବ୍ରହ୍ମ ଧରିଛି କୌଶଳେ ।

କୋଟି ରବି ଶଶୀ ଯାର ମହିମା ଝଲକେ
ଲୀନପ୍ରଭ, ଯେହୁ ବାକ୍ୟ-ମନ-ଅଗୋଚର,
ସେ ମହାବିରାଟ ବିଭୁ କର-ସମ୍ପୁଟକେ
ବିରାଜି ହେବେ କି କେବେ ନର-ବଚସ୍କର ?

ତରଙ୍ଗେ ତରଙ୍ଗେ ନାଚି କୋଟି ଚନ୍ଦ୍ର ତାରା,
ଗ୍ରହ ଉପଗ୍ରହ ଉଲ୍କା ନୀହାରିକାରାଶି -
ଖେଳନ୍ତି, ବିଚ୍ଛୁରି ନଭେ ହାସ୍ୟରଶ୍ମି ଧାରା
ଅଶ୍ରାନ୍ତ "ଭଉଁରୀଖେଳ" ବ୍ରହ୍ମାଣ୍ଡ ଉଦ୍‌ଭାସି ।

ଇକ୍ଷଣ ଦୂରବୀକ୍ଷଣେ ଦୂର ବିକ୍ଷେପଣେ
ଗଣି ରଶ୍ମିରେଖା, ବସି ଗୁଣବୃକ୍ଷ ମୂଳେ,
କଳି ବିଶ୍ୱ କଳାଗାର, କେନ୍ଦ୍ର ନିରୂପଣେ,
ଉଦ୍ୟତ କେ ଦୋଳି, ଲୋଳ ତୁଙ୍ଗ ଊର୍ମିକୂଳେ ।

ବିଶାଳ ବିରାଟ ବ୍ୟୋମ ବିଶ୍ୱକଳାଗାର
ଘୂର୍ଣ୍ଣିତ ଅସଂଖ୍ୟ ଯହିଁ ସୃଷ୍ଟିଚକ୍ରାବଳି
ଚିନ୍ମୟ କଳାକଳାପେ ଅନନ୍ତ ଅପାର
ଜଡ ଯନ୍ତ୍ରେ ଲୋଡେ ନର ନେବାପାଇଁ କଳି ।

ପ୍ରକୃତିର ପ୍ରତିକୂଳେ ମଦେ ହୋଇ ଅନ୍ଧ
ଧାଏଁ କେ ଦାମିନୀ-ପୃଷ୍ଠେ ଜବିଷ୍ଠ ଗମନେ,
ନିଯୋଜି ନଶ୍ୱର ଖେଳେ ଚିତ୍ତ ସତ୍ୟସନ୍ଧ
ବିଭ୍ରମେ ଭ୍ରମଇଁ ଭୋଳେ ନଶ୍ୱର ଭୁବନେ ।

ଜ୍ୱଳିତ ଜ୍ୱଳନ ବଳେ ବୈରିଦଳ ଦଳି
ବିଦାରି ପ୍ରକୃତି ବକ୍ଷ ବିଜୟୀ ଗରବେ,
ଲୋଡି କେ ଐଶ୍ୱର୍ଯ୍ୟ, ହୋଇ ଜଡ ବଳେ ବଳୀ
ଭସ୍ମୀଭୂତ ହୁଏ କ୍ଷଣେ ସେ ବହ୍ନି ଗରଭେ ।

ଉନ୍ମୋଚି ଅତୀତ ପଟ ବିଲକ୍ଷି ପୁଲକେ
ପୂର୍ବଗତ ସଂଯାତ୍ରିକ ଗତିରେଖାବଳି,
ମାପଇ କେ ମାନଯନ୍ତ୍ରେ, ପଲକେ ପଲକେ
ଯାଇଛି କେସନେ କାଳ କୋଟି ସୃଷ୍ଟି ଦଳି ।

କେ ଲକ୍ଷ୍ୟେ ଅଲକ୍ଷ୍ୟେ କେବା ଆନନ୍ଦ ବିଷାଦେ
ପ୍ରଧାବିତ ଅହର୍ନିଶ ସଂଯାତ୍ରିକଦଳ,
ପରସ୍ପର ସଦାଳାପେ କେ ବିଗ୍ରହବାଦେ
କରୁଛନ୍ତି ଗତିପଥେ କେତେ କୋଳାହଳ ।

ବାଳ ବୃଦ୍ଧ, ନର ନାରୀ, ଧନିକ ନିର୍ଦ୍ଧନ
ବାତୁଳ ମତିମତ୍ତମ, କାମୁକ ସନ୍ନ୍ୟାସୀ
ମୂର୍ଖ ଜ୍ଞାନୀ, ଚୋର ସାଧୁ, ଖଳ ମହାଜନ
ରାଜା ପ୍ରଜା, ନାଗରିକ ଅରଣ୍ୟ-ନିବାସୀ -
ପଶୁ ପକ୍ଷୀ, କୃମି କୀଟ, ସ୍ଥାବର ଜଙ୍ଗମ
ପ୍ରଧାବିତ ଲୀଳାଚକ୍ରେ କାଳସିନ୍ଧୁ ଜଳେ
ଗ୍ରହ ଉପଗ୍ରହ ଆଦି ମହା ବିହଙ୍ଗମ
ଅବିଶ୍ରାନ୍ତ ଗତି ରଚି ପରିବୃତ୍ତି (୧) ବଳେ ।
ମହାଚକ୍ର ସୁଦର୍ଶନ ବିଶ୍ୱରାଜଙ୍କର -
ପରିବୃତ୍ତି, ବିଘୂର୍ଣ୍ଣିତ ମହା ବ୍ୟୋମପଟେ,
ସଞ୍ଚାଳିତ ଏହି ଚକ୍ରେ କୋଟି କୋଟି (୨) ତଟେ ।
ବିଘୂର୍ଣ୍ଣିତ ଏହି ଚକ୍ରେ କୋଟି କକ୍ଷ ଭେଦି
ବିଘୂର୍ଣ୍ଣିତା ଏହି ଚକ୍ରେ ନିଜେ ମହାମାୟା
ତମୋଗୁଣେ ସତ୍ତ୍ୱ ରଜୋଗୁଣେ ତମଃ ଛେଦି
ପ୍ରକାଶଇ ସୃଷ୍ଟି ଲୟେ ଲୀଳାମୟୀ କାୟା ।

ପରିବୃତ୍ତି ଚକ୍ରେ ଘୂରି ନୀହାରିକାରାଶି
ପ୍ରସବେ ସବିତାପୁଞ୍ଜେ ମଞ୍ଜୁଳ ଜଗତ,
ସେ ଚକ୍ରେ ଅନନ୍ତ ସୃଷ୍ଟି ଉଠଇ ଉଦ୍‌ଭାସି,
ସ୍ଥାବର ଜଙ୍ଗମ ଜୀବ ସାଗର ପର୍ବତ ।

ଏହି ଚକ୍ର ସଞ୍ଚଳନେ ବିଶ୍ୱରନ୍ଧ୍ର ଭେଦି
ଅଣୁ ପରମାଣୁ କେନ୍ଦ୍ରେ ଏ ବ୍ୟୋମ ଲହରୀ
ବିଭେଦି ଆୟସୀ ଦୁର୍ଗ, ଶୈଳବକ୍ଷ ଛେଦି,
ନାଚଇ ନିରତେ ସିନ୍ଧୁ ଗଗନେ ସଞ୍ଚରି ।

ଏହି ଚକ୍ର ବିକ୍ଷରଣ କରି କେତେ ରଙ୍ଗେ
ସୁବିଶାଳ ଗିରିବକ୍ଷ, ଆସାର ପତନେ
ଆହରି ଚୂର୍ଣ୍ଣିତ ଶିଳା, ତଟିନୀ ତରଙ୍ଗେ
ନଯ୍ୟଇ, ଜଳଧି ବକ୍ଷେ ସଞ୍ଚଇ ଯତନେ ।

ସୂକ୍ଷ୍ମତମ ଅଣୁପୁଞ୍ଜ କରି ସଂଯୋଜନ
ସୃଜି ତୁଙ୍ଗ ଶୈଳରାଜି ସାଗର-ଗରଭେ,
ପିନ୍ଧାଇ ବିମଳ ଶ୍ୟାମ କୋମଳ ବସନ
ମଣ୍ଡେ ପାରିଜାତ ପୁଷ୍ପେ ସୁଷମା-ଗୌରବେ ।

ସଞ୍ଚି ସଯତନେ କାହିଁ ସୈକତ ସମ୍ଭାର
ନିବାରି ବାରିଧି-ବକ୍ଷୁ ଧୀରେ ବାରିରାଶି,
ରଚେ ରୁଦ୍ର ମରୁଭୂମି ଅଧ୍ୱଗ ସନ୍ତାସୀ ।

ଏହି ଚକ୍ରେ ବିଶ୍ୱମ୍ଭରା ଗର୍ଭେ ଦଗ୍‌ଧୀଭୂତ
ବିବର୍ତ୍ତି ତରଙ୍ଗେ ରଙ୍ଗେ ଅଙ୍ଗାରପଟଳ
ଦୀପ୍ତ ତେଜେ ତେଜି ନିଜ ନିଳୟ ନିଭୃତ
ସମ୍ରାଟ କିରୀଟେ ଜ୍ୱାଳେ ହାସ୍ୟେ ଉତ୍ତରଳ ।

ଭସ୍ମୀଭୂତ ସୂକ୍ଷ୍ମ ଚୂର୍ଣ୍ଣ ରୁକ୍ମିଣୀ (୩) ଶୌକ୍ତିକ
ମୁକ୍ତ ପଙ୍କେ (୪) ବିବର୍ତ୍ତିତ ସୈନ୍ଧବ ଅତଳେ
ସୁବୃତ୍ତ ସୁତାର ସ୍ୱଚ୍ଛ ସୁଚ୍ଛାୟ ମୌକ୍ତିକ (୫)
ମଞ୍ଜୁଳ ଝଳକେ ଲୋଳେ ଲଳନାର ଗଳେ ।

ବାରିଦ ସଂଶ୍ଳେଷ ଛଳେ ବିଷ୍ଣୁପାଦୁଁ (୬) ଝରି
ବ୍ରହ୍ମ କମଣ୍ଡଳୁ (୭) ପୂରି ବ୍ୟୋମଗଙ୍ଗା ଝର
ଶୋଭିତ ଗୌରୀଶଙ୍କର ଶିରେ ଅବତରି
ଆହ୍ଲାଦିତ କରୁଅଛି ଧରଣୀ ସାଗର ।

ସେ ଗୌରୀଶଙ୍କର-ଚୂଡ ତୁଙ୍ଗ ହିମାଚଳ
ପାର୍ଥିବ କିଳବିଷ ସ୍ପର୍ଶ ଅତୀତ ଗଗନୁଁ
ଆହରି ଅମୃତ ଝର ପ୍ଲାବି ଧରାତଳ
ନିବାରେ ସନ୍ତାପ ସଦା ଭାରତ-ଭବନୁଁ ।

ହୀରକ-ମୁକୁଟ ତୁଙ୍ଗ ଏ ଗୌରୀଶଙ୍କର
ଅନୁପମ, ଅନୁପମ ଗିରି ହିମାଚଳ
ଅନୁପମ ଧରାବକ୍ଷେ ବ୍ୟୋମ ଗଙ୍ଗା ଝର
ବିତରେ ଅମର୍ତ୍ତ୍ୟ ପୁଣ୍ୟ ଶାନ୍ତି-ଶତଦଳ ।

ଏ ହିମାଦ୍ରି ଗିରିଚୂଡା ଏ ଗୌରୀଶଙ୍କର
ଥିଲା ଧରାବକ୍ଷେ କାଳେ ସୁପ୍ତି-ନିମଗନ,
ଶୁଣି ପରିବୃତ୍ତି ଚକ୍ର-ନାଦ ଭୟଙ୍କର
ଉଠିଛି ତୁଙ୍ଗ କିରୀଟେ ଉଦ୍‌ଭେଦି ଗଗନ ।

ସୁଦୂର ଅତୀତ ବକ୍ଷେ ଆଦ୍ୟୋନ୍ମେଷ କାଳେ
ସୁପ୍ତି-ଲୀନ ପ୍ରାଣ ପଙ୍କେ (୮) ଜୀବାଣୁ ପରମ,
ସୃଷ୍ଟି ବିବର୍ତ୍ତନେ କୋଟି ବର୍ଷ ଅନ୍ତରାଳେ
ଲଭିଛି ମାନବୀ ମେଧା ଜ୍ଞାନ ଅନୁପମ ।
ସ୍ୱାନ୍ତାସନେ (୯) ବସି ଯେବେ ଚୈତନ୍ୟ-ବିହଙ୍ଗ

ଉଡିଯାଏ ନୀଡ ତେଜି ଅନନ୍ତ ଗଗନେ,
ମୁଞ୍ଜୁ ପ୍ରପଞ୍ଚର ଲୀଳା, ଜୀବନ ତରଙ୍ଗ
ଜଡ ପିଣ୍ଡ ନୀଡ ପଡେ ଧରା ଆଲିଙ୍ଗନେ ।

କ୍ଷତ୍ୟପ୍‌ତେଜମରୁଦ୍‌ବ୍ୟୋମ ହୋଇ ପଞ୍ଚୀଭୂତ
ସଞ୍ଚରି ଉଦ୍‌ଭିଜ ଅଙ୍ଗେ ଫୁଟାଇ ପ୍ରସୂନ,
ମଞ୍ଜୁଳ ରସାଳ ରସେ ହୋଇ ଆବିର୍ଭୂତ
ଜଙ୍ଗମ ଜଗତେ ଖେଳେ ରବେ ହୋଇ ଲୀନ ।

ଚିନ୍ତାମଣି (୧୦) ବକ୍ଷେ ଘେନି ଲୟ ଚିନ୍ତାବଳେ
ବହିଯାଏ ଯେଉଁ ବିମ୍ବ ଚିତ୍ତ ବିହଙ୍ଗମ ।

ସେହି ବିମ୍ବ ରୂପ ଗ୍ରହି ବିଳସେ କଲ୍ଲେ
ପରିବୃତ୍ତ ଚକ୍ରେ ବହି ତନୁ ସୂକ୍ଷ୍ମତମ ।

ଆଶ୍ରି ଅନୁକୂଳ କ୍ଷେତ୍ର କଲଲ ଅନ୍ତରେ
ସୂକ୍ଷ୍ମ ତନ୍ତୁ ଆଲମ୍ବନେ ନିଭୃତ ପ୍ରଦେଶେ
ବଢ଼ାଏ ଆପଣା ତନୁ ଜନନୀ ଜଠରେ,
ଆତ୍ମଉଦ୍‌ବୋଧନେ ଶାନ୍ତ ସୁଦୀର୍ଘ ସଂବେଶେ ।

ଅବତରି କାଳେ ନର ଜରାୟୁ ବରଜି
ଭୂରଜ ଲେପନେ ନବ ବିକ୍ରମ ଅରଜି,
ଇତରେ ତରଜି ନବ ପ୍ରତିଭା ସରଜି,
ନିର୍ଜିତ କରଇ ଧରା ଗମ୍ଭୀରେ ଗରଜି ।

ଆରୋହୀ ଦାମିନୀ ପୃଷ୍ଠେ ବିଭ୍ରମି ଗଗନେ
ଫଟାଇ ଗିରୀନ୍ଦ୍ର ଚୂଡ଼ା ଲୋଟାଇ ଭୂତଳେ,
ଆନ୍ଦୋଳି ଜଲଧି ବକ୍ଷ ଅନଳ ବାହନେ,
ଶାସିତ କରଇ ସୃଷ୍ଟି ପରିବୃତ୍ତି ବଳେ ।

ଏହି ପରିବୃତ୍ତି ଚକ୍ରେ ତେଜି କେତେ ତରୀ
ଆରୋହିଛି ଆଜି ଏହି ମାନବ ବିଗ୍ରହ
ଗମୁଛି ସଚ୍ଚିଦାନନ୍ଦ ଶ୍ରୀପଦ ସୁମରି
ତୁ ପୁଣି ଦେଖାଉ ପଥେ ଦାରୁଣ ନିଗ୍ରହ ।
ଏହି ତ ସେ ଧ୍ରୁବ ତାରା ଅପାରା ଅର୍ଣ୍ଣବେ
ସ୍ନିଗ୍ଧ ଯାର ରଶ୍ମିଧାରା ଶାନ୍ତି ସ୍ୱସ୍ତ୍ୟୟନ
ଆଲମ୍ବି ଯେ ପଥ କେତେ ମହାନ ମାନବେ
ଲଭିଛନ୍ତି ପୁଣ୍ୟଧାମ ଅମୃତ ଭବନ ।

ସୁଶୋଭିତ ପୁଣ୍ୟ ପଥେ ପୁଣ୍ୟ ସ୍ମୃତିରାଜି
ହୃଦୟପାବନ ପୁଣ୍ୟ ପଙ୍କଜ ପ୍ରସୂନ
ବ୍ରହ୍ମ ପ୍ରେମ ସରୋବରେ ଅଦ୍ୟାପି ବିରାଜି
ସାରସ୍ୱତ କୁଞ୍ଜପୁଞ୍ଜ କରେ ପ୍ରମୋଦନ ।

ମଖୋଦ୍ଭୂତ ଭୂତିଳଗ୍ନ ବୀଣା ସାରସ୍ୱତ
ଉପେକ୍ଷିତ ଛିନ୍ନ ତନ୍ତ୍ରେ ଭାସନ୍ତ ଅକୂଳେ
କେ ତୋଳିବ ଘେନି କୋଳେ ସେ ତାନ ଶାଶ୍ୱତ
କାହିଁ ସେ ତର୍ଜନୀ ଦକ୍ଷ ଆଜି ଆର୍ଯ୍ୟକୁଳେ ।

ରଜସ୍ତମ ମୃତ୍ୟୁଞ୍ଜୟ ପ୍ରାଜ୍ଞ ବାମଦେବ
ନିଗୂଢ଼ ଦର୍ଶନ ଦକ୍ଷ ସିଦ୍ଧ ପତଞ୍ଜଳି
ପୂଜିଲେ କି ଏହି ପଥେ ବିଶ୍ୱ ଆଦି ଦେବ
ଅର୍ପିତ ତାଙ୍କରି କି ଏ ଜ୍ଞାନ-ପୁଷ୍ପାଞ୍ଜଳି ?
ମୂର୍ତ୍ତିମନ୍ତ ପରଂବ୍ରହ୍ମ ବ୍ରହ୍ମ ଋଷିଗଣେ
ଅର୍ପିଲେ କି ବେଦମାଲ୍ୟ ଗାୟତ୍ରୀ କୁମାରୀ
ଏ ଦିବ୍ୟ ଅୟନେ ଦୋଳି ହୃଦୟ-କମଳେ ?
ତ୍ରିଷ୍ଟୁଭ ଓଁକାରେ ବିଶ୍ୱକନ୍ଦର ଝଙ୍କାରି ।

ସେ ଝଙ୍କାର ମନ୍ଦ୍ରନାଦ ଏ ପୁଣ୍ୟ ଅୟନେ
ଅଦ୍ୟାପି ଉଠୁଛି ମନ୍ଦ୍ରେ ପ୍ରତିଧ୍ୱନି ରୂପେ
ଅର୍ବାଚୀନ ଶିଶୁ ମୁହିଁ ଚିହ୍ନିବି କେସନେ
ପ୍ରଜ୍ଞା ମୋର ନିମଜ୍ଜିତା ଅଜ୍ଞାନର କୂପେ ।

ହେଲେ ହେଁ ମୋ କ୍ଷୁଦ୍ର ତରୀ ସେହି ରଶ୍ମିରେଖା
ବିଲକ୍ଷି, ନିବେଶ ସ୍ମୃତି ନିବହେ ନୟନ,
ଗମିବି, ପାଇବି ସେହି ପୁଣ୍ୟଧାମ ଦେଖା
ଅବ୍ୟକ୍ତ ପରମ ପଦ ଶାଶ୍ୱତ ଅୟନ -
ସେ ତ ଶାନ୍ତି - ନିକେତନ ।

---

୧- Variation, ୨- ଅଗ୍ର ଅର୍ଥାତ୍ ମୂନ
୩- ଉତ୍କୃଷ୍ଟ ଜାତୀୟ ମୁକ୍ତା ଜନନୀ (ଶୁକ୍ତି),୪- ମନ୍ତ୍ର ପଙ୍କ -(Nacre)
୫- ଏ ସମସ୍ତ ଉତ୍ତମ ମୁକ୍ତାର ଲକ୍ଷଣ, ୬- ଆକାଶ
୭- ବ୍ରହ୍ମ-ଉତ୍କର୍ଷବାଚକ, ଯଥା - ବ୍ରହ୍ମଦଣ୍ଡ, ବ୍ରହ୍ମଚପେଟିକା । କମଣ୍ଡଳୁ - କରକା । ହିମାନୀ ସଂଘ ।
୮- Protoplasm , ୯- ଚିରାସନେ
୧୦- ଆତ୍ମା; ଚିନ୍ତା ହିଁ ଚିତ୍ତର କାର୍ଯ୍ୟ, ଚିନ୍ତିତ ବିଷୟ-ପ୍ରାପ୍ତି ନିମନ୍ତେ ଆତ୍ମାହିଁ ଚିନ୍ତାମଣିର କାର୍ଯ୍ୟ କରେ ।

## ଚିଦାନନ୍ଦ

ଉଇଁ ଆସେ ଉଷା ବାଳା ପରାଚୀ ଗଗନେ,
କୁଇଁ ଆସେ ବ୍ୟୋମେ କେଉଁ ସ୍ୱରଣରତନେ ?
ଐନ୍ଦ୍ର ଦ୍ୱାରେ ଐନ୍ଦ୍ରଜାଳେ ବୋଧନ ମନ୍ତରେ,
ଉଦ୍‌ବୋଧନ କରେ ବିଶ୍ୱ ସୁଷୁପ୍ତି ଅନ୍ତରେ ।
ମୋ କ୍ଷୁଦ୍ର ମାଧବୀଲତା ଧରିଛି ମଞ୍ଜରୀ,
ଭ୍ରମୁଛି ଭ୍ରମର ତହିଁ ମଧୁରେ ଗୁଞ୍ଜରି,
ସେ ଗୁଞ୍ଜନେ ମିଶିଛି କି ଶାଶ୍ୱତ ଓଁକାର ?
କ୍ଷିତ୍ୟପ୍‌ତେଜମରୁନ୍ମୟ ନଶ୍ୱର ବିଗ୍ରହ
କରିଛି କେସନେ ଏହି ନାଦ ପରିଗ୍ରହ ?
ଥିଲା କାହିଁ, ଏ ଝଙ୍କାର ଲିଭି, ଗଲା କାହିଁ ?
ଅନୁଧ୍ୟାନେ ଦେଖେ ମନ ଗତି ରେଖା ନାହିଁ ।
କାହାର ଇଙ୍ଗିତେ ନାଚେ ଏ ବ୍ୟୋମ ଲହରୀ ?
ଫୁଟି ମିଶେ ମଞ୍ଜୁ ନାଦ ମଞ୍ଜୁଳେ ସଞ୍ଚରି ।
ପ୍ରଜ୍ଞାନ ଆକାଙ୍କ୍ଷା ଭରେ ଅନୁଧ୍ୟାନେ ମନ
ସତତେ ଅନ୍ତରୁ କିଏ କରେ ପ୍ରଣୋଦନ ?
ତୁମ୍ଭେ ତ ସେ ମହାଶକ୍ତି ବିଶ୍ୱ ମୂଳାଧାର !
ଏ ବ୍ୟୋମ ଲହରୀ ତବ ବିପଞ୍ଚୀ-ଝଙ୍କାର ।
କୋଟି ତନ୍ତ୍ରେ ଗ୍ରାମତ୍ରୟେ ତବ ବିଶ୍ୱ-ବୀଣା
ଝଙ୍କାରି ଏ କୋଟି ସୃଷ୍ଟି ନଚ୍ଚଉଛି ସିନା ।

ରଜଃସତ୍ତ୍ୱସ୍ତମୋଗ୍ରାମେ ସୃଷ୍ଟି ସ୍ଥିତି ଲୟ
କୋଟି ତନ୍ତ୍ରେ ଫୁଟି ଉଠେ କୋଟି ଅଭିନୟ ।
ଷଡଜେ ବାଜିଲେ ବୀଣା ନାଚେ ମହାକାଳୀ,
ଋଷଭେ ସୁରଭି ଦିଏ ପୟୋଧାରା ଢାଳି ।
ଗାନ୍ଧାରେ ଅନ୍ଧ ଜଗତ ବ୍ୟାମୋହ-ଅନ୍ଧାରେ,
ଆହ୍ଲାଦେ ନାଚଇ ସୃଷ୍ଟି ମଧ୍ୟମ ଝଙ୍କାରେ ।
ପଞ୍ଚମେ ଉନ୍ମାଦେ ଗାଏ ପିକ ତରୁଡାଳେ
ଧୈବତେ ଫୁଟଇ ପ୍ରଜ୍ଞା ଦୃଷ୍ଟି ଅନ୍ତରାଳେ ।
ନିଷାଦେ ବିଷାଦ ଲଘି ମହା ଭଇରବୀ
ବିରଚେ ସଂହୃତି ଲୀଳା ପ୍ରଳୟ ତାଣ୍ଡବୀ ।
ଗୁଞ୍ଜରଇ ଅଳି କେଉଁ ତନ୍ତ୍ରର ଝଙ୍କାରେ
କେଉଁ ତନ୍ତ୍ରେ ସୁପ୍ତ ସିଂହ ଗର୍ଜଇ ହୁଙ୍କାରେ ।
କେଉଁ ତନ୍ତ୍ର ପ୍ରକମ୍ପନେ ମୃଦୁଳ ମଳୟ
ଆହ୍ଲାଦେ କରଇ ସ୍ନିଗ୍ଧ ଜଗତ ହୃଦୟ ।
ଫୁଟି ଉଠେ ମଧୁକାଳେ ମାଧବୀ ମୁକୁଳ
ପିନ୍ଧାଇ ରସାଳ-ଅଙ୍ଗେ ବକୁଳ-ଦୁକୂଳ ।
କରି କେବେ ବ୍ୟୋମେ ମୃଦୁ ଲହରୀ ସୃଜନ
ରଞ୍ଜିଦିଏ ମଞ୍ଜୁ ରାଗେ ପଙ୍କଜ-ବଦନ ।
ସାଗରେ ବାଡବ, ଗିରି ବନେ ଦାବାନଳ
ଜ୍ୱଳି ଉଠେ କେଉଁ ତାନେ ହୋଇଣ ପ୍ରବଳ ।
ହେ ଅବ୍ୟକ୍ତ ମୂଳାଧାର ପରାତ୍‌ପରତର
କ୍ଷେତ୍ରଜ୍ଞ ଶାଶ୍ୱତ ବିଭୁ କୋଟି ବିଶ୍ୱମ୍ଭର ।
ଅଣୋରଣୀୟାନ ତୁମ୍ଭେ ମହାମହୀୟାନ
ବିଶ୍ୱବରୀୟାନ କବି ଗୁଣେ ଗରୀୟାନ ।
ତ୍ରୟୋବିଂଶ କ୍ଷେତ୍ର ସୃଜି ଆତ୍ମବିନୋଦନେ
ନଚାଉଛ କୋଟି ସୃଷ୍ଟି ବିପଞ୍ଚୀ-ବାଦନେ ।

ପ୍ରାଣାପାନ ଧୃତି ସ୍ମୃତି ନିମିଷ ଉନ୍ମେଷ
ଚେତନା ଜୀବନ ସୁଖ ଦୁଃଖ ଇଚ୍ଛା ଦ୍ୱେଷ ।
ମାନସ ପ୍ରଯତ୍ନ ସ୍ୱପ୍ନ ବୁଦ୍ଧି ଅହଙ୍କାର,
ସଞ୍ଚାରଇ ସିନା ତବ ବିପଞ୍ଚୀ-ଝଙ୍କାର ।
ମାୟାମୁକ୍ତ ପ୍ରଜ୍ଞାସନେ କରି ଅଧିଷ୍ଠାନ
ସଞ୍ଚାରୁଛ ସୃଜନା ଅନ୍ତରେ ପ୍ରଜ୍ଞାନ ।
ସେ ମହାକଳ୍ପନା ବଳେ ଏ କ୍ଷୁଦ୍ର ମାନବ
ଦେଖାଉଛି ବିଶ୍ୱେ ପ୍ରାଜ୍ଞ ଲୀଳା ଅଭିନବ ।
କରାଉଛି ଶୁଷ୍କ କାଷ୍ଠେ ପ୍ରାଣର ସଞ୍ଚାର
ଦେଖି ବିଶ୍ୱମୟ ତବ ସତ୍ତା ନିର୍ବିକାର ।
ମୃତ୍ତିକା ପାଷାଣେ ଗଢ଼ି ତୁମ୍ଭରି ମୂରତି
ଧ୍ୟାୟି ତବ ସତ୍ତା ପ୍ରେମେ କରଇ ଆରତି ।
ଭକ୍ତର ଆରତି ଲୟ ସଞ୍ଚରଇ ଯହିଁ
ଅଭୟ ବରଦ ବିଭୋ ! ବିରାଜୁଛ ତହିଁ ।
କପିଳ ନୟନେ ତୁମ୍ଭେ ପ୍ରକୃତି ଜୀବନ
ଶଙ୍କରୋଽହଂକାରେ ତୁମ୍ଭେ ବ୍ରହ୍ମ ସନାତନ ।
ବୌଦ୍ଧ ଜୈନ ଖ୍ରୀଷ୍ଟିୟାନ ମହମ୍ମଦୀୟାନ
କହିଲେ ଯେ ରୂପ ତବ ସତ୍ତା ମହୀୟାନ ।
ବିରାଜିଲ ସେହିରୂପେ ମାନସ-ମନ୍ଦିରେ,
ନିରେଖେ ଅକ୍ଷର ବ୍ରହ୍ମ ଯୋଗୀ ସମାଧିରେ ।
ନିଃସର୍ଗ ସରଳ ଶିଶୁ ବନେଚର ନର
ପୂଜାକରେ ଶିଳାସ୍ତମ୍ଭେ ତୁମ୍ଭରି ପୟର ।
କେ ଦେଖଇ ବହ୍ନିଶିଖା ବରଦ ଶୀତଳ,
ବିକଶିତ ତହିଁ ତବ ଚରଣକମଳ ।
ବିରଚେ କେ ତରୁକୋଟେ ତବ ସିଂହାସନ,
କେ ଦେଖଇ ନେତ୍ର ମୁଦି ପ୍ରାକୃତ ଭୁବନ ।

ଦଶଦିଗେ ଦିବାଲୋକେ ନିଶା ଅନ୍ଧକାରେ,
ଜଳେ ସ୍ଥଳେ ବିହାୟସେ ବିରାଟ ଆକାରେ ।
ସୁଦୂର ଅତୀତ ଭେଦି ବର୍ତ୍ତମାନ କାଳ
ଚିର ଭବିଷ୍ୟତ ବ୍ୟାପି ବାହ୍ୟ ଅନ୍ତରାଳ;
ସମ୍ମୁଖ ପଶ୍ଚାତେ ପୁଣି ଶୟନେ ଜାଗରେ;
ସିଦ୍ଧ ସାଧୁ ଋଷି ହୃଦେ ବୃଦ୍ଧ ଅଜଗରେ;
ଗଜରାଜ ତିମି ପ୍ରାଣେ ପରମାଣୁ ଜୀବେ
ସ୍ଥାବର ଜଙ୍ଗମେ ମର୍ତ୍ତ୍ୟ ପାତାଳ ତ୍ରିଦିବେ;
ଶୈଶବେ ଯୌବନେ ପୌଢ଼େ ସ୍ଥବିର ବୟସେ
ସୁଖଦୁଃଖେ ପ୍ରଜ୍ଞାମୌଢ୍ୟେ କଲ୍ଲୋଳେ ଆୟସେ;
ଏକାଦଶେନ୍ଦ୍ରିୟେ ରାଜି ବିଳାସେ ବିଷାଦେ
ଜୀବନେ ମରଣେ ପୁଣି ସମ୍ପଦେ ପ୍ରମାଦେ;
ସୃଷ୍ଟି ସ୍ଥିତି ଲୟେ ତବ ସତ୍ତା ଜ୍ୟୋତିର୍ମୟ
ଉଦ୍‌ଭାସିତ କରୁଅଛି ବ୍ରହ୍ମାଣ୍ଡ-ହୃଦୟ ।
କୋଟି କଳ୍ପବ୍ୟାପୀ ମାପି ପରାର୍ଦ୍ଧଯୋଜନ
ନ ପାରଇ କଳି ଯେଉଁ ସତ୍ତା ସନାତନ ।
ମହାଦୀର୍ଘ ମହାସ୍ଥୂଳ ମହାସୂକ୍ଷ୍ମ ତନୁ
କୋଟି ରୂପେ ଉଭାସିତ ପରମ ଅତନୁ ।
ସେ ମହା ବିରାଟ ରୂପ ଜ୍ଞାନନନ୍ଦ ଖଣି
ଲୁଚାଇଛ ବିଶ୍ୱ-ନେତ୍ରୁ କେହ୍ନେ ଚିନ୍ତାମଣି ?
ରହିଛ ନୟନେ ପ୍ରଭୁ, ନ ଦେଖେ ନୟନ
ବ୍ରହ୍ମାଣ୍ଡ-ସବିତା ତୁମ୍ଭେ ପରମ ଅୟନ ।
ଶ୍ରୁତିମୂଳେ ବସି ସଦା ବଜାଉଛ ବୀଣା,
ନ ଶୁଣେ ଶ୍ରବଣ, ସେହି ତାନ ବିଶ୍ୱଜିଣା ।
ପରମ ଅମୃତ ରସ ଢ଼ାଳୁଛ ଅଶନେ,
ଧରିଛ ସ୍ନିଗ୍ଧ ସଂଶ୍ଳେଷେ ପ୍ରେମ ସ୍ପରଶନେ ।

ତୁମ୍ଭରି ସୌରଭେ ବିଶ୍ୱ ନନ୍ଦନକାନନ
ତେବେ ହେଁ କି ଲାଗି ପ୍ରଭୁ, ଆତ୍ମସଂଗୋପନ ?
କାହା ପ୍ରତି ଭୀତି ? କେବା ଯାଚିବ କରୁଣା ?
ତବ ମହାଦାନେ ଅଛି କେଉଁ ଦ୍ରବ୍ୟ ଊଣା ?
ଝରି ପଡୁଅଛି ପଦୁଁ ପ୍ରେମ-ଗଙ୍ଗାଝର,
ବିସ୍ତାରିତ ସ୍ନେହମୟ ହୃଦୟ-ସାଗର ।
ବହି ସେହି ସ୍ନେହ-ଘନ ତୁମ୍ଭରି ନିଯୋଗେ
ବ୍ରହ୍ମାଣ୍ଡ ଭଣ୍ଡାର ମଣ୍ଡେ ଅମୃତ ଆଭୋଗେ
ଚିର ଅବାରିତ ଦ୍ୱାର ଅମୃତ ଅଗାର
ବାଞ୍ଛାକଳ୍ପତରୁ ସେ ତ ଅକ୍ଷୟ ଭଣ୍ଡାର ।
ଦେଇଛ ଇନ୍ଦ୍ରିୟ ପାଇଁ ଇନ୍ଦ୍ରିୟାର୍ଥ ଭରି
ନିରତେ ଅମୃତ ତହୁଁ ପଡୁଅଛି ଝରି ।
ଦେଇଛ ରସନା ଅଗ୍ରେ ପୀୟୂଷ ମଧୁର
ତିକ୍ତ ଫଳୁଁ ଝରେ ତେଣୁ ମଧୁରସପୂର ।
ଗରଳ ଗରଭୁଁ ଝରେ ସଞ୍ଜୀବନୀଧାରା
କ୍ଷୁଧାତେଜେ ମଧୁମୟ ତବ ସୃଷ୍ଟି ସାରା ।
ସୃଜି କ୍ଷୁଧା କରିଅଛ ସୃଷ୍ଟି ମଧୁମୟ
ଶାଶ୍ୱତ ବିଧାନ ତବ ଅନନ୍ତ ଅକ୍ଷୟ ।
ଢ଼ାଳୁଛି ତପନ ରଶ୍ମି ପ୍ରାଣ-ସଂଜୀବନୀ
ତା ବକ୍ଷେ ଗାୟତ୍ରୀ ରାଜେ ପ୍ରଜ୍ଞା ପ୍ରଚ୍ଛେଦନୀ ।
ଢ଼ାଳୁଛନ୍ତି ନିତ୍ୟ ନଭୁଁ କୋଟି ଗ୍ରହ ତାରା
ବୁଦ୍ଧିବଳ ଉଦ୍‌ବୋଧିନୀ ରମ୍ୟ ରଶ୍ମିଧାରା ।
ସୁଦାରୁଣ ଶୀତେ ତନୁ ହେଲେ ଥର ଥର
ଆସଇ ବସନ୍ତ ପଢ଼ି ଦୀପକ ମନ୍ତର ।
ଦାରୁଣ ନିଦାଘତାପ ହୁଏ ବିଦୂରିତ
ଗାଏ ଯେବେ ମନ୍ଦ୍ରେ ଘନ ମହ୍ଲାର ସଙ୍ଗୀତ ।

ତୁମ୍ଭରି ନିଯୋଗେ ବହ୍ନି ପବନ ତପନ
ଦାମିନୀ କାମିନୀ ଉଷା ସାଗର ଗଗନ -
ସେବୁଛନ୍ତି ସୃଷ୍ଟିପଦେ ଚିର ଅବିରାମେ
କାଳକ୍ରମେ ଅବହିତ ଚିର ଅଭିରାମେ ।
ନିହିଅଛ ସୋମରସ ମହାରସାୟନେ,
ସୃଜିଛ ଗରଳ ପୁଣି ବ୍ୟାଧି ବିନାଶନେ ।
ବିପଥେ ନିହିଛ ବ୍ୟାଧି କିଲବିଷ କଷଣ,
ଚିହ୍ନାନ୍ତି ସେ ପଥ କରି ଦୁନ୍ଦୁଭି ଘୋଷଣ ।
ଜିଣିଛି ଯାଚଣ୍ଡା ପ୍ରଭୁ, ତୁମ୍ଭ ଦାତାପଣ,
ସ୍ୱରୂପ ଦର୍ଶନ ଦାନେ କି ଘେନି କୃପଣ ?
ବିରାଜି ନିଖିଳ-ପ୍ରାଣ-ପଙ୍କଜ-ଆସନେ,
ଖେଳାଉଛ କୋଟି ବିଶ୍ୱ ତର୍ଜ୍ଜନୀ ଚାଳନେ ।
ବାଜି ଉଠୁ ଆଜି ପ୍ରଭୁ ! ସେ ମଧୁ ଝଙ୍କାର
ଯେଉଁ ତାନେ କରେ ପ୍ରାଣେ ପ୍ରଜ୍ଞାନ ସଞ୍ଚାର ।
ଜଳିଯାଉ ଭବ-ବିଷ ବିଷୟ-ବାସନା
ଦଳିଯାଉ ଔଦାସୀନ୍ୟ ରହି-ଉନ୍ମାଦନା ।
ଖୋଲିଯାଉ ନେତ୍ର ମୋର ଏ ଅନ୍ଧ ପଟଳି
ଦେଖାଅ ପରମପଦ ଘେନ ଦୀନ ଅଳି ।
ଦେଖାଅ ସେ ଚିଦାନନ୍ଦ ସତ୍ତା ସନାତନ
ଦିଅ ଚିନ୍ତାମଣି, ପ୍ରେମ ଶାନ୍ତି-ନିକେତନ ।



# ନୈବେଦ୍ୟ

ପରମାରାଧ୍ୟା

ବାତ୍ସଲ୍ୟମୟୀ, ପତିପ୍ରାଣା, ଜନନୀ

**ଜାନକୀ ଦେବୀଙ୍କର**

ସ୍ୱର୍ଗୀୟ ଆତ୍ମା ପ୍ରତି

ମୋର ଜୀବନର ଭକ୍ତି-ନୈବେଦ୍ୟ-ପାଦ୍ୟୋଦକ

ରୂପେ

ଏହି ମାତୃ-ବିରହ-ଶୋକାଶ୍ରୁ

ଅର୍ପଣ କଲି ।

# ନୈବେଦ୍ୟ

## (ମାତୃବିଚ୍ଛେଦ)

ଫାଟିଯାରେ ହୃଦ ଫୁଟିଯାରେ ଆଖି
ରହିବୁ କି ସୁଖ ଘେନି
ଆଜଠାରୁ ସିନା ରସନା-ଅଗ୍ରତେ
ବ୍ୟର୍ଥ 'ମାତା' ବର୍ଣ୍ଣ ବେନି ।

ବିଧି ହେଲା ବାମ କାଳ ହେଲା ବାମ
ପୁଣି ମାତା ହୋଇ ବାମ
ଆଜି ଏ ଯାମିନୀ ଅନ୍ତିମ ଯାମରେ
ତେଜିଗଲେ ମର୍ତ୍ତ୍ୟଧାମ ।

ଅବସନ୍ନ କ୍ରମେ ହେଉଛି ଶରୀର
ପ୍ରାଣହୁଏ ଥର ଥର
କୁସୁମ କୋମଳ ଜନନୀ ହୃଦୟ
ମୋ ଭାଗ୍ୟେ ହେଲା ପଥର ।

ଆସ ମା ଭାରତୀ ! ବସ ମୋ ହୃଦୟ-
ପର୍ଯ୍ୟୁଷିତ ଶତଦଳେ
ଧୋଇ ଦେବି ଦେବୀ ! ତୋ ଅଭୟ ପଦ
ମାତୃଶୋକ ଅଶ୍ରୁ-ଜଳେ ।

ଧିକରେ ଜୀବନ ! ଧିକରେ ଲେଖନୀ
ମାତୃ ଶୋକ ଅଶ୍ରୁନୀରେ
ପାଦ୍ୟ ଅର୍ଘ୍ୟ ଦେଇ ଆନନ୍ଦେ କରିବୁ
ବାଣୀ-ଆରାଧନା କିରେ !

ଆଜି ମାର୍ଗଶୀର କୃଷ୍ଣ ଅଷ୍ଟମୀକି
କରି ଘୋର ଅମାରାତ୍ରି
ନବମୀ ଯାମିନୀ - ଅନ୍ତିମ ଯାମରେ
ହେଲୁ ମାତ ! ସ୍ୱର୍ଗଯାତ୍ରୀ ।

ସ୍ୱଭାବେ କୋମଳ ବିମଳ ସରସ
ଅଟେ ମା ! ହୃଦୟ ତୋର
କେଉଁ ଦୋଷେ ମୋର ହୃଦୟେ ଢ଼ାଳିଲୁ
ବିରହ-ଯାତନା ଘୋର !
ମାଗୋ !
ସ୍ୱଭାବ ଲଳିତ ତୋ ମୁଖ ସାରସ,
ଲଳିତ ତୋହର ବାଣୀ
ସ୍ମୃତି ପଥେ ଆଜି ଅସି ଧାର ସମ
ହୃଦ ପକାଉଛି ହାଣି ।

ଆଜନ୍ମ ଦୋଷିତ ଅଟେ ତୋ ଚରଣେ,
ତୋ ହୃଦ କ୍ଷମା-ବାରିଧି
ସେ କ୍ଷମା-ବାରିଧି ଶୁଖାଇ ଜନନି !
ଲଭିଲୁ କି ଅବା ସିଦ୍ଧି ।

ଏ ଫଟା ହୃଦୟ ବୋହି କି ମାଆଗୋ !
ବିହରିବି ବିଶ୍ୱଧାମେ
କାନନେ କନ୍ଦରେ ଶୁଣିବୁ କି ଥରେ
ଡାକିଲେ ତୋହର ନାମେ ?

ଥରେ କି ମାଆଗୋ ! "ହରିହର !" ବୋଲି
ଡାକିବୁ ଆଦରେ ମୋରେ
କାହିଁ ଅଛୁ ମାଗୋ ! ଦେଖ ବାରେ ଆସି
ପଡିଛି କି ଦୁଃଖ ଘୋରେ ।

ଧିକ ପୁତ୍ରପଣ ଧିକ ମୋ ସୁଶ୍ରୁଷା
ଧିକ ଆୟୁର୍ବେଦ ଶିକ୍ଷା
ପରିଣାମେ ତାର ବୋହିଲି ସିନା ମା ।

ଆଜି ମାତୃଘାତୀ-ଦୀକ୍ଷା !
ଔଷଧି ସଂଗ୍ରହେ କୁଠାର ହସ୍ତରେ
ବିହରି ମା ! ବନେ ବନେ
କୁଠାର-ପାଟବ ଶିଖୁଥିଲି କି ତୋ -
ଜୀବନ-ତରୁ ଛେଦନେ ?

କନ୍ଦଳିଛି ଶାକ ଅଭିନବ ହୋଇ
ମୋର ପୁର ଉଦ୍ୟାନରେ
ମାଗିବୁ କି ଆଉ ଥରେ ଆସି ତହିଁ
ପରିହାସ ବଚନରେ ?

ଭାଳିଥିଲି ରୋଗ ଅନ୍ତେ କରାଇବୁ
'ଶଶି'(୧)ର "ଅନ୍ନପ୍ରାଶନ''
ମୁଁ କ୍ରୁର ଚଣ୍ଡାଳ ଶ୍ମଶାନେ ତୋ ମୁଖେ
ଅନଳ କଲି ଦାହନ !

ଛିନ୍ନ ହୋଇ ଯା'ରେ ନିର୍ମ୍ମମ କର ! ତୁ,
ଆହେ ଦିଗପାଳଗଣ !
ମାତୃଘାତୀ ଏହି କର ବିଚ୍ଛେଦନେ
କରହେ ଅସି ଧାରଣ !

ଦିଗପାଳ ରୂପେ ଏ ବିଶ୍ୱେ ପ୍ରହରୀ
ରଖିଛନ୍ତି ବିଶ୍ୱ ସାଇଁ
ମୂକଭାବେ ବିଶ୍ୱ ଜଘନ୍ୟ କୃତିକି
ଦର୍ଶନ କରିବା ପାଇଁ ?

ପୁଣ୍ୟେ ପୁରସ୍କାର ପାପେ ତିରସ୍କାର
ନଦେବ କି କହ ବାରେ
ମାତୃଘାତୀ ଏହି କର ନଛେଦିବ
କିମ୍ବା କହ ଅସିଧାରେ

ମାଗୋ !
ଜନ୍ମ କରିମୋତେ ଦୁଗ୍ଧ ପାନ ଦାନେଗ
ଯତନେ କଲୁ ପାଳନ
ଶେଷେ ତୋର ମୁଖେ ଦୁଗ୍ଧ ଧାରା ଦେଇ
ଘେନିଲି ତୋର ଜୀବନ ।

ପଞ୍ଚପୁତ୍ର ମଧ୍ୟେ ଅଟଇଁ ସିନା ମା !
ମୁମୂଢ଼ ପାଷାଣ୍ଡ ଅତି
ତୋ ମୁଖ ମୋ ମୁଖ ପୋଡାଇ ଏ ବିଶ୍ୱେ
କରିବି କେମନ୍ତେ ଗତି ?

ଆଉ ଥରେ ମାଗୋ ! ଆସି ମୋର ଗଣ୍ଡେ
ଦିଅ ସେ ମଧୁ ଚୁମ୍ବନ
ଦେଖାଇ ବଦନ ଶୁଣାଅ ମା ! ବାରେ
ତୋ ସ୍ନେହମୟ ବଚନ ।

ବସିଅଛି ଆଜି ଏ ପୁର ଉଦ୍ୟାନେ
ତୋ ବିଚ୍ଛେଦେ ତପ୍ତ ମନେ
ଢ଼ାଳ ମା ! ମୋର ଏ ଦଗ୍ଧ ପ୍ରାଣେ ଶାନ୍ତି
ସାନ୍ତ୍ୱନାମୟ ବଚନେ ।

ଏହିତ ରହିଛି ସେ କମଳା ତରୁ
ଠିଆହୋଇ ଯାର ତଳେ
ଭାଷୁଥାଉ କେତେ ବାତ୍ସଲ୍ୟ ଭାରତୀ
ପରିବା ମାଗିବା ଛଳେ ।

ଆଉ କି ଭାଷିବୁ ସେ ଯାଚଞ୍ଚା ବାଣୀ ?
ଧିକରେ ଦଗ୍ଧ ହୃଦୟ !
ନଦେଲୁ ତାକରେ ତା ଯାଚିତ ଦ୍ରବ୍ୟ
ତୁକି ଏଡେ ନୀରଷଶୟ ?

ଅନୁତାପାନଳେ ଦଗ୍ଧ ହୋଇ ତୁହି
ଝୁରିମରୁ ଥାଅ ଏବେ
କୋଟି ଜନ୍ମାନ୍ତରେ ଲଭିବୁ କି ଆଉ
ସେପରି ଜନନୀ ଭବେ ?

ତେଜିଲେ ଏପ୍ରାଣ ଲଭିବି କି ତୋତେ
ଦୁଃଖ ସ୍ମୃତି ତୋର ଘେନି
ଚିକିତ୍ସା ତନ୍ତ୍ରରେ ଦେଖି ତୋର ଦୁଃଖ
ନଫୁଟିଲା ନେତ୍ରବେନି ।

ତୋପୁର, ଅଗଣା, ପ୍ରିୟସ୍ଥଳୀ ମାନ
ହୋଇଛି ମା ! ଶୂନ୍ୟମୟ
ପତି, ସୁତ, ସୁତା, ରୋଦନ୍ତି ବିକଳେ
ସନ୍ତାପେ ହୋଇ ଅଥୟ ।

ନ ସେବିଲି ଦିନେ    ତୋ ପବିତ୍ର ପଦ
ତେଣୁ କି ବହିଲୁ ରୋଷ ?
ତୋ ପରି ବାତ୍ସଲ୍ୟ    ମୟୀ ମାତା ପକ୍ଷେ
ତୁଚ୍ଛସିନା ଏହି ଦୋଷ ।

ନୁହଇଁ ମା ! ତୋର    ମୁଁ ଯୋଗ୍ୟ ତନୟ,
ତେଜିଗଲୁ କରି ଋଣୀ
ଯାପିବି ସିନା ଏ    ପ୍ରାଣ, ଆମରଣ
ତୋର ଗୁଣ ଗୁଣି ଗୁଣି ।

ବିଶ୍ୱମୟଙ୍କର    ବିଶ୍ୱରୂପ ସଙ୍ଗେ
ଯାଇଅଛୁ କି ମା ! ମିଶି
କୋଟି ତନୁ ଧରି    ତେଣୁକି ଚୌଦିଗେ
ଦିଶୁଅଛୁ ଦିବାନିଶି ।

ମାତୃହୀନ ନର    ଜାଣଇ ଜଗତେ
'ମାତା' ପଦାର୍ଥର ମୂଲ
ସେ ଅମୂଲ୍ୟ ରତ୍ନ    ହରାଇ ସିନା ମୁଁ
ହେଉଛି ଏତେ ଆକୁଳ ।

ଜନ୍ମାନ୍ତରେ ଯେବେ    ଯିବି ଗୋ ଜନନି !
ତୋର ପଥ ଅନୁସରି
ସ୍ୱଭାବେ ଅନ୍ଧ ମୁଁ    ଦୟାମୟୀ ! ସ୍ନେହେ
ନେବୁ ମୋର କରଧରି ।

ପଦ ପ୍ରାନ୍ତେ, ପଦ    ଧୋଇ ଅଶ୍ରୁନୀରେ
ପାଦୁକା ପାନେ ଆନନ୍ଦେ
କଟାଇବି ମୋର    ପରଲୋକ ସୁଖେ
ସେବାକରି ତୋର ପଦେ ।

ସେବାର ଅଯୋଗ୍ୟ    ଯେଣୁ ମୁଁ ହିଁ ତେଣୁ
ନନେଲୁ କି ସଙ୍ଗେ ମୋତେ ?

ଭାଷାତୀତ ତୋର    ବାତ୍ସଲ୍ୟ କରୁଣା
କେମନ୍ତେ ଭୁଲିବି ସତେ !

ଗଲୁ ଯେବେ ମାତ !    ତେଜି ଭବ ମାୟା
ଯାଅ ନିତ୍ୟ ଶାନ୍ତିପୁରେ
ଆଲୋକିତ ପୂତ    ଅଟଇ ନିରତେ
ଯାହା ମହା ଜ୍ୟୋତ୍ସ୍ନା ପୁରେ ।

ନାରୀ ଧର୍ମ ସାର    ସ୍ୱର୍ଗୀୟ ରତନ
ଝଳକେ ଯାହା ତୋ ଭାଲେ
ପରଲୋକ ପଥ    ଭେଦିଯାଅ ମା ଗୋ !
ତାର ପୁଣ୍ୟ ପ୍ରଭା ଜାଲେ ।

ଆଶୀଷ ମା ! ତୋର    ସୁତ ସୁତାଗଣେ
ନିତ୍ୟ ସେହି ଶାନ୍ତି ପୁରୁ
ବିଶ୍ୱ ନିସ୍ୱରତା    ସ୍ମରାଇ ତୋ ସ୍ମୃତି
ନିରତେ ମୋ ପ୍ରାଣେ ସ୍ଫୁରୁ ।

ଦଗ୍ଧ ପ୍ରାଣ ଘେନି    ତମୋମୟ ବିଶ୍ୱେ
ତୋର ଚିତା ସ୍ମୃତି ବହି
ମୃତ ମୁଖ ତୋର    ଧ୍ୟାୟି ନିରନ୍ତର
ତେଜିବି ଏ ଶୂନ୍ୟ ମହୀ ।

ତୋର "ହରିହର"

---

* ମୋର ୫ମାସ ବୟସର ଶିଶୁ ପୁତ୍ରର ନାମ 'ଶଶିଭୂଷଣ'



ଓଁ ତତ୍ ସତ୍

# ପ୍ରତ୍ୟାଗମେ

---

ସ୍ୱସ୍ତି ଶ୍ରୀମାନ ମହାମାନନୀୟ ମହାରାଜ
ଶ୍ରୀ ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବ
ବାମଣ୍ଡାଧୀଶ୍ୱର ମହୋଦୟଙ୍କ
ଇଙ୍‌ଲେଣ୍ଡରୁ ସ୍ୱଦେଶ-ପ୍ରତ୍ୟାଗମନ
ଉପଲକ୍ଷେ ।

ଶର୍ମା ଶ୍ରୀ ହରିହର ମହାପାତ୍ର [କବିରାଜ]
ବାମଣ୍ଡା

# ପ୍ରତ୍ୟାଗମେ

(ଶ୍ରୀମାନ ମହାରାଜାଙ୍କ ଇଉରୋପ ପରିଭ୍ରମଣ ନିମନ୍ତେ ସ୍ୱରାଜ୍ୟରୁ ଗମନ ଦିବସ ତା୨୬.୦୪.୧୯୩୮, ପ୍ରତ୍ୟାଗମନ ପରେ ସ୍ୱରାଜଧାନୀରେ ପ୍ରବେଶ ଦିବସ ତା୧୫.୦୯.୧୯୩୮)

## ଉପହାର

ମାନନୀୟ ଶ୍ରୀଯୁକ୍ତ ..............................................

ମହୋଦୟ କରକମଳେଷୁ

ମହୋଦୟ !

ଆମ୍ଭମାନଙ୍କର ମହାରାଜ, ଶ୍ରୀମାନ ଭାନୁଗଙ୍ଗ ତ୍ରିଭୁବନ ଦେବ, ବାମଣ୍ଡାଧୀଶ୍ୱର ମହୋଦୟ ସୁଦୂର ଇଉରୋପ ପରିଭ୍ରମଣ ପରେ ପ୍ରତ୍ୟାବର୍ତ୍ତନ କରି ସର୍ବଶୁଭରେ ସ୍ୱରାଜଧାନୀରେ ଉପନୀତ ହୋଇ ଅଛନ୍ତି । ଏ ଶୁଭ ପ୍ରତ୍ୟାଗମନ ଉତ୍ସବରେ ରାଜଭକ୍ତ ବାମଣ୍ଡାର ପ୍ରଜା ମଣ୍ଡଳୀ ଆଜି ନିରତିଶୟ ଆହ୍ଲାଦିତ । ସେହି ଆହ୍ଲାଦର ଆବେଗରେ ଲିଖିତ ଏ କ୍ଷୁଦ୍ର କବିତାଟି ଉପହାର ରୂପେ ଭବଦୀୟ କରକମଳରେ ଅର୍ପିତ ହେଲା । ଆଶାହୁଏ, ଏହା ଭବଦୀୟ ହୃଦୟରେ ଆନନ୍ଦ ସଞ୍ଚାର କରିବ ।

ବିନୀତ, ରଚକ

## ଉତ୍ସର୍ଗ

ପୁରାଣ ପ୍ରଖ୍ୟାତ, ସୋମବଂଶୋଦ୍‌ଭବ ଗଙ୍ଗକୁଳଭୂଷଣ

ମହାମାନ୍ୟ ମହାରାଜ

ସ୍ୱସ୍ତି ଶ୍ରୀମାନ ଭାନୁଗଙ୍ଗ ତ୍ରିଭୁବନଦେବ, ବାମଣ୍ଡାଧୀଶ୍ୱର ମହୋଦୟ

ସନ୍ନିଧାନେଷୁ

# ପ୍ରତ୍ୟାଗମେ

ନୀଳ ସିନ୍ଧୁ ବକ୍ଷେ ଉତ୍ତାଳ ତରଙ୍ଗେ
ଦୋଳି ଦିବାନିଶି କଷଣ ସହି,
ଉଚ୍ଚ ଆଦରଶ ଦରଶନେ ଦେବ ।
ଗଲ ଦୂରଦେଶ ପାଶ୍ଚାତ୍ୟ ମହୀ ।

(୨)

ଶତାଧିକ ଦିନ ଅତିକ୍ରମି କ୍ରମେ
ବଳିଗଲା କଷ୍ଟା ଉତ୍‌କଣ୍ଠା ଭରେ,
ପିପାସିତ ପ୍ରାଣେ ବାମଣ୍ଡା ଧରଣୀ
ଅନାଇଁ କାନ୍ଦିଲା କରୁଣ ସ୍ୱରେ ।

(୩)

ମରମେ ମରମେ ନିଭୃତ ଅନ୍ତରେ
ବାଜିଗଲା ତାର କରୁଣ ବୀଣା,
ମଣିହରା ଫଣୀ ପରାଏ ବ୍ୟଥିତେ
ଯାପୁଥିଲା କାଳ ନିର୍ବେଦେ ସିନା

(୪)

ରାଜା ମୌଳିମଣି ଅଟନ୍ତି ରାଜ୍ୟର
ପ୍ରଜାପ୍ରାଣେ ରାଜା ପରଶମଣି
ରାଜ୍ୟତରୀ ବକ୍ଷେ କର୍ଣ୍ଣଧାର ସେତ
ରାଜଦଣ୍ଡେ ଚଳେ ରାଜ୍ୟ ତରଣୀ ।

(୫)

ଏ ଶୁଭ ସୁନୀତି ଜାଣଇଁ ବାମଣ୍ଡା
ଜାଣେ ରାଜଭକ୍ତି ମହିମା ସୁଖ
ଚାହିଁ ରାଜରଷି ବାସୁଦେବଙ୍କର
ଦେବୋପମ ପ୍ରାଣ, ପ୍ରସନ୍ନ ମୁଖ ।

(୬)

ପ୍ରତିଭା ମଣ୍ଡିତ ସଚ୍ଚିଦାନନ୍ଦଙ୍କ
ଉଚ୍ଚ ନୀତି ସଂଗେ ଅମର ବୀଣା,
ଶୁଣି ପୁଣି ଦେବ ଦିବ୍ୟଶଙ୍କରଙ୍କ
କରୁଣାଧନେ ଯେ ହୋଇଛି କିଣା ।

(୭)

ଜାଣେ ଏ ଧରଣୀ ଉଚ୍ଚ ଲକ୍ଷ୍ୟ ତବ
ପିପାସିତ ପ୍ରାଣେ ପ୍ରତୀକ୍ଷା ଧରି,
ନିରନ୍ତରେ ତେଣୁ ବିଚ୍ଛେଦ କଷଣ
ସହିଛି ନୀରବେ ଦିବା ଶର୍ବରୀ ।

(୮)

ସୌମ୍ୟ ମୁଖେ ତବ ସୁଲଳିତ ହାସ
ଦେଖି ଫୁଲି ଉଠେ ଯାହାଙ୍କ ବକ୍ଷ,
ଆନନ୍ଦାଶ୍ରୁ ପୂରେ ନୟନ ଯୁଗଳେ
ଅବଲୋକିତ ତବ ମହତ ଲକ୍ଷ୍ୟ ।

(୯)

ଦିବ୍ୟଶଙ୍କରଙ୍କ କରୁଣା ମୟୁଖ
ସଚ୍ଚିଦାନନ୍ଦଙ୍କ ପ୍ରତିଭା ଛବି
ଦେଖି ତମ ନେତ୍ରେ ଆନନ୍ଦ ଉଲ୍ଲାସେ
ଯାଏ ଯାହାଙ୍କର ହୃଦୟ ଦ୍ରବି ।

(୧୦)

କୋମଳ ବୟସେ ପ୍ରଜା ହିତ ବ୍ରତ
ଲକ୍ଷି ପ୍ରାଣେ ତବ ସେ ପିତାମହୀ,
ସୁବିଦୂଷା ତବ ବିଦେଶ ଗମନ
ବିଚ୍ଛେଦ କଷଣ ଅଛନ୍ତି ସହି ।

(୧୧)

ହୃଦୟର ନିଧି, ନୟନର ମଣି
ପ୍ରାଏ ହୃଦେ ଭାଳି ଯେ ନିଶି ଦିନ
ବାତ୍ସଲ୍ୟ ଗଦ୍‌ଗଦେ ସଜଳ ନୟନେ
ବିଲୋକନ୍ତି ତବ ମୁଖ ନଳିନ ।

(୧୨)

ଭାନୁ ଦୀପ୍ତି ପ୍ରାଏ ପ୍ରଦୀପ୍ତ ପ୍ରତିଭା
ଶ୍ରୀ ପ୍ରଦୀପ୍ତ ଗଙ୍ଗ ଯୁବରାଜନେ
ତୁମ୍ଭରି ବିମଳ ପୁଣ୍ୟ ପାରିଜାତ
ଶିରୀ ଦେଖନ୍ତି ଯେ ତୃପ୍ତ ନୟନେ ।

(୧୩)

ପୁଣ୍ୟଶୀଳା ସେହି ମାତୃଦେବୀ ତବ
ନିରୁଦ୍‌ବେଗେ ଶ୍ୱଶ୍ରୁ ମାତାଙ୍କ ସଂଗେ
ତବ ସୌମ୍ୟମୁଖ ଦରଶନେ ଆଜି
ସନ୍ତୃପ୍ତ ଉଲ୍ଲାସ ସିନ୍ଧୁ ତରଙ୍ଗେ ।

(୧୪)

ସାଧ୍ୱୀ କୁଳ ମୌଳି ମଣ୍ଡନ ରତନ
ଲକ୍ଷ୍ମୀ ସ୍ୱରୂପିଣୀ ଶ୍ରୀ ମହାଦେବୀ
ତଦ୍‌ଗତ ହୃଦୟା ଦୂର ପ୍ରତ୍ୟାଗତ
ବିଷ୍ଣୁତୁଲ୍ୟ ସ୍ୱାମୀ ଶ୍ରୀପଦ ସେବି ।

(୧୫)

ଆଜି ବାମଣ୍ଡାର ହୃଦୟ କମଳ
ବିକଶି ହସୁଛି ପ୍ରମୋଦ ଭରେ
ଗଙ୍ଗକୁଳ ଭାନୁ ଦେବ ଭାଗୁଗଙ୍ଗ !
ପୁଣ୍ୟମୟ ତବ ବିମଳ କରେ ।

(୧୬)

ଥିଲା ଦିନ ଦେବ ! ଯେବେ ଆର୍ଯ୍ୟକୁଳ
ସୁମେରୁ ବକ୍ଷରେ ନନ୍ଦନ ବନ
ରଚି ସ୍ୱର୍ଗ ଧାମ ଭାସ୍ୱର ଗୌରବେ
ଲଭିଥିଲେ ବିଶ୍ୱେ ଦେବ ଆସନ ।

(୧୭)

ଆକ୍‌ସଫୋର୍ଡ ପୁଣି କେମ୍ବ୍ରିଜ୍ ପରାଏ
ଥିଲା ବ୍ରହ୍ମଲୋକ 'ଉତ୍ତର କୁରୁ'
ବିଶ୍ୱଜ୍ଞାନ ପୀଠ ବ୍ରହ୍ମାଙ୍କ ଆଶ୍ରମ,
ଆଜି ସେତ 'ସାଇବେରିଆ' ମରୁ ।

(୧୮)

ଏହି ମରୁ ବକ୍ଷେ ଲୁପ୍ତ କ୍ଷୀରସିନ୍ଧୁ
ଲୁପ୍ତ ସେ ଆର୍ଯ୍ୟର ସ୍ୱରଗ ଧାମ
ନନ୍ଦନ ବନର ଉନ୍ମୂଳିତ ତରୁ
ଯୋଗେ ବକ୍ଷ ଯା'ର ମହାଦୁର୍ଗମ ।

(୧୯)

ଇନ୍ଦ୍ରଙ୍କ ବାହନ ଐରାବତ ଆଦି
ଚତୁର୍ଦ୍ଦନ୍ତ ହସ୍ତି କଙ୍କାଳ ରାଶି
ହିମ ଆସ୍ତରଣେ ରହିଛି ଅଦ୍ୟାପି
ବିସ୍ମୃତି ଗରଭେ ସେ ସ୍ମୃତି ଭାଷି ।

(୨୦)

ପ୍ରକୃତି ଇଙ୍ଗିତେ ସୁରାସୁର ଯୁଦ୍ଧେ
ଦେବ ବଂଶଧର ଦକ୍ଷିଣେ ଆସି
ମଙ୍ଗୋଲିଆ ଭେଦି 'ଆର୍ଯ୍ୟ' ନାମେ ହେଲେ
ଏ ଭାରତ ଖଣ୍ଡେ 'ଭାରତବାସୀ'

(୨୧)

ଅସ୍ତ ନୋହିଥିଲା ଗଉରବ ରବି
ଦେବଗଣଙ୍କର ଯେ କାଳେ ତହିଁ
ଜ୍ଞାନ ଆହରଣେ ଯାଉଥିଲେ ଆର୍ଯ୍ୟେ
ସେହି ଦେବଲୋକେ କଷଣ ସହି ।

(୨୨)

ହିମାନୀ ଅସ୍ତୃତ ହରିଦ୍ୱାର ପଥ
ଥିଲା ତ ଗନ୍ତବ୍ୟ ମାର୍ଗ ତାଙ୍କର
କାହିଁ ଆଜି ସେହି ଦେବ, ଦେବଭୂମି,
ନାହିଁ ସେ ସ୍ୱର୍ଗୀୟ ଜ୍ୟୋତି ଭାସ୍ୱର ।

(୨୩)

ସ୍ୱର୍ଗର ସେ ଟେକ ସେ ଦେବ ଗୌରବ
ଅମର ବିକ୍ରମ ସାଧନାରାଶି
ବରି ନେଇଛନ୍ତି ସେ ଦେବ ଦାୟାଦ
ଆମ୍ଭରି ସୋଦର ପାଶ୍ଚାତ୍ୟବାସୀ ।

(୨୪)

ଗିରି ପକ୍ଷ ଛେଦୀ ସେହି ବଜ୍ରବାଣ (୧)
ସେହି ସୁଧା ସେହି ଅପ୍ସରା ନାଟ
ସେ ଦୁନ୍ଦୁଭି ବାଦ୍ୟ (୨) ସେ ସୁଧର୍ମା ସଭା (୩)
ସେ ନନ୍ଦନବନ ସୁଷମାହାଟ ।

(୨୫)

ଜଳ, ସ୍ଥଳ ବ୍ୟୋମେ ଅବାଧ ଗମନ
ନିଖିଳ ଜଗତ ପାଳନ ଶକ୍ତି
ଲଭିଛନ୍ତି କି ନା ଦେବୋପମ ଗୁଣେ
ସେ ଦେଶବାସୀଏ ଏ ବିଶ୍ୱ ଭକ୍ତି ।

(୨୬)

ଦେଖି ଆସିଛ ତ ହେ ନରେନ୍ଦ୍ର ମଣି
ଦିବ୍ୟ ଅବଧାନେ ହେଉ କଳନା
ସେ ଆତିଥେୟତା ସ୍ୱର୍ଗୀୟ ସୌଜନ୍ୟ
ଅଛି କି ଅନ୍ୟତ୍ର ତାର ତୁଳନା

(୨୭)

ଏ ଯୁଗର ସ୍ୱର୍ଗ ସ୍ୱର୍ଗୀୟ ଆଦର୍ଶ
ସ୍ୱର୍ଗୀୟ ଆଲୋକେ ବିଚରି ସୁଖେ
ସ୍ୱର୍ଗୀୟ ପ୍ରତିଭା ପ୍ରଦୀପ୍ତ କିରୀଟେ
ଆସିଛ ତ ଦେବ ପ୍ରଫୁଲ୍ଲ ମୁଖେ ।

(୨୮)

ଅର୍ଦ୍ଧ ଧରଣୀର ରାଜଚକ୍ରବର୍ତ୍ତୀ
ପ୍ରଜାହିତେ ସ୍ୱାର୍ଥ ବିଳାସ ଦଳି
ବିଶ୍ୱ ସେବାବ୍ରତେ ଅର୍ପିତ ଜୀବନ
ସ୍ୱନେତ୍ରେ ତ ଦେବ ଆସିଛ କଳି ।

(୨୯)

ସେ କାଳେ ଯେପରି ଏ କାଳେ ସେପରି
ଜୀବନ ସଂଗ୍ରାମ ଧରଣୀ ବକ୍ଷେ
ଲାଗିଛି ତ ସଦା ମାତ୍ର ବ୍ରିଟାନିୟା
ଶାନ୍ତି ଧ୍ୱଜା ତୋଳି ଅଟଳ ଲକ୍ଷ୍ୟେ ।

(୩୦)

ବିଶ୍ୱହିତ ବ୍ରତେ ପ୍ରାଣପଣେ କରି
ଘୁଞ୍ଚାଇବା ଲାଗି ଧରଣୀ ଭାର
କରି ନାହାନ୍ତି କି ଧନ ଜନ ମନ
ନିଯୋଗ ସୁନୀତି କର୍ତ୍ତବ୍ୟ ସାର ।

(୩୧)

| | |
|---|---|
| ମହତ ସତ୍କାରେ | ସମ୍ରାଟ ସଦନେ |
| ସମାଦର ଲଭି | ନିଜ ଗୌରବେ |
| ସ୍ୱକେତନ ଚୂଡ଼ା | ମଣ୍ଡି ଦେଇଅଛ |
| ଅଭିନବ ଖ୍ୟାତି | ରତ୍ନ ବିଭବେ । (୪) |

(୩୨)

| | |
|---|---|
| ସେହି ପୁଣ୍ୟତୀର୍ଥେ | ଯେ ଉଚ୍ଚ ଆଦର୍ଶେ |
| ହେଲା ପ୍ରାଣ ତବ | ଅନୁପ୍ରାଣିତ |
| ସେ ପ୍ରଭାବେ ଦେବ | ହେଉ ସଦା ତବ |
| ପ୍ରଜାକୁଳ ମନ | ଅନୁରଞ୍ଜିତ । |

(୩୩)

| | |
|---|---|
| ଦେଶ କାଳ ପୁଣି | ଯୁଗ ଧର୍ମ ସଂଗେ |
| ସମନ୍ୱୟେ ତବ | ପ୍ରତିଭା ବଳେ |
| ଶ୍ରେୟ ପଥ ଲଭି | ସୁଖୀ ହେବୁ ଆଶା |
| ଜଣାଉଛୁ ତବ | ପଦକମଳେ |

(୩୪)

| | |
|---|---|
| କରୁଅଛୁ ଅଳି | ମଙ୍ଗଳ ନିଧାନ |
| ପରାତ୍ପର ବିଭୁ | ଅଭୟ ପଦେ |
| ଶାନ୍ତି ସୁଖେ ଦୀର୍ଘ | ଅନାମୟ ପ୍ରାଣେ |
| ରଖନ୍ତୁ ତୁମ୍ଭଙ୍କୁ | ଶ୍ରେୟ ସମ୍ପଦେ । |

(୩୫)

| | |
|---|---|
| ସୁନୀତି ସୁଜ୍ଞାନ | ପୁଣ୍ୟ ରତ୍ନେ ହେଉ |
| ଲଲାଟ କିରୀଟ | ଗରିମାମୟ |
| ପ୍ରଜା ଭକ୍ତିପୁଷ୍ପେ | ଶୋଭୁ ସିଂହାସନ |
| ପ୍ରଜାନୁରଞ୍ଜନେ | ତବ ହୃଦୟ । |

---

୧. ବିଶାଳକାୟ ତୋପ, ୨. ଜୟଢାକ, ୩. ପାର୍ଲିଆମେଣ୍ଟ ପ୍ରଭୃତି ଲକ୍ଷିତ

୪. ମହାମହିମ ଭାରତ ସମ୍ରାଟଙ୍କ ସଂଗେ ମାନନୀୟ ମହାରାଜା ମହୋଦୟ ବକିଂହମ୍ ପ୍ରାସାଦରେ ସାକ୍ଷାତ କରି ସମ୍ରାଟଙ୍କ ଦ୍ୱାରା ସମାଦୃତ ହୋଇଥିଲେ ।

# ଖଣ୍ଡାଧାର

( ପ୍ରକୃତି-ଚକ୍ର ଖଣ୍ଡକାବ୍ୟ )

ବାମଣ୍ଡା ରାଜଧାନୀ ଦେବଦୁର୍ଗ ନିବାସୀ

ଶର୍ମା ଶ୍ରୀ ହରିହର ମହାପାତ୍ର କବିରାଜ

ପ୍ରଣୀତ



ଶର୍ମା ଶ୍ରୀ ଇନ୍ଦୁଭୂଷଣ ମହାପାତ୍ରଙ୍କ ଦ୍ୱାରା

ପ୍ରକାଶିତ

ପ୍ରଥମ ମୁଦ୍ରଣ

୧୯୫୨

ମୂଲ୍ୟ ୬୦ ପ

# ଭୂମିକା

ଖଣ୍ଡାଧାର ଗୋଟିଏ ଜଳପ୍ରପାତ । ଏହା ବଣାଇଁ ରାଜ୍ୟରେ, ବଣାଇଁ ଗଡ଼ରୁ ପ୍ରାୟ ୧୩ ମାଇଲ ପୂର୍ବ ଦିଗରେ 'ଖଣ୍ଡାପାଟ' ପର୍ବତରୁ ନିଃସୃତ ହେଉଅଛି । ଏହି ଖଣ୍ଡାପାଟ ପର୍ବତର ଉଚ୍ଚତା ସମୁଦ୍ର ପୃଷ୍ଠରୁ ୩୫୦୫ ଫୁଟ । ପ୍ରପାତର ୮୦୦ ଫୁଟ ଉଚ୍ଚତା ଓ ଜଳ ପ୍ରବାହର ବିପୁଳତା ଦେଖି ମନେ ହୁଏ, ଏହାଯୋଗେ ବିଦ୍ୟୁତ୍ ଶକ୍ତି ଉତ୍ପାଦନର ଆୟୋଜନ ହେଲେ ଗୋଟିଏ ଭଲ ଶିଳ୍ପ ଅନୁଷ୍ଠାନ ଚଳିପାରନ୍ତା । ନିମ୍ନଭୂମି ମଧ୍ୟ ଯଥେଷ୍ଟ ଅନୁକୂଳ ଥିବାର ଜଣାଯାଏ । ଏହାର ପ୍ରାକୃତିକ ଶୋଭା ବର୍ଣ୍ଣନ ଏ କ୍ଷୁଦ୍ର ଖଣ୍ଡ କାବ୍ୟର ବିଷୟବସ୍ତୁ । କାବ୍ୟର ମାଧୁର୍ଯ୍ୟ ବୃଦ୍ଧି ନିମନ୍ତେ ଆଞ୍ଚଳିକ ଐତିହାସିକ ସୂଚନା, ପ୍ରାସଙ୍ଗିକତା ରକ୍ଷା କରିପାରିଛି କି ନା, ତାହା ସହୃଦୟ ପାଠକମାନଙ୍କର ବିବେଚନୀୟ । ୭୦୦/୮୦୦ ବର୍ଷ ପୂର୍ବେ ଦେଶର ଅବସ୍ଥା କଣ ଥିଲା; ରାଜାମାନେ ପରସ୍ପର ଆତ୍ମଦ୍ରୋହରେ ମାତି ଦେଶକୁ କିପରି ଶକ୍ତିହୀନ କରିଥିଲେ, ଯେଉଁ ସୁଯୋଗ ପାଇ ଶକ, ହୁନ, ମୋଗଲ ଆଦି ବିଦେଶୀୟମାନେ ଭାରତର ସର୍ବନାଶ କରିଗଲେ, ତହିଁର ସୂଚନା ଏହାର ଐତିହାସିକ ଚିତ୍ରରେ କିଞ୍ଚିତ ଅଭିବ୍ୟକ୍ତ ହୋଇଛି । ବର୍ଣ୍ଣନାରେ ବୈଶିଷ୍ଟ୍ୟଯୁକ୍ତ ସ୍ଥାନମାନଙ୍କରେ ଯଥାସମ୍ଭବ ଫୁଟ୍ ନୋଟ ଦେଇଥିବାରୁ ଗ୍ରନ୍ଥଗତ ବିଷୟର ବିଶଦ ବିଶ୍ଳେଷଣ ଆବଶ୍ୟକ ବୋଧ ହେଉନାହିଁ ।

ଏ ପୁସ୍ତକଟିର ଲେଖା ୧୪/୧୫ ବର୍ଷ ପୂର୍ବରୁ ସମାପ୍ତ ହୋଇ, ନାନା କାରଣରୁ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇପାରି ନଥିଲା । ଏହାର ପ୍ରକାଶ ବିବରଣ ସ୍ମୃତି ସଙ୍କେତରେ ସୂଚିତ ହୋଇଅଛି ।

ବଣାଇର ସ୍ୱର୍ଗତ ରାଜା ଧରଣୀଧର ଇନ୍ଦ୍ରଦେଓ ଦେବ ମୋତେ ଡକାଇ ନେଇ 'ଖଣ୍ଡାଧାର' ପ୍ରପାତ ପରିଦର୍ଶନର ସମସ୍ତ ସୁବିଧା କରିଦେଇଥିଲେ । ସୀମାବଦ୍ଧ ହେଲେ ହେଁ ତାଙ୍କରି ଆନୁକୂଲ୍ୟରେ ଏହା ପ୍ରକାଶିତ ହୋଇପାରିଅଛି । ତାଙ୍କର ସ୍ୱର୍ଗୀୟ ଆତ୍ମା ପ୍ରତି କେବଳ ଶ୍ରଦ୍ଧା-କୃତଜ୍ଞତା ନିବେଦନ ଛଡ଼ା, ତାଙ୍କର ପ୍ରତିଶ୍ରୁତ ଉପହାର ବିନିମୟରେ ତାଙ୍କ ହାତରେ ପୁସ୍ତକ ଖଣ୍ଡିଏ ସମର୍ପଣ କରିବାର ଉପାୟ ନାହିଁ । ତାଙ୍କର ବିଦ୍ୟମାନତାରେ ଏହା ପ୍ରକାଶିତ ହୋଇପାରିଥିଲେ ପୁସ୍ତକଟିର ସୌଷ୍ଠବ ଅନ୍ୟ ପ୍ରକାର ହୋଇଥାନ୍ତା ।

ଦେବଗଡ଼-ବାମଣ୍ଡା
ସମ୍ବଲପୁର

ପ୍ରଣେତା

# ସ୍ମୃତି ସଂକେତ

## ଶ୍ରଦ୍ଧାଷ୍ପଦ ଶ୍ରୀଯୁକ୍ତ ଧରଣୀଧର ଦେହୁରୀ B.A., D.Ed

ମହୋଦୟ
କରକମଳେଷୁ

ଯେଉଁଦିନ ମୋର ପ୍ରିୟତମ ସୁହୃଦ୍ ସାହିତ୍ୟ ରସିକ ଶ୍ରୀମାନ୍ ବୃନ୍ଦାବନନାଥ ଶର୍ମା, ମୋର ଏହି କଳ୍ପନା-ସଙ୍ଗିନୀ 'ବନମାଳା'ର ନିଃସର୍ଗ ମାଧୁରୀରେ ମୁଗ୍ଧ ହୋଇ ତା'ର ହାତ ଧରି ନେଇ ଆପଣଙ୍କ ସଂଗେ ଭେଟ କରାଇଲେ, ଆପଣଙ୍କ ସ୍ୱଭାବ ମଧୁର ଦରହାସରେ ଆପଣଙ୍କର ଏ ପ୍ରତିବେଶିନୀ ଆହ୍ଲାଦିତା ହୋଇ, ଆପଣଙ୍କର ନିର୍ଦ୍ଦେଶରେ ହିଁ ଅଖଣ୍ଡ ସହାନୁଭୂତିସମ୍ପନ୍ନ ରାୟସାହେବ ଶ୍ରୀମାନ୍ ହରିପ୍ରସାଦ ଦେବଙ୍କୁ ଓଳଗି ହେଲା, ସେଦିନ ତା'ର ଅଜାଣତରେ ବନବାସିନୀ ସୁଲଭ 'ଲାଜ' କିଞ୍ଚିତ୍‌ରେ ହେଲେ ଲିଭି ଯିବାରୁ ତିନିଜଣଙ୍କର ଆନ୍ତରିକ ସ୍ନେହ, ଆଶ୍ୱାସନା, ଯତ୍ନରେ ଓ ନିର୍ଦ୍ଦେଶ ମତେ କେତୋଟି ଶିଶିର ସ୍ନାତ ବନଫୁଲ ନେଇ ଉତ୍କଳ-ଭାରତୀ ପୂଜ୍ୟ ମଣ୍ଡପକୁ ଯାଉଛି । ସେଠାରେ ଅଳି ଗଳୀ ଯେ କୌଣସି ଅନ୍ଧାରିଆ କୋଣରେ ଠିଆ ହେଲେ ମଧ୍ୟ ସେ ଶିଶିର ସ୍ନାତ ପୁଷ୍ପଗୁଚ୍ଛରେ ତିନିଜଣଙ୍କର ଶ୍ରଦ୍ଧା-ସ୍ମୃତି-ବିମ୍ବ ଚିରବିମ୍ବିତ ରହିବ । ସେ ଶିଶିର ବିନ୍ଦୁ ଶୁଖିବ ନାହିଁ, ଏ ସ୍ମୃତି-ବିମ୍ବ ଲିଭିବ ନାହିଁ ।

କୃତଜ୍ଞ ପ୍ରଣେତା

## ଶ୍ରୀଯୁକ୍ତଧରଣୀଧର ଦେହୁରୀଙ୍କ ଅଭିମତ

ମୁଁ ବାମଣ୍ଡାର ଲବ୍ଧପ୍ରତିଷ୍ଠ କବି କବିରାଜ ଶ୍ରୀ ହରିହର ମହାପାତ୍ରଙ୍କ ରଚିତ 'ଖଣ୍ଡାଧାର' ଖଣ୍ଡକାବ୍ୟର ପାଣ୍ଡୁଲିପି ଆମୂଳଚୂଳ ପଢ଼ିଅଛି । କବିଙ୍କର ଭାଷା ପରିମାର୍ଜିତ, ସୁଲଳିତ ଓ ପ୍ରକୃତିର ଶୋଭାବର୍ଣ୍ଣନା ଚତୁରୀ, ହୃଦୟଗ୍ରାହୀ ହୋଇଅଛି ।

ଖଣ୍ଡାଧାର ପ୍ରପାତ ଓଡ଼ିଶାର କାହିଁକି ଭାରତ ବର୍ଷରେ ଏକ ବିଚିତ୍ର ପ୍ରାକୃତିକ ଶୋଭା ସମ୍ପନ୍ନ ବିଶାଳ ଦୃଶ୍ୟ ହେଲେହେଁ ବାମଣ୍ଡାର ପ୍ରଧାନପାଟ ସଦୃଶ୍ୟ ସର୍ବଜନ ସୁବିଦିତ ନୁହେଁ । ଏହାର କାରଣ ଏହି ଯେ, ଖଣ୍ଡାଧାର ଜଳପ୍ରପାତ ଭୀଷଣ ଅରଣ୍ୟ ମଧ୍ୟରେ ଅବସ୍ଥିତ ଓ ଅତ୍ୟଳ୍ପ ବର୍ଷ ପୂର୍ବେ ପ୍ରପାତ ନିକଟକୁ ଯିବାପାଇଁ ସୁଗମ ପଥ ନିର୍ମିତ ହୋଇ ନଥିଲା । ତଥାପି ଉକ୍ତ ପ୍ରପାତର ଆକାର ଏତେ ସୁବିଶାଳ ଯେ, ଏହା ପ୍ରାୟ ୨୦-୨୫ ମାଇଲ ଦୂରରୁ ସ୍ୱଚ୍ଛ ଖଣ୍ଡାଧାର ସଦୃଶ ନବାଗତ ବ୍ୟକ୍ତିର ଦୃଷ୍ଟି ଆକର୍ଷଣ କରିଥାଏ । ପ୍ରପାତ ନିକଟକୁ ଗଲେ, ଗଙ୍ଗାଙ୍କର ସ୍ୱର୍ଗରୁ ଅବତରଣ ଶୋଭା ଏହିଠାରେ ଉପଲବ୍ଧି କରିବାର ସୁଯୋଗ ମିଳିଥାଏ । ଖଣ୍ଡାଧାର ପ୍ରପାତ ବଣାଇଁଗଡ଼ର ପୂର୍ବରେ ୧୩ ମାଇଲ ଦୂରରେ ଅବସ୍ଥିତ । ପ୍ରପାତଟି ଗିରିନଦୀ ଆକାରରେ ବଣାଇଁ ଓ କେନ୍ଦୁଝର ସୀମାସ୍ଥ ସୁରକ୍ଷିତ 'ରନ୍ତା' ନାମକ ଉପତ୍ୟକାରୁ ପ୍ରବାହିତ ହୋଇ ବୁଢ଼ାଭୂଇଁ ନିକଟସ୍ଥ ନଡ଼ାପାଣି ଗ୍ରାମରେ ୮୦୦ ଫୁଟ ଉଚ୍ଚରୁ ଶୈଳଗାତ୍ରରେ ନିପତିତ ହୋଇ ପ୍ରପାତ ସୃଷ୍ଟି କରୁଅଛି । ଭୂୟାଁପଲ୍ଲି ବହୁଳ ଉକ୍ତ ଅଞ୍ଚଳକୁ 'ପାବୁଡ଼ି' କୁହାଯାଏ । ଭୂୟାଁ ବା ପାବୁଡ଼ିଆଙ୍କ ଜୀବନ ଯାପନପ୍ରଣାଳୀ ଅତି ସରଳ । ଏମାନେ ବଣାଇଁ, କେନ୍ଦୁଝର ଓ ପାଲଲହଡ଼ା ଅଞ୍ଚଳର ପ୍ରକୃତ ଆଦିବାସୀ । ବିଂଶ ଶତାବ୍ଦୀରେ ମଧ୍ୟ ଏମାନେ ସଭ୍ୟତାର ଅତି ନିମ୍ନସ୍ତରରେ ପଡିଅଛନ୍ତି ।

ମହାପାତ୍ରଙ୍କ ରଚିତ ଖଣ୍ଡାଧାର କାବ୍ୟରେ ପ୍ରକୃତିର ବିଚିତ୍ରଶୋଭା, ଅଗଣିତ ପଶୁପକ୍ଷୀ, ଭୂୟାଁଜାତିର ପ୍ରଧାନ ଖାଦ୍ୟ, ବିଭିନ୍ନ ଫଳମୂଳ, ସେମାନଙ୍କର କମାଣ ଚାଷ, ସରଳ ଜୀବନଯାପନ ପ୍ରଣାଳୀ, ଗଭୀର ଆତିଥେୟ ଓ ପ୍ରଭୁଭକ୍ତି ବିଶଦଭାବେ ବର୍ଣ୍ଣିତ ହୋଇଅଛି । ବୁଢ଼ାଭୁଇଁ ନିକଟସ୍ଥ ଭୂଗର୍ଭରେ ବିଶାଳ ଲୌହଖଣିର ସନ୍ଧାନ ଏବେ ମିଳିଅଛି । ଆଶାକରୁ ନବୀନ ଓଡ଼ିଶାର ଶିଳ୍ପପତିମାନେ ଉକ୍ତ ଖଣିଜ ସମ୍ପଦର ସଦ୍‌ବ୍ୟବହାର କରିବା ଉଦ୍ଦେଶ୍ୟରେ ଉକ୍ତ ପ୍ରପାତର ବିଶାଳ ଜଳରାଶିକୁ କାର୍ଯ୍ୟରେ ଲଗାଇବେ । । ଇତି ।

ଶ୍ରୀଯୁକ୍ତ ଧରଣୀ ଧର ଦେହୁରୀ
ହେଡ୍‌ମାଷ୍ଟର ରାଜକୁମାର ହାଇ ଇଂରାଜି ସ୍କୁଲ
କି : ବାମଣ୍ଡା

# ଖଣ୍ଡାଧାର

## ପ୍ରଥମ ସର୍ଗ

ଉଠ 'ଖଣ୍ଡାପାଟ' (୧)ଶୈଳ ବିଳାସିନୀ !
ଉଠ ଶୋଭାଦେବୀ ! ଶୟନ ତେଜି,
ଆସିଅଛି ମୁଁ ଯେ ଦୂର ପଥ ବାହି
ତୋର ଦରଶନ ମାନସେ ହେଜି ।୧।

ସ୍ୱଭାବ ସୁନ୍ଦର ତୋ ବିମଳ ବିମ୍ବ
ଫୁଟିଉଠୁ ମୋର ମାନସ-ତଟେ,
ଦେଖାଅ ଯତନେ ଯେ ଶୋଭା-ରତନ
ସାଜି ରଖିଅଛୁ ହୃଦୟ-ପଟେ ।୨।

ସାଜି ରଖିଅଛୁ ଗିରିବନେ କେତେ
ନିଭୃତ ନିକୁଞ୍ଜ ମଞ୍ଜୁ ନିଳୟ
କାହିଁ କେତେ ରୂପେ ବିଳସୁ ଗୋପନେ
କରି ଏ ଉତ୍କଳ ସୁଷମାମୟ ।୩।

ଚିଲିକା ବକ୍ଷରେ ସୁନୀଳ ଅକ୍ଷରେ
ତରଙ୍ଗେ ତରଙ୍ଗେ ଅମର ଗୀତି,
ଗାଇ ଶୁଣାଇଲ ରାୟ କବିଙ୍କର (୨)
ବିପଞ୍ଚୀ ପଞ୍ଚମେ ସଞ୍ଚାରି ପ୍ରୀତି ।୪।

ପଟ୍ଟ ପୁରୋହିତ ରୂପେ ଦେବୀ ! ସେ ତ
କେତେ ଗିରିନଦୀ ନିକୁଞ୍ଜେ ବସି,
ଆରାଧିଲେ ତୋର ରମଣୀୟ ରୂପ
ବଜାଇ ମଧୁରେ ମୋହନ ବଂଶୀ ।୫।

ବୈତରଣୀ ତୀରେ ଶାଳିନ୍ଦୀ ପୁଲିନେ
ନୀଳାଚଳ-ତଟେ ସିନ୍ଧୁ ତରଙ୍ଗେ
କଇଁସାରୀ ଲତା ଶ୍ୟାମ ବାଲି-ସ୍ତୂପେ
ଖଞ୍ଜିଲେ କୁସୁମ ତୋ ଚାରୁ ଅଙ୍ଗେ ।୬।

ଉତ୍କଳେ ଦ୍ୱିତୀୟ ନାଏଗ୍ରା ପରାଏ
ବିରାଟ ସୁନ୍ଦର ଏ ଛବିଗୋଟି,
ଲୁଚାଇ ଗୋପନେ ଲଜ୍ଜାବତୀ ବାଳା
ପ୍ରାଏ ବିଳାସୁଛୁ ବିଜନେ ଲୋଟି ।୭।

ଏ ଧରଣୀଧର ଚରଣେ ଲୋଟୁଛୁ
ପିନ୍ଧାଇ ସହସ୍ର ମୁକୁତା ମାଳା
ମୋ ବିପଞ୍ଚୀ ତାନେ ଏ ଶିଳା ଶୟନୁ
ଉଠ କିନା ଥରେ ପ୍ରକୃତି ବାଳା ।୮।

ତୁଙ୍ଗ ଶୃଙ୍ଗ ପାରେ ରନ୍ତାଗ୍ରାମ ତଟେ
ଅଧିତ୍ୟକା ଭୂମେ ସଧୀରେ ବହି
ଶୁଣୁଥାଉ ଯେବେ ଚାଙ୍ଗୁ ବାଦ୍ୟନାଦ
ଶିଳାସନେ ଠାବ ଠାବକେ ରହି ।୯।

ବେତସ ନିକୁଞ୍ଜେ ନିଭୃତେ ବିଳସି
ଭୂୟାଁ ପ୍ରମଦାଙ୍କ ସେ ହଲ୍ଲୀଷକ,
ଦେଖୁଥାଉ ପୁଣି ଶୁଣୁଥାଉ, ତାଙ୍କ
ସଙ୍ଗୀତ ଲହରୀ ସମୁଲ୍ଲାସକ ।୧୦।

ନିବିଡ଼ ନିଶୀଥେ ବନ-ଦେବୀଙ୍କର
ବୀଣାତାନ ସମ ଝିଲ୍ଲୀ ନିସ୍ୱନ
ମୁଗ୍ଧ କରେ ତୋର କୁମାରୀ ହୃଦୟ
କହ ସେହି ବାଲ୍ୟ ସ୍ମୃତି ବହନ ।୧୧।

ଗୁନ୍ଥି ନାଗେଶ୍ୱର ଚମ୍ପକ-ମାଳିକା
ବନଦେବୀ ଦେଲେ ତୋ ବକ୍ଷ ମଣ୍ଡି,
ଚାହିଁ ଚାହିଁ ନବ କିଶୋରୀ ମୂରତି
ବହିଲୁ ହୃଦୟ ଜଡ଼ତା ଖଣ୍ଡି ।୧୨।

ତୁଙ୍ଗ ଶୃଙ୍ଗ ଡେଇଁ ଓହ୍ଲାଇ ଆସିଲୁ
ଉନ୍ମତ୍ତ ଉଲ୍ଲାସେ ଭୃଗୁ ସୋପାନେ
ତରଳ ସରଳ ସଂଗୀତ ଲହରୀ
ତୋଳିଲୁ ହରଷେ ଷଡ଼ଜ ତାନେ ।୧୩।

ହିମାଦ୍ରି ବକ୍ଷରେ    ସୁରତରଙ୍ଗିଣୀ
ପ୍ରାଏ ସୁରୁଚିର    ତୋ ନୀର ଧାର
ଅବା ଶୁଭ୍ରରୂପା    ଝରୀର 'ପାହୁଡ଼ା'
ଅବା ଲକ୍ଷ ହୀରା    ମୁକୁତା ହାର ।୧୪ ।

ହୀରା ମୁକୁତାର    ଅଛି କିବା ମୂଲ୍ୟ
ହେବ ଏ ନିସର୍ଗ    ସମ୍ପଦେ ସରି,
ପ୍ରତି ନୀରବିନ୍ଦୁ    ଅନ୍ତରେ ତ ତାର
ଅଛୁ ସଂଜୀବନ    ଅମୃତ ଭରି । ୧୫ ।

ଲୌହମୟ ଦୃଢ଼    ଶୈଳ ସୌଧ ତୋର
ବ୍ୟୋମ-ବକ୍ଷ ଚୁମ୍ବି    ଦିଶେ ସୁନ୍ଦର,
ରକ୍ତ କୃଷ୍ଣ ଶିଳା    ପିହିତ ପ୍ରାଚୀରେ
ଚିର କାନ୍ତ ତୋର    ରୁଦ୍ର କନ୍ଦର । ୧୬ ।

ପଦତଳେ କେତେ    କରୀଯୂଥ ସମ
ସୁବିଶାଳ ଶିଳା    ନିରୋଧି ପଥ,
କରୁଛନ୍ତି ଅଳି    ତେଜ ନିର୍ଝରିଣୀ
ଅଭିସାରିକାର    ଏ ମନୋରଥ । ୧୭ ।

ପ୍ରେମେ ଉତରଳି    ଉଲ୍ଲସିତ ହୃଦେ
ଭୁଙ୍ଗ ଶୃଙ୍ଗ ଶୈଳ    ଅବରୋହଣେ,
ଆସିଅଛୁ ବିଭୁ    ଦୟା ମୂର୍ତ୍ତିମତି
ପିପାସୁ ଜୀବର    ଦୁଃଖ ହରଣେ । ୧୮ ।

କୁଟିଳ ଜଞ୍ଜାଳ    ମହତ୍ତର ଲକ୍ଷ୍ୟ
ରୋଧି ନ ପାରେ ତ    କେବେ ଭୁବନେ,
ପଦାଘାତେ ତୁଚ୍ଛି    ଲକ୍ଷ ଅନ୍ତରାୟ
ଲାଗିଛୁ ନିରତେ    ଲକ୍ଷ୍ୟ ସାଧନେ । ୧୯ ।

ସିନ୍ଧୁ ଅଭିସାର    ନିର୍ଝରିଣୀ ତୋର
କଲୁଷେ ପଙ୍କିଳ    ନୁହେଁ ତ କେବେ,
ପ୍ରେମ ଦୟା ଯହିଁ    ଅନ୍ୟୋନ୍ୟେ ମିଳିତ
ବିଳସନ୍ତି ତହିଁ    ସକଳ ଦେବେ । ୨୦ ।

ଲତାବୃତ ଘରୁ କୁଟିର ଛବିଳ
ଦେଖାଇ ସ୍ୱ ବପୁ "ଛେଳିଆ ଚୁରା"(୩)
ଦକ୍ଷିଣୁ ଦେଖଇ ବିମୁଗ୍ଧ ଲୋଚନେ
ତୋ ଚଞ୍ଚଳ ଗତି ପ୍ରେମ ଆତୁରା । ୨୧ ।

ବନ-ଦେବତାର ତୁଙ୍ଗ ସୌଧ ସମ
"ବୁଢ଼ା ପାଟ" ଗିରି ରାଜେ ଉତ୍ତରେ,
ବୃଦ୍ଧ ଋଷି ଶୈଳ ବିଗ୍ରହେ ଆସୀନ
ପ୍ରାଏ ଶିଳାଖଣ୍ଡ ଶୋଭେ ଶିଖରେ । ୨୨ ।

ଦିବାନିଶି ତୁ ତ ଅଶ୍ରାନ୍ତ ଗମନେ
ଧାଉଁଛୁ ଧାଉଁଛୁ ଅନନ୍ତ ପଥେ
ଦିବାନିଶି ସେ ତ ଦେଖୁଛି ଦେଖୁଛି
ଶିଳାସନେ ବସି ତା ମନୋରଥେ । ୨୩ ।

କେତେ ମୋତିଝରା ଅଜାଡି ଦେଉଛୁ
ଗୁଣୁଛି କି (୪) ବୁଢ଼ା ବସି ନୀରବେ
ନିବିଷ୍ଟ ମାନସେ ଶୁଣୁଛି ନିରତେ
ଗାଉଛୁ ଯେ ଗୀତ ପ୍ରେମ ଗରବେ । ୨୪ ।

ନିର୍ଝରିଣୀ ! ସେ ତ ମୂକସାକ୍ଷୀ ତୋର
କେତେଶୀତ ଖରା ବରଷା ସହି
ଦେଖୁଛି-କେମନ୍ତେ ନୀର ସୁଧା ଢାଳି
ପତ୍ର-ପୁଷ୍ପ-ଫଳେ ମଣ୍ଡୁଛୁ ମହୀ । ୨୫ ।
ଦେଖୁଛି - କେମନ୍ତେ ଶୈଳ-ତଟ-ଭୂମି
ଉଦ୍ଦାମେ ପ୍ରାବୃଟ- ପ୍ରବାହେ ଖୋଳି
ବିରଚିଲୁ ନିମ୍ନ ଉପବନ କ୍ଷେତ୍ର
ସାର ପୂର୍ଣ୍ଣ (୫) "ପଟୁ" ଜମାଳ ବୋଲି । ୨୬ ।
ଅୟୁତ ବରଷ ଦିବାନିଶୀ ଶ୍ରମେ
ଚରିତଟଭୂମି ଖୋଳି ଯତନେ,

ଲଭିଛୁ ସିନା ଏ ରମଣୀୟ ରୂପ
ମଣ୍ଡିଅଛୁ ହୀରା ମୋତି ରତନେ । ୨୭ ।

ଦକ୍ଷ ଶିଳ୍ପୀ ସମ କାଟି ଶୈଳବକ୍ଷ
ବିରଚିଲୁ ଭୃଗୁ ସୋପାନ ରାଜି,
ଦୀର୍ଘ ସାଧନାର ସିଦ୍ଧିବଳେ ସିନା
ଉନ୍ନତ ଉଲ୍ଲାସେ ଶୋଭୁଛୁ ଆଜି । ୨୮ ।

ହେମନ୍ତ ପ୍ରଭାତେ ବିଞ୍ଚିଦେଉ ଯେବେ
ସମୀର ଲହରେ ଶୀକର ରାଶି,
କନକ କିରଣ ବୁଣିଦିଏ ତେଣେ
ବାଳଭାନୁ ତୋର ପୃଷ୍ଠେ ଉଦ୍‌ଭାସି । ୨୯ ।

ନୀଳ ପ୍ରାବରଣେ ଖଣ୍ଡାପାଟ ବପୁ
ଘୋଡାଇ ପଲକେ କି ଇନ୍ଦ୍ରଜାଳେ
ଦିଶୁଥାଉ, ମହା ମତ୍ତ ମାତଙ୍ଗର
ମଦଜଳ ଝର ପ୍ରାଏ ସେ କାଳେ । ୩୦ ।

ଖଣ୍ଡ ମଧୁ ମୁଗଧ୍ ମଧୁପ ନିକର-
ପ୍ରାଏ କ୍ଷୁଦ୍ରତମ ଟାଙ୍ଗୀ ବାହୁଡି
ଗିରି ନୀଳଗଜ- କୁମ୍ଭପାର୍ଶ୍ୱେ ସୁଖେ
ନୀର ମଧୁପାନେ ବୁଲନ୍ତି ଉଡି । ୩୧ ।

ନ ଦିଶଇ ନେତ୍ରେ ଗିରିଗାତ୍ର, ମାତ୍ର
ନୀଳକାନ୍ତ ଛବି ଦିଶେ ଗମ୍ଭୀର
ସୁମରାଇ ଦିଏ ତୁଳୀକୃତ କରି
ଅଙ୍ଗ-ଶରବିଦ୍ଧ ନିଜ ଶରୀର । ୩୨ ।

ରୌପ୍ୟ ଅରାବଳି ସମ କରାବଳି
ବିସ୍ତାର ତୋ ପୃଷ୍ଠେ ରାଜନ୍ତି ରବି,
ପ୍ରକଟେ ସେକାଳେ ବୈନତେୟ-ପୃଷ୍ଠେ
ବିଷ୍ଣୁ କରଚକ୍ର- ଶାଣିତ ଛବି । ୩୩ ।

ବିଷ୍ଣୁ ବକ୍ଷେ ଦୀପ୍ତ     କଉସ୍ତୁଭ ସମ
ବିମ୍ବିତ ତୋ ବକ୍ଷେ     ନବ ତପନ
ସେ ବକ୍ଷର ଶୁଭ୍ର     ଚନ୍ଦନ ପରାଏ
ଦୂରୁଁ ନିର୍ଝରିଣୀ     ଦିଶୁ ଶୋଭନ । ୩୪ ।

ନବ ଉଷାଗମେ     ଉକୁଟେ କୁକ୍‌କୁଟ
କନକ ମୁକୁଟ     ସଞ୍ଚଳି ଧୀରେ
କୂଜନ୍ତି କପୋତ     ଭାଷନ୍ତି ଶାରିକା
ଲତାକୁଞ୍ଜେ, ଉଚ୍ଚ     ପାଦପ ଶିରେ । ୩୫ ।

ପ୍ରତିତାନ ତୋଳି     ରଙ୍ଗେ ଭୃଙ୍ଗରାଜ
ସଙ୍ଗୀତ ତରଙ୍ଗେ     ଅଭିବାଦନ
ଜଣାଏ ମଧୁରେ;     ବନଦେବୀଙ୍କର
ସତେ ସେ ନିସର୍ଗ     ବଂଶୀ ବାଦନ । ୩୬ ।

'କାଳା ବସନ୍ତ'ର     ସଙ୍ଗେ 'କୁମ୍ଭାଟୁଆ'
କମ୍ପାଏ କାନନ     ଗମ୍ଭୀର ସ୍ୱରେ
ବଣିକୁଳ ମିଳି     କରନ୍ତି ସମିତି
ପ୍ରଭାତ ମୟୂଖେ     ପାଦପ ପରେ । ୩୭ ।

ବିବିଧ ବିହଙ୍ଗେ     କୁଞ୍ଜେ କୁଞ୍ଜେ ଖେଳି
କରନ୍ତି ଆହ୍ଲାଦେ     ଉଷା ବନ୍ଦନ
ଗମ୍ଭୀର ଝର୍‌ଝରେ     ସଙ୍ଗୀତେ ତୋହର
ମିଶେ କି ମଧୁରେ     ସେ କଳସ୍ୱନ । ୩୮ ।

ପାର୍ଶ୍ୱେ ତୋର, ପୁଣି     ପାର୍ଶ୍ୱେ ଶୈଳ ଚୟେ
ବିରଚି (୬) କମାଣ     ଭୂୟାଁ ନିକର,
ଉଦ୍ୟାନର ଶୋଭା     ଶୈଳ ପ୍ରକଟାଇ
ଯାପନ୍ତି ଆନନ୍ଦେ     ନିଶୀ ବାସର । ୩୯ ।

ଆୟତ ଆକାରେ     ପକ୍ୱଧାନ ପୁଣି
(୭) ରାମତିଳା କ୍ଷେତ୍ରେ     ପୀତ ସୁମନେ

ଗିରି ଗାତ୍ରେ ସତେ ପୀତାମ୍ବରୀ ଶାଢ଼ି
ପିନ୍ଧାଇ ଦିଅନ୍ତି ଅତି ଯତନେ । ୪୦ ।

ସୁନାଝରୀ ସରି ଦିଶେ କି ରୁଚିର
ଶିଶିରେ ଝଲକି ତପନ ବିଭା,
ରମ୍ୟତନୁ ତହିଁ କେତେ ବିହଙ୍ଗମ
ବିଳସନ୍ତି ଦେଖି ଆଗତ ଦିବା । ୪୧ ।

ବନବାଳାକୁଳ ଅନଳେ ସୁଦଗ୍ଧ
ତପ୍ତ "କନ୍ଦମୂଳ" କରି ଭକ୍ଷଣ,
ଚଉପାଶେ ବେଢ଼ି (୮) ଅନ୍ତରା ଅଗ୍ନିକି
କରୁଥାନ୍ତି ହେଳେ ଶୈତ୍ୟ ବାରଣ । ୪୨ ।

ଶିମ୍ବ ତୁଙ୍ଗ ମଞ୍ଜି (୯) ଶିଆଳିର ଫଳ
ପୋଡାଇ ଖାଆନ୍ତି କେଡେ ଆଦରେ,
ସରଳ ଜୀବନ ସରଳ ବଚନ,
ନାହିଁ ମନ ଛନ୍ଦ ଅପବାଦରେ । ୪୩ ।

ନିର୍ଝରିଣି ! ତୋର ସଙ୍ଗଗୁଣ ଲଭି
ତୋ ପରି ସରଳ ତାଙ୍କ ଜୀବନ,
ନ ଲୋଡନ୍ତି ସେ ତ ନବ୍ୟ ଜଗତର
ସଭ୍ୟତାର ଛଟା - ଛନ୍ଦ ବନ୍ଧନ । ୪୪ ।

ପ୍ରକାଶୁଁ ଅଧିକେ ଗୋପନେ ଗୋପନେ
ସଞ୍ଚାରିତ ତୋର କରୁଣା ଝର,
ଠାବେ ଠାବେ ଗିରିଗାତ୍ରେ ଝରିପଡେ
ସ୍ୱଚ୍ଛ କୁଣ୍ଡେ କାହିଁ ରାଜେ ସୁନ୍ଦର । ୪୫ ।

ଦକ୍ଷିଣେ ବିମଳ 'କରାପାଣି' ଝର
(୧୦) "କାନ୍ତି କୁମାରୀ"ଙ୍କ ଚରଣ ଧୋଇ
ତରୁଲତା ଅଙ୍ଗେ ଶାରଦ ସୁମନ
ଫୁଟାଇ ପୂଜଇ ସେ ପଦେ ଥୋଇ । ୪୬ ।

ଉତ୍ତରେ (୧୧) "କୁରହାଡି"ଶୀକର ସମ୍ପଦେ

ସ୍ନିଗ୍ଧ କରି ଲତା ପାଦପ ଚୟ
ବୃଦ୍ଧା ପାଟ ପଦ ଧୋଇ, ବ୍ରାହ୍ମୀ ଅଙ୍ଗେ
ଢ଼ାଳି ଦେଉଅଛି ପୀୟୂଷ ପୟ । ୪୭ ।

ସ୍ଥାନେ ସ୍ଥାନେ ଯେଉଁ ଝରକୁଣ୍ଡ ମାନ
ସଜାଇ ରଖିଛୁ କରି ଯତନ
ତହୁ ତୃମ୍ୟାଗର୍ଭେ ନୀରଭରି ଭୂୟାଁ
କରଇ କମାଣେ ଧୀରେ ଗମନ । ୪୮ ।

ଭୃଗୁ ପରେ ଭୃଗୁ ଲଘି ଦୃଢ଼ପଦେ
ତୁଙ୍ଗ ଶୃଙ୍ଗେ ହେଲେ ହୁଏ ପ୍ରବେଶ
ବସି ତରୁମୂଳେ ସ୍ୱକୁଟୀରୁ ଦୂରେ
ଦେଖେ-କେତେ ଗିରି- କାନନ ଦେଶ । ୪୯ ।

ଦେଖେ-କେତେ ଭଙ୍ଗେ ଖେଳାଇ ସୁଅଙ୍ଗ
ବହେ ସ୍ୱଚ୍ଛନୀରା ବ୍ରାହ୍ମୀ ତଟିନୀ,
ଶିଳାସ୍ତୂପେ କାହିଁ ଉତ୍ପ୍ଲବିନୀ, କାହିଁ
ସୈକତ ଚତ୍ୱରେ ଋଜୁଗାମିନୀ । ୫୦ ।

ତୀର ତରୁ ତେଜି ନୀରଶଯ୍ୟା ପରେ
ସେ ବ୍ରାହ୍ମୀ ପ୍ରବାହେ ବାସର ମୁଖେ,
ଦୂର ବ୍ୟବଧାନୁ ଅଣିମା ଦେଖାଇ
ରଥାଙ୍ଗ ମିଥୁନ ଖେଳନ୍ତି ସୁଖେ । ୫୧ ।

ବ୍ୟୋମଚୁମ୍ବୀ ତଟ 'ଫାସୀ' ପାଦପରୁ
ଖସି ପଡେ ଶୁଭ୍ରେ ବକାଳୀ ମାଳା,
ହୀରାହାର ତୁଲେ ମଲ୍ଲିକା ମାଳିକା
ପିନ୍ଧେ କି ସେ କାଳେ ନଗରୀ-ବାଳା । ୫୨ ।

ଲଳନ୍ତିକା ସମ ରବି ରଶ୍ମି ବିମ୍ବ
ସେ ବ୍ରାହ୍ମୀ ଲହରେ ଉଠେ ଲହରୀ,
ପ୍ରତିକ୍ଷେପେ ପୁଣି ଉଠେ, ତହୁଁ ଦୀପ୍ତ
ଜ୍ୟୋତିଃ ପ୍ରସ୍ରବଣ ନଭେ ସଞ୍ଚରି । ୫୩ ।

ଡାକି ପ୍ରେୟସୀକି ପାଶେ, ଭାଷେ ଭୂୟଁ ।
"ଧୋବ ଦିଶେ କିସ କହ ଅନାଇଁ",
ପ୍ରେମମୁଗ୍‌ଧ-ବାଳା କହେ ମନ୍ଦେ ହସି
"ମୁଁ କିସ ଜାଣଇଁ ଦିଅ ଚିହ୍ନାଇଁ" । ୫୪ ।

କହେ ଯୁବା ଧୀରେ "ଶୁଣ୍ ଲୋ ନାଗରୀ !"
ରୁଷିଲା ସେ ବାଳା ଫୁଲାଇ ନାସା,
ଭାଷିଲା କୋପେନ "ସବୁ ଦିନେ ତୁ ଯେ
କହୁଥାଉ ସେଇ 'ନାଗରୀ' ଭାଷା" । ୫୫ ।

"ନା ନା ଆଉ କେବେ ନା କହେଁ" ଭାଷିଲା
ସେ ଯୁବକ ହସି ମଧୁର ବାଣୀ,
ହସିଲା ମଧୁରେ, କଣ୍ଠ ଆଲିଙ୍ଗନେ
ମିଶିଲା ହୃଦେ ତା ହୃଦୟ-ରାଣୀ । ୫୬ ।

ଗିରିପରେ ଗିରି କେତେ ଗିରିମାଳା
ଅନ୍ତରାଳେ କେତେ ଗ୍ରାମ ନଗର,
ଲୁଚଇ, ସାଗର ମହୋର୍ମି ପରାଏ
ପ୍ରକାଶନ୍ତି କାନ୍ତି ନୀଳ ସୁନ୍ଦର । ୫୭ ।

ରଚି ରମ୍ୟଦୁର୍ଗ ନୀଳମଣିମୟ
ପରିଧି ପ୍ରାକାରେ କରି ବେଷ୍ଟନ,
ବିଳସନ୍ତି ମଧେ ପ୍ରକୃତି-କାମିନୀ
ପିନ୍ଧି କୁସୁମିତ ଶ୍ୟାମ ବସନ । ୫୮ ।

ସେ ଶ୍ୟାମ ଅଞ୍ଚଳେ ବନେଚର ନର
କି ଆନନ୍ଦେ ସୁଖେ କାଟଇ କାଳ,
ପ୍ରକୃତିମାତାର ଅମୃତ ଚୁମ୍ବନେ
ଏଡି ଅଛି ସେ'ତ ନବ୍ୟ ଛଞ୍ଚାଳ । ୫୯ ।

ଗିରିବନ କୁଞ୍ଜେ ସୁସ୍ନିଗ୍‌ଧ ସମୀର
ସଞ୍ଚାରଇ ପ୍ରାଣେ ଶକତି ତାର,
ବନ୍ୟ ଫଳ-ମୂଳ କମାଣର ଶସ୍ୟ
ଅଟେ ମାତ୍ର ତାର ପ୍ରିୟ ଆହାର । ୬୦ ।

କାଙ୍ଗୁ, ଠେଙ୍ଗା, ଧାନ,
ସୁଆଁ, ରାମତିଳା,
ସୋରିଷ, ମାଣ୍ଡିଆ,
ବିରି ଜନମାଏ

ଗୁଲୁଞ୍ଜୀ, ଗଙ୍ଗାଇ,
ମକା, ଅତସୀ,
କଦୋ, କନ୍ଦମୂଳ,
କମାଣ ଚଷି । ୬୧ ।

ସ୍ଥାନ ବୁଝି ତରୁ
ବୁଙ୍କ, ଶିମ୍ବ, ଲାଉ
ଗଡୁଥାଏ ତାର
ପଥର ସଙ୍ଗତେ

(୧୨) ଘୋରାଇ ଝୁଣ୍ଡୁଙ୍ଗା
ରୋପଇ ମୂଳେ,
କାକୁଡି, ମସିଆ,
ପଥର ତୁଲେ । ୬୨ ।

କେଶ ପ୍ରସାଧନେ
ଘେନି ସ୍ୱଳ୍ପ ତୈଳ
(୧୩) 'ସାବିତ୍ରୀ ଗନ୍ଧା'ର
କରୁଥାଏ କେତେ

ଅଛି ଗବଗଛ
ଫଳର ଗୁଚ୍ଛ,
ମୃଦୁଳ ସୁଗନ୍ଧ
ଅତର ତୁଚ୍ଛ । ୬୩ ।

ଧାଡି ଧାଡି ଅଦା
'କରି ନେବ ତାର
ହଁସୁଲୀ ତୁଳୀ ସେ
ଭୂମିଶଯ୍ୟା ତାର

ରୋଇଛି, ସେ ପଣ୍ୟେ
ପିନ୍ଧା ବସନ'
ଦେଖି ନାହିଁ ଦିନେ
ଭୂମି ଆସନ । ୬୪ ।

ଅଧିତ୍ୟକା ଭୂମେ
ଆମ୍ବ, ସତ୍ୟଆମ୍ବ,
ବଇଁଚ, ଘୁରୁଡୁ,
ଶାଳ, ଖଜୁରୀ ତ

କଦଳୀ ପନସ
କେନ୍ଦୁ, ମହୁଲ
ବନକୋଳି, ଚାର,
ଅଛି ବହୁଳ ।୬୫ ।

ଚିକଟା, ଶକଟା,
ପିତାଲୁ, ତୋରଡ଼ା,
ଅଛି ତ, ଉଦାଳୀ,
ମାମୁରୀ, ବହଳ-

ବାଇଁଙ୍ଗା ସଇଗା,
ଗଉଡ଼ମଡ଼ା (୧୪)
ଲୁଡୁରୁ, ଲେପେଇ
ଶାଗ,(୧୫)ବରଡ଼ା ।୬୬ ।

ଆମ୍ବ ଖାଇ ଆମ୍ବ
ବରଷାରେ କରେ
ମହୁ ବାସୁଁ ମହୁ
କରିନିଏ ତାର

ଟାକୁଆ ରଖଇ
'କୋଇଲି ପିଠା'
ମହୁଲ ଫୁଲେ ସେ
ଭୋଜନ(୧୬) ମିଠା ।୬୭ ।

ବରଷିଲେ ପାଣି	ଫୁଟେ କେତେ 'ଛତୁ'
'ପିଚ' 'ଭାନୁ' 'ଖୁଦ'	'ଆଣ୍ଠୁଆ''ବାଲି'
'ଗୁଗୁଡା''ଶଙ୍କୁଳା'	(୧୭) 'ବିଦ୍ବୁଡୁଣି' ପାଇ
ତୃଣ ପାଇଁ ସେ ତ	ନ ବସେ ଭାଳି ।୬୮ ।

ଜାମୁ ଆମ୍ବଖୁଣ୍ଡା	ସଢ଼ା ବାଉଁଶରେ
ଫୁଟେ ଯେ ସୁସ୍ୱାଦୁ	(୧୮) ଶୀଳୀନ୍ଦ୍ର ରାଶି
କାନନଲକ୍ଷ୍ମୀର	ସେ ନିସର୍ଗ ଦାନ
ଭୁଞ୍ଜଇ ସୁଖେ ସେ	କାନନବାସୀ ।୬୯ ।

ଶିଆଳୀ ପତ୍ରରେ	ପୁଡା ସଜାଉଛି
ରଖିବ କମାଣ-	ଶସ୍ୟ ଯତନେ
ବାଉଁଶ ନଳାରେ	ଓଳାଇ ଚାଉଳ
ରଖିଛି, ସେବିବ	ଅତିଥି ଜନେ ।୭୦ ।

ନିଜେ ଖାଏ ମୋଟା	ବଗଡା; ସରୁଆ
ସଫା ସଞ୍ଚିରଖେ	ଅତିଥି ପାଇଁ
'ସୁବୁରି' 'ମୁଗ' ସେ	ଦିଅଇ ସତ୍କାରେ
ନିଜେ ଶିମ୍ବ ତୁଙ୍କ	ଝୁଣ୍ଗା ଖାଇ ।୭୧ ।

ସରଳ ସସ୍ନେହ	ମଧୁର ବଚନ
ଶୁଣିଲେ ଆଗତ	ଅତିଥି ମୁଖୁଁ
ଦ୍ରବିଯାଏ ତାର	ହୃଦୟ ପଲକେ
ତରିଯାଏ ଯେହ୍ନେ	ଅଶେଷ ଦୁଃଖୁଁ ।୭୨ ।

କୃତଜ୍ଞତା ରସେ	ପୁରତି ହୃଦୟ
ଉପକାରୀ ପଦେ	ଦିଏ ଅଜାଡ଼ି
ଶରଧା-କୁସୁମେ	ପୂଜଇ ଆହ୍ଲାଦେ
ଆଦରେ ଭକତି	ଅର୍ଘ୍ୟ ସଜାଡ଼ି ।୭୩ ।

ନିର୍ଝରିଣୀ ! ତୋର	ଶୀକର ସରସ-
ସମୀର ପରଶେ	ଅମୃତ ରସ
ସଞ୍ଚରୁଛି ଯାହା	ଶଇଳ ବକ୍ଷରେ
ପାନ କରି ସେ ତ	ସଦା ହରଷ ।୭୪ ।

ନିରତେ ନିରତ    କର୍ତ୍ତବ୍ୟ ପାଳନେ
ଅବିଶ୍ରାନ୍ତ ଦେଖି    ତୋର ସଞ୍ଚାର
ସ୍ୱକର୍ମେ ନିରତ    ଶୈଳ ସଞ୍ଚରଣେ
ଦୃଢ଼ ମାଂସପେଶୀ    ହୃଦୟ ତାର ।୭୫।

ଉଠିଲେଣି ଭାନୁ    ମଧ୍ୟାହ୍ନ ଗଗନେ
ହେମ-ହାରେ ହେଳେ    ତୋ ବକ୍ଷ ମଣ୍ଡି
ପ୍ରତିବିମ୍ବ ଛଳେ    ବିଳସି ତୋ ହୃଦେ
ନେଉଛନ୍ତି କି ସେ    ସନ୍ତାପ ଖଣ୍ଡି ।୭୬।

ବିଶ୍ୱକର୍ମା ଶାଣ-    ଯନ୍ତ୍ରର ସନ୍ତାପେ
ଜ୍ୱାଳାମୟ ପରା    ତନୁ ତାଙ୍କର
ସ୍ନିଗ୍ଧ ଶୀତଳତା    ଆଦରି ତୋ ବକ୍ଷେ
ଅବତରନ୍ତି କି    ପ୍ରତିବାସର ।୭୭।

ଭୃଗୁରୁ ଭୃଗୁ ସେ    ଅବତରି କ୍ରମେ
ସ୍ୱଚ୍ଛକୁଣ୍ଡେ କରି    ଅବଗାହନ
ତୋ ତୀର-ପ୍ରାଚୀରେ    ଗୁଳ୍ମ ଲତା ଅଂଗେ
ବିଞ୍ଚି ଦେଉଛନ୍ତି    ଜ୍ୟୋତି-ରତନ ।୭୮।

ରତ୍ନମାଳା ପ୍ରାଏ    ଇନ୍ଦ୍ରଧନୁ ମାଳ
ମୟୂଖ ସମ୍ପାତେ    ଉଠେ ଝଲକି,
ବିଳାସିନୀ ବେଶେ    ଦେଖାଉଛନ୍ତି ଏବେ
ନବ ଇନ୍ଦ୍ରଜାଲେ    କେତେ ଭେଳିକି ।୭୯।

ସମୀର ଲହରେ    ଇନ୍ଦ୍ରଧନୁ ମାଳ
ଝଲକାଇ ଝାଡ଼ି    ରତ୍ନକଣିକା
ବୁଣି ଦେଉ ? ପୁଣି    ଲିଭି ଯାଉଅଛି
ଏ ମୋହନ ଛବି    କ୍ଷଣି କ୍ଷଣିକା ।୮୦।

ପ୍ରବାହ ଯତନେ    ନୀହାରିକା ସମ
ପ୍ରସରଇ ଯାହା    ଶୀକର ରାଶି,
ବିକର୍ତ୍ତନ ତନୁ    ଶୀତଳାଉଁ 'ତନୁ'
ଉଠେ କିବା ବାଷ୍ପ-    ରାଶି ଉଭାସି ।୮୧।

ଲତା-ଦୋଳା-ସନେ ନନ୍ଦନ ବିହଙ୍ଗ
ବାଉଛି ମଧୁରେ ତ୍ରିଦିବ ବଂଶୀ,
ବନଦେବୀ କାଶ- କୁସୁମ ଚାମର
ଢାଳୁଛନ୍ତି ଧୀରେ ତୋ ତୀରେ ବସି ।୮୨ ।

ସୁର-ସୁନ୍ଦରୀଙ୍କ ପୁଷ୍ପାଞ୍ଜଳି ପ୍ରାଏ
ପ୍ରଜାପତି ପନ୍ତି ଅବରୋହଣେ
ଯୁଗପତେ ବୃନ୍ତ ବିଞ୍ଚି ହୋଇ ପୁଣି
ଖେଳୁଛନ୍ତି ସୁଖେ ତୋର ଗହଣେ ।୮୩ ।

ତୋ ଶୀକର ସ୍ନିଗ୍ଧ ଶୀତଳ ସମୀର
ଖେଳୁଛି ମୃଦୁଳେ ଭଉଁରୀ ଖେଳ
ଶ୍ରାନ୍ତ ପାନ୍ଥ ଶ୍ରାନ୍ତି- ନାଶେ ଭୂମାଙ୍କର
ସେ କି ସୁଧାମୟ ଅଞ୍ଚଳ ଚେଳ ।୮୪ ।

ପୋଛି ସେ ଅଞ୍ଚଳେ ଶ୍ରାନ୍ତ ମୋର ତନୁ
ଭାଷନ୍ତି ସୋହାଗେ ବିଶ୍ୱଜନନୀ,
ଦେଖ ବତ୍ସ ! ଏହି ସୁଷମା-ମନ୍ଦିରେ
ଲୋଟେ ନିର୍ଝରିଣୀ ହୃଦ-ପାବନୀ ।୮୫ ।

ଯୋଗବଳ-ଦାତ୍ରୀ ପବିତ୍ର ସଲିଳା
ବିଷ୍ଣୁପଦ ଧୋଇ ବିଲୋଳେ ଝରି
ଗିରୀଶ ଚୂଡାରୁ ଖସି ବ୍ରାହ୍ମୀ-ହ୍ରଦେ
ସଞ୍ଚାରେ ତନ୍ମୟେ ସୁଧା ଲହରୀ ।୮୬ ।

ଭଗୀରଥଙ୍କର କଠୋର ସାଧନେ
(୧୯) ବ୍ରାହ୍ମ-କ ମଣ୍ଡଳୁ ଝରି ଉଲ୍ଲାସେ
ଓହ୍ଲାଇ ଆସିଲା । ସୁର-କଲ୍ଲୋଳିନୀ
(୨୦) ଗିରୀଶ ଶିଖରୁ ଯେବେ କୈଳାସେ ।୮୭ ।

(୨୧) 'ବସୁ' ସ୍ରୋତେ ପୂର୍ବ ସାଗରେ ଗମିଲା
(୨୨) 'ଭଦ୍ରା' ନାମେ ବହି ଗଲା ଉତ୍ତରେ

(୨୩) ଶ୍ୱେତା ସ୍ରୋତେ ହେଲା ପଶ୍ଚିମ ବାହିନୀ
ଲୋଟି ଗ୍ରାମ ଗିରି ବନ ପ୍ରାନ୍ତରେ ।୮୮ ।

ଭାଗୀରଥୀ ନାମ ବହିଲା ଦକ୍ଷିଣେ
ପ୍ରବାହିତା ହୋଇ 'ଅଳକାନନ୍ଦା',
ସୁଶ୍ୟାମଳ କରି ସାଗର ପ୍ରଦେଶ
ହେଲା ପାପୀ ତାପୀ ତାରଣ ଫନ୍ଦା ।୮୯ ।

ଭୋଗବତୀ ସ୍ରୋତେ ଭୂଗର୍ଭେ ପ୍ରବେଶି
ଅଗଣିତ ତୀର୍ଥ କରି ସୃଜନ
ଅଗଣିତ ଉତ୍ସେ ହୋଇ ଉତ୍ସାରିତ (୨୪)
ସ୍ଥାବର ଜଙ୍ଗମ କରେ ପାଳନ ।୯୦ ।

ଯହିଁ ବିଭୁଙ୍କର ବିଭୂତି ବିକାଶେ
ରଚିଛି ନିଭୃତ ସୁଷମାଗାର ।
ଅବନୀ ପୃଷ୍ଠରେ ଗିରିବନ କୁଞ୍ଜେ
ପ୍ରବାହିତ ତାର ପବିତ୍ର ଧାର ।୯୧ ।

ଭକତର ଭାବେ ଭୋଳା ମହେଶ୍ୱର
ଛାଡ଼ି ନ ପାରନ୍ତି ଭକତ ପାଶ,
ବାଣେଶ୍ୱର ନାମ ବହି, ଏ ଅଂଚଳେ
ସ୍ୱୟମ୍ଭୁ ସ୍ୱରୂପେ କରନ୍ତି ବାସ ।୯୨ ।

ବିଶ୍ୱବ୍ୟାପୀ ବିଭୁ ହେଲେ ହେଁ, ଭକ୍ତର
ଭକ୍ତି ଅନୁସରି ବିଗ୍ରହ ବହି
କାହିଁ କେତେ ରୂପେ ବିଳସନ୍ତି ବିଶ୍ୱେ
ଭକତର ମନୋ- ମନ୍ଦିରେ ରହି ।୯୩ ।

ଅର୍ଦ୍ଧନାରୀଶ୍ୱର, ପ୍ରଖ୍ୟାତି ବହିଲେ
ଅର୍ଦ୍ଧ ଅଙ୍ଗେ ସେ ତ ଗଉରୀ ଘେନି
ଗଙ୍ଗାଧର ହେଲେ ଆଦରେ ଲୋଟାଇ
ବ୍ୟୋମକେଶେ ଗଙ୍ଗା ଲହରୀ ବେଣୀ ।୯୪ ।

ସେହି ଗୌରୀ ମୁଁ ତ ପ୍ରକୃତି ରୂପିଣୀ
ବ୍ୟାପି ରହିଅଛି ଏ ଚରାଚରେ
ଶକ୍ତିମୟ ଶିବ ଶିବମୟ ବିଶ୍ୱ
ଧ୍ୟାନେ ନିରେଖନ୍ତି ବିବୁଧ ନରେ ।୯୫ ।
ପ୍ରସରନ୍ତ ସାର ଲଲାଟ-ଲୋଚନୁ
ବିଶ୍ୱଦାହୀ ବହ୍ନି ପ୍ରଚଣ୍ଡ ଜ୍ୱାଳା,
ଦକ୍ଷିଣ ନୟନେ ଉଦ୍ୟଦିନକର
ପ୍ରକାଶେ ପ୍ରଖର ମୟୂଖମାଳା ।୯୬ ।

ସ୍ୱଭାବେ ଅଟନ୍ତି କୃଶାନୁରେତା ସେ
ବିଷଧର ଫଣୀ ଅଙ୍ଗେ ଭୂଷଣ,
ସାଗର ସଂଜାତ କାଳକୂଟ ରାଶି
କରିଛନ୍ତି ନିଜ କଣ୍ଠେ ଧାରଣ ।୯୭ ।

ପ୍ରଳୟ ତାଣ୍ଡବେ ପଦକ୍ଷେପେ ଯା'ର
ପ୍ରଳୟ ଅନଳ ଉଠେ ଉଦ୍‌ଭାସି
ସେ ଅନଳ ଗର୍ଭେ ଡ଼ମ୍ବରୁ ଡ଼ିଣ୍ଡିମେ
ଫାଟିପଡ଼େ ତପ୍ତ ବ୍ରହ୍ମାଣ୍ଡ ରାଶି ।୯୮ ।

ଭସ୍ମୀଭୂତ ହୁଏ ପୋଡ଼ି 'ଚଟଚଟେ'
ସେ ବ୍ରହ୍ମାଣ୍ଡ ମାଳା ଅନଳ ସଂଗେ
ସେହି ତପ୍ତ ବିଶ୍ୱ ବ୍ରହ୍ମାଣ୍ଡ ବିଭୂତି
ବୋଳି ହୁଅନ୍ତି ଯେ ଆପଣା ଅଙ୍ଗେ ।୯୯ ।

ମହାରୁଦ୍ର ତେଜେ ତେଜୋବନ୍ତ ସେ ତ
ବିଶ୍ୱ-ବିଷ-ବହ୍ନି ସନ୍ତାପ-ସିନ୍ଧୁ
ବାମ ଅଙ୍ଗେ ମାତ୍ର ମୋର ଅଧିଷ୍ଠାନ,
ବାମ ନେତ୍ରେ ଯେଣୁ ବିରାଜେ ଇନ୍ଦୁ ।୧୦୦ ।

ସୃଷ୍ଟି ସ୍ଥିତି କାଳେ ସେ ପ୍ରଚଣ୍ଡ ତାପ
ସଂହରି ରଖନ୍ତି ଆପଣା ଅଙ୍ଗେ,
ଲୋଟୁଥାଏ କେଶେ ସନ୍ତାପ ଶମନୀ
ସୁର-କଲ୍ଲୋଳିନୀ ଲୋଳ ତରଙ୍ଗେ ।୧୦୧ ।

ଅଗଣିତ ସ୍ରୋତେ ଝରୁଥାଏ, ଧୋଇ
ଶୁଭ ଅଙ୍ଗୁ ଶୁଭ୍ର ବିଭୂତି ରାଶି;
ସେ ବିଭୂତି ପୁଞ୍ଜେ ଅସଂଖ୍ୟ ବ୍ରହ୍ମାଣ୍ଡ
ମୋହରି ଇଙ୍ଗିତେ ଉଠେ ଉଦ୍‌ଭାସି ।୧୦୨।

ବ୍ୟୋମକେଶଙ୍କର କେଶ ମହାବ୍ୟୋମ
ଘୋଟି କୋଟି ବିଶ୍ୱ ଅଛି ଆବରି,
ସେ ବିଶାଳ କେଶେ ଲୋଟି ସୁରଧୁନୀ
ବ୍ରହ୍ମାଣ୍ଡ ପାବନୀ ପଡୁଛି ଝରି ।୧୦୩।

ସେହି ଗଙ୍ଗାଧର ଏହି ବାଣେଶ୍ୱର
ସେହି ସୁରଧୁନୀ ଏ ନିର୍ଝରିଣୀ
ସେହି ଗୌରୀ ମୁହିଁ ଅନ୍ଧାରୀ କୁମାରୀ
କଦମ୍ବ କୂଳର ରିଷ୍ଟ ବାରିଣୀ ।୧୦୪।

ଥିଲା ଦିନେ ଏହି ପବିତ୍ର ଭୂଖଣ୍ଡ
ବିଜନତା ଦେବୀ ବିଳାସ ସ୍ଥଳୀ
ନିଭୃତେ ବିକଶି ଝରି ପଡୁଥିଲା
ଅଗଣିତ ବନ୍ୟ କୁସୁମ-କଳି ।୧୦୫।

ବାଜି ଉଠୁଅଛି ଆଜି ଯହିଁ ମନ୍ଦ୍ରେ
ମୂରଜ ମନ୍ଦିରା ସଂଗୀତ ତାଳେ,
ଶ୍ୱାପଦ ସଞ୍ଚାରେ ଖଗ ମୃଗ ତହିଁ
ତୋଳୁଥିଲେ ରାବ ଉଚ୍ଛନ୍ନେ କାଳେ ।୧୦୬।

ଗ୍ରାମତଟେ ଯହିଁ ଆମ୍ରତୋଟା ମାଳେ
ନିଦାଘେ ବାଳକେ ଖେଳନ୍ତି ଦୋଳି
ଖେଳାଉଥିଲା ତ ସ୍ତନ୍ୟଦାନେ ତହିଁ
ଶାର୍ଦ୍ଦୂଳୀ ଶାବକେ ପୁଚ୍ଛ ଆନ୍ଦୋଳି ।୧୦୭।

ଖେଳାରଂଗେ ଯହିଁ ଯୁଝନ୍ତି ଶିଶୁଏ
ଚପଳତା ବଶେ କରି କଳହ
ଗଢ଼ିଛନ୍ତି ସିନା ଦିନେ ସେ ଆଖଡ଼ା
(୨୫) ଶାର୍ଦ୍ଦୂଳ ବରାହ ରଚି ବିଗ୍ରହ ।୧୦୮।

ନିନାଦିତ ଆଜି କୂଲ୍ୟାଘାଟେ, ଯାହା
କୁରଙ୍ଗୀନୟନା ଶିଞ୍ଜା-ରୁଣିତେ
ରଞ୍ଜି ଦେଉଥିଲା କାଳେ ମହାବଳ
ତା କୂଳ କୁରଙ୍ଗୀ କଣ୍ଠ ଶୋଣିତେ ।୧୦୯।

ଗ୍ରାମେ ଗ୍ରାମେ ଯହିଁ ରାଜେ ଅଟ୍ଟାଳିକା
ମାନବ କୂଳର ସୁଖ ନିବାସ,
ଶିଶୁଲଗ୍ନ କଣ୍ଠେ ନିଃଶଙ୍କେ ବାନରେ
କରୁଥିଲେ ହେଲେ ତହିଁ ବିଳାସ ।୧୧୦।

(୨୬) ପଞ୍ଚକ୍ରୋଶୀ କ୍ଷେତ୍ରେ ଶାରଦ ସମୀରେ
'ସୃଷ୍ଟ'କାର ଲାସ୍ୟେ କମଳା ଆଜି
ବିଳସନ୍ତି ଯାହା ତରଙ୍ଗେ ତରଙ୍ଗେ
ଶ୍ୟାମଳ ବସନେ ସ୍ୱତନୁ ସାଜି ।୧୧୧।

ହେମନ୍ତେ ହେମାଙ୍ଗୀ ହେମହାର ସମ
ପକ୍ୱ ଧାନ୍ୟରାଶି ଶରଧା ଭରେ
ଦୟା ଜରଜର ହୃଦୟେ ଆହ୍ଲାଦେ
ବିତରନ୍ତି ପୁଣି ମାନବ କରେ ।୧୧୨।

ନଥିଲା ତ ତହିଁ ଏ ମହା ଆଭୋଗେ
କୃପା ଅଧିଷ୍ଠାନ କମଳାଙ୍କର
(୨୭) 'କମଳା' ପୂରିତ ପଲ୍ୱଳ ବକ୍ଷରେ
ବହୁଥିଲା ମାତ୍ର ଗିରି ନିର୍ଝର ।୧୧୩।

(୨୮) କୂର୍ମାକୃତି ବପ୍ର କୂଳୀର ସଂକୁଳ
ଥିଲା କାଳେ ସେହି ନିର୍ଝର କୂଳ
ବିସ୍ତାରିତ ଦାନ୍ତୁଁ ସ୍ୱପୋଥ ବଞ୍ଚାଇ
ଘୁଞ୍ଚି ଯାଉଥିଲେ ବରାହ କୂଳ ।୧୧୪।

କୂଳୀର କୂଳରେ    ଉର୍ବର ଏ ଉର୍ବୀ
ଲକ୍ଷ ବନେଚର    ଆଦିମବାସୀ
ଭାଷନ୍ତି ଅଦ୍ୟାପି,    କଙ୍କଡ଼ା ଦେବତା
ଦେଇଛନ୍ତି ସବୁ    ସମ୍ପଦରାଶି ।୧୧୫।

ଅଗଣିତ (୨୯) ପଟୁ    ବିରଚି ଶିଖିରେ
ପ୍ରମତ୍ତ ଶୃଙ୍ଗାଳେ    ଲୋଟି ସେ ପଙ୍କେ
ଶୀତଳାଉ ଥିଲେ    ବୀର୍ଯ୍ୟବହ୍ନି ତପ୍ତ
ସ୍ୱବପୁ ନିଶୀଥେ    ନିତି ନିଃଶଙ୍କେ ।୧୧୬।

ଶିକାର କୂଳର    ଅତର୍କିତ ଭାବ
ଚତୁର ଶାର୍ଦ୍ଦୂଳ    ବିଲକ୍ଷି ତୀରେ,
ମେଣ୍ଟାଉ ଥିଲା ତ    ତା ରୁଧିର ତୃଷାର
ଘାଟ ଜଗି ତାଙ୍କ    କଣ୍ଠ ରୁଧିରେ ।୧୧୭।

(୩୦) କେବେ ମହାବଳୀ    ଶିକାର ବିଲକ୍ଷି
ଦ୍ରୁମ କାଣ୍ଡେ ଦୃଢ଼େ    ସ୍ୱଜାବ ମାରି
ଝିଙ୍କିରଖି ତାଙ୍କ    ଦୁର୍ବାର ବିକ୍ରମ
ଦେଉଥିଲା 'ସବୁ    ସୁକୃତ ସାରି' ।୧୧୮।

ମହିଷ ବରାହ    ସମ୍ବର ଶାର୍ଦ୍ଦୂଳ
ଗଜଙ୍କ ଦାପଟେ    ଶାଦ୍ୱଳ ସ୍ଥଳୀ
ଦଳି ହେଉଥିଲା    ଦିବାନିଶି, ଯହିଁ
ଶୋଭେ ଏବେ    ଶସ୍ୟକ୍ଷେତ୍ର ଆବଳି ।୧୧୯।

ଆଜି ସୌଧମାଳେ    ଏହି ଜନପଦ
ଶୋଭୁଛି ତ ବ୍ରାହ୍ମୀ    ତଟିନୀ ତଟେ
ଏହା ଖଣ୍ଡାପାଟ    ଦେଖୁଛି ତା ଛବି-
ପ୍ରତିବିମ୍ବ ବ୍ରାହ୍ମୀ-    ହୃଦୟ ପଟେ ।୧୨୦।

ନିରତେ ନଗରୀ          ପୁଣ୍ୟ ଶୋଭାମୟୀ
ଆଦରି (୩୧) ଅମରାବତୀ          ଗୌରବ
ନନ୍ଦନ କାନନ          ସମ ପୁଷ୍ପୋଦ୍ୟାନୁଁ
ପ୍ରସରଇ ସଦା          ସ୍ନିଗ୍ଧ ସୌରଭ । ୧୨୧ ।
ଲାଗିଅଛି ଶ୍ରଦ୍ଧା          ଭକ୍ତି ନିରାଜନା
ଭକ୍ତବନ୍ଧୁ          'ଜଗମୋହନ'ଙ୍କର
ପବିତ୍ର ଉତ୍ସବେ          ଶଙ୍ଖ ଘଣ୍ଟାନାଦ
ଉଚ୍ଛୁଳି ଉଠୁଛି          ରାଜନବର ।୧୨୨।
ବାଜୁଥିଲା କେଉଁ          ସୁଦୂର ଅତୀତେ
ସେ ମୋହନ ବେଣୁ          କାଳିନ୍ଦୀ କୂଳେ
ରାସନୃତ୍ୟ ରଂଗେ          ଶ୍ରୀରାଧା ମାଧବ
ବିଳସୁଥିଲେ ସେ          କଦମ୍ବ ମୂଳେ ।୧୨୩।
ବହୁଥିଲା ପରା          ଉଜାଣି ଯମୁନା
ଶ୍ୟାମଙ୍କ ବିରହ          ବଇଁଶୀ ସ୍ୱନେ
ପାଗଳିନୀ ପରା          ହୋଇ ଗୋପିନୀଏ
ଭ୍ରମୁଥିଲେ ଛନ୍ନେ          ବିଜନ ବନେ ।୧୨୪।
ନାହିଁ ଆଜି ସେହି          ରାସ ବିନୋଦିନୀ
ସେ ବୃନ୍ଦାବନେ ସେ          କଦମ୍ବ ମୂଳେ
ମାନିନୀର ମାନ          ଭଞ୍ଜନେ ଅଳତା
ନ ଶୋଭଇ          ଶ୍ୟାମଶିଖଣ୍ଡ ଚୂଳେ ।୧୨୫।
ଅଛି ତ ଯମୁନା          ନାହିଁ ସେ ଘାଟିଆ
ଅଛି କୁଞ୍ଜ, ନାହିଁ          କୁଞ୍ଜ ବିହାରୀ
ମାତ୍ର ସ୍ମୃତି ରୂପେ          ବିରାଜିତ ସେହି
ମୋହନ ମୂରତି          ମୁରଲୀଧାରୀ ।୧୨୬।
'ବସନ୍ତେ କୋମଳ          ମଳୟ ସମୀରେ'
ଭାସିଗଲା ଥରେ          ସେ ବେଣୁ ସ୍ୱନ,
ପ୍ରତିଧ୍ୱନି ତାର          ଯୁଗ ଯୁଗାନ୍ତରେ
ସଞ୍ଚରି ମୋହୁଛି          ମାନବ ମନ ।୧୨୭।

ପୂଜିତ ସେ ରୂପ        ସୁରମ୍ୟ ମନ୍ଦିରେ
ପୁଞ୍ଜିତ ଭକତି        କୁସୁମେ ଯହିଁ,
ଗୁଞ୍ଜାରୁ ଥିଲା ତ        କୀଚକ ନିକୁଞ୍ଜେ
ସେ ଦୂର ଅତୀତେ        ସମୀର ତହିଁ ।୧୨୮ ।

ଏ ବ୍ରାହ୍ମୀ ପ୍ରବାହେ        ଅବଗାହି ସୁଖେ
ଚରୁଥିଲେ ବନ୍ୟ        ମହିଷ କୁଳ,
ଦାନବ ବିଗ୍ରହ        ଦର୍ପିତ ପଦବୀ
କରୁଥିଲା ବ୍ରାହ୍ମୀ        କୂଳ ସଂକୁଳ ।୧୨୯ ।

ରକ୍ତାକ୍ତ ଲୋଚନ        ତରାଟି ଭୀଷଣେ
ବେନି ଯୂଥପତି        କେବେ ସମରେ
ମାତି ଉଠୁଥିଲେ        ଦଳି ବେଣୁ କୁଞ୍ଜ
ଧରା ଧୂଳି ରାଶି        ତୋଳି ଅମ୍ବରେ ।୧୩୦ ।

ଦେଖୁଥିଲା ସେହି        ଭୀଷଣ ସଂଗ୍ରାମ
ଖଣ୍ଡାଧାର ତଟେ        ଏ 'ବୁଢ଼ା' ବସି
ଝଲକିବା ଯାଏ (୩୨)        କୈବର୍ତ୍ତ ରାଜର
ତୀକ୍ଷ୍ଣ ଭଲ୍ଲ ମୁଖେ        କାଦମ୍ବ ଅସୀ ।୧୩୧ ।

ଏହି ଖଣ୍ଡାପାଟ        ଶିଖରେ ଯେ କାଳେ
ଉଦିଲେ କାଦମ୍ବ        ସୌଭାଗ୍ୟ ରବି
ଖଣ୍ଡାଧାର ସ୍ରୋତେ        ଅବଗାହି ଏବେ
ଦେଖ ବସ ସେହି        ଅତୀତ ଛବି ।୧୩୨ ।

---

୧. ବଣାଇର ସ୍ୱନାମପ୍ରସିଦ୍ଧ ଖଣ୍ଡାଧାର ପ୍ରପାତ ଖଣ୍ଡାପାଟ ପର୍ବତ ଶିଖରରୁ ନିସୃତ ।

୨. କବିବର ରାୟ ରାଧାନାଥ ରାୟ ବାହାଦୂର ଚିଲିକା ବକ୍ଷରେ ଶୋଭାଦେବୀଙ୍କର ରମଣୀୟ ରୂପର ଆରାଧନା କରି ଚିଲିକା କାବ୍ୟ ଲେଖିଅଛନ୍ତି ।

୩. ଶୀତ ଋତୁରେ ସୂର୍ଯ୍ୟୋଦୟ କାଳରେ ଏହି ପର୍ବତର ଦୃଶ୍ୟ ଦୂରରୁ ଲତାବୃତ ଗୋଟିଏ ବଡ କୁଟିର ପରି ଦେଖାଯାଏ । ଏହାକୁ କେହି କେହି ଢେଙ୍କିଆ ଟୋକା ବା କେହି କେହି ଢେଙ୍କିଆ ବୁଢ଼ା କହନ୍ତି ।

୪. ବୁଢ଼ାପାଟ ପର୍ବତ ଶିଖରରେ ଥିବା ଏହି ପଥର ଖଣ୍ଡିକ ବୁଢ଼ା ନାମରେ ଜନସାଧାରଣଙ୍କ ଦ୍ୱାରା ଅଭିହିତ ।

୫. ବୃଷ୍ଟି ଜଳରେ ବାହିତ ମୃତ୍ତିକାକୁ ପଟୁ କହନ୍ତି ।

୬. ଅନାର୍ଯ୍ୟମାନଙ୍କର ପାର୍ବତୀୟ କୃଷିକ୍ଷେତ୍ରକୁ କମାଣ, ବିରଙ୍ଗା ଓ ରମା ବୋଲାଯାଏ ।

୭. ଏକ ପ୍ରକାର ତୈଳବୀଜ ଶସ୍ୟ ।

୮. ଶୀତ ନିବାରଣ ନିମନ୍ତେ ପ୍ରଜ୍ୱଳିତ ଅଗ୍ନି ।

୯. ଏକ ପ୍ରକାର ବନ୍ୟ ଲତାର ଫଳ ।

୧୦. ଏଠାରେ ଭୂୟାଁ ଜାତିର ଦେବତା 'କାନ୍ତିକୁଆଁରୀ' ଦେବୀଙ୍କର ପୀଠ । ଆଶ୍ୱିନ ମାସରେ ଏହାଙ୍କର ପୂଜା ଉତ୍ସବ ଅନୁଷ୍ଠିତ ହୁଏ ।
୧୧. ଏହା ଗୋଟିଏ ନିର୍ଝର ।
୧୨. ବୃକ୍ଷକାଣ୍ଡର ଚାରି ପାଖ କିଞ୍ଚିତ୍ ଗଭୀରରେ କାଟି ଦେବାକୁ ଘୋରାଇବା କହନ୍ତି । ତଦ୍ୱାରା ବୃକ୍ଷଟି ଶୁଖି ମରିଯାଏ
୧୩. ସୁଗନ୍ଧ ଶସ୍ୟ ବିଶେଷ । ଏହାକୁ ବାଟି କେଶରେ ମର୍ଦ୍ଦନ କଲେ, କେଶରାଶି ସୁପରିଷ୍କୃତ ଓ ସୁଗନ୍ଧଯୁକ୍ତ ହୁଏ । ଏହା ମଧ୍ୟ ସେମାନଙ୍କର ଗୋଟିଏ ପଣ୍ୟଦ୍ରବ୍ୟ ।
୧୪. ଏ ସବୁ ଏକ ଏକ ପ୍ରକାର କନ୍ଦ ବିଶିଷ୍ଟ ମୂଳ ପ୍ରଧାନ ଲତା ଓ ଗୁଳ୍ମ
୧୫. ଏ ସବୁ ଏକ ଏକ ପ୍ରକାର ଶାକ ପ୍ରଧାନ ଉଦ୍ଭିଦ ଅର୍ଥାତ୍ ଏ ସବୁ ଉଦ୍ଭିଦର ଶାକ ଖାଦ୍ୟ ରୂପେ ବ୍ୟବହୃତ ହୁଏ ।
୧୬. ନାନା ପ୍ରକାର ପିଷ୍ଟକରେ ଓ ଶିମ୍ବ ଡୁଙ୍କ ମଞ୍ଜି, ଶାଳ ମଞ୍ଜି ପ୍ରଭୃତି ସିଦ୍ଧ କରିବାରେ ମହୁଲ ମିଶାଇ ନିଅନ୍ତି ।
୧୭. ଏ ସବୁ ଏକ ଏକ ପ୍ରକାର ଛତୁ, ଖାଦ୍ୟ ତରକାରୀ ରୂପେ ବ୍ୟବହୃତ ହୁଏ ।
୧୮. ଛତୁ ।
୧୯. ବିରାଟ 'କ' ଅର୍ଥାତ୍ ଜଳରାଶି-ହିମାନୀ ମଣ୍ଡଳସ୍ଥ ।
୨୦. ଗିରୀଶ୍ରେଷ୍ଠ ହିମାଳୟ ।
୨୧. ବ୍ରହ୍ମପୁତ୍ର । ୨୨. ଅଜ୍ଞାତ, ୨୩. ସିନ୍ଧୁନଦ ।
୨୪. ପୁରାଣକଥିତ ମତେ ଭୋଗବତୀ ସ୍ରୋତ ଭୂଗର୍ଭରେ ପ୍ରବେଶ କଲା । ଭୂଗର୍ଭ ଅଗ୍ନିରାଶିପୂର୍ଣ୍ଣ ଉତ୍ତପ୍ତ ଥିବା ଭୌଗୋଳିକ ସତ୍ୟ । ସୁତରାଂ ଅଗ୍ନି ସଂଗେ ଜଳ ରହି ନପାରି ଉତ୍ସ ମୁଖରେ ଉତ୍ସାରିତ ହେବା ସ୍ୱାଭାବିକ ।
୨୫. ଶାର୍ଦ୍ଦୁଳ ସହଜରେ ଦନ୍ତାବଳ ବଳିଷ୍ଠ ବନ୍ୟ ବରାହକୁ ଶିକାର କରିପାରେ ନାହିଁ । ଉଭୟଙ୍କର ଭୟଙ୍କର ଯୁଦ୍ଧ ସଂଘର୍ଷରେ ବନାଞ୍ଚଳ ପ୍ରକମ୍ପିତ ହୋଇଉଠେ । ଏହା ପ୍ରତ୍ୟକ୍ଷୀଭୂତ ଘଟଣା ।
୨୬. ପଞ୍ଚକୋଶୀ ବାହାଳ ନାମରେ ପ୍ରସିଦ୍ଧ ବିଶାଳ ଧାନ୍ୟକ୍ଷେତ୍ର ।
୨୭. ସ୍ୱନାମଖ୍ୟାତ ତୃଣ ବିଶେଷ ।
୨୮. ପୂର୍ବେ ଏ ଅଂଚଳରେ ଅତିବୃହଦାକାର କଙ୍କଡା ଥିଲେ । ସେହି କଙ୍କଡ଼ା ଏଠାର ଦେବତା । ତାଙ୍କ ଯୋଗେ ଖୋଦିତ ପ୍ରକାଣ୍ଡ ଆକାରର ଗର୍ତ୍ତମାନ ନାନା ସ୍ଥାନରେ ଅଛି । ସେହି କଙ୍କଡ଼ା ଦେବତାଙ୍କୁ ଆଠଗଡବାସୀମାନେ ଚୋରି କରି ନେଇଯିବାରୁ ବଣାଇର ପୂର୍ବକାଳର ବୁଢ଼ାମାନେ ତହିଁର ଅନୁସନ୍ଧାନରେ ଯାଇ ଆଠଗଡ଼ରୁ 'କନ୍ତକୁଆଁରୀ' ଦେବତାକୁ ଆଣିଥିବା ଏ ଅଂଚଳର ପାହାଡୀ ଭୂୟାଁ ଜାତିର ବୃଦ୍ଧମାନେ କହନ୍ତି ।
୨୯. ଅରଣ୍ୟର ଶାଦ୍ୱଳ ଭୂମିରେ ଜଳମୟ ସ୍ଥଳ ଲକ୍ଷ୍ୟକରି ଶମ୍ବରମାନେ ମାଡି ଚକଟି ସୁକୋଳମ ପଙ୍କଶଯ୍ୟା ରଚନା କରି ଶୀତକାଳର ଗଭୀର ରାତ୍ରରେ ତହିଁରେ ଲୋଟନ୍ତି । ଏହି ପଙ୍କ ଶଯ୍ୟାକୁ 'ପଟୁ' କୁହାଯାଏ । ଏହି ପଟୁମାନଙ୍କରେ ମହିଷ ବରାହ ପ୍ରଭୃତି ସ୍ଥୂଳଚର୍ମ ପଶୁମାନେ ଲୋଟିବାର ଦେଖାଯାଏ ।
୩୦. ଶ୍ୱାପଦ ପଶୁ ନିଜ ପଂଝା ଦ୍ୱାରା ଚାପି ଧରିବାକୁ ଜାବ କୁହାଯାଏ । ସାଧାରଣତଃ ବ୍ୟାଘ୍ର ମୃଗାଦି ଶିକାର ପ୍ରାଣୀର କଣ୍ଠରେ କାମୋଡି ଉଲ୍ଲମ୍ଫନରେ ନିଜର ଦେହକୁ ବିପରୀତ ଦିଗକୁ ଓଲଟାଇ ନେଇ ଶିକାରର ବେକ ମୋଡି ଭାଙ୍ଗିଦିଏ । ବୃହତ୍‌କାୟ ବଳିଷ୍ଠ ଗୟଳ ପ୍ରଭୃତିଙ୍କୁ କିନ୍ତୁ ଉଲ୍ଲିଖିତ ପ୍ରକାରେ ଆକ୍ରମଣ କରି ଗୋଡ଼ର 'ଧଳ' ଶିରା ପ୍ରଭୃତି ଛିଣ୍ଡାଇ ଶିକାରର ବଳ ହ୍ରାସ କରିବା ପରେ ସ୍ୱଚ୍ଛନ୍ଦରେ ମାରି ପକାଇବାର ଅଭିଜ୍ଞମାନେ କହନ୍ତି । ଉକ୍ତ ପ୍ରକ୍ରିୟାରେ ସମସ୍ତ ବଳ ପ୍ରୟୋଗ ଦ୍ୱାରା ଆକ୍ରମଣ ଓ ଆକର୍ଷଣ କରିବାରେ ଛିନ୍ନଭୂଜ ହୋଇ ବ୍ୟାଘ୍ର ମଧ୍ୟ କେବେ କେବେ ବିପନ୍ନ ହୋଇଥାଏ । କାରଣ ସେତେବେଳେ ଜାବ ଛଡ଼ାଇନେବାର ଉପାୟ ନ ଥାଏ ।
୩୧. ଅମରାବତୀ =ଇନ୍ଦ୍ରନଗରୀ । ଅର୍ଥାତର ବଣାଇର ପୁଣ୍ୟଶୀଳା ରାଣୀଙ୍କ ନାମ 'ଅମରାବତୀ'
୩୨.ବଣାଇ ରାଜ୍ୟରେ କଦମ୍ବ ବଂଶୀ ରାଜା ଆଗମନ ପୂର୍ବେ କୈବର୍ତ୍ତ ରାଜା 'ଶାମ' ରାଜତ୍ୱ କରୁଥିଲା । ତାକୁ ପରାଜୟ କରି କଦମ୍ବ ବଂଶୀ ରାଜା ଉଗ୍ରପ୍ରତାପ ଦେଓ ବଣାଇରେ ନିଜ ବଂଶର ପ୍ରତିଷ୍ଠା କରି ଅଛନ୍ତି ।

# ଦ୍ୱିତୀୟ ସର୍ଗ

ବାଜି ଉଠିଲାଣି ଖଣ୍ଡାପାଟ ତଟେ
'ବସନ୍ତ'ର କଣ୍ଠ- ମଧୁ ଚମକ
କୁଞ୍ଜେ କୁଞ୍ଜେ ତାର ସଞ୍ଚରି ଗଲାଣି
ଚିତ୍ତ ଉନ୍ମାଦକ ଚାରୁ ଚମକ ।୧ ।

ମଧୁ ଆଗମନେ ମଳୟ ମରୁତ
ସାଜ ସାଜ ବାଣୀ ପ୍ରଚାରି, ଧୀରେ
ସଞ୍ଚରଇ ଗିରି କାନନ ନିକୁଞ୍ଜେ
କୁଲ୍ୟା ନିର୍ଝରିଣୀ ତଟିନୀ ତୀରେ ।୨ ।

ଖସି ପଡୁଅଛି ପୀତ ପତ୍ରାବଳୀ
ଶ୍ଳଥ ବୃନ୍ତେ ବୃକ୍ଷ ବକ୍ଷ ବରଜି
ଚକ୍ର ବିଘୂର୍ଣ୍ଣନେ ତରଙ୍ଗ କମ୍ପନେ
ବାୟୁ ସ୍ରୋତେ କେତେ ନୃତ୍ୟ ସରଜି ।୩ ।

ଭାସି ଯାଉଛନ୍ତି ବନୁଁ ବନାନ୍ତରେ
କେତେ କ୍ଷୁଦ୍ର କୀଟ ସେ ପର୍ଣ୍ଣବାସୀ,
ଭାସି ଯାଉଅଛି ଏସନେ ମାନବ
ଭେଦି ଭବେ, କାଳ ତରଙ୍ଗ ରାଶି ।୪ ।

ପୁଛି ଯାଉଅଛି ଧୀରେ ଧରଣୀରୁ
ଶିଶିରେ ପ୍ରକୃତି- ବଦନ ମାଜି
ଅବସାନ କାଳେ ବିଲକ୍ଷି, ଶିଶିର
ସ୍ୱକରେ ଯତନେ ତା ତନୁ ସାଜି ।୫।

ମାଣିକ୍ୟର ମାଳା ଗୁନ୍ଥି ସଯତନେ
ପିନ୍ଧାଇ ଦେଲାଣି ଅଶୋକ ଗଳେ
ମଞ୍ଜୁଳ ଧାତକୀ ରାଗେ ଲାକ୍ଷା ରସ
ରଞ୍ଜିଲାଣି କର ଚରଣ ତଳେ ।୬ ।

ଉଜ୍ଜ୍ୱଳ ନୟନେ          କଜ୍ଜ୍ୱଳ ରଞ୍ଜିଲା
କଜ୍ଜଳପତ୍ରୀର          ଚାରୁ ସଂଚାରେ,
ଭୃଙ୍ଗରାଜ ପୁଚ୍ଛ          ନୀଳ ପାଟଫୁଲି
ଖଞ୍ଜି ଦେଲାଣି ସେ          କବରୀ ଭାରେ ।୭ ।

ଅଗୁରୁ ଚନ୍ଦନ          ରଚନା ପରାଏ
ରାଙ୍କେ ଠାବେ ଠାବେ          ଅତସୀ ବଲ୍ଲି,
ଅଙ୍ଗରାଗ ପୀତ          ପରାଗ ପୂରିତ
ଶୋଭିଲାଣି ନାଗ          କେଶର କଳି ।୮ ।

ଲଳିତ ସଞ୍ଚାରେ          ଆସିଲା ବସନ୍ତ
ଘୁଞ୍ଚିଗଲା ଧୀରେ          ଶିଶିର ବାଳା
ସେ ବସନ୍ତ ଗଳେ          ପିନ୍ଧାଇ ମଞ୍ଜୁଳେ
ମାଧବୀ କୁସୁମେ          ବିଜୟା ମାଳା ।୯ ।

ଏ ମଧୁ ମଧ୍ୟାହ୍ନେ          ତୋ ତୀର କାନନେ
କହ ଖଣ୍ଡାଧାର !          କେ ଯୁବାମଣି ?
ଭ୍ରମୁଛନ୍ତି ଏ ଯେ          ପାରିଧି ବେଶରେ
ମୂର୍ତ୍ତିମନ୍ତ ଶୌର୍ଯ୍ୟ          ସୌନ୍ଦର୍ଯ୍ୟ ଖଣି ।୧୦ ।

ସୁତୀକ୍ଷ୍ଣ ନାସିକା          ଅସୀମୂନ ସରି
ପ୍ରକାଶଇ ସ୍ୱତଃ          ଲକ୍ଷ ଚାତୁରୀ,
ବୈରୀ ଦଳ ଦର୍ପ          ଦଳିନୀ ଦାମିନୀ
ନୟନ ଯୁଗଳେ          ରହିଛି ପୂରି ।୧୧ ।

ମନେ ହୁଏ ପ୍ରତେ          ସେ କଟାକ୍ଷେ ସତେ
ଫାଟିଯିବ ମେରୁ          ଶୈଳ 'ଚଟକି'
ମାନିନୀର ମାନ          ଚୂନା ହୋଇଯିବ
ସ୍ତିମିତେ ରହିବ          ନେତ୍ର ଅଟକି ।୧୨ ।

କରେ ଶୋଭେ ଧନୁ          ମୁଖେ ଶୋହେ ନିଶ
ଜାଳି ଅହର୍ନିଶ          ବୀର୍ଯ୍ୟ ଅନଳ,

ଦୃଢ଼ ପେଶୀ ବନ୍ଧେ    ସୁବଳିତ ଅଂଗେ
ଫୁଟି ଉଠେ ହେମ    ବିଭା ବିମଳ ।୧୩।
ଭୀମ ଭୋଗୀ-ଭୋଗ    ସରି ଭୂଜ ଯୁଗ
କେୟୁର କଙ୍କଣେ    ରୁଚିରତର
ଉରସ୍ଥଳେ ଲୁଳେ    ଚାରୁ ଚନ୍ଦ୍ରହାର
ପ୍ରକାଶି ଝଳକେ    କାନ୍ତି ଭାସ୍ୱର ।୧୪।

ବୃକ୍ଷ ମୂଳେ ବନ୍ଧା    ସଜ୍ଜିତ ତୁରଗ
ନଭ ନୀଳକାନ୍ତ    ରୁଚୀ ରୁଚିର
ଶୁଭ୍ର ମେଘ ପ୍ରାଏ    ଶୋଭେ ଯା ତା ଦେହେ
ଫେନ ପୁଞ୍ଜ ସେ କି    ସିନ୍ଧୁ ବିଚୀର ।୧୫।

ବସିଲେଣି ଏ ଯେ    ଉଚ୍ଚ ଶିଳାସନେ
ନିର୍ଝରିଣୀ ତୋର    ପ୍ରବାହ ତଟେ,
ଦେଖୁଛନ୍ତି ତୋର    ଅବିଶ୍ରାନ୍ତ ଗତି
ଖଣ୍ଡାପାଟ ଶୈଳ    ହୃଦୟ ପଟେ ।୧୬।

କୁଞ୍ଚିତ ଲଲାଟେ    ଫୁଟି ଉଠୁଅଛି
ଭାବନା ସିନ୍ଧୁର    ଲହରୀ ମାଳା
ସହସା ଆସିଲା    ଅଶ୍ୱ ପୃଷ୍ଠେ ଏ କେ ?
ବିସ୍ମିତ ବଦନା    ବୀରେନ୍ଦ୍ର ବାଳା ।୧୭।

ବିଲକ୍ଷି ପ୍ରକୃତି    ବଦନ ସରୋଜ
ଝାଉଁଳି ଯିବାର    ସରମ ଭରେ
ସ୍ୱେଦ ବିନ୍ଦୁ ଛଳେ    ସୁରଧୂନୀ ନୀର
ସିଞ୍ଚି ଦେଉଛି କି    ସ୍ନେହ ଆଦରେ ।୧୮।

କେଡ଼େ ଢଳ ଢଳ    ଶ୍ରୀଅଙ୍ଗ କମଳ
ଯୌବନ ଲାବଣ୍ୟ    ରହିଛି ପୂରି
ନିର୍ଝରିଣୀ ! ତୋର    ଅରଣ୍ୟାନୀ ଅଙ୍ଗେ
ଖେଳେ ଆଜି ଯଥା    ମଧୁ ମାଧୁରୀ ।୧୯।

କୃଶ କଟି ତଟେ    ଲମ୍ବିତ କଟାର,
ସବ୍ୟେତରେ ଶୂଳ    ଭୀଷଣତର,

ସବ୍ୟେ କରେ ବଲ୍‌ଗା    ରତ୍ନ ତାରକିତ
ବିବିଧ ଭୂଷଣେ    ତନୁ ଭାସ୍ୱର ।୨୦।

ଭୀମ ପ୍ରହରଣେ    କେ ଭୀମା ରମଣୀ
ବୁଲୁଅଛି ବନ-    ଚାରିଣୀ ବେଶେ,
ଦଳି ଦୈତ୍ୟକୁଳ    ଭ୍ରମେ କି ଭବାନୀ
ଭବ ଅନ୍ୱେଷଣେ    ଅରଣ୍ୟ ଦେଶେ ? ।୨୧।

ବିସ୍ମୟର ରେଖା    ସହସା ଲିଭିଲା,
ଝଲକିଲା ସ୍ମିତ    ବାଳା ବଦନେ
ଭାଷିଲା ମଧୁରେ    ଏକି ଆର୍ଯ୍ୟପୁତ୍ର !
କି ଭାବେ ତନ୍ମୟ    ଶିଳା ଆସନେ ।୨୨।

ରାଜ୍ୟପାଟ ତେଜି    ଆସି ଦୂରଦେଶେ
ଦେଖି ପ୍ରକୃତିର    ମୋହନ ଛବି
ବନବାସୀ ହୋଇ    ସନ୍ୟାସ ଜୀବନେ
ବଳିଛି କି ଚିତ୍ତ    ହେବାକୁ କବି' ।୨୩।

ଅଶ୍ୱ ପୃଷ୍ଠ ତେଜି    ସଧୀରେ ଲଳନା
ଝର ନୀରେ କର    ବଦନ ଧୋଇ
ଯୁବାଙ୍କ 'ସନ୍ନିଧେ'    ବସିଲା ଆଗ୍ରହେ
ସୁଶ୍ରାନ୍ତ ଶରୀରେ    ସୁଶାନ୍ତ ହୋଇ ।୨୪।

ଭାଷିଲେ ବୀରେନ୍ଦ୍ର    କି କହିଲ ପ୍ରିୟେ !
ସେ ହେଲେ କି ଥିଲା    ଆକ୍ଷେପ ମୋର
କ୍ଷତ୍ରିୟ ଶୋଣିତେ    ଦୁର୍ଦ୍ଦମ ଜିଗୀଷା
ଦିଏ ସିନା ଏବେ    ବେଦନା ଘୋର ।୨୫।

ଯେ କୁଳ କେତନ    ହୋଇଥିଲା ଦିନେ
ଦକ୍ଷିଣା ବଧୂର    ସୀମନ୍ତ ଭୂଷା,
ଯା ତେଜେ ନିଦାଘେ    ଗିରିକୁଲ୍ୟା ସରି
ହେଉଥିଲା ଅରି    କମଳା କୃଶା ।୨୬।

ତାପ୍ତି କୂଳ ଠାରୁ    ଗୋପରାଷ୍ଟ୍ର(୧) ଯାଏ
କମ୍ପି ଉଠୁଥିଲା    ଅସୀ ଝମକେ,

ବୈରୀ ହୃଦ ରକ୍ତ    ଶୁଖି ଯାଉଥିଲା
କାଦମ୍ବ ରାଣଙ୍କ    ରଣ ଚମକେ ।୨୭।

ନୀପ କୁଳ ରତ୍ନ    ତ୍ରିନେତ୍ର କଦମ୍ବ
ବୀର କୁଳ ମୌଳୀ    ମଣ୍ଡନ ଶୂର
ଜୟ ବୈଜୟନ୍ତୀ    ଉଡ଼ାଇ ସ୍ଥାପିଲେ
ବନବାସୀ ବକ୍ଷେ    (୨) ଜୟନ୍ତୀ ପୁର ।୨୮।

ଜଳି ନଥିଲା ତ    ଦାକ୍ଷିଣାତ୍ୟ ବକ୍ଷେ
ଆଜ୍ୟ ପୂତ ଆର୍ଯ୍ୟ    ଯଜ୍ଞ ଅନଳ୍,
ମୂର୍ତ୍ତିମନ୍ତ ହୋଇ    ଅନାର୍ଯ୍ୟର ତହିଁ
ରାଜୁଥିଲା, ବହ୍ନି    ଶକ୍ତି ପ୍ରବଳ ।୨୯।

ଯୁଗ ଯୁଗାନ୍ତର    ସୁଦୂର ଅତୀତ
ସେ ଦେଶ ମାନବ    କରୁଣା ବହି
ଆର୍ଯ୍ୟ ସଦାଚାର    ପ୍ରଚାର ମାନସେ
ଯାଇଥିଲେ ଯେବେ    ଅଗସ୍ତ୍ୟ ତହିଁ ।୩୦।

ଦ୍ୱାଦଶ ବରଷ    ଅନାବୃଷ୍ଟି ଯୋଗେ
ଜାଳିଲା ପ୍ରକୃତି    ଯେଉଁ ଅନଳ
ଶୁଖିଗଲା ସିନ୍ଧୁ,    ଦୁର୍ଭିକ୍ଷ ପୀଡ଼ନେ
ହେଲେ ପ୍ରାଣୀକୁଳ    ପ୍ରାଣେ ବିକଳ ।୩୧।

ଜନ-ପଦ ଶୂନ୍ୟ    ଜନପଦ ହେଲା
ଶ୍ୱାନ ଶୃଗାଳଙ୍କ    ତାଣ୍ଡବ ଶାଳା
ଦକ୍ଷିଣ ଭାରତେ    ବହିଲା ଅବନୀ
ସେ କାଳରେ କୋଟି    କଙ୍କାଳମାଳା ।୩୨।

ମୂର୍ତ୍ତିମତୀ ଦୟା    ଦେବୀ ଅନସୂୟା
ତପ୍ତ କୂଲ୍ୟା ରବି    ଅତି ଯତନେ
ଦୁର୍ଭିକ୍ଷର ବାଧା    ଘୁଞ୍ଚାଇ ସାଧବୀ
ଶୋଭିଲେ ବିମଳ    କୀର୍ତ୍ତି ରତନେ ।୩୩।

ଯୁଗ ଯୁଗ ଭେଦି        ସେ କାଳୁ ଏ ଆର୍ଯ୍ୟେ
କଲେ କେତେ ଯତ୍ନ        ଯାଇ ସେ ଦେଶେ
(୩) ତେବେହେଁ ଦ୍ରାବିଡ଼େ        ଅନାର୍ଯ୍ୟରେ ମାତି
ରହିଲେ ଦୁରନ୍ତ        ଦାନବ ବେଶେ ।୩୪ ।

ବହୁକାଳେ ପୁଣି        ସେ ରୀତି ପ୍ରାବଲ୍ୟ
ଅଧିକେ ବିଳକ୍ଷି        ଦକ୍ଷିଣା ପଥେ,
ସତ୍ୟ ସିଦ୍ଧ କର୍ମା        ସେ (୪) ମୟୂର ବର୍ମା
ଆରାଧି କଲ୍ୟାଣ        ସୁମନୋରଥେ ।୩୫ ।

ଘୁଞ୍ଚାଇବାଲାଗି        ଅନାର୍ଯ୍ୟରାଶି
ବଞ୍ଚାଇବା ଲାଗି        ମାନବ ଧର୍ମ,
ଆର୍ଯ୍ୟବର୍ତ୍ତ ବକ୍ଷୁଁ        ନିମନ୍ତ୍ରି ଆଣିଲେ
ବ୍ରହ୍ମ ନିଷ୍ଠ ବନ୍ଧୁ        ବିପ୍ର ସତ୍ତମ ।୩୬ ।

ପଶ୍ଚିମ ଭାରତେ        ବିପ୍ରଙ୍କ ବସତି
ସ୍ଥାପିଲେ ପ୍ରଥମେ        ସେ ବୀରମଣି
ଆର୍ଯ୍ୟନୀତି ଆର୍ଯ୍ୟ        ଧର୍ମ ପ୍ରଚାରିଲେ
ସେହି ବିପ୍ରକୁଳ        ହୋଇ ଅଗ୍ରଣୀ ।୩୭ ।

ବନବାସୀ ବକ୍ଷେ        ଯେଉଁ ରକ୍ତଧ୍ୱଜା
ଉଡୁଥିଲା ସିନ୍ଧୁ        ସମୀରେ ଦୋଳି ,
ରତ୍ନଗିରି ଚୂଳେ        କାଳେ ସେ କେତନ
ବିକ୍ରମେ କାଦମ୍ବ        ଧଇଲେ ତୋଳି ।୩୮ ।

(୫) କୋଲାହଳ ପୁରେ        ମହା କୋଲାହଳ
ଉଠିଲା କାଦମ୍ବ        ବୈରୀ ସଦନେ
କାଦମ୍ବ ବିକ୍ରମ        ଗୌରବ ଦ୍ୱରିତେ
ଚହଟି ଉଠିଲା        ଜନ ବଦନେ ।୩୯ ।

ଚଣ୍ଡାଳ ରାଜର        କରେ କବଳିତ
ହେଲା ଯେବେ ତୀର୍ଥ        ଗୋକର୍ଣ୍ଣେଶ୍ୱର
ସ୍ୱକର୍ଣ୍ଣେ ଶୁଣିଲେ        (୬) ତ୍ରିନେତ୍ର କଦମ୍ବ
ପ୍ରତିକାରେ ହେଲେ        କ୍ରୋଧ ଜର୍ଜର ।୪୦ ।

| | |
|---|---|
| 'ନିଜ ଇଷ୍ଟଦେବ | ଶିବଙ୍କ ଦେଉଳ |
| ଚଣ୍ଡାଳର କରେ | ଆଜି ଲାଞ୍ଛିତ । |
| ଆମ୍ଭ ପୁଣ୍ୟସ୍ମୃତି | ଲିଭିଯିବ କିରେ |
| ଚଣ୍ଡାଳ ଚରଣେ | ହୋଇ ଦଳିତ ।୪୧ । |
| 'ଶୁଣୁଛି ଶ୍ରବଣ | ଆଜି ଏକି ଧ୍ୱନି ! |
| 'ବମ୍' 'ବମ୍' ବ୍ୟାପି | ଏ ବ୍ୟୋମ ସାରା |
| ହୁଏ ଆନ୍ଦୋଳିତ | ଶଙ୍କର ମସ୍ତକେ |
| ଢ଼ାଳୁଛି ଚଣ୍ଡାଳ | ରୁଧିର ଧାରା ।୪୨ । |
| 'ଜାଗରେ ! ବିକ୍ରମ | ଉଠ ଅସୀ ଘେନି |
| ମାଜରେ ! ସେ ଖଡ୍‌ଗ | ବୈରୀ ଦଳନ, |
| ସାଜରେ ! ବାହିନୀ | ବହ୍ନି ପ୍ରବାହିନୀ |
| ଆଜିରେ ଦହିବ | ବୈରୀ କାନନ ।୪୩ । |
| 'ମହାରୁଦ୍ର ଆଜି | (୭) ଉର ବକ୍ଷସ୍ଥଳେ |
| ମହିଷମର୍ଦ୍ଦିନୀ | ଦେବୀ ଚାମୁଣ୍ଡା |
| ଖଣ୍ଡାଧାରେ ମୋର | ରଚ ମା ତାଣ୍ଡବ |
| କରିବି ଚଣ୍ଡାଳ | ମସ୍ତକ ଗୁଣ୍ଡା ।୪୪ । |
| 'ସାଜରେ ! ସାଜରେ ! | ନସହେ ବିଳମ୍ବ |
| ବାଜରେ ଦୁନ୍ଦୁଭି | ଗଭୀର ନାଦେ |
| ରାଜରେ ! ମୋ ସୈନ୍ୟେ | ବୈରୀ ଦୁର୍ଗଶିରେ |
| ନାଚି ବୈରୀ ବକ୍ଷେ | ଦର୍ପିତ ପାଦେ' ।୪୫ । |
| ବର୍‌ଗିଲେ ଏସନ | ସେ କଦମ୍ବ ମଣି |
| ଚାଳିଲେ ବାହିନୀ | ଗୋକର୍ଣ୍ଣ-ମୁଖେ |
| ମହା ହବେ ଜିଣି | ଚଣ୍ଡାଳ ରାଜନେ |
| ଜୟ ଶ୍ରୀ ସଂପଦେ | ଫେରିଲେ ସୁଖେ ।୪୬ । |
| ନିବେଶିଲେ ତହିଁ | ସଦାଚାର ନିଷ୍ଠ |
| ଶ୍ରୋତୀୟ ବିପ୍ରଙ୍କୁ | ଧାର୍ମିକ ବର |
| ଶୋଭୁଛି ଅଦ୍ୟାପି | ରାହୁମୁକ୍ତ ଶଶି |
| ପ୍ରାଏ ତୀର୍ଥ ଶ୍ରେଷ୍ଠ | ଗୋକର୍ଣ୍ଣେଶ୍ୱର ।୪୭ । |

ଚଣ୍ଡାଳ ହସ୍ତରୁ          ଗୋକର୍ଣ୍ଣେଶ ତୀର୍ଥ
ଉଦ୍ଧରିଲେ ଯେହୁ          ମହା ଗୌରବେ
ତାଙ୍କରି ଦାୟାଦ          ମୁହିଁ ଆଜି ପ୍ରିୟେ !
ବନବାସ ଦୁଃଖ          ସହେଁ ନୀରବେ ।୪୮ ।

ରଣେ ଦୁର୍ନିବାର          ପଲ୍ଲବ ସେନାଙ୍କୁ
ବିକ୍ରମ ଅନଳେ          ପଲ୍ଲବେ ସରି
ଜାଳି ଦେଇଥିଲେ          ସମର ପ୍ରାଙ୍ଗଣେ
(୮) ଯେ ମୃଗେଶ ବର୍ମା          ବୀର କେଶରୀ ।୪୯ ।

ତାଙ୍କର ତନୟ          ବୀର ରବି ବର୍ମା
ରବି ସମ ଶତ୍ରୁ          ତାପନ ତେଜେ
ପଲ୍ଲବ ଦାୟାଦ          ନୃପ ବିଷ୍ଣୁ ଗୋପେ
ଶୁଆଇଲେ ତପ୍ତ          ସିକତା ଶେଯେ ।୫୦ ।

କଦମ୍ବ ଅଗ୍ରଣୀ          ପଲ୍ଲବ ରାଜଙ୍କ
ସିକତିଲ ବପୁ          ସୌହୃଦ୍ୟେ ତୋଳି
ନିବେଶିଲେ ପୁଣି          ପଲ୍ଲବ ଆସନେ
ମିତ୍ର ସ୍ନେହେ ଶ୍ରଦ୍ଧା          ଚନ୍ଦନ ବୋଳି ।୫୧ ।

ପ୍ରଚଣ୍ଡ ବିକ୍ରମେ          ଚଳାଇ ବାହିନୀ
କାଞ୍ଚୀ ଅଭିମୁଖେ          କଲେ ସଞ୍ଚାର,
ନୃପ ଚଣ୍ଡ ଦଣ୍ଡ          ଚଣ୍ଡ ଦର୍ପ ଦଳି
(୯) ନିଜକୁଳ ପୀଠ          କଲେ ଉଦ୍ଧାର ।୫୨ ।

କେତେ ଦିନ ତହିଁ          କଦମ୍ବ କେତନ
ଉଡ଼ିଲା ଏକାମ୍ରେ (୧୦)          ସିନ୍ଧୁ ସମୀରେ
ଝଞ୍ଜ କାଳେ ପୁଣି          ଝଡ଼ ଉଡ଼ିଗଲା
ପଡ଼ିଲା (୧୧) ପ୍ରତିଚୀ          ଅର୍ଣ୍ଣବ ତୀରେ ।୫୩ ।

ଯେଉଁ ଚନ୍ଦ୍ରବଂଶ          ପ୍ରଖ୍ୟାତ ଭାରତେ
ପ୍ରସାରି କୀରତି          ଚନ୍ଦ୍ରିକା ରାଶି,
ସେହି କୁଳେ ଜନ୍ମି          (୧୨) ନୀପ ନୃପବର
ଥିଲେ ସ୍ୱଗୌରବେ          କୁଳ ଉଦ୍‌ଭାସି ।୫୪ ।

ଥିଲେ ଶତପୁତ୍ର ନୀପ ନୃପଙ୍କର
ରଣେ ଅପ୍ରତିମ ଅତୁଳ ବଳେ
ପୁଞ୍ଜୀଭୂତ ହୋଇ କ୍ଷାତ୍ରଧର୍ମ କିବା
ଅବତୀର୍ଣ୍ଣ ଥିଲା ଅବନୀ ତଳେ ।୫୫।

ନୀପରାଜ ଖ୍ୟାତି ଥିଲା ତାହାଙ୍କର
ସେ ମଧ୍ୟେ 'ସମର' ବୀରେନ୍ଦ୍ର ମଣି,
ସମର-ପ୍ରାଙ୍ଗଣେ ଖେଳନ୍ତି ଭ୍ରୂଭଙ୍ଗେ
ବିଳାସ-ବିପିନ ପ୍ରାଏ ଯେ ମଣି ।୫୬।

ସେ ସମର ବର୍ମା 'କାମ୍ପିଲ୍ଲ' ନଗରେ
ତୋଳିଥିଲେ ଦିନେ ଗୌରବ ଛତି,
ସେହି ନୀପକୂଳ- ଭୂଷଣ 'ମୟୂର'
ବନବାସୀ ଦୁର୍ଗେ ହେଲେ ଭୂପତି ।୫୭।

(୧୩) ପିତୃ ଗୋତ୍ର ସ୍ମୃତି ରକ୍ଷା ଲକ୍ଷ୍ୟ ବହି
ସ୍ଥାପିଲେ ସ୍ୱୟମ୍ଭୁ ମଧୁକେଶ୍ୱର
(୧୪) ତାତ ଖୁଲ୍ଲତାତ ନାମ ଅନୁସରି
ରଖିଲେ ଉପାଧି ନୀପକୁଳର । ୫୮ ।

କାହିଁ (୧୫) ଗୋପରାଷ୍ଟ୍ର କାହିଁ ସେ ହାଙ୍ଗଲ (୧୬)
କାହିଁ (୧୭) ଶୈଳହାର (୧୮) ଜୟନ୍ତୀ ପୁର
କାହିଁ (୧୯) ଖେଟହାର କାହିଁ ସେ (୨୦) ତୃଲୁବ
କାଦମ୍ବର ଭାଗ୍ୟେ ହୋଇଛି ଦୂର । ୫୯ ।

ଚାଲୁକ୍ୟ କୁଳର ସମର କୌଟିଲ୍ୟ
ଅମାତ୍ୟ କୁଳର ଲବ୍ଧ ବଞ୍ଚନା,
ଲୁପ୍ତ କରାଇଛି କାଦମ୍ବ ଗୌରବ
ଦେଇଛି ସିନା ଏ ତୀବ୍ର ଶୋଚନା । ୬୦ ।

ଅତୀତ ଗୌରବ ଅତୀତେ ଲିଭିଛି
ଭବିଷ୍ୟତ ଯେବେ ଦିଶେ ଅନ୍ଧାର
କିପାଇଁ ବହିବି କରେ ଏ କୃପାଣ
କିପାଁ ରଖିବି ଏ ଜୀବନ ଛାର । ୬୧ ।

ବାନବାସୀ ତେଜି ବନବାସୀ ହେଲି
କରି ଆଜି ତୋତେ ବନବାସିନୀ,
କିପରି ଯାପିବି ନିଷ୍ଚିନ୍ତେ ଜୀବନ
କହ ପ୍ରିୟେ ଚନ୍ଦ୍ର- ଘରୁହାସିନୀ । ୬୨ ।

କାଦମ୍ବ-କୁମାର ଅବଜ୍ଞାତ ହୋଇ
ରହିବ ଅରାତି ଚରଣ ତଳେ ?
ଅସମ୍ଭବ ପ୍ରିୟେ କୁଳ ମାନ ଧନ
ଫିଙ୍ଗି ନ ପାରିବି ଅଖ୍ୟାତି-ଜଳେ । ୬୩ ।

ଏହି ଗିରିଦୁର୍ଗେ ସ୍ଥାପିବି ନଗର
ଏହି ବନ୍ୟଜାତି ସହାୟ ମୋର
ନବରାଜ୍ୟେ ତୋଳି କାଦମ୍ବ କେତନ
ଘୁଞ୍ଚାଇବି ମନୁଁ ବେଦନା ଘୋର । ୬୪ ।

ସୁଜଳା ସୁଫଳା ଏହି ବନଭୂମି
ନିସର୍ଗ-କମଳା - ବିଳାସ ସ୍ଥଳୀ
ଗହଳ ଶ୍ୟାମଳ ପଲ୍ଲବ, କୁସୁମେ
ବିରାଜୁଛି ଦେଖ ଦ୍ରୁମ ଆବଳି । ୬୫ ।

ଜାହ୍ନବୀ ଯମୁନା ରୂପ ପରିଗ୍ରହି
ସରିଦ୍‌ବରା (୨୧) 'ଶଙ୍ଖ' 'କୋଇଲୀ' ବେନି
ବ୍ରହ୍ମର୍ଷି (୨୨) ବ୍ୟାସଙ୍କ ଚରଣ ପଖାଳି
ଅନ୍ୟୋଽନ୍ୟ ମିଳନେ ଭକତି ଘେନି ।୬୬ ।

ଶଙ୍ଖନାଦେ କଳ - କୂଜନ ମିଶାଇ
ଗାଇ ହର୍ଷଗୀତି ପ୍ରାବୃଟେ ସୁଖେ
ବହି ଆସୁଥିଲା 'ବ୍ରାହ୍ମୀ' ନାମ ବହି
ଉନ୍ମତ୍ତ ଗମନେ ପୁରୁବ ମୁଖେ; ।୬୭।

ଅବଲୋକି ଏଥି ଭବ ଆବିର୍ଭାବ
ଭକ୍ତିଭରେ ତାଙ୍କ ଚରଣ ଧୋଇ
ଦକ୍ଷିଣୁଁ ଉତ୍ତରେ ପ୍ରଦକ୍ଷିଣ କରି
ଗମୁଛି ଦକ୍ଷିଣ ବାହିନୀ ହୋଇ । ୬୮ ।

ମହା ବେଗବତୀ ସୁର ସ୍ରୋତସ୍ୱତୀ
ବିଷ୍ଣୁପଦୁଁ ଯେବେ ଆସିଲା ଝରି
ଦେଖି ସେ ପ୍ରବାହ, ସୁରନରବୃନ୍ଦ
ସଙ୍ଗେ ଗୌରୀଗୁରୁ ଉଠିଲେ ଥରି । ୬୯ ।

ଶଙ୍କା ହେଲା ମନେ ପ୍ରବାହ ପତନେ
ଫାଟିଯିବ ଅବା ଧରଣୀ ବକ୍ଷ ?
ଭବଭୂତି ସିନା ହୋଇଥିଲା ଭବେ
ସେ ବେଗ ରୋଧନେ କେବଳ ଦକ୍ଷ । ୭୦ ।

ଧୂର୍ଜଟି ଜଟାରେ ପଶି ସୁରଧୁନୀ
ନ ପାଇଲା ପଥ ଅବତରଣେ ।
ଭୟେ ଅବା ବ୍ରାହ୍ମୀ ବାଟ ଭାଙ୍ଗିଯାଏ
ସେ ପୁରାଣ ସ୍ମୃତି ଅନୁସ୍ମରଣେ ? ୭୧ ।

ଏହି ତଟିନୀର ନୀରସୁଧା ପାନେ
ଆହ୍ଲାଦିତ ହେବ ପ୍ରକୃତି ପୁଞ୍ଜ,
ଶୀକର ପରଶେ ସୁଷମା-ସମ୍ପଦେ
ଶୋଭିବ ନଗରୀ ଉଦ୍ୟାନ କୁଞ୍ଜ । ୭୨ ।

ନଦୀମାତୃକାଏ ଧରାଖଣ୍ଡ ପ୍ରିୟେ !
ରକ୍ଷିତ ତ୍ରିଶୂଳି- ତ୍ରିଶୂଳ ତେଜେ
ନିଭୃତେ କମଳା ବିଳସୁଛି ଏଥି
ସୁକୋମଳ ଶ୍ୟାମ ଶଇଳ ଶେଯେ । ୭୩ ।

ବାଜୁଛି ମୋ କର୍ଣ୍ଣେ କି ଅଭୟ ବାଣୀ
ଡାକୁଛନ୍ତି ପ୍ରଭୁ ଭକ୍ତ ବତ୍ସଳ,
ଅଭୟ ବରଦ ପଞ୍ଚାସ୍ୟେ ତାଙ୍କର
ଫୁଟି ଉଠୁଅଛି ହାସ୍ୟ-କମଳ । ୭୪ ।

ସେ ବିମଳ ହାସେ ହସୁଛି ଚନ୍ଦ୍ରମା
ଢ଼ାଳି ଭାଳପଟୁଁ ଜ୍ୟୋତ୍ସ୍ନା-ଅମୃତ,
ଆଶିଷ ପରାଏ ପଡୁଛି ମୋ ଶିରେ
ମହା ବ୍ୟୋମକେଶୁଁ ହୋଇ ନିସୃତ । ୭୫ ।

ଏହି ଜ୍ୟୋତ୍ସ୍ନାଲୋକେ ଘଷିବି ଚରଣ
ସ୍ମରି କୁଳଦେବ ସେ ବିଭୂପଦ
ହେବ ନିବାରିତ ତାଙ୍କରି ତ୍ରିଶୂଳେ
ଭାଗ୍ୟପଥୁ ମୋର ସର୍ବ ବିପଦ । ୭୬ ।
ମହା ବେଗବତୀ ସ୍ରୋତସ୍ୱତୀ ସିନା
ଏକସ୍ରୋତେ ଯେବେ କରଇ ଗତି,
ଶତଧା ବିଚ୍ଛିନ୍ନେ ଲଭେ ତ ଦୁର୍ଗତି
କ୍ଷୁଣ୍ଣକରି ଛନ୍ନେ ପୂର୍ଣ୍ଣ ଶକତି । ୭୭ ।

ଯେତେ ଦିନ ଯାଏ ସୂର୍ଯ୍ୟଚନ୍ଦ୍ର କୁଳ
ଅବିଚ୍ଛିନ୍ନ ଶକ୍ତି ଅନ୍ତରେ ବହି,
ଦୁର୍ବାର ବିକ୍ରମେ ଯାପୁଥିଲେ କାଳ
ଅନୁକୂଳ ଥିଲା ଭାରତ ମହୀ । ୭୮ ।

ବହୁଶାଖେ ବହୁ ନାମ ବହି ଯେବେ
ବିଚ୍ଛିନ୍ନ ହେଲା ଏ ବଂଶ-ଲତିକା
ଶୋଣିତ ସମ୍ବନ୍ଧ ଭୁଲି କ୍ଷତ୍ରକୁଳ
ଆଦରିଲେ ନୀତି ଆତ୍ମଘାତିକା । ୭୯ ।

ଆତ୍ମଦ୍ରୋହେ ମାତି ହରାଇଲେ କ୍ରମେ
କ୍ଷତ୍ରିୟ ବିକ୍ରମ ଗୌରବ ଭାତି,
ସୁଯୋଗେ ବସିଲେ ତାଙ୍କରି ଆସନେ
ଶକହୁନ ଆଦି ଅପର ଜାତି । ୮୦ ।

ଦକ୍ଷିଣ ଭାରତେ ଏକାଳେ ଭୀଷଣେ
ଆତ୍ମଘାତୀ ନୀତି ହେଉ ପ୍ରବଳ,
ଅନ୍ୟୋଽନ୍ୟେ ଜିଗୀଷୁ ରାଷ୍ଟ୍ରପତି-କୁଳେ
ଜଳୁଛି ତ ଭୀମ ଆହବାନଳ । ୮୧ ।

ଗଙ୍ଗ, ହୟଶାଳ, ରାଷ୍ଟ୍ରକୂଟ,ନଳ,
ଲାଟ, କାନଚୁରୀ, ମୌର୍ଯ୍ୟ, ମାଳବ,
ଗୁର୍ଜ୍ଜର, କଦମ୍ବ, ସେନ୍ଦ୍ରକ, ଯାଦବ,
ଅଲୁପ ଚାଲୁକ୍ୟ ଆନ୍ଧ୍ର ପଲ୍ଲବ ।୮୨।

ଚେର ପାଣ୍ଡ୍ୟ ଆଦି  ଯୁଯୁଧାନ ନୃପେ
ପରସ୍ପର ଦ୍ରୋହେ  ମାତି ନିରତେ
ଅନ୍ୟୋଽନ୍ୟେ ବିଗ୍ରହେ  ପ୍ରମତ୍ତ ପ୍ରମଦେ;
କାନ୍ଦୁଛି ପ୍ରକୃତି  ତହିଁ ଆରତେ । ୮୩ ।

ଗଙ୍ଗାତଟୁଁ ଆଜି  ଗୋଦାବରୀ ଯାଏ
ଗାଙ୍ଗେୟ ଗୌରବ  ଉଠିଛି ଝଳି,
ଉଡୁଛି ଦକ୍ଷିଣେ  ଚାଲୁକ୍ୟ କେତନ
ଛଳେ ବଳେ  ବୈରୀ ବିକ୍ରମ ଦଳି । ୮୪ ।

ଏହି ଚାଲୁକ୍ୟର  ସଂଗ୍ରାମ-କୌଟିଲ୍ୟେ
ଲୁପ୍ତ କାଦମ୍ବର  ସୌଭାଗ୍ୟ-ରବି,
ନିରାଶା ଅନ୍ଧାରେ  ନାଚୁଛି ତ ଏବେ
ଦୁଃଖ ଲାଞ୍ଛନାର  ଦାରୁଣ ଛବି । ୮୫ ।

(୨୩)ଦୁଲୁବ ବକ୍ଷରେ  ବଲ୍ଲାଳ କେତନ
ଆନ୍ଦୋଳିତ ଆଜି  ସିନ୍ଧୁ ସମୀରେ,
କାଦମ୍ବର ଶତ  ଗଉରବ ସ୍ମୃତି
ତା ଚରଣ ତଳେ  ଲୋଟୁଛି ଧୀରେ । ୮୬ ।



---

୧. ଆଧୁନିକ 'ଗୋଆ' ।

୨. ଜଣ୍ଡାବୁରମ୍ ।

୩. ଜାତୀୟ ସଂସ୍କାରର ଐତିହାସିକ ଚିହ୍ନ । ଆଦିମ ଯୁଗରେ ନରମାଂସ ବର୍ଜନ ସଂସ୍କାରର ପରିଣତି ବହୁକାଳ ବ୍ୟାପି ସୁରାସୁର ଯୁଦ୍ଧ । ଏ ଯୁଗରେ ମଧ୍ୟ ହରିଜନ ସଂସ୍କାର ଆଦି ତହିଁର ନିଦର୍ଶନ ।

୪. କଦମ୍ବ କୁଳରତ୍ନ ଚନ୍ଦ୍ର ବର୍ମାଙ୍କ ପୁତ୍ର ପ୍ରଥମ ମୟୂର ବର୍ମା କଦମ୍ବ କୁଳର ସୁପ୍ରଥିତ କ୍ଷମତାଶାଳୀ ରାଜା ଥିଲେ । ତାଙ୍କର ଭାସ୍ୱର ସ୍ମୃତି, କାଦମ୍ବମାନେ 'କୁଳ ସଙ୍କେତ' ରୂପେ ମୟୂର ଚିହ୍ନ ଅଦ୍ୟାପି ବ୍ୟବହାର କରୁଅଛନ୍ତି ।

୫. ଚନ୍ଦ୍ରବଂଶୀୟ ଯଯାତିପୁତ୍ର ରାଜା କୋଳାହଳ ଦେବଙ୍କ ସ୍ଥାପିତ ରାଜ୍ୟ । ଆଧୁନିକ ନାମ କୋହ୍ଲାପୁର ।

୬. ୨ୟ ତ୍ରିନେତ୍ର କଦମ୍ବ-ଏ ୧ମ ମୟୂର ବର୍ମାଙ୍କର ପୁତ୍ର ।

୭. ଆସ ଅବତୀର୍ଣ୍ଣ ହୁଅ । ଶୁଭ କାର୍ଯ୍ୟାଦି ନିମନ୍ତେ ଆବାହନ ନିମନ୍ତ୍ରଣକୁ ସମ୍ବଲପୁର ଅଞ୍ଚଳରେ ଭରା ନିମନ୍ତ୍ରଣ କୁହାଯାଏ ।

୮. କାଦମ୍ବ ମୃଗେଶ ବର୍ମା ବେଲଗ୍ରାମ ଅଂଚଳରେ ରାଜତ୍ୱ କରୁଥିଲେ । ତାଙ୍କର ପିତାମହ କାକୁସ୍ଥ ବର୍ମା ଅଟନ୍ତି ।

୯. କଦମ୍ବମାନଙ୍କର କୁଳ ଦେବତା ଶିବଙ୍କର ପାଠସ୍ଥଳୀ ଭୂମିକା ଦ୍ରଷ୍ଟବ୍ୟ ।

୧୦. କାଞ୍ଚିରେ ଗୋଟିଏ ସୁବିଶାଳ ପୁରାତନ ଆମ୍ର ବୃକ୍ଷ ଶିବ ମନ୍ଦିରରେ ଅଛି, ସେ ଯୋଗୁଁ ଉକ୍ତ ଶିବପୀଠର ନାମ ଏକାମ୍ର । କଥିତ ଅଛି ସେହି ବୃକ୍ଷରୁ ପ୍ରତିଦିନ ଗୋଟିଏ ଲେଖା ସୁପକ୍ୱ ଆମ୍ର ଫଳ ପଡୁଥିଲା । ତାହା ଦେବଭୋଗରେ ଲାଗୁଥିଲା । ମାତ୍ର କାଳ ବିବର୍ତ୍ତନରେ ସେ ଅଲୌକିକତା ଲୁପ୍ତ ହୋଇଅଛି ।

୧୧. ଦାକ୍ଷିଣାତ୍ୟର ପଶ୍ଚିମ ସମୁଦ୍ର କୂଳରେ ଗୋପରାଷ୍ଟ୍ର (ଗୋଆ) କାଦମ୍ବ ରାଜଧାନୀ । ଏହା ବହୁକାଳ ଯାଏ କଦମ୍ବ ମାନଙ୍କ ଅଧିକାରରେ ରହି ପାରିଥିଲା ।

୧୨. ମୂଳ ହରିବଂଶ ଅନୁସନ୍ଧେୟ ।

୧୩. ୧ମ ମୟୂର ବର୍ମାଙ୍କ ବୃଦ୍ଧ ପ୍ରପିତାମହଙ୍କ ନାମ ମଧୁକେଶ୍ୱର ।

୧୪. ୧ମ ମୟୂର ବର୍ମାଙ୍କ ପିତା ଚନ୍ଦ୍ରବର୍ମା, ଚନ୍ଦ୍ରବର୍ମାଙ୍କ ଭ୍ରାତା ପୁରନ୍ଦର ବା ଇନ୍ଦ୍ରବର୍ମା । ଉଭୟ ଭ୍ରାତାଙ୍କ ରାଜତ୍ୱ ପରେ ମୟୂର ବର୍ମା ବଲ୍ଲଭାପୁରରୁ ଆସି ବାନବାସୀରେ ପିତୃ–ସିଂହାସନରେ ଆରୂଢ଼ ହେଲେ । ଜନକଙ୍କ ମୃତ୍ୟୁ ସମୟରେ ସେ ବଲ୍ଲଭାପୁରରେ ଥିଲେ । ଇନ୍ଦ୍ରଦେଓ ଦେବ ଓ ଚନ୍ଦ୍ରଦେଓ ଦେବ ଏହି କୁଳର କୌଳିକ ଉପାଧି ।

୧୫. ଆଧୁନିକ ଗୋଆ । ୧୬. ହାଙ୍ଗାଲ୍ - ଆଧୁନିକ ନାମ । ଏହା ପୂର୍ବେ ହାନୁମ୍.ଗାଲ୍ ନାମରେ କଥିତ ହେଉଥିଲା । ୧୭. ଶୈଳହାର–ଗୋଆର ଅଳ୍ପ ଦୂରରେ ଅବସ୍ଥିତ । ୧୮. ଆଧୁନିକ କଳ୍ୟାଣପୁରମ୍ । ୧୯.ରଙ୍ଗପୁର–ଜିଲ୍ଲାନ୍ତର୍ଗତ ଖେଡ ନାମକ ତାଲୁକର ପ୍ରାଚୀନ ନାମ ଖେଟହାର । ୨୦. କାନାଡାର ଉତ୍ତରାଂଶ ତୁଳୁବ ପ୍ରଦେଶର ଅନ୍ତର୍ଗତ ଥିଲା ।

୨୧. 'ଶଙ୍ଖ' ଓ 'କୋଇଲୀ' ଦୁଇଟି ନଦୀ । 'ବେଦବ୍ୟାସ' ନାମକ ସ୍ଥାନରେ ମିଳିତ ହୋଇ 'ବ୍ରାହ୍ମୀ' ନାମ ଗ୍ରହଣ କରିଅଛି ।

୨୨. କେଉଁ ବ୍ୟାସ ଏଠାରେ ଆଶ୍ରମ କରିଥିଲେ, ଜଣାନାହିଁ; ମାତ୍ର ସ୍ଥାନର ନାମ ବେଦବ୍ୟାସ । ଏଠାରେ ଶିବମନ୍ଦିର ଗୋଟିଏ ଅଛି । ସରସ୍ୱତୀ କୁଣ୍ଡ ନାମରେ ଗୋଟିଏ କ୍ଷୁଦ୍ର କୁଣ୍ଡ ଅଛି । ଏଠାରେ ପ୍ରତିବର୍ଷ ଫାଲ୍‌ଗୁନ ମାସରେ ଶିବରାତ୍ରି ଉତ୍ସବରେ ଗୋଟିଏ ମେଳା ବସେ । ବଦରିକାଶ୍ରମ ହିମାଳୟବାସୀ ବ୍ୟାସ ନହେଲେ ବି, ବ୍ୟାସ ଉପାଧିଧାରୀ କୌଣସି ସାଧୁ ସନ୍ନ୍ୟାସୀ ଏଠାରେ କେବେ ବା ଆଶ୍ରମ କରିଥାଇ ପାରନ୍ତି ।

୨୩. କାନାଡାର ଉତ୍ତରାଂଶ 'ତୁଳୁବ' ପ୍ରଦେଶର ଅନ୍ତର୍ଗତ ଥିଲା । ଖ୍ରୀ ୧୬୧ରୁ ଖ୍ରୀ ୭୧୪ ପର୍ଯ୍ୟନ୍ତ ଏହା କଦମ୍ବ ରାଜାମାନଙ୍କ ଅଧୀନ ଥିଲା । ପରେ ଖ୍ରୀ ୭୧୪ରୁ ଖ୍ରୀ ୧୩୩୫ ପର୍ଯ୍ୟନ୍ତ ବଲ୍ଲାଳ ବଂଶୀୟ ରାଜାମାନଙ୍କର ରାଜତ୍ୱ ଏଠାରେ ପ୍ରତିଷ୍ଠିତ ରହିଲା ।

---

# ତୃତୀୟ ସର୍ଗ

ଶୁଣ ଖଣ୍ଡାଧାର ! ନିବେଶି ଶ୍ରବଣ
କଦମ୍ବ କୂଳର ବିଷାଦ ଗାଥା,
ଶୁଣିଲେ ସେ ବାଣୀ ଜନ୍ମିବ ତ ତୋର
ନୀରମୟ ମୃଦୁ ହୃଦୟେ ବ୍ୟଥା । ୧ ।

ଯେଉଁ ଦାନବେନ୍ଦ୍ର ମହାବଳୀ ବଳି
ଦୁର୍ବାର ବିକ୍ରମେ ଆକ୍ରମି ସୁରେ,
ବିଜୟ କେତନ ଉଡାଇ ବସିଲା
ଶକ୍ର ସିଂହାସନେ ଅମର ପୁରେ । ୨ ।

ବାମନ ବିଗ୍ରହେ ଅବତରି ହରି
ଚାତୁରୀ ବିକ୍ରମେ ବଳିକି ଛଳି
ହରିନେଲେ ତାର ଅଗାଧ ଗରିମା
'ସାମ' ଗାନେ ବଜ୍ର ଶକତି ଦଳି । ୩ ।

ଯୁଗ ବିବର୍ତ୍ତନେ ଚନ୍ଦ୍ରବଂଶୀ ନୃପ
'ସୁତପା' ଔରସେ ସେ ବୀରମଣି,
ଅବତରି ପୁଣି ଅଟଳ ସଂଯମେ
ବିକ୍ରମେ ମଣ୍ଡିଲେ କାଳେ ଧରଣୀ । ୪ ।

(୧) ଅଙ୍ଗ,ବଙ୍ଗ,ସୁହ୍ମ, କଳିଙ୍ଗ ନାମରେ
ପୁଣ୍ଡ୍ର ମିଶି ପଞ୍ଚ ବୀର କୁମର,
ବଳିଙ୍କ ମହିଷୀ 'ସୁଦେଷ୍ଣା' ଗର୍ଭରୁ
ଜନ୍ମି ଯଶୋଦେହେ ହେଲେ ଅମର । ୫ ।

ତାଙ୍କ ନାମେ, ତାଙ୍କ ଶାସିତ ଭୂଖଣ୍ଡ
ବିରାଜଇ ସ୍ମୃତି- ଦର୍ପଣ ସରି
ଥିଲେ ସେ ବଳିଙ୍କ ଅନ୍ୟ ପୁତ୍ର 'ବାଣ'
ଭୀମ ଭୁଜେ ରୁଦ୍ର ଶକତି ଧରି । ୬ ।

ଶଙ୍କର ପ୍ରସାଦେ ଥିଲେ ସେ ନିରତେ
ରଣେ ଅପ୍ରତିମ ଅଜେୟ ବୀର,
କୃପାଣ ଝଲକେ ଝଡି ପଡୁଥିଲା
ପଲକେ ସହସ୍ର ଅରାତି ଶିର । ୭ ।

ସୁଷମା ସମ୍ପଦେ ଭୂତଳେ ଅତୁଳ
ସ୍ଥାପି 'ବାଣପୁର' ସେ ବୀରମଣି,
ତୋଳିଥିଲେ ତହିଁ ଦୀପ୍ତ ରାଜଦଣ୍ଡ
ନାମେ କମ୍ପୁଥିଲା ତ୍ରାସେ ଧରଣୀ । ୮ ।

ବିକ୍ରମ ବିଲୋକି ଦେବ ତାରକାରି
(୨) ମୟୂରବାହନ ପ୍ରସନ୍ନ ମନେ
ଅନଳ ପ୍ରତିଭା ଦୀପ୍ତ ଧ୍ୱଜା ସଙ୍ଗେ
ଦେଇଥିଲେ ସେହି ବୀର ରତନେ । ୯ ।

(୩) ଜିତକାଶୀ ସେହି ବାଣପୁରେ କାଳେ
ବାଣ ସଂପୂଜିତ ଶଙ୍କରେ ଭଜି,
ନୀପକୂଳରନ୍ (୪) ତ୍ରିନେତ୍ର କଦମ୍ବ
ଦୁର୍ଜ୍ଜୟ ଗରିମା ଥିଲେ ଅରଜି । ୧୦ ।

ନିରାଟ ନିଦାଘେ ଏହି ଶୈଳପୁଞ୍ଜେ
ଜଳି ଉଠି ଯେହ୍ନେ ଦାବ ଅନଳ,
ଭସ୍ମ ଅବଶେଷେ ରଖିଯାଏ ଦହି
ତୃଣ ପର୍ଣ୍ଣତରୁ ଲତା ସକଳ । ୧୧ ।

ସେ ବୀରେନ୍ଦ୍ରଙ୍କର ରୋଷ-ହୁତାଶନ
ତେହ୍ନେ ଅରିକୁଳ ବିକ୍ରମ ଜାଳି
ଅରିବାମା ଭାଲୁଁ ସିନ୍ଦୂର ଲିଭାଇ
ବୋଳି ଦେଉଥିଲା ସେ ଭୂତିକାଳି । ୧୨ ।

ପ୍ରଭଞ୍ଜନ ସରି ବାହିନୀ ସଞ୍ଚାରେ
ସିନ୍ଧି ଲଭିଥିଲେ ବୀର-ରତନ
ଦାବାନଳ ଶିଖା ସମ ଲହ ଲହ
ନାଚୁଥିଲା ତାଙ୍କ ରକ୍ତ କେତନ । ୧୩ ।

ଧୂଳି ଧୂମ୍ରେ ଯେହ୍ନେ ହୁଏ ଧୂସରିତ
ଏ କାଳେ ତୋ ସୌଧ ଶିଖରୀମାଳା,
ହେଉଥିଲା ତାଙ୍କ ବାହିନୀ ସଞ୍ଚାରେ
ଧୂଳି ଧୂସରିତା ଅବାଚୀ ବାଳା । ୧୪ ।

ନିଶି ତମ ଧୂମ୍ରେ ଉଦ୍‌ଭ୍ରାନ୍ତ ଗମନେ
କେତେ ପ୍ରାଣୀ ଏଥି ଶମନ ମୁଖେ,
ପଡନ୍ତି ବ୍ୟାକୁଳେ, ପ୍ରଣୟ ବିଚ୍ଛେଦେ
କେତେ ପ୍ରାଣୀ ପୁଣି ଝୁରନ୍ତି ଦୁଖେ । ୧୫ ।

ତାଙ୍କ ରୋଷାନଳ - ସଂଜାତ ନିବିଡ
ଦୁଃଖ-ତମ ଘୋଟୁ ଅରାତି ଦେଶେ,
କୁରରୀ କପୋତୀ ପ୍ରାଏ ଅରି-ନାରୀ
ଝୁରି ଗଡୁଥାନ୍ତି ବିଶ୍ଳଥ କେଶେ । ୧୬ ।

(୫) ନରସିଂହ ବଂଶୀ ଯେଣୁ, ଶୋଭୁଥିଲା
(୬) ମୁଦ୍ରା ପରେ ତାଙ୍କ କେଶରୀ ଛବି
ଅତୀତ ଗରଭେ ବୁଡି ଯାଇଛିରେ
ସେ କଦମ୍ବ କୁଳ ଗୌରବ-ରବି । ୧୭ ।

ଋଲୁକ୍ୟ ବିଜୟୀ (୭) ଦ୍ୱିତୀୟ ମୟୂର
ଲୁପ୍ତ ଗଉରବ କରି ଉଦ୍ଧାର,
ଦୃତୀୟ ବରଷେ ତେଜିଲେ ଅବନୀ
ସିଂହାସନେ ରଖି ବୀର କୁମାର । ୧୮ ।

'ମୟୂର' ଦାୟାଦ ସେ ଋମୁଣ୍ଡ ରାୟ
ଅଳ୍ପ କାଳ ମାତ୍ର ପରଜା ପାଳି
କୁଳ ଗଉରବ ସମାଦି ଗମିଲେ
ପରଲୋକ ପଥେ ଚରଣ ଋଳି । ୧୯ ।

କେଶରୀ ବିକ୍ରମ ଶ୍ରୀ ହରିକେଶରୀ
ବର୍ମା ବୀରମଣି କାଦମ୍ବ-ରବି
ସପ୍ତବର୍ଷ ଦୀପ୍ତ ରଶ୍ମିରେ ଚିତ୍ରିଲେ
କାଦମ୍ବ କେତନେ ଭାସ୍କର ଛବି । ୨୦ ।

ଯୋଗ୍ୟ ପିତାଙ୍କର ସୁଯୋଗ୍ୟ ନନ୍ଦନ
ତୃତୀୟ ମୟୂର ବର୍ମା ଭୂପତି
ଦୀର୍ଘକାଳ ଘେନି ପିତୃ ରାଜଦଣ୍ଡ
ପାଳିଲେ ଗୌରବେ ପ୍ରଜା ସନ୍ତତି । ୨୧ ।

ଛତିରୀ ବରଷ ବିସ୍ତର ବିକ୍ରମେ
ଯୁଦ୍ଧ ପରେ ଯୁଦ୍ଧେ ଅରାତି ଦଳି
ସୁବୃଦ୍ଧ ବୟସେ ଭାଗ୍ୟ ନିୟନ୍ତ୍ରଣେ
ରଣକ୍ଷେତ୍ରେ ବୀର ପଡିଲେ ଢଳି । ୨୨ ।

ଚତୁରଙ୍ଗ ବଳ ସଙ୍ଗେ ନିଜ ପ୍ରାଣ
ଆହୁତି ଦେଇ ସେ ଆହବାନଳେ
ଅରାତି କୁଳର କୌଟିଲ୍ୟ କବଳୁଁ
ରଖି ନ ପାରିଲେ ରାଜ୍ୟ କୌଶଳେ । ୨୩ ।

କାଦମ୍ବ ଗୌରବ ଗରବର ଦିନ
ହେଲା ଅବସାନ ଆସିଲା ନିଶି,
କାଦମ୍ବର ନାମ ଖ୍ୟାତି ଗୋତ୍ର ସ୍ମୃତି
ସେ ଦିନ ଗଲା ସେ ଅନ୍ଧାରେ ମିଶି । ୨୪ ।

କ୍ଷୀରକଣ୍ଠ ଶିଶୁ ଲମ୍ବାଇ ସ୍ୱକଣ୍ଠେ
କାଦମ୍ବ ମହିଷୀ ଦକ୍ଷିଣ ମୁଖେ,
ଆତ୍ମ-ସଂଗୋପନେ ଗଲେ ରାମେଶ୍ୱରେ
ଅନାଥିନୀ ବେଶେ ଦାରୁଣ ଦୁଃଖେ । ୨୫ ।

ନିୟତିର ଗତି ରୋଧନେ, ଜଗତେ
ବିକ୍ରମ ପୌରୁଷ ନୁହେଁ ତ ଦକ୍ଷ,
ଲୋଟାଇ ଦିଏ ସେ ମହାବଳି ଦମ୍ଭ
ଫୁଟାଇ ଫୁତ୍କାରେ ପାଷାଣ ବକ୍ଷ । ୨୬ ।

ରାଜରାଣୀ ହୁଏ କାଙ୍ଗାଳିନୀ,ବସେ
ରାଜସିଂହାସନେ ପଥ ଭିଖାରୀ,
ତାହାରି ନିର୍ଦ୍ଦେଶେ ପାରେ ଜନ୍ମଦୁଃଖୀ
ପଳକେ ମହେନ୍ଦ୍ର ଭୂତି ଧିକ୍‌କାରି । ୨୭ ।

ଭାଗ୍ୟ ବିବର୍ତ୍ତନେ ଜନକ ନନ୍ଦନା
ଥିଲେ ଦିନେ ଯହିଁ ରକ୍ଷ ଅଟକେ,
ଅନଳ ପରୀକ୍ଷା ଘଟିଥିଲା ତାଙ୍କ
ଭାଗ୍ୟ ପଥେ ଯେଉଁ ଲଙ୍କା କଟକେ । ୨୮ ।

ଘଟନା ସଂଯୋଗେ ନିଷ୍ଠୁର ନିୟତି
ତୋଳି ତୀବ୍ର ଦୁଃଖ ଅନଳ ଶିଖା
ଏ ରାଜ-ରାଣୀଙ୍କି ଭିଖାରିଣୀ ବେଶେ
କଲା ନେଇ ତହିଁ ଅଗ୍ନି ପରୀକ୍ଷା । ୨୯ ।

ସେ ଅଗ୍ନି ଗରଭୁଁ ସପ୍ତ ଶିଖା ଭେଦି
ଉଦ୍‌ଭବିଲେ ସପ୍ତ ବୀର ପୁଙ୍ଗବ
ଶୁଣିଲେ - ଅତୀତ ଗରଭୁଁ ଧିକ୍‌କାର
ଦିଏ ପୁନଃପୁନଃ ପୂର୍ବ ଗୌରବ । ୩୦ ।

ସପ୍ତ ନପ୍ତା ପାଶେ କାଦମ୍ବ ମହିଷୀ
ଅଶ୍ରୁ ଜରଜର ଅନ୍ତିମ ଶେଯେ
ପ୍ରଳପିଲେ ଦିନେ କୁଳ ବୀର୍ଯ୍ୟ ଗାଥା
ବୀରବାଳା ଦୀପ୍ତ ଅନଳ ତେଜେ । ୩୧ ।

ଚିର ଆରାଧିତା ସ୍ୱର୍ଣ୍ଣମୟୀ ମୂର୍ତ୍ତି
ନିଜ ଇଷ୍ଟଦେବୀ (୮) 'କୁମାରୀ'ଙ୍କର
ଜ୍ୟେଷ୍ଠ ନପ୍ତା ବକ୍ଷେ ଦୋଳାଇ ଅର୍ପିଲେ
ସ୍ୱକୁଳ କୃପାଣ ସ୍ମୃତି ଭାସ୍ୱର । ୩୨ ।

ଭାଷିଲେ ଉଚ୍ଛ୍ୱାସେ- ଶୁଣରେ କୁମାରେ
ନରସିଂହ କୁଳେ ତୁମ୍ଭ ଜନମ

ଶୃଗାଳ ପରାଏ — ନ ହେବ କେବେ ହେଁ
ସାଧିବ ନିରତେ — ସାଧୁ କରମ । ୩୩ ।

ଶୁଣ ବୀରଗଣ — ଏ ପୁରାଣ ବାଣୀ
ଯେ କାଳେ ଦୁରନ୍ତ — ତ୍ରିପୁରାସୁର,
ଭୀମ ପ୍ରତିପକ୍ଷେ — ଭୀମ ରଣ ରଙ୍ଗେ
ତେଜି ତନୁ ଗଲା — ଶମନ ପୁର । ୩୪ ।

ତ୍ରିପୁର ବିଜୟୀ — ତ୍ରିପୁର-ନିଧନେ
ତ୍ରିପୁରାରିଙ୍କର — ଲଲାଟୁଁ ଝରି,
ସ୍ୱେଦ ବିନ୍ଦୁ ମାତ୍ର — କଦମ୍ବ କୋଟରେ
ପଡିଲା ଭାସ୍ୱର — ତାରକା ସରି । ୩୫ ।

ସମ୍ଭବିଲେ ତହୁଁ — ତ୍ରିନେତ୍ର କଦମ୍ବ
ତ୍ରିଲୋଚନେ ଇନ୍ଦୁ — ଶକତି ଘେନି,
ଅରାତି ନିଧନ — କରୁଥିଲେ ଯେହୁ
ବେନି ଭୂଜେ ଝଳି — କୃପାଣ ବେନି । ୩୬ ।

(୯) ଏହି ନୀପକୂଳ — ସେ କଦମ୍ବ ତରୁ
(୧୦) ପୁରୋହିତ ଲଭି — ଶିବଙ୍କ ଅଂଶ,
ସେ ମହାବୀରଙ୍କ — ମହିମା ଆଳୟୀ
ପ୍ରଖ୍ୟାତ ଭାରତେ — କଦମ୍ବ ବଂଶ । ୩୭ ।

ତାଙ୍କ ସଂରାଧିତ — କୃପାଣ ଯୁଗଳୁ
ଅଟେ ଅନ୍ୟତମ — ଏ ଅସି ଗୋଟି,
ଅରିନ୍ଦମ ବୀର — ମୟୂର ବର୍ମାଙ୍କ
ବୀର୍ଯ୍ୟ ସ୍ମୃତି ଏଥି — ବହିଛି ଘୋଟି । ୩୮ ।

ଆରାଧିବ ସଦା — ଏହି ଅସିବର
ପୂଜି ବାଣେଶ୍ୱର — ଅଭୟ ପଦ,
ଅନ୍ଧାରୀ କୁମାରୀ — ପ୍ରସାଦେ ତୁମ୍ଭରି
ବିଦୂରିତ ହେବ — ସର୍ବ ବିପଦ । ୩୯ ।

ଏହା କହି ବୃଦ୍ଧା — ପିତୃ ମାତୃ ଦ୍ୱାରା
ସପ୍ତ ନପ୍ତା ଶିରେ — ଆଶିଷ ଢାଳି,

ନିର୍ବେଦେ ମୁଦିଲେ ଅନ୍ତିମ ନୟନ
ପରଲୋକ ପଥେ ଚରଣ ଚଳି । ୪୦ ।

କିଛି ଦିନ ଅନ୍ତେ ସପ୍ତ ସହୋଦର
ଦେଖିଲେ ଉତ୍କଳ ବଣିକ ବେନି,
ସୁଦୂର ଉତ୍କଳୁ ଉତ୍କଳ ବୋଇତେ
ଯାଇଥିଲେ ପଣ୍ୟ ସମ୍ଭାର ଘେନି । ୪୧ ।

ତାମ୍ରମୟ ସେହି ବିରାଟ ବୋଇତେ
ଦୋଳୁଥିଲା ପାଲ ଗଜ ଲାଞ୍ଛନେ,
ଉତ୍କଳ ବିକ୍ରମ ଦର୍ପିତ ଚରଣେ
ନାଚୁଥିଲା ସତେ ସିନ୍ଧୁ ମନ୍ଥନେ । ୪୨ ।

ସେ ପୋତେ ଆରୋହୀ ସପତ ସୋଦର
ପ୍ରବେଶିଲେ ଆସି ଉତ୍କଳ କ୍ଷେତ୍ରେ,
ଶୁଣୁଥିଲେ ଯାହା ଉତ୍କଳ ବିଭବ
ଗାଙ୍ଗେୟ ଗୌରବ ଦେଖିଲେ ନେତ୍ରେ । ୪୩ ।

ବିରାଟ ଗମ୍ଭୀର ତୋର ସୌଧସରି
ଅଭ୍ରଂଲିହ ଘରୁ କୋଣାର୍କ ଚୂଳେ,
ବିଶାଳ କଳସେ କନକ କମଳ
ଝଳୁଥିଲା ବ୍ୟୋମେ ସେ ସିନ୍ଧୁ କୂଳେ । ୪୪ ।

ମହୋଦଧି ନୀରେ ଅବଗାହୀ ଯେବେ
ପ୍ରାଚୀ ବ୍ୟୋମ ଭାଲେ ଉଠନ୍ତି ରବି,
ନୀଳାଚଳ ସେହି କମଳିନୀ ବକ୍ଷେ
ବିଲୋକେ ପୁଲକେ ଯୁଗଳ ଛବି । ୪୫ ।

ଯୁଗଳ ମୂରତି କମଳିନୀ ବନ୍ଧୁ
ନୀରାଜନା କରି ବିଶ୍ୱ ଜୀବନେ,
ବିଶ୍ୱ ରକ୍ଷା ବ୍ରତ ସାଧନେ ଉଠନ୍ତି
ସେ କୋଣାର୍କ ଚୂଳୁଁ ନୀଳ ଗଗନେ । ୪୬ ।

ଗଗନୁ ଭାସ୍କର କର କଉଶଳେ
ହାବଭାବେ ବର୍ଣ୍ଣେ ବିଭବେ ରଞ୍ଜି

ଚରାଚର ବିଶ୍ୱ	ଚିତ୍ରନ୍ତି ଯେସନେ
କେତେ ଫୁଲ ଫଳ	ଯତନେ ଖଞ୍ଜି । ୪୭ ।

ବାର ବରଷର	'କର' କଉଶଳେ
ଉତ୍କଳ ଭାସ୍କର	କେତେ ଯତନେ,
ତେସନେ ଉତ୍କଳ	ଜୀବନ୍ତ ଗରିମା
ଚିତ୍ରିଛନ୍ତି ମଣ୍ଡି	କଳା ରତନେ । ୪୮ ।

ସେ କଳା ସମ୍ପଦେ	ବିଶଦେ ଅଙ୍କିତ
କୋଣାର୍କେ ଶ୍ରୀକ୍ଷେତ୍ରେ	କାଦମ୍ବ ବୀରେ ।
ଉତ୍କଳ ନାଥଙ୍କ	ବୁଦ୍ଧି ବଳ ବିଦ୍ୟା
ବିଭବ ଲକ୍ଷିଲେ	ବିସ୍ମୟେ ଧୀରେ । ୪୯ ।

ତୀର୍ଥାଟନ ସାରି	କାଦମ୍ବ କୁମାରେ
ନୀଳାଚଳ ତେଜି	ବିଷର୍ଣ୍ଣ ମନେ
ଅନୁକୂଳ କ୍ଷେତ୍ର	ଅନ୍ୱେଷଣେ ଏବେ
ଭ୍ରମୁଛନ୍ତି କେତେ	ଗିରି କାନନେ । ୫୦ ।

ସେ ସପ୍ତ ସୋଦରୁଁ	ଅନ୍ୟତମ ଏହି
ଶ୍ରୀ ଉଗ୍ର ପ୍ରତାପ	କାଦମ୍ବ ବୀର
ମଣ୍ଡିଛନ୍ତି ଆଜି	ସପତ୍ନୀକ ବେଶେ
ଗିରିସୁତା ! ତୋର	ମନୋଜ୍ଞ ତୀର । ୫୧

---

୧. ମୂଳ ହରିବଂଶ ଦ୍ରଷ୍ଟବ୍ୟ । ୨. ମୂଳ ହରିବଂଶ ଦ୍ରଷ୍ଟବ୍ୟ । ୩. ସମ୍ଭବତଃ 'କାଞ୍ଚୀ' ଆଧୁନିକ କାଞ୍ଜିବରମ୍' । ୪. ପ୍ରଥମ ତ୍ରିନେତ୍ର କଦମ୍ବ । ୫. ସୂର୍ଯ୍ୟ ଓ ଚନ୍ଦ୍ର ବଂଶୀୟ 'ଆର୍ଯ୍ୟ' କ୍ଷତ୍ରିୟମାନେ ନୃସିଂହ ବଂଶୀୟ ଦେବମାନଙ୍କର ବଂଶଧର । ଏ ସମ୍ବନ୍ଧୀୟ ବିଶଦ ବିବରଣ ମତ୍ ପ୍ରଣୀତ 'ଭରତ' କାବ୍ୟରେ ବିଶଦୀକୃତ । ୬. କଦମ୍ବମାନଙ୍କ ପ୍ରାଚୀନ ମୁଦ୍ରାରେ କେଶରୀ ଛବି ବିଦ୍ୟମାନ୍ ରହୁଥିଲା । ୭. ପ୍ରଥମ ମୟୂର ବର୍ମା କାଦମ୍ବ ସିଂହାସନର ପ୍ରତିଷ୍ଠା ଦୃଢ଼ୀଭୂତ କଲେ । ଦ୍ୱିତୀୟ ମୟୂର ବର୍ମା ହୃତ ସ୍ୱାଧୀନତା ଚାଲୁକ୍ୟମାନଙ୍କ କବଳରୁ ଉଦ୍ଧାର କରି କୁଳ ଗୌରବ ବଢ଼ାଇଥିଲେ । ତୃତୀୟ ମୟୂର ବର୍ମାଙ୍କ ସମୟରେ ବାନବାସୀରୁ କଦମ୍ବ ବଂଶର ରାଜତ୍ୱ ଲୁପ୍ତ ହେଲା ଖ୍ରୀ: ୧୧୩୧ । ୮. ଇନ୍ଦ୍ର କନ୍ୟା ଦେବସେନା, କାର୍ତ୍ତିକେୟଙ୍କର ପତ୍ନୀ । ୯. ସାଧାରଣତଃ ବଂଶ ଲତା ବା ବୃକ୍ଷ ରୂପେ କଳ୍ପିତ ହୁଏ । ସୁତରାଂ କଦମ୍ବ ବଂଶ କଦମ୍ବ ବୃକ୍ଷ ରୂପେ କଳ୍ପିତ ହବାରେ ବୈଚିତ୍ର୍ୟ କିଛି ନାହିଁ । ୧୦. କଦମ୍ବମାନେ ଶୈବ ହେତୁ ଶିବଙ୍କୁ ସୃଷ୍ଟିକର୍ତ୍ତା ବିଶ୍ୱପିତା ରୂପେ ଆରାଧନା କରିବା ସ୍ୱାଭାବିକ । ବସ୍ତୁତ ଶିବ, ବିଷ୍ଣୁ, ବ୍ରହ୍ମା ଏକ ପଦାର୍ଥ ।

# ଚତୁର୍ଥ ସର୍ଗ

ଭୂୟାଁ 'ପ୍ରମଦାଙ୍କ ସୌହୃଦ୍ୟ ଲାଳସେ
ଯାଉଥିଲେ ଏହି ବୀରେନ୍ଦ୍ର ବାଳା,
ଘେନି ଆସିଛନ୍ତି ପଲ୍ଲି-ବାସିନୀଙ୍କ
ବିମଳ ଶରଧା କୁସୁମ ମାଳା । ୧ ।

ନାଗେଶ୍ୱର ରେଣୁ ରଞ୍ଜିତ କନକ
ଚମ୍ପକ ସୁରଭି ସ୍ନିଗ୍ଧ ସମୀରେ
ସନ୍ତରି ତୋହରି ବାଲ୍ୟ-ଲୀଳା ଭୂମେ
ଭ୍ରମିଲେ, ସ୍ୱଲକ୍ଷ୍ୟ ସାଧନ ଧୀରେ । ୨ ।

ଗ୍ରାମୁଁ ଗ୍ରାମାନ୍ତରେ ପୁରେ ପୁରେ ଯେବେ
ଭ୍ରମୁଥିଲେ ଏହି ଭୈରବୀ ବେଶେ,
ପାର୍ବତୀ ପ୍ରକୃତି ମନୋଜ୍ଞ ସୁମନ
ଖଞ୍ଜି ଦେଉଥିଲା ସୁନୀଳ କେଶେ । ୩ ।

ଅମର୍ତ୍ତ୍ୟ ପ୍ରତିଭା ବିଲୋକନେ ସେତ
ମୃଦୁଳ ସୁରଭି ବାୟୁ ଲହରେ,
ଲୋଧ୍ର ପରାଗରେ ବଦନ ପଙ୍କଜ
ରଞ୍ଜି ଦେଉଥିଲା କେତେ ଆଦରେ । ୪ ।

ଶାନ୍ତି ଅପହାରୀ ଅଧିତ୍ୟକା ଥିଲା
କେତେ ମତେ ଶାନ୍ତ ଚିତ୍ତ ରଞ୍ଜନେ,
ବେତାରେ ସେ ତାର ବାଜୁଥିଲା ସତେ
ସରଘା କୂଳର ମୃଦ ଗୁଞ୍ଜନେ । ୫ ।

ମନ୍ଦିରା ନିଃସ୍ୱନ ପ୍ରାଏ ଶୁଭୁଥିଲା
(୧) 'ଟସରକଟା'ର କଂସାଳ କଣ୍ଠ
ବିହଙ୍ଗମ ଡିମ୍ବ କୂଳର ଅନ୍ତକ
ଅଟେ ଯା ସହଜେ ଶମନ ଘଣ୍ଟ । ୬ ।

ଦୀର୍ଘ ନାସା ତୂରୀ ବାଉଥିଲା ଉଚେ
ଉଚ୍ଚ ତରୁ ଶିରେ ଧନେଶ ପକ୍ଷୀ,
ବୀର ବାମା ଗମେ ଏ ବନ ଭୂମିର
ମଙ୍ଗଳ ଶକୁନ ଯେହ୍ନେ ବିଲକ୍ଷି । ୭ ।

କହ କଲ୍ଲୋଳିନୀ ଅଛି କିନା ମନେ
କୁଲ୍ୟା ବେଶେ ସ୍ନେହ ସଳିଳେ ଧୋଇ ।
ପୂଜି ନ ଥିଲୁ କି ତହିଁ ଭକ୍ତିଭରେ
ଶୀଳା ପୀଠେ ତାଙ୍କ ଚରଣ ଥୋଇ । ୮ ।

କାନନ ଲକ୍ଷ୍ମୀର ପ୍ରଲମ୍ବ କୁନ୍ତଳ
ପରାଏ ଲମ୍ବାଇ ଶିଖଣ୍ଡ ଭାର;
ଜାଗ୍ରତ ବିସ୍ମୟେ ଉହୁଁଥିଲେ ତୋର
ତୀର ତରୁ ଶିରେ ଶିଖଣ୍ଡୀ ବାର । ୯ ।

କୋଟି ହେମ ରତ୍ନ - କମ କମନୀୟ
ଅଂଶେ ବୀରପକ୍ଷ ପ୍ରବାଳ ଖଞ୍ଜି,
ଯା' ଦେହେ ପ୍ରକୃତି ବର୍ଣ୍ଣନ୍ୟାସେ ଦିଏ
ଶତ ଇନ୍ଦ୍ର ଧନୁ ସୁଷମା ଗଞ୍ଜି । ୧୦ ।

ସୌର କରେ ଯେବେ ଝଲକି ଉଠଇ
ଇନ୍ଦ୍ର ନୀଳମଣି ମଞ୍ଜୁଳ ବକ୍ଷ,
ବିଶ୍ୱ ଚିତ୍ରକର କବି କୁଳ ଲେଖେ
ସେ ଶୋଭା ଚିତ୍ରଣେ ହେବେ କି ଦକ୍ଷ । । ୧୧ ।

ମାଣିକ୍ୟ ମଞ୍ଜୁଳ ପକ୍ଷ୍ମ ପଦ ଚଞ୍ଚୁ
ମରକତ କିଣା ପର-ବସନ-
'ଶୂନ୍ୟ କପୋତ'ଟି ଉଡିଯାଉ ଥାଏ
ମହା ଶୂନ୍ୟେ ନୀଳ ରେଖା ଯେସନ । ୧୨ ।

ମହାନୀଳ ବ୍ୟୋମେ ମିଶି ଯାଉଥାଏ
ପରମାତ୍ମା ଅଙ୍ଗେ ଜୀବାତ୍ମା ସରି,
ଯାମିନୀ ଝଟକେ କିଣେ ସେ ଛଟକେ
ଖରେ ମନୋଜବା ଗତି ଆଚରି । ୧୩ ।

କ୍ଷୁଦ୍ର ପକ୍ଷୀଟି ସେ କ୍ଷୁଦ୍ର ଶସ୍ୟ କଣା
ଖାଇ, କ୍ଷୁଦ୍ର ନୀଡେ ଯାପେ ଜୀବନ,
କାହୁଁ ଏ ଶକତି ଲଭିଛି, ଯା ଘେନି
ଏଡେ ସ୍ଫୂର୍ତ୍ତି, ଗତି ଏଡେ ଜୀବନ । ୧୪ ।

ପ୍ରାଣୀ ସମାକୁଳ ଅଧିତ୍ୟକା ସେତ
ପଶୁ ପକ୍ଷୀଙ୍କର ବିଳାସ ସ୍ଥଳୀ
ବିରାଜଇ ଯହିଁ ଫୁଲେ ଫଳେ ଶୋଭି
କେତେ ଗୁଳ୍ମଲତା ଦ୍ରୁମ ଆବଳି । ୧୫ ।

ଅବିରାମ ସ୍ନିଗ୍ଧ ସମୀର ହିଲ୍ଲୋଳେ
ପୀୟୂଷ ପ୍ରବାହ ଖେଳେ ପ୍ରସରି
ପ୍ରତି ଶ୍ୱାସେ ଯହିଁ ଅନ୍ତରେ ଅନ୍ତରେ
ସଂଜୀବନୀ ଶକ୍ତି ଉଠେ ସଞ୍ଚରି । ୧୬ ।

ପଥଶ୍ରମେ ଶାନ୍ତ ପଥିକର ଶାନ୍ତି
ବିଦୂରିତ କରି ପଲକ ମାତ୍ରେ
ସ୍ନେହ ସମ୍ବାହନେ ଶାନ୍ତିର ଚନ୍ଦନ
ବୋଳି ଦେଉଥାଏ ଘର୍ମାକ୍ତ ଗାତ୍ରେ । ୧୭ ।

ସେ ସୁଧା ପ୍ରବାହେ ଆହ୍ଲାଦେ ହାରୀତ
ଶୁକ ଶାରୀ ଆଦି ବିହଙ୍ଗ ବାର
ଜମ୍ବୁ ବଟ ଶାଖେ 'ଭାଷୁ' ଥାନ୍ତି ସୁଖେ
ପକ୍ୱ ଫଳ ରାଶି କରି ଆହାର । ୧୮ ।

ବ୍ୟୋମ ଚୁମ୍ବୀ ଉଚ୍ଚ ଶାଳ ତରୁ ଶିରେ
ଲତା ଦୋଳାସନେ ଦୋଳି ଆନନ୍ଦେ
ବାଉଥାନ୍ତି ସୁଖେ ଯୋଗିଆ ଦମ୍ପତି
ନନ୍ଦନ ମୁରଲୀ ମୋହନ ଛନ୍ଦେ । ୧୯ ।

ସେ ସମୀର ସ୍ରୋତେ ଆନ୍ଦୋଳିତ ହୋଇ
ଉଡେ ଫର ଫରେ ପ୍ରଲମ୍ବ ପୁଚ୍ଛ,
ହୋଇ ଯାଉଥାଏ ବର୍ଣ୍ଣ ବଇଭବେ
ମୋତି ମାଣିକ୍ୟର ମାଳିକା ଗୁଚ୍ଛ । ୨୦ ।

(୨) ଯୋଗୀ ଦେହେ ଶୋଭେ ଶୁକ୍ଳ ବାସଖଣ୍ଡି
ଯୋଗିଆଣୀ ଅଙ୍ଗେ ରଙ୍ଗ ବସନ
ମାତ୍ର ବେନିଙ୍କର ମସ୍ତକ ନୀଳିମା
ଧିକ୍‌କାରଇ ଇନ୍ଦ୍ରନୀଳ ରତନ । ୨୧ ।

ବିହଙ୍ଗ ଜଗତେ ସୁଷମା ସମ୍ପଦେ
କହିଛନ୍ତି ସେତ ସ୍ୱର୍ଗୀୟ ଶିରୀ
ସ୍ୱରଗୁଁ ସତେକି ଆସିଛନ୍ତି ? ଯେବେ
ଟଳିଗଲା 'ମେରୁ ମନ୍ଦର' ଗିରି । ୨୨ ।

ଉଦୀଚୀ ସାଗର ଗ୍ରାସିଲା ଗରଭେ
ଆର୍ଯ୍ୟର ମଞ୍ଜୁଳ ନନ୍ଦନ ବନ,
ସେ କାଳୁଁକି ? ସେହି ସୁମେରୁ ତରଜି
କଲେ ଆର୍ଯ୍ୟଙ୍କର ଅନୁ-ଗମନ ? ୨୩ ।

ସେ କାଳୁଁ ସେ ସ୍ମୃତି ରଖିଛନ୍ତି ସେ କି
ଅଦ୍ୟାପି (୩) 'ନନ୍ଦନ ବିହଙ୍ଗ' ନାମେ ?
ସ୍ୱର୍ଗୀୟ ସୁଷମା ମଞ୍ଜୁ କୁଞ୍ଜ ପୁଞ୍ଜେ
ବିହରନ୍ତି ସଦା ଭାରତ ଧାମେ । ୨୪ ।

ନ ହୁଅନ୍ତି କେବେ ନିରସ ନିରାଟ
କ୍ଷୁଦ୍ର ବନଚରୀ ବିହଙ୍ଗ ବନ୍ଧା
ଲୋଡେ ଯେଣୁ ତାଙ୍କ ସ୍ୱର୍ଗୀୟ ଅନ୍ତର
ନନ୍ଦନ ମାଧୁରୀ ମନ୍ଦାର ମଧୁ । ୨୫ ।

ସୁମଧୁର ତାଙ୍କ ଲଳିତ ସଙ୍ଗୀତେ
ଉଲ୍ଲସିତ ହୁଏ ରମ୍ୟ କାନନ,
ପ୍ରତି ତାନେ ପ୍ରତି - ଯୋଗିତା ଦେଖାଇ
କରେ ଭୃଙ୍ଗରାଜ ଅନୁ କୂଜନ । ୨୬ ।

ସ୍ୱବକ୍ଷ ଫୁଲାଇ ମାଟିଆ କପୋତ
ଘୁମରେ ଗମ୍ଭୀରେ ସ୍ୱପ୍ରିୟା ପାଶେ,
ମୋହନ ଗରବେ ଅଧର ଚୁମ୍ବନେ
ମାତିଥାଏ କେତେ ରଙ୍ଗେ ବିଳାସେ । ୨୭ ।

ଈର୍ଷ୍ୟା ମଦେ ମତ୍ତ ଅପର କପୋତେ
ବିଲୋକି ଅଦୂରେ ଅସୂୟା ଭରେ
ପ୍ରବଳ ବିକ୍ରମେ ଆକ୍ରମି ସରୋଷେ
ମାତିଉଠେ କ୍ଷଣେ ଭୀମ ସମରେ । ୨୮ ।

ଘୂରି ରଣ ମଦେ ବାମ ପକ୍ଷ ତାଳେ
ଏଡାଇ ଚତୁରେ ଆରତି ଲକ୍ଷ୍ୟ
ଦକ୍ଷ ପକ୍ଷାଘାତେ ପ୍ରତି ପକ୍ଷେ ଜିଣି
ଆସେ ପ୍ରିୟା ପାଶେ ଫୁଲାଇ ବକ୍ଷ । ୨୯ ।

ଯେଉଁ ସୂତ୍ରେ ବିଶ୍ୱ ନାଚୁଛି ନିରତେ
ପ୍ରମୋଦେ ପ୍ରମାଦେ ଲଗାଇ ଧନ୍ଦା
ସେହି ପ୍ରେମ ସୂତ୍ରେ କପୋତ ଜୀବନ
କପୋତୀ ହୃଦେତ ହୋଇଛି ବନ୍ଧା । ୩୦ ।

ଋତୁ ଅନୁସରି ଫଳଭରେ ଯେବେ
ଲୋଟି ପଡେ ତହିଁ ଜାମ୍ବୁ କଦଳୀ
ପିଜୁଳି ପନସ କଦମ୍ବ ରସାଳ
ବଇଁଚ ଘୁରୁଡୁ ଦ୍ରୁମ ଆବଳି । ୩୧ ।

ଶାଖାମାନଙ୍କରେ ଶାଖାମୃଗ କୁଳ
ଭୁଞ୍ଜି ଫଳ ରାଶି ପ୍ରମୋଦ ଭରେ;
ସୁଦୀର୍ଘ ଲଂଫନେ ଶାଖୁଁ ଶାଖେ ପୁଣି
ବୃକ୍ଷୁଁ ବୃକ୍ଷାନ୍ତରେ ଗମନ୍ତି ଖରେ । ୩୨ ।

ଆନ୍ଦୋଳିତ ହୁଏ ତରୁ ଲତା କୁଞ୍ଜ
କଲ୍ଲୋଳିତ ନୀଳ ସାଗର ସରି
ସିନ୍ଧୁ ନୀଭ ଯାହା ଗହଳ ପଲ୍ଲବେ
ବହଳ ନୀଳିମ ମୂରତି ଧରି । ୩୩ ।

ବାୟୁ ବିଧୁନନେ ପଡିଥାଏ କେତେ
ପଚେଲୀମ ଫଳ ପାଦପ ତଳେ
ପୁଣି ମାତ୍ରା ତାର ବଢ଼ଇ ତାଙ୍କର
ଲଂଫନ ଧାବନ ଧୂନନ ବଳେ । ୩୪ ।

ଫଳ ଆଶେ ଆସେ    କୂଟମୃଗ କେବେ
ରାଇ ତରୁ କେବେ    ଘୁଣ୍ଟୁଳୀ ମୂଳେ,
ମଧୁରସ ସ୍ପୃହା    ମେଣ୍ଟାଇ ନିଅଇ
ମହୁଲ ବନେ ସେ    ମହୁଲ ଫୁଲେ । ୩୫ ।

ସନ୍ମୁଖ ଚରଣେ    ଝପି ଆମ୍ର ଫଳ
ଆଦରେ ଭଲୁକ    ପିଅଇ ରସ,
ବନବାଳାଙ୍କର    ସଞ୍ଚାର ଶବଦେ
ଅପସରି ଯାଏ    ନୋହି ବିରସ । ୩୬ ।

ଏକ ବନେ ସେ ଯେ    ସହଚର ରୂପେ
ଯାପନ୍ତି ଜୀବନ    ଦିବସ ନିଶି,
ଶଙ୍କା ଭୀତି ଲେଶ    ସଞ୍ଚାରେ ନାହିଁତ
ଦ୍ୱେଷ ହିଂସା ତାଙ୍କ    ଅନ୍ତରେ ମିଶି । ୩୭ ।

ସଙ୍ଗେ ଘେନି କରୀ,    କରିଣୀ, କଳଭ
ଆସେ କେବେ ଦଳି    କଦଳୀ ବନ,
'କଡ କଡେ' ମହା    ଦ୍ରୁମ ଶାଖା ଭାଙ୍ଗି
ତ୍ରାସି ଦିଏ ବନ -    ବାସୀଙ୍କ ମନ । ୩୮ ।

ନିଶୀଥ ଅନ୍ଧାରେ    ନିଆଁ ହୁଳା ଘେନି
ତଡି ନିଏ ଭୂଯାଁ    ସଙ୍ଗିନୀ ସଙ୍ଗେ,
ଲାଞ୍ଜ ଧରି କେବେ    ସାହସିନୀ ବାଳା
ଲାଛି ଦିଏ କରୀ -    ଚରମ ଅଙ୍ଗେ । ୩୯ ।

ନିଷାଦେ ଗରଜି    କରୀ ଯୂଥପତି
କରୀ ପଲ ଘେନି    ପଳାଏ ଖରେ
ମକା କ୍ଷେତ୍ରେ ଭୂଯାଁ    ଦେଖେ ପ୍ରାତେ ଯାଇ
ଖୋଳ ଅଛି ଫଳ    ନାହିଁ ଭିତରେ । ୪୦ ।

ଧନ୍ୟ ବୀରବାଳା    ସେ ବନବାସିନୀ
ନାଚୁଛି ଅନ୍ତର-    ନୟନେ ମୋର,
ରଠା ଲୁଗାଭିଡା    କୁଣ୍ଡକଟି ଛଟା
ସଞ୍ଚାରଇ ଚିତ୍ତେ    ବିସ୍ମୟ ଘୋର । ୪୧ ।

ଦକ୍ଷହସ୍ତେ ବାଳା ଅଗ୍ନିହୁଳା ଘେନି
ଅଗ୍ନିନେତ୍ରେ ଧାଏଁ ପବନ ବେଗେ
ବାୟୁରାଶି ଭେଦି ଝଟକେ ହୁଲାଟି
ସ୍ୱର୍ଣ୍ଣ ସୌଦାମିନୀ ଯେସନ ମେଘେ । ୪୨ ।

ଘର୍ମେ ଘର୍ମେ ତାର ବଦନ ଶରୀର
ଝଲକୁଛି ବର୍ମ ଲତିକା ସରି
ମର୍ମେ ମର୍ମେ ଛୁଟେ ତପ୍ତ ରକ୍ତଧାରା
ଜିଗୀଷା ଅନଳେ ଖରେ ପ୍ରସରି । ୪୩ ।

ଗଣା ଗଣ ଶିଳା ସଙ୍କୁଳ ସେ ପଥେ
ତୀବ୍ର ଲକ୍ଷ୍ୟେ ଦୃଢ଼େ ଦ୍ରୁତ ଚରଣ
ସଞ୍ଚାଳି ଚଞ୍ଚଳା ଭୈରବୀ ସଞ୍ଚାରେ
କରିଛି ତ ଆଜି ଜୀବନ ପଣ । ୪୪ ।

ପ୍ରତି ପଦକ୍ଷେପେ ପ୍ରତିପଦ ତା'ର
କଳି ନେଉଅଛି ସରଣୀ-ଶିଳା,
ତୀବ୍ର ଅବହିତେ ବଞ୍ଚାଇ ସ୍ୱତନୁ
ରଚୁଛି ଏ ରଣ ତାଣ୍ଡବ ଲୀଳା । ୪୫ ।

ଉଡୁଛି ଚରମେ କୁଟିଳ କୁନ୍ତଳ
ନୀର ସ୍ରୋତେ ନୀଳ ଶୈବାଳ ସରି
ପ୍ରବାହିନୀ ପ୍ରାଏ ପଶ୍ଚାତେ ସରଣୀ
ବହି ଯାଉଛି କି ଖରେ ସଞ୍ଚରି । ୪୬ ।

ନିଜ ପଲ୍ଲୀମଧ୍ୟେ ମଣ୍ଡ ଘରେ ଯେବେ
ଅନୂଢ଼ା କୁମାରୀ କୁମାର ମେଳେ
ଯାପୁଥିଲା ନିଶି ରଙ୍ଗୁ ନାଟ ଗୀତ
ପ୍ରମୋଦେ ହୃଦୟ ହରାଇ ହେଳେ । ୪୭ ।

ଜଳୁଥାଏ ଗୃହ ଅନ୍ତରେ ଅନ୍ତରା,
ଘରିପାଶେ ପାଦ ନିବେଶି ତାପେ,
ନୃତ୍ୟ ଅବସାନେ ଚକ୍ରାକାରେ ସର୍ବେ
ନିଦ୍ରା ଯା'ନ୍ତି ସୁଖେ କେତେ ଆଳାପେ । ୪୮ ।

ଲଳିତ ଆଳାପେ    ଲଳିତେ ସଞ୍ଚରି
ଅନ୍ତରେ ଅନ୍ତରେ    ପୀରତି ଲତା,
ଯୁବକ ଯୁବତୀ    ହୃଦୟ ଆକର୍ଷି
ଛନ୍ଦିଦିଏ ଲୌହେ    ଚୁମ୍ବକ ଯଥା । ୪୯ ।

ପ୍ରାକୃତ ବନ୍ଧନ    ଛିଣ୍ଡାଇବା ଲାଗି
କାହିଁ ସେ ବାଳାର    ଶକତି ହୃଦେ,
ପ୍ରୀତି ମାତ୍ର କଳା    ଗଣ୍ଠିଧନ, ତେଜି
ପିତା ମାତା ଭ୍ରାତା    ସ୍ୱଜନ ବୃନ୍ଦେ । ୫୦ ।

ପୁର ପଲ୍ଲୀ ତେଜି    ନିରୋଳେ ନିରୋଳ
ପ୍ରଦେଶେ ପଳାଇ    ଦୟିତ ସଙ୍ଗେ
ଯେ ଦିନ ଆସିଲା;    ସେହି ଦିନୁ ସେତ
ନିଯୋଜିଲା ପ୍ରାଣ    କର୍ମ ପ୍ରସଙ୍ଗେ । ୫୧ ।

କାନନେ କାନ୍ତାରେ    ନଗରେ କମାଣେ
କାୟା ଛାୟା ସରି    ବେନି ଜୀବନ
ବିଳସୁଛି ସଦା    ପ୍ରମୋଦେ ପ୍ରମାଦେ
ଆଦରି ଆହ୍ଲାଦେ    ବନ ଭବନ । ୫୨ ।

ମୃଗୟା ବିନୋଦେ    ବନ୍ୟ ଫଳମୂଳ
ଶାଗ ପତ୍ର ଆଦି    ସଂହରି ସୁଖେ
ଶ୍ରମ ଦୁଃଖ ସୁଖ    ମଣିସେ ସ୍ୱବାସେ
ଆସେ ପ୍ରିୟ ସଙ୍ଗେ    ପ୍ରସନ୍ନ ମୁଖେ । ୫୩ ।

ନିରାଟ ନିଦାଘେ    ତରୁ ଲତା କାଟି
(୪) 'ଡାହି' ସାଜି ଭୂୟାଁ    ଅତି ଯତନେ
ଦହି ଦିଏ ଯେବେ    କମାଣ ଭୂମିକି
କଞ୍ଚା ଶୁଖା ଦାବେ    ତୀବ୍ର ଦାହନେ; । ୫୪ ।

କଞ୍ଚା 'ଗଣିଆରୀ'    କାଂଠର କଠାଉ
ପାଦତ୍ର ପରାଏ    ବାନ୍ଧି ଚରଣେ,
ବିଚରଣ କରେ    'ତୃଷା' ବାଡ ଧରି
ଅଗ୍ନିରାଶି ମଧ୍ୟେ    ଆଗ୍ନେୟ ରଣେ । ୫୫ ।

ଦର ଦଗ୍‌ଧ ଦାବେ ପ୍ରଜ୍ୱଳିତ ବହ୍ନି
'ତୃଷି' ଦେଉଥାଏ ଘଡି କି ଘଡି
ତୋହରି ପରାଏ ଝରି ଯାଉଥାଏ
ସ୍ୱେଦଝର ତା'ର ଶରୀରେ ବଢ଼ି । ୫୬ ।

ବିମଳ ପ୍ରଣୟ - ସୋହାଗେ ଅଦୂରେ
ଚାକି ବସିଥାଏ ଭୂୟାଁ-ସୁନ୍ଦରୀ,
ଅଳ୍ପ ଲୁଣ ମିଶା ଗରମ ତୋରାଣି
ରଖିଥାଏ ଯତ୍ନେ ତୁମ୍ୱାରେ ଭରି । ୫୭ ।

ବହ୍ନି ତାପେ ତୃଷା ଉଠି ବାରମ୍ବାର
କରଇ ଭୂୟାଁର ପ୍ରାଣ କାତର
ପର୍ଣ୍ଣପୁଟେ ବାଳା ହରେ ସେ ପିପାସା
ଦେଇ ସେ ତୋରାଣି ଥରକୁ ଥର । ୫୮।

ପିପାସା ପ୍ରଶମେ ନବ ବଳେ ଭୂୟାଁ
ଧାଇଁ ଯାଏ ପୁଣି ବହ୍ନି ଗରଭେ
ଫୁଲି ଉଠୁଥାଏ ପ୍ରମଦାର ବକ୍ଷ
କର୍ମୀବୀର ପତି ସଙ୍ଗେ ଗରବେ । ୫୯ ।

ଗଗନ ମାଦଳ ବଜାଇ ବାଦଳ
ଢ଼ାଳି ଦେଲେ ନବ ଅସାର ଧାରା
ନବୀନ ଆଶାରେ ପ୍ରସାରିତ ହୁଏ
ଭୂୟାଁ ଦମ୍ପତିଙ୍କ ନୟନ ତାରା । ୬୦ ।

ହଳ ସଙ୍ଗେ ଭୂୟାଁ ବୀଜ ଶସ୍ୟ କନ୍ଧେ
ଗମଇଁ କମାଣେ ନଙ୍ଗଳ ଧରି
'ଖୁଣ୍ଟୁତା'ଟି ଧରି ଯାଏ ଭୂୟାଁ ବାଳା
ମକା ଆଦି ବୀଜେ ତା ଅଣ୍ଟି ଭରି । ୬୧ ।

ଏକ ହସ୍ତେ ଗ୍ଭଳି ଖୁଣ୍ଟୁତା, ଅପର
ହାତେ ବୀଜମାନ ପକାଇ ତହିଁ
ପାଦ ଗ୍ଭଳି ଯତ୍ନେ ଘୋଡାଏ ମୃତ୍ତିକା
ପାଦେ ପାଦେ ଠାବ ଠାବକେ ରହି । ୬୨ ।

ରଖିଥାଏ ତା'ର କମାଣ ବେଉସା
ସାଇତି ଯତନେ କେତେ ଆଦରେ
ଉଜୁଡ଼ିଲେ ସେହି ଜୀବନ ଜୀବିକା
ଜଳିବ ତ କ୍ରୋଧ ଅନଳ ଖରେ । ୬୩ ।

ମଣ୍ଡ ଘରୁ ଯେବେ ପଳାଇ ଆସିଲା
ପ୍ରେମ ମୁଗ୍ଧା ବାଳା ଦୟିତ ସଙ୍ଗେ
ଖେଳୁ ନ ଥିଲା ତ ଏ ତୀବ୍ର ଜିଗୀଷା
ହୃଦ ସରେ ତାର ପ୍ରେମ ତରଙ୍ଗେ । ୬୪ ।

ବିଶ୍ୱ ବିମୋହନ ଘରୁ ଅପଘନ
ସରସୀରେ ସଜ ସରୋଜ କଳା
ଅବ୍ୟକ୍ତ ଆହ୍ଲାଦେ ନିଖିଳ ନୟନ
ଟାଣି ଦେଉଥିଲା ବିଷାଦ ଦଳି । ୬୫ ।

ହସିଲେ ମଞ୍ଜୁଳା ମୁକୁତା ଗରଭୁଁ
ଫୁଟି ଉଠୁଥିଲା ଜ୍ୟୋଛନା ରାଶି
ଭାଷିଲେ ପଦେ ସେ ସୋହାଗ ସରିତେ
ଯାଉଥିଲା ମୁଗ୍ଧ ହୃଦୟ ଭାସି । ୬୬ ।

ମଦନ ମାଦକେ ମତ୍ତ ମତଙ୍ଗଜ
ଗତି ଗରବକୁ ଦେଇ ଧିକ୍କାର
ଚାଲି ଯାଉଥିଲେ ଲୋଟି ପଡୁଥିଲା
ପ୍ରତି ପଦ କ୍ଷେପେ ଫୁଲ କହ୍ଲାର । ୬୭ ।

ପ୍ରକୃତି-ନନ୍ଦନା, ନାହିଁ ହୃଦେ ତାର
ନବ ଜଗତର ବିକୃତି ଲେଶ
ଜୀବନ ଜୀବିକା ପରେ ବାଧା ଦେଖି
ବହିଛି ସିନା ଏ ଭୈରବୀ ବେଶ । ୬୮ ।

ସ୍ୱଭାବେ ସରଳା ଶରଧା କୋମଳା
ସୋହାଗେ ତରଳା ଅଟେ ତା ମତି
ସୁପ୍ରେମେ ବିମଳା ସଞ୍ଚୟେ କମଳା
ତା କୁଟୀରେ ସେତ ସାବିତ୍ରୀ ସତୀ । ୬୯ ।

ସଙ୍କୁଚିତା କିମ୍ବା କହ ମା ! ଭାରତୀ ।
ନୁହେ କି ଗୋ ସତେ ଏ ନବ ବାଳା,
ନିସର୍ଗ ମାଧୁରୀ ସୁଷମା ସାଧବୀ
କାନନ ଲକ୍ଷ୍ମୀର ମାଧବୀ ମାଳା । ୭୦ ।

ନଜାଣେ କପଟ ଲମ୍ପଟ ପୀରତି
ନିପଟ ଚତୁରୀ ବନ୍ଧୁ ଛଳନା
ନ କରେ ତ କେତେ କୁଞ୍ଚିତ ଭ୍ରୂଭଙ୍ଗେ
କୁଟିଳର କୂଟ ବାଣୀ କଳନା । ୭୧ ।

ମିଥ୍ୟା ଅପବାଦ ଚୌର୍ଯ୍ୟ ହିଂସା ଦ୍ୱେଷ
ସଙ୍ଗେ ପରିଚୟ ନାହିଁତ ତାର
ଦୁର୍ନୀତି ବନ୍ଧନୁଁ ମୁକ୍ତ ତା ହୃଦୟ;
ନୁହେଁ କି ସେ ଧରା ହୃଦୟ ହାର ? ୭୨ ।

ନାରୀ ମହିମାର ପବିତ୍ର ସୁନ୍ଦର
ଭାସ୍ୱର ବିମଳ ମୟୂଖ ଶିଖା ।
ଝଟକାଉ ଥିଲା ଦିନେ ଏ ଆର୍ଯ୍ୟର
ଉନ୍ନତ ଲଲାଟେ ଗୌରବ ଟୀକା । ୭୩ ।

ଝଲକେ ଯାହାର ପଲକେ ପଲ୍ଲବି
ଉଠୁଥିଲା ମୃତ ଜୀବନ ତରୁ,
ଖସି ପଡୁଥିଲା କାଳ ମୃତ୍ୟୁ ପାଶ
ମୃତ୍ୟୁ ଦେବତାର କରାଳ କରୁ । ୭୪ ।

ସେ ଜ୍ୟୋତି ଝଲକ ଲିଭାଇବା ଲାଗି
ପ୍ରସାରିଲେ କର ଆସକ୍ତି ଭରେ,
ଝଡି ପଡୁଥିଲା ରାଜ ଚକ୍ରବର୍ତ୍ତୀ
ଲଲାଟ କିରୀଟ ଭୂତଳେ ଖରେ । ୭୫ ।

ଶୁଭ୍ର ଫେନ ଚୂଡ ଆନ୍ଦୋଳିତ କୋଟି
କଲ୍ଲୋଳ କିରୀଟ ସାଗର ଭେଦି
ଜ୍ୟୋତ୍ସ୍ନାହାସେ ବହ୍ନି ଗରଭେ ବିଳସି
ଲକ୍ଷ ଗର୍ବୀଗର୍ବ ପର୍ବତ ଛେଦି । ୭୬ ।

ଦାନବ ପାଳିତ    ଅଶୋକ କାନନେ
ମାନ ଗୋବିନ୍ଦର    ସଭା ସଦନେ
ଯବନ ଭବନେ,    ଶ୍ୱାପଦ ସଙ୍କୁଳ
ଅମା ଅନ୍ଧାରିତ    ଗହନ ବନେ । ୭୭ ।

ଉଦ୍‌ଭାସିତ କରି    ଅତୀତ ଭବିଷ୍ୟ
ବିବୁଧ ବନ୍ଦିତ    ବିଭା ବିଭବେ
ଝଟକି ରହିଛି    ସର୍ବତ୍ର ଜଗତେ
କାଳବକ୍ଷ ଭେଦି    ସମ ଗୌରବେ । ୭୮ ।

ସେ ଚିନ୍ମୟୀ ଜ୍ୟୋତି    ନାହିଁ କଲ୍ଲୋଳିନୀ
ଏ ବନବାସିନୀ    ଅବଳା ପ୍ରାଣେ,
ମାତ୍ର ତା ସୁନ୍ଦର    ସରଳ ଜୀବନ
ସେ ଅତୀତ ସ୍ମୃତି    ମାନସେ ଆଣେ । ୭୯ ।

ଲିଭି ଯାଇଅଛି    ସେହି ପୁଣ୍ୟ ଜ୍ୟୋତି
ଆସିଛି ବିଭ୍ରମ    ଅନ୍ଧାର ଘୋଟି
ଆର୍ଯ୍ୟର ଉନ୍ନତ    ଗରିମା କିରୀଟ
ଖସି ପଡିଛିରେ    ଭୂତଳେ ଲୋଟି । ୮୦ ।

ଥାଉ କଲ୍ଲୋଳିନୀ    ସେ ଦୁଃଖ କାହାଣୀ
କହିବାକୁ ଆଉ    କାହିଁଛି ବେଳ
ଦିଶିଲାଣି ଦେଖ    ଅତୀତ ଗଗନେ
ମୟୂର ଲାଞ୍ଛନ    କେତନ ଚେଳ । ୮୧ ।

କୁଇତା ପୀଢରୁ    ତୋ ତୀରେ କାନନେ
ଆସିଲେଣି ଭୂୟାଁ    ଧଙ୍ଗଡା ଗଣ
ପ୍ରତାପଙ୍କ ଲାଟ    କୈବର୍ତ୍ତ ରାଜର
ତୀକ୍ଷ୍ଣ ଭଲ୍ଲମୁଖେ    କରିବେ ରଣ । ୮୨ ।

---

୧. ଏହି ପକ୍ଷୀ ଅନ୍ୟାନ୍ୟ ପକ୍ଷୀମାନଙ୍କର ଡିମ୍ବ ଗୁଡିକ ଛିଦ୍ର କରି ତଦନ୍ତର୍ଗତ ପକ୍ଷୀଡିମ୍ବ ସବୁ ଖାଇଯାଏ । ଏହାର ଦୈଶିକନାମ 'ଟେସରଙ୍କଟା' ।୨. ଆର୍ଯ୍ୟଙ୍କର ଅନୁଗାମୀ ହେଲେ । ପ୍ରାୟ ୨୫୦୦୦ ବର୍ଷ ପୂର୍ବେ ଶତାବ୍ଦୀ ଭେଦୀ ଏହି ମହାବନ୍ୟାରୂପୀ ପ୍ରଳୟ କାଣ୍ଡ ଘଟିଥିଲା । ସେହି ଭୟଙ୍କର ବୃଷ୍ଟିବାତ୍ୟାର ପାର୍ଥିବୀ ପ୍ରକୃତି ନାଏଗ୍ରା ଆଦି ଜଳପ୍ରପାତ ଓ ହିମାଳୟାଦି ସମୁନ୍ନତ ଗିରି ଶ୍ରେଣୀର ସୃଷ୍ଟି କରି ଥିବାର ଭୂବିଜ୍ଞାନ୍‌ବିଦ୍‌ମାନଙ୍କର ସିଦ୍ଧାନ୍ତ ।
୩. Indian Paradise Bird. ୪. ଏହାହିଁ ଡାହି ପୋଡାଇବାର ପ୍ରଣାଳୀ । ଏହା ଦ୍ୱାରା ଭୂମିର ଉର୍ବରତା ଚମତ୍କାର ରୂପେ ପ୍ରକାଶିତ ହୁଏ ମାତ୍ର ୨/୩ ବର୍ଷ ପରେ ଉକ୍ତ ଭୂମିଖଣ୍ଡିକ ସମ୍ପୂର୍ଣ୍ଣ ଅନୁର୍ବର ଓ ଜୀବନୀଶକ୍ତି ଶୂନ୍ୟ ଅକର୍ମଣ୍ୟ ହୋଇଯାଏ ।

ମହମାନ୍ୟବର ପ୍ରଜାବତ୍ସଳ ନରପତି
ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟଙ୍କ
ସୁ ପ୍ରସାଦରୁ
ପ୍ରକାଶିତ ।

# କୁମାର - କଣ୍ଠାଭରଣ ।

ଶର୍ମ୍ମା ଶ୍ରୀହରିହର ମହାପାତ୍ର
ଦେବଗଡ଼ ।

ବାମଣ୍ଡା ।
ହଂଲିଷିଣୀ ଇଲେକ୍ଟ୍ରିକ ଟେଂଷିଙ୍ଗ ପ୍ରେସରେ
ଶ୍ରୀଦୀନବନ୍ଧୁ ପଟ୍ଟନାୟକଙ୍କ ଦ୍ୱାରା
ମୁଦ୍ରିତ ।
୧୯୧୩

ମୂଲ୍ୟ ଠ ୦ ୩

# ପ୍ରାଗଭାଷ

କୁମାର କଣ୍ଠାଭରଣ ଅମରକୋଷର ଓଡିଆ ପଦ୍ୟାନୁବାଦ ଏହା ମୁଖ୍ୟତଃ ଭର୍ଣ୍ଣାକୁଳାର ଛାତ୍ରମାନଙ୍କ ଶିକ୍ଷା ପାଇଁ ହରିହର ମହାପାତ୍ର ପ୍ରଣୟନ କରିଥିଲେ । ଏହାର ଏକାଧିକ ସଂସ୍କରଣ ହୋଇଥିବାର ଦେଖାଯାଏ । ୧ମ ସଂସ୍କରଣ ୧୯୧୩ରେ ଦେବଗଡ ହିତୈଷିଣୀ ଇଲେକ୍‌ଟ୍ରିକ ମେଶିନ ପ୍ରେସରେ ମୁଦ୍ରିତ ହୋଇଥିଲା । ୨ୟ ସଂସ୍କରଣ ସେହି ପ୍ରେସରେ ୧୯୧୫ରେ ପ୍ରକାଶିତ । ପୁସ୍ତକର ଉଦ୍ଦେଶ୍ୟ ଓ ନାମକରଣ ସଂପର୍କରେ ଲେଖକ ସ୍ପଷ୍ଟ କରନ୍ତି - ଏହି ପୁସ୍ତକ ଭାରତ -ଗୌରବ ମହାମତି ଅମର ସିଂହଙ୍କର ଅମର କୋଷ ଅବଲମ୍ବନରେ ଲିଖିତ ହୋଇଅଛି । କିନ୍ତୁ ଲିଙ୍ଗ ନିର୍ଣ୍ଣୟ ପ୍ରଭୃତି ଏଥିରେ ବର୍ଜ୍ଜିତ ହୋଇଅଛି ଓ ଅମର କୋଷରେ ନିହିତ କେତେକ ଶବ୍ଦ ଯାହାକି ଉତ୍କଳ ଭାଷାରେ ପ୍ରାୟ ବ୍ୟବହୃତ ହେଉନାହିଁ ସେ ସବୁ ପରିତ୍ୟକ୍ତ ଆଉ ଉତ୍କଳ ଭାଷାରେ ବ୍ୟବହୃତ କେତେକ ଶବ୍ଦ ଯାହା କି ଅମର କୋଷରେ ନିହିତ ହୋଇ ନାହିଁ ତାହା ଅନ୍ୟାନ୍ୟ ଅଭିଧାନ ଗ୍ରନ୍ଥର ଅବଲମ୍ବନରେ ଏଥିରେ ସନ୍ନିବେଶିତ ହୋଇଅଛି । ଏହିସବୁ କାରଣରୁ ଏବଂ କୁମାର କୁମାରୀ ମାନଙ୍କର ଶିକ୍ଷାର ସହାୟତା ସାଧନ ଉଦ୍ଦେଶ୍ୟରେ ଏହା ପ୍ରଣୀତ ହୋଇଥିବାରୁ ଏହାର ନାମ "ଅମର କୋଷର ଅନୁବାଦ" ରଖା ନଯାଇ "କୁମାର କଣ୍ଠାଭରଣ" ରଖାଯାଇଅଛି । (ଭୂମିକା)

କୁମାର କଣ୍ଠାଭରଣରେ ଅମରକୋଷ ପ୍ରଥମକାଣ୍ଡର ସମସ୍ତବର୍ଗ ଅନ୍ତର୍ଭୁକ୍ତ । ସେ ଗୁଡିକ ହେଲା ସ୍ୱର୍ଗବର୍ଗ, ବ୍ୟୋମବର୍ଗ, ଦିଗ୍ ବର୍ଗ, କାଳ ବର୍ଗ, ଧୀ ବର୍ଗ, ଶବ୍ଦାଦି ବର୍ଗ, ନାଟ୍ୟ ବର୍ଗ, ପାତାଳବର୍ଗ, ନରକବର୍ଗ ଓ ବାରିବର୍ଗ । କିନ୍ତୁ ଅମରକୋଷର ବ୍ୟୋମବର୍ଗ, ଦିଗବର୍ଗ ଓ କାଳବର୍ଗ ମିଶି କୁମାର କଣ୍ଠାଭରଣରେ କେବଳ ବ୍ୟୋମବର୍ଗ ହୋଇଛି । ଏତତ୍ ବ୍ୟତୀତ ଅମରକୋଷ ୨ୟକାଣ୍ଡର ଭୂମିବର୍ଗ, ପୁରବର୍ଗ, ଶୈଳବର୍ଗ, ବନୌଷଧିବର୍ଗ, ସିଂହାଦିବର୍ଗ କୁମାର କଣ୍ଠାଭରଣରେ ସ୍ଥାନିତ । ଅନ୍ୟାନ୍ୟ ବର୍ଗଗୁଡିକ ୨ୟ ଖଣ୍ଡରେ ପ୍ରକାଶ କରିବାକୁ ହରିହର ମହାପାତ୍ର ଅନୁବାଦ କରିଥିଲେ କିନ୍ତୁ ତାହା ଲୋକଲୋଚନକୁ ଆସିପାରିନାହିଁ ।

କୁମାର କଣ୍ଠାଭରଣ ଛାତ୍ର ଛାତ୍ରୀଙ୍କ ସ୍ମରଣଯୋଗ୍ୟ, ସାବଲୀଳ ଓ ସରଳ ଶବ୍ଦ ବିନ୍ୟାସ ମାଧ୍ୟମରେ ପ୍ରସ୍ତୁତ । ବିଭିନ୍ନ ଶବ୍ଦର ପ୍ରତିଶବ୍ଦ ଖୋଜିଲା ବେଳେ ଓଡିଆ ଭାଷାରେ ଏକ ମାନକ ପୁସ୍ତକରୂପେ କୁମାର କଣ୍ଠାଭରଣ ଦେଦୀପ୍ୟମାନ ।

ଡ. ଫଣୀନ୍ଦ୍ର ଭୂଷଣ ନନ୍ଦ

# ଉପହାର

ଯାହାଙ୍କର ସୁନୀତିପୂର୍ଣ୍ଣ ଶାସନରେ ପ୍ରଜାକୁଳ ନିତ୍ୟ ସୁଖ ଶାନ୍ତିରେ କାଳ ହରଣ କରୁଅଛନ୍ତି, ଯାହାଙ୍କର ସମଦର୍ଶିତା, ନିରଭିମାନିତା, ଆଶ୍ରିତ-ବତ୍ସଳତାଦି ସ୍ୱର୍ଗୀୟ ଗୁଣରାଶି ପରିପୂରିତ ଅସାଧାରଣ ସୌଜନ୍ୟ ସର୍ବସାଧାରଣଙ୍କ ହୃଦୟରେ ଅପୂର୍ବ ପ୍ରୀତି ପୀୟୂଷ ପ୍ରବାହ ବିସ୍ତାର କରିଅଛି, ଆପଣାର ଗ୍ରନ୍ଥାଗାରରେ ପ୍ରତ୍ୟେକ ଗ୍ରନ୍ଥ ଅବଲୋକନରେ ଯାହାଙ୍କର ବହୁଦର୍ଶୀ ହୃଦୟ ନିତ୍ୟ ସାରସ୍ୱତ ପ୍ରେମରେ ପୁଲକିତ ହୋଇଉଠେ, ଯାହାଙ୍କର ଉପଦେଶ ପୂର୍ଣ୍ଣ ପ୍ରତ୍ୟେକ ବାତ୍ସଲ୍ୟମୟୀ ଉକ୍ତିରେ ଏ ଦୀନ ହୃଦୟ ବିମଳ ଭକ୍ତି ଓ ଆନନ୍ଦ ରସରେ ପରିପ୍ଳୁତ ହୋଇ ଯାହାଙ୍କର ସୌମ୍ୟ ମୂର୍ତ୍ତିକୁ ନିରନ୍ତର ଦେବମୂର୍ତ୍ତି ରୂପେ ଧ୍ୟାନକରେ, ଯାହାଙ୍କର ପ୍ରଦତ୍ତ ଉତ୍ସାହରେ ପ୍ରଣୋଦିତ ହୋଇ ମୋର ଅଯୋଗ୍ୟ ଶକ୍ତିକୁ ଇଦୃଶ ମହତ କାର୍ଯ୍ୟରେ ନିୟୋଜନା କରିଅଛି, ବିଜ୍ଞାନ ବିନୋଦୋପାଧିକ ଉତ୍କଳ ସାହିତ୍ୟର ପରମ କଲ୍ୟାଣ ସାଧକ ସେହି ପ୍ରଜାବତ୍ସଳ ମହାତ୍ମା ଶ୍ରୀମାନ୍ ଶ୍ରୀ ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ବାମଣ୍ଡାଧୀଶ୍ୱର ମହୋଦୟଙ୍କର ସତତ ସ୍ମରଣୀୟ ନାମକୁ ଏହି ଗ୍ରନ୍ଥର ଶିରୋଭୂଷଣ କରି ସୁକୁମାର ମତି ଉତ୍କଳୀୟ କୁମାର କୁମାରୀମାନଙ୍କର କର କମଳରେ ଅର୍ପଣ କଲି । ଇତି

ପ୍ରଣେତା

# ଭୂମିକା

ଭାଷାର ଉନ୍ନତି ସଂଗେ ସଂଗେ କାଳକ୍ରମେ ଅନେକାନେକ ଅଭିଧାନ ଗ୍ରନ୍ଥ ପ୍ରଣୀତ ହୋଇ ସାହିତ୍ୟ କାନନର ପଥ ସୁଗମ୍ୟ କରିଅଛି । ବର୍ତ୍ତମାନ କି ଐତିହାସିକ କି ଭୌଗଳିକ କି ବୈଜ୍ଞାନିକ କୌଣସି ବିଭାଗୀୟ ଅଭିଧାନ ଗ୍ରନ୍ଥର ଅଭାବ ନାହିଁ କହିଲେ ଚଳେ । କିନ୍ତୁ ଏ ସବୁ ଅଭିଧାନ ସଂସ୍କୃତ, ଇଂରାଜୀ, ବଙ୍ଗଳା ପ୍ରଭୃତି ଭାଷାରେ ପ୍ରଣୀତ ହୋଇଥିବାରୁ ଉକ୍ତ ଭାଷାନଭିଜ୍ଞ ଉତ୍କଳ ଭାଷୀମାନଙ୍କ ପକ୍ଷେ ସେ ସବୁ ସୁବିଧା ଜନକ ନୁହେଁ ।

ଉତ୍କଳ ଭାଷାରେ ଯେ କେତେକ ଖଣ୍ଡି ଅଭିଧାନ ଗ୍ରନ୍ଥ ପ୍ରଣୀତ ହୋଇଅଛି ତାହା ସବୁ ଆକ୍ଷରୀକ କ୍ରମରେ ଓ ପ୍ରାୟ ଗଦ୍ୟ ଆକାରରେ ପ୍ରଣୀତ ହୋଇଥିବାରୁ ବାଳକ ବାଳିକା ମାନଙ୍କ ପକ୍ଷେ ମୁଖସ୍ତ କରିବା ସୁବିଧା ଜନକ ନୁହେଁ, ଅତଏବ ଉତ୍କଳୀୟ ବାଳକ ବାଳିକା ମାନଙ୍କ ଶିକ୍ଷାର ସୁବିଧା ନିମନ୍ତେ ଖଣ୍ଡିଏ ଉତ୍କଳ ପଦ୍ୟାଭିଧାନ ପ୍ରଣୀତ ହେବା ଆବଶ୍ୟକ । ଏହି ଉଦ୍ଦେଶ୍ୟରେ ଆମ୍ଭମାନଙ୍କ ସୁଖଶାନ୍ତି ଦାତା ପ୍ରଭୁ, ବିଜ୍ଞାନବିନୋଦୋପାଧିକ ପିତୃ ପ୍ରତିମ ପ୍ରଜାବତ୍ସଳ ଶ୍ରୀମାନ ଶ୍ରୀ ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ବାମଣ୍ଡାଧୀଶ୍ୱର ମହୋଦୟଙ୍କ ଉପଦେଶ ଓ ସମ୍ପୂର୍ଣ୍ଣ ସାହାଯ୍ୟରେ ଏହି ଉତ୍କଳ ପଦ୍ୟାଭିଧାନର ପ୍ରଥମଖଣ୍ଡ ପ୍ରଣୟନ କରି ପ୍ରକାଶ କଲି ।

ଏହି ପୁସ୍ତକ ଭାରତ -ଗୌରବ ମହାମତି ଅମର ସିଂହଙ୍କର ଅମର କୋଷ ଅବଲମ୍ୱନରେ ଲିଖିତ ହୋଇଅଛି । କିନ୍ତୁ ଲିଙ୍ଗ ନିର୍ଣ୍ଣୟ ପ୍ରଭୃତି ଏଥିରେ ବର୍ଜ୍ଜିତ ହୋଇଅଛି ଓ ଅମର କୋଷରେ ନିହିତ କେତେକ ଶବ୍ଦ ଯାହାକି ଉତ୍କଳ ଭାଷାରେ ପ୍ରାୟ ବ୍ୟବହୃତ ହେଉନାହିଁ ସେ ସବୁ ପରିତ୍ୟକ୍ତ ଆଉ ଉତ୍କଳ ଭାଷାରେ ବ୍ୟବହୃତ କେତେକ ଶବ୍ଦ ଯାହା କି ଅମର କୋଷରେ ନିହିତ ହୋଇ ନାହିଁ ତାହା ଅନ୍ୟାନ୍ୟ ଅଭିଧାନ ଗ୍ରନ୍ଥର ଅବଲମ୍ୱନରେ ଏଥିରେ ସନ୍ନିବେଶିତ ହୋଇଅଛି । ଏହିସବୁ କାରଣରୁ ଏବଂ କୁମାର କୁମାରୀ ମାନଙ୍କର ଶିକ୍ଷାର ସହାୟତା ସାଧନ ଉଦ୍ଦେଶ୍ୟରେ ଏହା ପ୍ରଣୀତ ହୋଇଥିବାରୁ ଏହାର ନାମ "ଅମର କୋଷର ଅନୁବାଦ" ରଖା ନଯାଇ "କୁମାର କଣ୍ଠାଭରଣ" ରଖାଯାଇଅଛି ।

ପରିଶେଷରେ ସୁଧୀବର୍ଗଙ୍କ ସମୀପରେ ସାନୁନୟ ନିବେଦନ ଏହି ଯେ ମୋର କ୍ଷୁଦ୍ରଶକ୍ତିରେ ଏହି କାର୍ଯ୍ୟ ସାଧନ କରିଅଛି । ଅଦୂରଦର୍ଶୀତାଦି ଦୋଷରୁ ନାନା ସ୍ଥାନରେ ଭ୍ରମ ପ୍ରମାଦ ଥାଇପାରେ । ଆଶାକରେ ଆପଣା ଆପଣା ମହତ୍ ଗୁଣରୁ ଗୁଣ ଗ୍ରହଣ କରି ଦୋଷ ମାର୍ଜ୍ଜନା କରିବା ହେବେ ।

ଅଭିଧାନ ଗ୍ରନ୍ଥ ଭାଷାର ଦର୍ପଣ ପରି ଓ ତହିଁରେ ସାଧାରଣଙ୍କର ଶିକ୍ଷାଭାର ନିହିତ ଅଛି । ଏହେତୁ କେହି ଭ୍ରମଯୁକ୍ତ ସ୍ଥାନ ମାନ କୃପାପୂର୍ବକ ଜଣାଇ ଦେଲେ ସାଦରେ ଗ୍ରହଣ କରି ଶୁଦ୍ଧିପତ୍ର ଯୋଗେ ବା ଅନ୍ୟ ସଂସ୍କରଣରେ ଉକ୍ତ ଦୋଷ ନିରାକରଣର ଚେଷ୍ଟା କରିବି ଓ ସେମାନଙ୍କ ସମୀପରେ ଚିର କୃତଜ୍ଞତା - ପାଶରେ ଆବଦ୍ଧ ରହିବି ।

॥ ଇତି ॥

ତା ୧.୭.୧୯୧୨ମସିହା — ବିନୟାବନତ

ଦେବଗଡ, ବାମଣ୍ଡା — ହରିହର ମହାପାତ୍ର ଶର୍ମା

# ନିର୍ଘଣ୍ଟ

କିରଣ
ଦୀପ୍ତ
ଖରା
ଅଳ୍ପଉଷ୍ଣ
ପ୍ରବଳତାପ ଓ ମୃଗତୃଷ୍ଣା
କାଳ ଓ ପ୍ରତିପଦା
ତିଥି
ଦିନ
ପ୍ରତ୍ୟୁଷ
ସାୟଂ
ପୂର୍ବାହ୍ନ, ମଧ୍ୟାହ୍ନ ଓ ଅପରାହ୍ନ
ରାତ୍ରି
ଜ୍ୟୋତ୍ସ୍ନାମୟୀ ରାତ୍ରି ଓ ରାତ୍ରିଗଣ
ପକ୍ଷିଣୀ
ଅର୍ଦ୍ଧରାତ୍ରି ଓ ପ୍ରହର
ପର୍ବସନ୍ଧି
ପଞ୍ଚଦଶୀ ଓ ପୌର୍ଣ୍ଣମାସ ତିଥି
ଅନୁମତି ରଜନୀ
ରାକାରଜନୀ
ଅମାବାସ୍ୟା
ସିନୀବାଲୀ ଓ କୁହୁ
ଚନ୍ଦ୍ର ଓ ସୂର୍ଯ୍ୟ ଗ୍ରହଣ
ରାହୁଗ୍ରସ୍ତ ସୂର୍ଯ୍ୟ ଓ ଚନ୍ଦ୍ର
ରବିଶଶି
କାଷ୍ଠା ଓ କଳା
କ୍ଷଣ ଓ ମୁହୂର୍ତ୍ତ
ଅହୋରାତ୍ର ଓ ପକ୍ଷ
ବେନିପକ୍ଷ ଓ ମାସ
ଋତୁ, ଅୟନ ଓ ବର୍ଷ
ଛଅଋତୁ
ଉତ୍ତରାୟଣ ଓ ଦକ୍ଷିଣାୟନ
ବିଷୁବ କାଳ
ମାର୍ଗଶିର
ପୌଷ ଓ ମାଘ
ଫାଲଗୁନ୍ ଓ ଚୈତ୍ର
ବୈଶାଖ, ଜ୍ୟେଷ୍ଠ ଓ ଆଷାଢ
ଶ୍ରାବଣ
ଭାଦ୍ର
ଆଶ୍ୱିନ ଓ କାର୍ତ୍ତିକ
ବସନ୍ତ
ଗ୍ରୀଷ୍ମ
ବର୍ଷା
ବର୍ଷ
ପିତୃଦିନ ଓ ଦେବଦିନ
ବ୍ରହ୍ମାଙ୍କର ଦିନ
କଳ୍ପର ପରିମାଣ
ମନ୍ୱନ୍ତର
କଳ୍ପ
ପାପ
ପୁଣ୍ୟ
ଅନନ୍ଦ
ଶୁଭ
ପ୍ରଶସ୍ତବାଚକ
ଶୁଭକର ବିଧି
ଭାଗ୍ୟ
କାରଣ ଓ ଆଦିକାରଣ
ଆତ୍ମା ଓ ପ୍ରକୃତି
ଅବସ୍ଥା
ତ୍ରିଗୁଣ
ଉତ୍ପତ୍ତି
ପ୍ରାଣୀ
ଜାତି ଓ ବ୍ୟକ୍ତି
ମନ

ବାଳିଆ ମାଛ
ଚେଙ୍ଗ ମାଛ
ଏଣ୍ଡଳା ମାଛ
କରାଣ୍ଡି ମାଛ
ମାଛ ମନ୍ଦା
ମତ୍ସ୍ୟଭେଦ
ଜଳଜନ୍ତୁ ଓ କଚ୍ଛପ
ଜଳଜନ୍ତୁ ଭେଦ
କଙ୍କଡା
ହାଙ୍ଗର ଓ କୁମ୍ଭୀର
ଚିଆ
ଗୋଧି ଓ ଜୋକ
ମୁକ୍ତାଜାତକାରୀ ଶାମୁକା
ଶାମୁକା
ଶଙ୍ଖ ଓ କ୍ଷୁଦ୍ରଶଙ୍ଖ
ବେଙ୍ଗ
ସ୍ତ୍ରୀ ଜାତୀୟ ଚିଆ
ସ୍ତ୍ରୀ ଜାତୀୟ କଚ୍ଛପ
ବେଙ୍ଗୁଲୀ ଓ ସ୍ତ୍ରୀ ଜାତୀୟ
ମାଗୁର ମାଛ
ଗେଣ୍ଡା
ଜଳାଶୟ ଓ ଅଗାଧ
ଜଳାଶୟ
ଆହାବ ଓ କୂପ
କୂପର ପ୍ରାନ୍ତଭୂମି ଓ ଘୋଡଣି
ପୁଷ୍କରିଣୀ
ଦେବଖାତ
ପଦ୍ମଶୋଭିତ ଅଗାଧ ଜଳାଶୟ
ଜଳାଶୟ
କ୍ଷୁଦ୍ର ଜଳାଶୟ
ବାପୀ ଓ ଗଡଖାଇ

ଶସ୍ୟକ୍ଷେତ୍ର ପାଇଁ ବନ୍ଧ
ଯୋଗେ ସଞ୍ଚିତ ଜଳାଧାର
ନଦୀ
ଗଙ୍ଗାନଦୀ
ଯମୁନା ନଦୀ
ନର୍ମ୍ମଦା ନଦୀ
କରତୋୟା ଓ ବହୁଦାନଦୀ
ଶତଦ୍ରୁ ଓ ବିପାଶାନଦୀ
ଶୋଣନଦୀ ଓ କୃତ୍ରିମ
କ୍ଷୁଦ୍ର ତଟିନୀ
ପାଞ୍ଚଟି ବିଖ୍ୟାତ ନଦୀ
ନଦୀ ଓ ସିନ୍ଧୁର ସଙ୍ଗମ ସ୍ଥାନ
କ୍ଷୁଦ୍ର କୃତ୍ରିମ ଜଳପଥ
ଅର୍ଥାତ ଅଣା
ଦେବାକାନଦୀଜାତ ଦ୍ରବ୍ୟ
ସରଜୁନଦୀ ଜାତଦ୍ରବ୍ୟ
କୁମୁଦ
ଶ୍ୱେତପଦ୍ମ
ରକ୍ତପଦ୍ମ
ନୀଳୋତ୍ପଳ
ସାଧାରଣ ପଦ୍ମ
ପଦ୍ମଲତା
ପଦ୍ମର କନ୍ଦା ଓ କେଶର
ପଦ୍ମନାଳ ଓ ମୃଣାଳ
ପଦ୍ମଚେର
ପଦ୍ମର ନୂତନ ପତ୍ର
ବୀଜକୋଷ
ପଦ୍ମମଧୁ ଓ ପଦ୍ମବନ
ଚେରଯୁକ୍ତ ପଦକନ୍ଦ
ପାଣି 'ଦଳ'

ଚେର ଓ ଓହଳ
ବୃକ୍ଷର ଅଗ ଓ ମୂଳ
ବୃକ୍ଷର ମଞ୍ଜି ଓ କାଠ
ବୃକ୍ଷର ବକଳ
ଜାଳିବା କାଠ
ବୃକ୍ଷର ଗହ୍ୱର ଓ ମଞ୍ଜରୀ
ପତର
ନୂଆପତ୍ର
ବୃକ୍ଷର ସର୍ବାଙ୍ଗ
କଞ୍ଚାଫଳ ଓ ଶୁଖାଫଳ
ଅତିକ୍ଷୁଦ୍ର କଢ ଓ ସାଧାରଣ କଢ଼
ଗୁଚ୍ଛିକୃତଫୁଲ ଓ ଫୁଟନ୍ତ କଢ଼
ଫୁଲ
ପୁଷ୍ପର ମଧୁ ଓ ପରାଗ
ଅଶ୍ୱତ୍ଥଫଳ ଓ ବାଉଁଶ ଫଳ
ପ୍ଲକ୍ଷ ଅର୍ଥାତ୍ ପାକୁଡ଼ାଫଳ ଓ ବଟଫଳ
ଇଙ୍ଗୁଦୀଫଳ ଓ ବୃହତୀ ଫଳ
ଜାମ୍ବୁଫଳ
ପାଟଳୀଫଳ
ପିପ୍ପଳ
କପିତ୍ଥବା କଇଥ
ଯଜ୍ଞଡୁମ୍ବରି
କଞ୍ଚନ ଗଛ
ଛତିଆନା ଗଛ
ସୁନାରି ଗଛ
ଜମ୍ବୀର ବୃକ୍ଷ
ବରଣ ଗଛ
ପୁନ୍ନାଗ ବୃକ୍ଷ
ମନ୍ଦାର
ତିନିଶ ବୃକ୍ଷ
ଆମ୍ବଡା ବୃକ୍ଷ

ମହୁଲ ଓ ଜଳଜମହୁଲ
ପୀଲୁ ବୃକ୍ଷ
ପର୍ବତଜାତ ପୀଲୁବୃକ୍ଷ
ଆଙ୍କୋଲ ଗଛ
ପଳାଶ
ବେତ
ପାଣିବେତ
ସଜିନା
ରକ୍ତସଜିନା ଓ ବଟବୃକ୍ଷ
ରିଠାଗଛ ଓ ଆମ୍ବଗଛ
ସୁଗନ୍ଧମୟ ଆମ୍ବଗଛ
ଗୟାଅଶ୍ୱତ୍ଥ
ବେଲଗଛ
ଲୋଧଗଛ
ଗୁଗୁଳ ବୃକ୍ଷ
ବହୁବାର
ପିଆଳ
ଗମ୍ଭାରୀଗଛ ଓ ବରକୋଳି ଗଛ
ବଉଁରକୋଳି ଫଳ
ଭଇଞ୍ଚ କୋଳି ଓ ଝାଉ ଗଛ
ନାଗରଙ୍ଗ ବା ନାରଙ୍ଗ
କେନ୍ଦୁବୃକ୍ଷ
ମାଙ୍କଡା କେନ୍ଦୁ
ଘଣ୍ଟା ପାଟଳୀ ଗଛ
ତିଳକ ବୃକ୍ଷ
କାଫଡ
ରକ୍ତଲୋଧ
ବ୍ରହ୍ମଦାରୁ ନାମକ ବୃକ୍ଷ
କଦମ୍ବ
ଭାଲିଆ ଗଛ
ଗନ୍ଧପିପ୍ପଳ

ତେନ୍ତୁଳି ଗଛ
ପିଆସାଳ ଗଛ
ସାଳଗଛ
ଅର୍ଜୁନ ଗଛ
କ୍ଷୀରକୋଳି
ଇଙ୍ଗୁଦୀ ଓ ଭୂର୍ଜଗଛ
ଶିମୁଳି
ଶିମୁଳି ଅଠା
ଶିମୁଳି ଭେଦ
କରଞ୍ଜ ଗଛ
ଲତା କରଞ୍ଜ ଓ ଡାଳ କରଞ୍ଜ
ବିଷ କରଞ୍ଜ ଓ କଣ୍ଟା କରଞ୍ଜ
ରୋହିଣୀ ଗଛ
ଖଇର ଗଛ
ଶୁକ୍ଳ ଖଇର
ବିଟଖଇର ଓ ଶମିବୃକ୍ଷ
କ୍ଷୁଦ୍ର ଶମି
ଜଡାଗଛ
ମରୁଆଁ ଗଛ
ଦେବଦାରୁ
ପାଟଳୀ ବୃକ୍ଷ
ପ୍ରିୟଙ୍ଗୁ ଗଛ
ଫଣାଫଣା ଗଛ
ଅଁଳା ଗଛ
ବାହାଡା
ହରିଡା
ସରଳ ବୃକ୍ଷ
ସ୍ଥଳପଦ୍ମ
ଜଉଠ ଗଛ
ପନସ
ହିଙ୍ଗୁଳ ଗଛ
କାକଡୁମ୍ବରି
ନିମ୍ବଗଛ
ଶିଶୁ ଗଛ ଓ ବକୁଳ ଗଛ
ଶିରୀଷ ବୃକ୍ଷ
ଚମ୍ପାଗଛ
ଚମ୍ପାକଳିକା ଓ ଅଶୋକ
ଦାଡିମ୍ବ ବୃକ୍ଷ
ନାଗେଶ୍ୱର
ଜୟନ୍ତୀ ଗଛ
ଅଗିବଥୁ
କୁରେହି
କୁରେହି ମଞ୍ଜି
ପାଣିଅଁଳା
ତମାଳ
ବେଗୁନିଆଁ
ଦେବତାଡ
ହାତିଶୁଣ୍ଡା
ମଲ୍ଲିକା
ମଲ୍ଲିକା
ଶୁକ୍ଳ ଶେଫାଳିକା
ନୀଳଶେଫାଳୀ ଓ କୁନ୍ଦ ଫୁଲଗଛ
ଯୁଇଗଛ
ପୀତବର୍ଣ୍ଣ ଯୁଇଗଛ
ମାଧବୀ ଲତା
ଜାଇଲତା
ନିଆଳୀ
ବଧୁଲୀ
ଘୃତକୁମାରୀ
ଅଏଁଲାଇ ଫୁଲ
ରକ୍ତ ଓ ପୀତବର୍ଣ୍ଣର ଅଏଁଲାଇ
ଫୁଲ ଗଛ

ନୀଳପୁଷ୍ପ ଝିଣ୍ଟୀ
ଦାସକେରେଣ୍ଡା ଓ ମନ୍ଦାର
ତିଳଫୁଲ ଓ କମଳା ଗଛ
ମାତୁଲୁଙ୍ଗ
କରବୀର (କନିଅର)
ମରୁଭୂମି ଜାତ ଉଷ୍ଣପ୍ରିୟ କଣ୍ଟକ ବୃକ୍ଷ
ଦୁଦୁରା ଗଛ
ଦୁଦରାଫଳ ଓ ଶୁକ୍ଳତୁଳସୀ
କ୍ଷୁଦ୍ରପତ୍ର ବିଶିଷ୍ଟ ତୁଳସୀ
କଳାତୁଳସୀ ଓ ବାବୁଇ
ଅର୍ଥାତ୍ ଲଣ୍ଡାବାବରୀ
ତୁଳସୀ
ଚିତାମୂଳ
ଶ୍ୱେତ ଅରଖ
ରକ୍ତଅରଖ ଗଛ
ସାଧାରଣ ଅରଖ
ଗଇଣ
ବୃକ୍ଷର ମଳାଙ୍ଗ
ଗୁଳୁଚି
ମୁର୍ବା
ଅକାନବିନ୍ଧି
କଟୁକୀ
ବାଇକୁଙ୍କ ଲତା
ମୁଷାକାନୀ
ଅପାମାରଙ୍ଗ
ବ୍ରାହ୍ମଣୀଝଣ୍ଡା
ମଞ୍ଜିଷ୍ଠା
ଦୁଲଭା
କୃଷ୍ଣପର୍ଣ୍ଣୀ
ଅଙ୍କରାନ୍ତି
ନୀଳୀଗଛ

ଶରାଙ୍ଖ
ପିପଳି ଓ ଘଇଁକାଠ
ଗଜପିପ୍ପଳୀ
କାଇଁଚ
ଗୋକ୍ଷୁରା
ଅତୁସୀ ଓ କ୍ଷୀରାଇଗଛ
ଛତୁଆରୀ
ଦାରୁ ହଳଦୀ
ବଚ
ଶୁକ୍ଳବଚ ଓ ବଜ୍ରମୂଳୀ
ବାସଙ୍ଗ
ଅପରାଜିତା
ବୋଇଲେଖା
ପାନମହୁରି
ସିଜୁ
ବିଡଙ୍ଗ
ଛଣିପଟ
ତିହୁଡି
କୃଷ୍ଣତିହୁଡି
ଶୁକ୍ଳତିହୁଡି
ରକ୍ତତିହୁଡି
ଯାଠିମଧୁ
ଭୃଇଁକଖାରୁ
ମଦରଙ୍ଗା
ମୟୂରଚୂଳୀ
ଶ୍ୟାମଲତା
ରୁଦ୍ଧି
କଦଳୀ
ମୁଦ୍ଗପର୍ଣ୍ଣୀ ଓ ବନକାର୍ପାସ
କପା ବା କାପାସ ଗଛ
ବାର୍ତ୍ତାକୀ ବା ବାଇଗଣ

ରାସ୍ନା
ଶାଳପର୍ଣ୍ଣୀ
କକଡାଶୃଙ୍ଗୀ
ବଜ୍ରମୂଳୀ
ଘୋଷାଲତା
ପୀତଘୋଷା ଓ ପଟୋଲିକା
ଭୂଇଁଜାମୁ
ଲହଲାଙ୍ଗଳିଆ
ଗୁଆଳୀଲତା
ତାଳମୂଳୀ
ଦରିଆଶାକ
ପାନ
ରେଣୁକ
ଏଲବାଲୁକ ଅର୍ଥାତ୍ ଗନ୍ଧନାଲୁକା
କୁନ୍ଦରୁ ଅର୍ଥାତ୍ କୁନ୍ଦୁରୁ ଖୋଟ୍
କୁରୁବେଲୀ
ଶୈଳଜ
ମୁରାମାଂସୀ
ଶଲ୍ଲକୀ
ଧାତକୀ ଗଛ
ଅଳାଇଚ
କ୍ଷୁଦ୍ରଏଳା ଅର୍ଥାତ୍ ଗୁଜୁରାତି
କୁଡ଼
ଚୋରପୁଷ୍ପି ନାମକ ଲତା
ଭୂଇଁଅଁଳା
ସ୍ଥଳପଦ୍ମ
ନନ୍ଦୀନାମକ ବୃକ୍ଷ
ଚୋରନାମକ ଗନ୍ଧଦ୍ରବ୍ୟ
ନଖୀ
ନାଳୀନାମକ ଗନ୍ଧଦ୍ରବ୍ୟ
ହିଙ୍ଗୁବିଳାସିନୀ ନାମକ ଗନ୍ଧଦ୍ରବ୍ୟ
ନଖଭେଦ

କେଉଟିଆ ମୁଥା
ଅଣ୍ଟିଅନା
ପିଡଙ୍ଗଶାକ
ଜଟାମାଂସୀ
ତେଜପତ୍ର
ଓଷଧି
ବନସ୍ପତି
ବାନସ୍ପତ୍ୟ
ବିରୁଧ
ଶାକ ଓ କନ୍ଦ
କାଣିମାରିଷ
ବିଶଲ୍ୟକରଣୀ
ବୃନ୍ଦାରକ
ସୋମଲତା
ସ୍ୱର୍ଣ୍ଣକ୍ଷୀର
ମାଷପର୍ଣ୍ଣୀ
ବିମ୍ବ
ଲାଉ
ରାସ୍ନା
ଅମ୍ଳିତିଶାଗ
ଖଟାପାଳଙ୍ଗ
ଖଇରୀ ଶାଗ
ଜିବନ୍ତୀ
ଜୀବକ
ଭୂଇଲିଙ୍ଗ
ସପ୍ତଲା ନାମକ ଗଛ
ଗନ୍ଧକାକୋଳି
ଦନ୍ତୀ
ବନଯୁଆଣୀ
ପୁଷ୍କର ପଳାଣ୍ଡୁ
ପଦ୍ମଚାରିଣୀ
କମଳା ଗୁଣ୍ଡି

ଏଣ୍ଡୁଅ ଓ କ୍ଷୁଦ୍ରକୀଟ
ମୂଷା
ବୁଟିଆ ମୂଷା
ମାକଡସା
ଝିଟିପିଟି
ପାରା
ସଞ୍ଚାଣ ଓ ଖଞ୍ଜରୀଟ
ପେଚ୍ଛ
ଭଦଭଦଳିଆ
ହାଡଗିଳା ଓ ଘଡକ
ଘଷପକ୍ଷୀ
କଜଳପାତି
କୁକୁଟ
ଘରଚଟିଆ
ସ୍ତ୍ରୀ ଜାତୀୟ ଚଟକ ଓ
ପୁଂସ ଶିଶୁଚଟିଆ
କୁରୁଟ ଓ ଖଇରିନାକ ପକ୍ଷୀ
କୋଇଲି
କାଉ
ଡାମରା କାଉ
ଡାହୁକ ଓ ଚିଲ୍ଲପକ୍ଷୀ
ସାଗୁଣା ଓ ଶୁଆପକ୍ଷୀ
ରାମବକ ଓ ବକି
ସାରସ
ଚକୁଆ
କାମପକ୍ଷୀ
କପୋତ
ହଂସ
ରାଜହଂସ
ମଲ୍ଲିକ ନାମକ ହଂସ
ଧାର୍ତ୍ତରାଷ୍ଟ୍ର ନାମକ ହଂସ
ବାଦୁଡି ଓ ଅସର୍ପା

ନୀଳବର୍ଣ୍ଣମାଛି ଓ ସାଧାରଣ ମାଛି
ମହୁମାଛି
କ୍ଷୁଦ୍ର ମଧୁମକ୍ଷିକା
ବଣୁଆ ମଶା
କ୍ଷୁଦ୍ରମଶା ଓ ବିରାଡି
ଝିଙ୍କାରୀ
ପତଙ୍ଗ ଓ ହରଡ ନାମକ ପକ୍ଷୀ
ଜୁଳୁଜୁଳିଆ ପୋକ
ଭ୍ରମର ଓ ଲୁଆଚଢ଼ାଇ
ମୟୂର
ମୟୂରଧ୍ୱନି ଓ ଚନ୍ଦ୍ରିକା
ମୟୂରୂ ଓ ପୁଚ୍ଛ
ପକ୍ଷୀ
ପାଣିକୁଆ ଓ ହଂସରାଳୀ
ଗୁଣ୍ଡରି ଓ ତିତ୍ତିରି
କୁମ୍ଭାଟୁଆ ଓ ବାୟା ଚଢ଼ାଇ
ଚକୋର ଓ ଟେଣ୍ଟାଇ ପକ୍ଷୀର ପକ୍ଷ
ପକ୍ଷମୂଳ ଓ ଥଣ୍ଟ
ପକ୍ଷୀର ଆଦ୍ୟଗତି ଓ ଅଧୋଗେତି
ପକ୍ଷୀର ଉର୍ଦ୍ଧ୍ୱଗମନ ଓ ଡିମ୍ବ
ପକ୍ଷୀର ବସା
ପକ୍ଷୀର ଛୁଆ
ପକ୍ଷୀ ଦମ୍ପତି ଓ ସ୍ୱଜାତି ସମୂହ
ଯୋଡି ଦ୍ରବ୍ୟ
ବହୁଦ୍ରବ୍ୟ ସମଷ୍ଟି
ପଶୁ ଓ ମନୁଷ୍ୟାଦିସମୂହ
ସମଧର୍ମାବଲମ୍ବି ଦ୍ରବ୍ୟ ସମୂହ
ଧାନ୍ୟାଦି ସମୂହ
ପାରା ଓ ଶୁକସମୂହ
ମୟୂର ଓ ତିତ୍ତିରିସମୂହ
ଗୃହପାଳିତ ଜୀବ



ଓଁ

ତତ୍‌ସତ୍

# କୁମାର କଣ୍ଠାଭରଣ ।

## ସ୍ୱର୍ଗବର୍ଗ

### ସ୍ୱର୍ଗ

ସ୍ୱର୍ଲୋକ, ତ୍ରିଦିବ, ନାକ, ତ୍ରିଦଶ-ଆଳୟ,
ସ୍ୱଃ, ସୌରିକ, ତ୍ରିପିଷ୍ଟପ, ଦିବ, ଫଳୋଦୟ;
ଏହି ନଅ ଗୋଟି ନାମ ଅଟେ ସ୍ୱରଗର
ମନେରଖ ପ୍ରିୟ ଶିଶୁ ହୋଇ ତତପର ।

### ଦେବତା

ବିବୁଧ, ତ୍ରିଦଶ, ଦେବ, ଆଦିତ୍ୟ, ଅମର,
ବୃନ୍ଦାରକ, ସୁପର୍ବାଣ, ଗୀର୍ବାଣ, ନିର୍ଜ୍ଜର,
ତ୍ରିଦିବେଶ, ଦାନବାରି, ସୁର, ସୁମନସ,
ଅମର୍ତ୍ତ୍ୟ, ଦୈବତ, ଆଦିତେୟ, ଦିବୌକସ,
କ୍ରତୁଭୁଜ, ଦ୍ୱିବିଷଦ, ଆଦିତି-ନନ୍ଦନ,
ଋଭବ, ଅମୃତାନ୍ଧସ, ପୁଣି ଅସ୍ୱପନ,
ବର୍ହିର୍ମୁଖ ମିଶି ଏତେ ନାମ ଦେବଙ୍କର
ସୁବୋଧ ବାଳକେ ଏହା କର କଣ୍ଠେ ହାର ।

## ଗଣ ଦେବତା

ଆଦିତ୍ୟ, ତୁଷିତ, ବିଶ୍ୱ, ବସୁ, ଆଭାସ୍ୱର,
ରୁଦ୍ରା-ନିଳ, ସାଧ୍ୟ, ମହାରାଜିକ ଆବର
ଏହି ନବ ନାମେ ଗଣଦେବତାଙ୍କୁ କହି
ସୁକୁମାର ଶିଶୁଗଣ ବୁଝ ମନଦେଇ ।

## ଆଦିତ୍ୟ ଗଣ

ଇନ୍ଦ୍ର, ଧାତା, ବିଷ୍ଣୁ, ତ୍ୱଷ୍ଟ, ଅଂଶୁ, ଯେ ପର୍ଜ୍ଜନ୍ୟ
ବିବସ୍ୱାନ, ମିତ୍ର, ଭଗ, ଅର୍ଯମା, ପୂଷଣ,
ବରୁଣ ମିଶି ଏମାନେ ଆଦିତ୍ୟ ନାମରେ
ବିଖ୍ୟାତ ଅଟନ୍ତି ଏହା ରଖିବ ମନରେ ।

## ବିଶ୍ୱ ଦେବଗଣ

ବସୁ, ସତ୍ୟ, କ୍ରତୁ, ଦକ୍ଷ, କାଳ, ଧୃତି, କାମ
କୁରୁ, ପୁରୁରବା, ମାଦ୍ରବ ଏ ଦଶ ନାମ
ଦଶ ବିଶ୍ୱ ଦେବଙ୍କର ଅଟଇଟି ଜାଣ
ଅନ୍ୟ ଗଣଙ୍କର ନାମ ଏଥୁ ଅନ୍ତେ ଶୁଣ ।

## ବସୁ ଗଣ

ଅନଳ, ଅନିଳ, ଆପ, ଧ୍ରୁବ, ଧବ, ସୋମ,
ପ୍ରତ୍ୟୂଷ, ସ୍ୱଭାବ, ଅଷ୍ଟବସୁର ଏନାମ ।

## ରୁଦ୍ରଗଣ

ଅଜୈକପାଦ, ତ୍ର୍ୟମ୍ବକ, ରୁଦ୍ର, ବୀର୍ଯ୍ୟବାନ
ଅହିବ୍ରଧ୍ନ, ତ୍ୱଷ୍ଟ, ଶମ୍ଭୁ, ହର ଯେ ଇଶାନ,
ଅପର-ଅଜିତ, ଭୁବନେଶ ନାମ ପୁଣି
ରୁଦ୍ରଗଣଙ୍କର ଅଟେ ରଖ ମନେ ଗୁଣି ।

## ସାଧ୍ୟ ଗଣ

ଅନୁମତ, ମନ୍ତୁ, ବିଷ୍ଣୁ, ତପ, ପୁଣି ମନ,
ନିଧ୍ୱ, ନିମି, ଧର୍ମ୍ମ, ରିପୁ, ହଂସ, ନାରାୟଣ,
ପ୍ରସୁ ମିଶି ଏହି ବାରଗୋଟି ନାମେ ଜାଣ
ବିଖ୍ୟାତ ଅଟନ୍ତି ସାଧ୍ୟଦେବ ବାରଜଣ ।

## ଦେବଯୋନି

ବିଦ୍ୟାଧର, ଅପସର, ଗନ୍ଧର୍ବ, ଯେ ଯକ୍ଷ
ପିଶାଚ, ଗୁହ୍ୟକ, ସିଦ୍ଧ, ଭୂତ, ପୁଣିରକ୍ଷ
ଏହି ଦଶନାମ ଅଟେ ଦେବଯୋନିଙ୍କର
କରନ୍ତି ଏମାନେ ସର୍ବ ଭୁବନେ ବିହାର ।

## ଅସୁରଗଣ

ଶୁକ୍ରଶିଷ୍ୟ, ଇନ୍ଦ୍ରଅରି, ଦାନବ, ଦନୁଜ,
ପୂର୍ବଦେବ, ସୁରଦ୍ୱିଷ, ଯେ ଦିତି-ତନୁଜ
ଦୈତ୍ୟ, ଦଇତେୟ ନାମେ ଅସୁରଙ୍କୁ ଜାଣ
ମନେ ରଖ ସଯତନେ ପ୍ରିୟ ଶିଶୁ ଗଣ ।

## ବ୍ରହ୍ମା

ସୁରଜ୍ୟେଷ୍ଠ, ପରମେଷ୍ଠି, ଚତୁର - ଆନନ,
ହିରଣ୍ୟଗର୍ଭ, ଆତ୍ମଭୂ, କମଳ - ଆସନ,
ଲୋକେଶ, ସ୍ୱୟମ୍ଭୁ, ବ୍ରହ୍ମା, ଧାତୃ, ଅବ୍ଜଯୋନି,
ଦ୍ରୁହିଣ, ବିରଞ୍ଚି, ସ୍ରଷ୍ଟା, ପ୍ରଜାପତି ଘେନି
ବେଧସ, ବିଧାତୃ, ପୁଣି ବିଶ୍ୱସୃକ୍, ବିଧି
ଏତେ ନାମ ବ୍ରହ୍ମାଙ୍କର ବୋଲିଣ ପ୍ରସିଦ୍ଧି ।

## ବିଷ୍ଣୁ

ନାରାୟଣ, କୃଷ୍ଣ, ବିଷ୍ଣୁ, ଅଚ୍ୟୁତ, କେଶବ,
ବିଷ୍ଟରଶ୍ରବା, ଦୈତ୍ୟାରି, ଗୋବିନ୍ଦ, ମାଧବ,
ସ୍ୱଭୂ, ବୈକୁଣ୍ଠ, ଶାରଙ୍ଗଧର, ଜନାର୍ଦ୍ଦନ,

ଉପେନ୍ଦ୍ର, ଇନ୍ଦ୍ରାବରଜ, ଦେବକୀ-ନନ୍ଦନ,
ଶ୍ରୀପତି, ପୁଣ୍ଡରୀକାକ୍ଷ, ଶ୍ରୀବତ୍ସ-ଲାଞ୍ଛନ,
ମଧୁରିପୁ, ପଦ୍ମନାଭ, ବିଧୁ, ବିଶ୍ୱକ୍ସେନ
ଚତୁର୍ଭୁଜ, ଚକ୍ରପାଣି, ପୁରୁଷଉତ୍ତମ
ବାସୁଦେବ, ବନମାଳୀ, ଶୌରି, ତ୍ରିବିକ୍ରମ,
ବଳିଧ୍ୱଂସି, କଂସାରାତି, ଅଧୋକ୍ଷଜ, ହରି,
କଇଟଭ ଜିତ, ବିଶ୍ୱମ୍ଭର ଯେ ମୁରାରି
ନରହରି, ଦୀନବନ୍ଧୁ, ଜଗତଜୀବନ
କେଶୀରିପୁ ପୀତାମ୍ବର, ଦାନବ-ଦଳନ
ଗରୁଡଧ୍ୱଜ ଯେ ହୃଷୀକେଶ, ଦାମୋଦର
ଏ ଷଟତ୍ରିଂଶ ନାମ ଅଟେ ବିଷ୍ଣୁଙ୍କର ।

## ବସୁଦେବ

ଆନକଦୁନ୍ଦୁଭି, ବସୁଦେବ କୃଷ୍ଣତାତ
ତିନିନାମ ବସୁଦେବଙ୍କର ବୋଲି ଖ୍ୟାତ ।

## ବଳଦେବ

ବଳଭଦ୍ର, ପ୍ରଳମ୍ବଘ୍ନ, ରେବତୀରମଣ,
ନୀଳାମ୍ବର-ହଳାୟୁଧ, ରାମ, ଶଙ୍କର୍ଷଣ,
ଅଚ୍ୟୁତ-ଅଗ୍ରଜ, କାମପାଳଯେ ମୁଷଳୀ,
ବଳରାମ, ରୌହିଣେୟ, ସୀରପାଣି, ହଳୀ,
କାଳିନ୍ଦିଭେଦଦିନ, ବଳ, ତାଳାଙ୍କ, ଏମାନ
ବଳଦେବଙ୍କର ନାମ ବୋଲି ମନେ ଘେନ ।

## ମଦନ

କନ୍ଦର୍ପ ଦର୍ପକ ମାର ମନ୍ମଥ ମଦନ
ମୀନକେତନ ଅନଙ୍ଗ ଆତ୍ମଭୂ ପ୍ରଦ୍ୟୁମ୍ନ
ପୁଷ୍ପଧନୁ ରତିପତି ସ୍ମର ମାନସିଜ
ମକରକେତନ ଶମ୍ବରାରି ଅନନ୍ୟଜ
କୁସୁମେଷୁ ଯେ ଅତନୁ ପଞ୍ଚଶର କାମ
କନ୍ଦର୍ପର ଅଟେ ଜାଣ ଏହି ବିଂଶ ନାମ ।

## ପଞ୍ଚଶର

ନବମଲ୍ଲିକା ଅଶୋକ ଚୂତ ଅରବିନ୍ଦ
ନୀଳୋତ୍ପଳ; ପଞ୍ଚପୁଷ୍ପଶର ଏ ପ୍ରସିଦ୍ଧ ।

## ଅନିରୁଦ୍ଧ

ବିଶ୍ୱକେତୁ ଉଷାପତି ବ୍ରହ୍ମସୂ ଆବର
ଏନାମମାନ ଅଟଇ ଅନିରୁଦ୍ଧଙ୍କର ।

## ଲକ୍ଷ୍ମୀ

ଲୋକମାତା ପଦ୍ମାଳୟା ପଦ୍ମା ହରିପ୍ରିୟା
ଶ୍ରୀ କମଳା ମା ଇନ୍ଦିରା କ୍ଷୀରାବ୍ଧି-ତନୟା
ଭାର୍ଗବୀ ଯେ ରମା କ୍ଷୀରସାଗର ନନ୍ଦିନୀ
ଲକ୍ଷ୍ମୀଙ୍କର ଏତେ ନାମଧେଜ ମନେ ଘେନି ।

## ବିଷ୍ଣୁଙ୍କର ଶଙ୍ଖ ଚକ୍ର ଗଦା ଓ ବାହାନ

ବିଷ୍ଣୁଙ୍କର ଶଙ୍ଖନାମ ଅଟେ ପାଞ୍ଚଜନ୍ୟ
ଗଦା କୌମାଦିକ, ଚକ୍ର-ନାମ ସୁଦର୍ଶନ
ଖଡଗ ନନ୍ଦକ, କଉସ୍ତୁଭ ନାମେ ମଣି
ଗରୁଡ ନାମେ ବାହନ ରଖ ମନେଗୁଣି ।

## ଗରୁଡ

ବୈନତେୟ ଖଗେଶ୍ୱର ତାର୍କ୍ଷ୍ୟ ଗରୁତ୍ମାନ
ନାଗାନ୍ତକ ବିଷ୍ଣୁରଥ ପନ୍ନଗ-ଅଶନ
ସୁପର୍ଣ୍ଣ ବିଷ୍ଣୁବାହନ ବିନତା-ନନ୍ଦନ
ଗରୁଡଙ୍କର ଅଟଇ ଏହି ନାମ ମାନ ।

## ଶିବ

ପଶୁପତି ଶମ୍ଭୁ ରୁଦ୍ର ଶୂଳୀ ମହେଶ୍ୱର
ଈଶ୍ୱର ଈଶାନ ଚନ୍ଦ୍ରଶେଖର ଶଙ୍କର
ଭୂତେଶ ଈଶ ଗିରୀଶ ମୃଡ କୃତ୍ତିବାସ
କ୍ରତୁଧ୍ୱଂସି ବୃଷଧ୍ୱଜ ଭୀମ ବ୍ୟୋମକେଶ

ପ୍ରମଥାଧିପ ପିନାକୀ ହର ସ୍ମରହର
ମୃତ୍ୟୁଞ୍ଜୟ ଶିତିକଣ୍ଠ ଉଗ୍ର ଗଙ୍ଗାଧର
ଶ୍ରୀକଣ୍ଠ କପାଳଭୃତ ଭବ ବାମଦେବ
କୃଶାନୁରେତ ଯେ ବିରୂପାକ୍ଷ ମହାଦେବ
ସର୍ବଜ୍ଞ ଧୂର୍ଜଟି ଉମାପତି ତ୍ରିଲୋଚନ
ଖଣ୍ଡପରଶୁ କପର୍ଦ୍ଦି ମଦନଦହନ
ନୀଳକଣ୍ଠ ଅନ୍ଧକାରି ତ୍ରିପୁର-ଅନ୍ତକ
ନୀଳଲୋହିତ ଯେ ପଞ୍ଚ-ଆନନ ତ୍ର୍ୟମ୍ବକ
ଉମା-ଈଶ ଭର୍ଗ ସର୍ବ ସ୍ଥାଣୁ ଦିଗମ୍ବର
ଏନାମ ମାନ ଅଟଇ ସଦାଶିବଙ୍କର ।

## ଶିବଙ୍କର ଜଟାଧନୁ ଓ ପାରିଷଦ

କପର୍ଦ୍ଦ ନାମରେ ଖ୍ୟାତ ଜଟା ଶିବଙ୍କର
ଧନୁ ନାମ ଅଜଗବ ପିନାକ ଆବର
ପ୍ରମଥ ନାମରେ ଖ୍ୟାତ ପାରିଷଦ ଗଣ
ସୁବୋଧ ବାଳକେ ତାହାଁ ସଦା ମନେଗୁଣ ।

## ମାତୃଗଣ

ବ୍ରାହ୍ମୀ ରୌଦ୍ରୀ ଐନ୍ଦ୍ରୀ ଚଣ୍ଡୀ ଚାମୁଣ୍ଡା ବାରାହୀ
ବୈଷ୍ଣବୀ କୌମାରୀ ନାମେ ମାତୃଗଣ କହି ।

## ଐଶ୍ୱର୍ଯ୍ୟ

ବିଭୂତି, ଭୂତି ଐଶ୍ୱର୍ଯ୍ୟ ନାମେ ଅଣିମାଦି
ଖ୍ୟାତ ଅଟନ୍ତି ସୁମନେ ଶୁଣହେ ସୁବୁଦ୍ଧି ।

## ଅଣିମାଦି

ଅଣିମା ପ୍ରାକାମ୍ୟ ପ୍ରାପ୍ତି ଇଶିତ୍ୱ ମହିମା
କାମାବଶାୟିତା ପୁଣି ବଶିତ୍ୱ ଲଘିମା
ଏହି ଆଠନାମ ଅଟେ ଅଷ୍ଟ ବିଭୂତିର
ମନେରଖ ପ୍ରିୟ ଶିଶୁ ହୋଇ ତତପର ।

## ଦୁର୍ଗା

ହୈମବତୀ ଗୌରୀ ଶିବା କାଳୀ କାତ୍ୟାୟନୀ
ସର୍ବମଙ୍ଗଳା ଶଙ୍କରୀ ମୃଡାନୀ ଭବାନୀ
ଚଣ୍ଡିକା ପାର୍ବତୀ ଦୁର୍ଗା ଅମ୍ବିକା ରୁଦ୍ରାଣୀ
ହିମଗିରିସୁତା ସିଂହବାହିନୀ ସର୍ବାଣୀ
ଅପର୍ଣ୍ଣା ଈଶ୍ୱରୀ ଉମା ଦକ୍ଷସୁତା ପୁଣି
ଏତେନାମ ଦୁର୍ଗାଙ୍କର ରଖମନେ ଗୁଣି ।

## ଗଣେଶ

ଗଜେନ୍ଦ୍ର ବଦନ ଏକଦନ୍ତ ଦ୍ୱୈମାତୁର
ବିନାୟକ ବିଘ୍ନରାଜ ପୁଣି ଲମ୍ବୋଦର;
ଗଜାନନ ଆବର ହେରମ୍ବ ଗଣନାଥ
ଗଣେଶଙ୍କର ଅଟଇ ଏତେ ନାମ ଖ୍ୟାତ ।

## କାର୍ତ୍ତିକେୟ

ଶରଜନ୍ମା, ମହାସେନ ପାର୍ବତୀ ନନ୍ଦନ
ଷାଣ୍ମାତୁର ଶକ୍ତିଧର ସ୍କନ୍ଦ ଷଡାନନ
ତାରକଜିତ ଅଗ୍ନିଭୂ ଶିଖଣ୍ଡି ବାହନ
ବିଶାଖ ସେନାନୀ ଗୁହ କ୍ରୁଞ୍ଚଦାରଣ
କୁମାର ଗିରୀଜାସୁତ ପୁଣି ବାହୁଲେୟ
ଏତେ ନାମରେ ବିଖ୍ୟାତ ହେବ କାର୍ତ୍ତିକେୟ ।

## ଇନ୍ଦ୍ର

ସୁରପତି ଶତମନ୍ୟୁ ଶକ୍ର ସୁନାଶିର
ଆଖଣ୍ଡଳ ବୃଦ୍ଧଶ୍ରବା ଜିଷ୍ଣୁ ପୁରନ୍ଦର,
ପାକଶାସନ ମଘବା ନମୁଚିସୂଦନ,
ବିଡୋଜା ଯେ ପୁରୁହୁତ ବଜ୍ରି ସଂକ୍ରନ୍ଦନ
ଗୋତ୍ରଭିଦ ଲେଖର୍ଷଭ ବୃଷା ଦିବସ୍ପତି,

ଅମର ରାଜନ ଯେ ସୁତ୍ରାମା, ବାସ୍ତୋଷତି
ବୃତ୍ରହା ବାସବ ଶଚୀପତି ମରୁତ୍‌ବାନ
ସହସ୍ରାକ୍ଷ ଦୂରାଷହ ଜୀମୂତବାହନ
ବଜ୍ରପାଣି ଜମ୍ଭଭେଦି ରୁଭୁକ୍ଷୀ ସ୍ୱାରାଜ
ହରିହୟ ଏତେନାମ ଇନ୍ଦ୍ରଙ୍କର ହେଜ ।

## ଇନ୍ଦ୍ରଙ୍କର ନଗର, ଅଶ୍ୱ, ସାରଥି, ସୌଧ, ପୁତ୍ର,ଅସ୍ତ୍ର, ବନ ଓ ରଥ

ଅମରାବତୀ, ନାମରେ ବାସବ ନଗର
ଉଚ୍ଚୈଃଶ୍ରବା, ନାମେଖ୍ୟାତ ଅଶ୍ୱ ଇନ୍ଦ୍ରଙ୍କର
ସାରଥି-ମାତଲି, ସୌଧ ନାମ ବୈଜୟନ୍ତ;
ଇନ୍ଦ୍ରସୂତ ନାମ ପାକଶାସନି, ଜୟନ୍ତ,
ଅସ୍ତ୍ର ନାମ ବଜ୍ର; ବନ ନାମଯେ ନନ୍ଦନ;
ରଥନାମ ଅଟେ ବ୍ୟୋମଯାନ ଯେ ବିମାନ ।

## ବଜ୍ର

କୁଳିଶ, ଭିଦୁର, ପବି, ଦମ୍ଭୋଳି, ଅଶନି
ଶତକୋଟି ଶମ୍ବ ସ୍ୱରୁ ଆବର ହ୍ରାଦିନୀ
ଏତେନାମେ ବଜ୍ରବୋଲି ଜାଣିବ ମନରେ
ଗିରୀକୁଳ ପକ୍ଷଛିନ୍ନ ଯାର ପତନରେ ।

## ଐରାବତ

ଅଭ୍ରମୁବଲ୍ଲଭ ଐରାବଣ ଐରାବତ
ଅଭ୍ରମାତଙ୍ଗ ନାମରେ ଇନ୍ଦ୍ର-ଗଜଖ୍ୟାତ ।

## ସୁରର୍ଷି

ସୁରରଷି ନାମେ ଖ୍ୟାତ ତୁମ୍ବୁରୁ ନାରଦ
କୋହଳ ଭରତ ଆଦି ମହାରଷି ବୃନ୍ଦ ।

### ଦେବସଭା

ସୁଧର୍ମା ନାମରେ ଖ୍ୟାତ ଅଟେ ଦେବସଭା
ଅମର ବୃନ୍ଦରେ ଯେହ୍ନୁ ନିରନ୍ତରେ ଶୋଭା ।

### ଅମୃତ

ଅମିୟ ପିୟୂଷ ସୁଧା ଏହି ପଦତିନି
ଅମୃତର ଅନ୍ୟନାମ ବୁଝ ମନେଘେନି ।

### ମନ୍ଦାକିନୀ

ବିୟତଗଙ୍ଗା ସ୍ୱର୍ଣ୍ଣଦୀ ସୁରତରଙ୍ଗିଣୀ
ସୁରଦୀର୍ଘିକା ନାମରେ ଖ୍ୟାତ ମନ୍ଦାକିନୀ ।

### ମେରୁପର୍ବତ

ରତ୍ନସାନୁ ସୁରାଳୟ ହେମାଦ୍ରି ରୁମେଙ୍କ
ଏତେ ନାମରେ ବିଖ୍ୟାତ ଅଟେ ଗୀରି ମେରୁ ।

### ଦେବତରୁ

ପାରିଜାତ କଳ୍ପବୃକ୍ଷ ମନ୍ଦାର ସନ୍ତାନ
ହରିଚନ୍ଦନ ଏପାଞ୍ଚ ଦେବତରୁ ଜାଣ ।

### ସନତ୍‌କୁମାର

ବୈଧାତ୍ରଙ୍କ ନାମ ଅଟେ ସନତ୍‌କୁମାର
ମନେରଖ ପ୍ରିୟ ଶିଶୁ ହୋଇ ତତପର ।

### ସ୍ୱର୍ଗବୈଦ୍ୟ

ଅଶ୍ୱିନୀସୁତ ନାସତ୍ୟ ଦସ୍ର ଅଶ୍ୱିନେୟ
ଅଶ୍ୱିନ ନାମରେ ଜାଣ ସ୍ୱର୍ଗବୈଦ୍ୟ ଦ୍ୱୟ ।

### ସ୍ୱର୍ଗବେଶ୍ୟା

ସୁରବେଶ୍ୟା ଅପ୍ସରା ଏବେନିନାମେ ଜାଣ
ଅଭିହିତ ଅଟନ୍ତି ଯେ ସ୍ୱର୍ଗବେଶ୍ୟା ଗଣ ।

### ଅଷ୍ଟ ଅପ୍ସରା

ଉର୍ବଶୀ ସୁକେଶୀ ରମ୍ଭା ଘୃତାଚୀ ମେନକା
ତିଳୋତ୍ତମା ମଞ୍ଜୁଘୋଷୀ ପୁଣି ଚିତ୍ରରେଖା;

ଅଷ୍ଟ ସ୍ୱର୍ଗ ବେଶ୍ୟାଖ୍ୟାତ ଏ ଅଷ୍ଟନାମରେ
ବିରଚନ୍ତି ନୃତ୍ୟଲୀଳା ଅମର ଧାମରେ ।

## ଗନ୍ଧର୍ବ ଗଣ

ହା ହା ହୁ ହୁ ଚିତ୍ରରଥ ହଁସ ଆଦି ନାମେ
ଗାୟକ ଗନ୍ଧର୍ବ ଗଣ ଖ୍ୟାତ ସୁରଧାମେ ।

## ଅଗ୍ନି

ବୈଶ୍ୱାନର ବୀତିହୋତ୍ର ବହ୍ନି ଚିତ୍ରଭାନୁ
ଧନଞ୍ଜୟ ଜାତବେଦ ପାବକ କୃଶାନୁ
ନିର୍ବ୍ୟବାହନ ଅନଳ ହିରଣ୍ୟରେତସ
ରୋହିତାଶ୍ୱ ବାୟୁସଖ ବହି ଆଶ୍ରୟାଶ
ଆଶୁଶୁକ୍ଷଣି ସପ୍ତାର୍ଚ୍ଚି ଦମୁନ ଦହନ
ବିଭାବସୁ ବୃହିଭାନୁ ଅପ୍ୟୁର ଜ୍ୱଳନ
ତନୂନପାତ କୃପିଟଯୋନି ହୁତାଶନ
କୃଷ୍ଣବର୍ତ୍ମ ଶୋଚିଷ୍କେଶ ଶୁଚି ଶିଖାବାନ
ଉଷର୍ବୁଧ ଶୁକ୍ର ଶୁଷ୍ମ ଶିଖୀ ବୈଶ୍ୱାନର
ଏ ପଞ୍ଚ ତିରିଶ ନାମ ଅଟେ ଅଗ୍ନିଙ୍କର ।

## ବାଡବାଗ୍ନି

ବଡବାନଳ ବାଡବ ଔର୍ବ ନାମତିନି
ସମୁଦ୍ର ଗର୍ଭ-ଅଗ୍ନିର ନାମବୋଲି ଘେନି ।

## ଅଗ୍ନିଶିଖା

ଜ୍ୱାଳ କୀଳ ଅର୍ଚ୍ଚି ହେତି ଶିଖାଯେ ଆବର
ଏ ପାଞ୍ଚନାମ ଅଟଇ ଅନଳ-ଶିଖାର ।

## ଅଗ୍ନିକଣା ଓ ଅଗ୍ନିତାପ

ଅଗ୍ନିକଣା-ନାମ ସ୍ଫୁଲିଙ୍ଗ ଯେ ଅଗ୍ନିକଣ
ସନ୍ତାପ ସଂଜ୍ୱର ପଦେ ଅଗ୍ନିତାପ ଜାଣ ।

## ଯମ

ପରେତରାଟ ଅନ୍ତକ ଶମନ କୃତାନ୍ତ
ସମବର୍ତ୍ତି ଶ୍ରାଦ୍ଧଦେବ କାଳ ବୈବସ୍ୱତ
ଧର୍ମରାଜ ଯମରାଜ ଯମୁନାସୋଦର
ପିତୃପତି ଦଣ୍ଡଧର ନାମ ଯମଙ୍କର ।

## ରାକ୍ଷସ

କ୍ରବ୍ୟାଦ କ୍ରବ୍ୟାଦ ରାତ୍ରିଚର ରାତ୍ରିଞ୍ଚର
ନିକଷାତ୍ମଜ କର୍ବୁର ଅସ୍ରପ ଆଶର
କୌଣପ ନୈର୍ଋତ ପୁଣ୍ୟଜନ ଯାତୁଧାନ
ଯାତୁ ରକ୍ଷ ଏତେନାମେ ରାକ୍ଷସଙ୍କୁ ଜାଣ ।

## ବରୁଣ

ପ୍ରଚେତା ପାଶି ଯାଦସାଂପତି ଯେ ଅପ୍ପତି
ଏତେ ନାମେ ବରୁଣଙ୍କୁ ଜାଣିବ ସୁମତି ।

## ପବନ

ଗନ୍ଧବହ ଗନ୍ଧବାହ, ବାତ ସମୀରଣ
ସଦାଗତି ପବମାନ ବାୟୁ ବିଶ୍ୱପ୍ରାଣ
ପୃଷଦଶ୍ୱ ମାତରିଶ୍ୱା ଆଶୁଗ ସ୍ପର୍ଶନ
ନଭସ୍ୱାନ ମରୁତ୍ ହରି ସମୀର ଶ୍ୱସନ
ଅନିଳ ମାରୁତ ନାମେ ବିଖ୍ୟାତ ପବନ
ପ୍ରବଳ ପବନେ ପୁଣି ବୋଲି ପ୍ରଭଞ୍ଜନ ।

## ଦେହସ୍ଥ ପଞ୍ଚବାୟୁ

ପ୍ରାଣ ଅପାନ ସମାନ ଉଦାନ ଯେ ବ୍ୟାନ
ଏପଞ୍ଚନାମେ ଦେହର ପଞ୍ଚବାୟୁ ଜାଣ ।

## ଶୀଘ୍ର

ଜବ ସ୍ୟଦ ରୟ ରଂହ ତରଯେ ଆବର
ଲଘୁ କ୍ଷିପ୍ର ଦ୍ରୁତ ତୂର୍ଣ୍ଣ ତ୍ୱରିତ ସତ୍ୱର
ଅବିଳମ୍ବିତ ଚପଳ ଆଶୁ ପୁଣି ଅର
ଶୀଘ୍ର ଅର୍ଥ ଅଟଇ ଏ ପଦ ମାନଙ୍କର ।

## ସନ୍ତତ

ଅଜସ୍ର ଅଶ୍ରାନ୍ତ ଯେ ସତତ ଅବିରତ
ଅନିଶ ଅନବରତ ନିତ୍ୟ ଅନାରତ
ଏତେନାମରେ ସନ୍ତତ ଅର୍ଥବୋଲି ଜାଣ
ଅତିଶୟ ଅର୍ଥ ଏବେ ମନଦେଇ ଶୁଣ ।

## ଅତିଶୟ

ଗାଢ଼ ବାଢ଼ ଦୃଢ଼ ତୀବ୍ର ନିର୍ଭର ନିତାନ୍ତ
ଅତିମାତ୍ର ଅତିବେଳ ଅତିର୍ଥ ଏକାନ୍ତ
ଭର ଭୃଶ ଉଦ୍‌ଗାଢ଼ ଏତ୍ରୟୋଦଶପଦ
ଅତିଶୟ ଅର୍ଥରେ ଯେ ଅଟଇ ପ୍ରସିଦ୍ଧ ।

## କୁବେର

ଧନଦ ତ୍ର୍ୟମ୍ବକସଖ ଗୁହ୍ୟକ-ଈଶ୍ୱର
ଧନାଧିପ ରାଜରାଜ ପୁଣ୍ୟଜନେଶ୍ୱର
ମନୁଷ୍ୟଧର୍ମା ପୌଲସ୍ତ୍ୟ ଯକ୍ଷ ବୈଶ୍ରବଣ
ଏକପିଙ୍ଗ ଐଲବିଲ କିନ୍ନରାଜନ
ଯକ୍ଷରାଜ ଶ୍ରୀଦ ନରବାହନ ଆବର
ଏତେ ନାମରେ ବିଖ୍ୟାତ ଅଟନ୍ତି କୁବେର ।

## କୁବେରଙ୍କ ଉଦ୍ୟାନ, ବିମାନ, ପୁତ୍ର, ବାସସ୍ଥାନ ଓ ପୁର

ଚୈତ୍ରରଥ ନାମେଖ୍ୟାତ କୁବେର-ଉଦ୍ୟାନ
ପୁଷ୍ପକନାମେ ଗଗନ-ବିହାରି ବିମାନ
ନଳକୁବର ନାମରେ ବିଖ୍ୟାତ ସନ୍ତାନ
କଇଳାସ ଅଟେ କୁବେରଙ୍କ ବାସସ୍ଥାନ
କୁବେରଙ୍କ ପୁରନାମ ଅଟଇ ଅଳକା
ମନେରଖ ଆହେପ୍ରିୟ ବାଳକ ବାଳିକା ।

## ବୁଦ୍ଧ

ଭଗବାନ, ଷଡଭିଜ୍ଞ, ସର୍ବଜ୍ଞ, ସୁଗତ,
ଧର୍ମରାଜ, ମାରଜିତ, ବୁଦ୍ଧ, ତଥାଗତ,
ସମନ୍ତଭଦ୍ର, ମୁନୀନ୍ଦ୍ର, ମୁନି, ଶାସ୍ତା, ଜିନ,
ଅଦ୍ୱୟବାଦୀ ମାନବଜିତ ଯେ ଶ୍ରୀଘନ
ଦଶବଳ, ବିନାୟକ, ମାୟାଦେବୀସୁତ
ସର୍ବାର୍ଥସିଦ୍ଧ, ଗୌତମ, ଅର୍କବନ୍ଧୁ, ଖ୍ୟାତ
ଶାକ୍ୟସିଂହ, ଶୌଦ୍ଧୋଦନି, ନାମ ବୁଦ୍ଧଙ୍କର
ଅଭିନବ ଧର୍ମ ତତ୍ୱ କଲେ ଯେ ପ୍ରଚାର ।

## କିନ୍ନର

କିଂପୁରୁଷ ମୟୁ ପୁଣି କୁରଙ୍ଗବଦନ
କିନ୍ନରଙ୍କର ଅଟଇ ଏହି ନାମମାନ ।

## ନିଧି

ନିଧିର ଅପରନାମ ଅଟଇ ଶେବଧି
ନବନିଧିଙ୍କର ନାମ ଶୁଣହେ ସୁବୁଦ୍ଧି ।
ପଦ୍ମ ମହାପଦ୍ମ ଶଙ୍ଖ କଚ୍ଛପ ମକର
କୁନ୍ଦ ନୀଳ ଖର୍ବ ମିଶି ମୁକୁନ୍ଦ ଆବର
ନବନିଧିଙ୍କର ଅଟେ ଏହି ନାମମାନ
ମନେରଖ ସଯତନେ ପ୍ରିୟ ଶିଶୁଗଣ ।

# ବ୍ୟୋମବର୍ଗ

## ଆକାଶ

ଦ୍ୟୋ ଦିବ ଅଭ୍ର ବ୍ୟୋମ ଗଗନ ଅମ୍ବର
ସୁରବର୍ତ୍ମ ଅନ୍ତରୀକ୍ଷ ବିୟତ ପୁଷ୍କର
ବିଷ୍ଣୁପଦ ଅନନ୍ତ ଯେ ନଭ ବିହାୟସ
ଏତେନାମରେ ବିଦିତ ଅଟଇ ଆକାଶ ।

## ଦିଗ

ଆଶା ଦିଶ କାଷ୍ଠା ପୁଣି କୁକୁଭ ହରିତ
ଦିଗର ଏପଞ୍ଚନାମ ଅଟଇ ବିଦିତ ।

## ଦିଗ ଚତୁଷ୍ଟୟ

ପୂରୁବ ଦିଗକୁ ପ୍ରାଚୀ ପଶ୍ଚିମେ ପ୍ରତୀଚୀ
ଦକ୍ଷିଣେ ଅବାଚୀ ବୋଲି ଉତ୍ତରେ ଉଦୀଚୀ ।

## ଦିଶ୍ୟ

ଦିଗଭବ ପଦାର୍ଥକୁ ଦିଶ୍ୟନାମେ କହି
ଦିଗପାଳଙ୍କର ନାମ ଶୁଣ ମନଦେଇ ।

## ଦିକ୍‌ପାଳ

ପୂର୍ବାଧିପତି ନାମରେ ଖ୍ୟାତ ଆଖଣ୍ଡଳ
ଅଗ୍ନିକୋଣ-ଅଧିପତି ଅଟନ୍ତି ଅନଳ
ନୈଋତ କୋଣାଧିପତି ଅଟନ୍ତି ନୈଋତ
ବାୟୁକୋଣାଧିପନାମେ ବିଖ୍ୟାତ ମରୁତ
ବରୁଣ ଅଟନ୍ତି ଅଧିପତି ପଶ୍ଚିମର
ଉତ୍ତରାଧିପତି ନାମେ ଆଖ୍ୟାତ କୁବେର
ଈଶ ଅଟନ୍ତି ଈଶାନ କୋଣ ଅଧିପତି
ଦକ୍ଷିଣାଧିପତି ନାମେ ଖ୍ୟାତ ପିତୃପତି ।

## ଦିଗ୍‌ଗଜଗଣ

ପୂର୍ବଦିଗେ ଐରାବତ ପଶ୍ଚିମେ ଅଞ୍ଜନ
ବାୟୁକୋଣେ ପୁଷ୍ପଦନ୍ତ ଦକ୍ଷିଣେ ବାମନ
ନୈଋତେ କୁମୁଦ ଅଗ୍ନିକୋଣେ ପୁଣ୍ଡରୀକ
ସାର୍ବଭୌମ ଉତ୍ତରେ ଐଶାନ୍ୟେ ସୁପ୍ରତୀକ
ଅଷ୍ଟଦିଗ୍‌ଗଜ ନାମରେ ଏଅଷ୍ଟ ବାରଣ
ବିଖ୍ୟାତ ଅଟନ୍ତି ଜାଣ ପ୍ରିୟଶିଶୁଗଣ ।

## ଦିକ୍ ହସ୍ତିନୀଗଣ

ପୂର୍ବଦିଗରେ ଅଭ୍ରମୁ ଦକ୍ଷିଣେ ପିଙ୍ଗଳା
ଉତ୍ତରେ ଅଙ୍ଗନା ଅଗ୍ନିକୋଣରେ କପିଳା
ତାମ୍ରବର୍ଣ୍ଣୀ ପଶ୍ଚିମେ ନୈଋତେ ଅନୁପମା
ବାୟୁକୋଣେ ଶୁଭ୍ରଦନ୍ତୀ ଦନ୍ତମନୋରମା
ଅଞ୍ଜନାବତୀ ହସ୍ତିନୀ ଐଶାନ୍ୟ କୋଣରେ
ବିଦିତ ଅଟନ୍ତି ଦିଗହସ୍ତିନୀ ନାମରେ ।

## ବେନିଦିଗର ମଧ୍ୟଭାଗ

ବିଦିଶଯେ ଅପଦିଶ ଏବେନି ନାମରେ
ବେନିଦିଗ ମଧ୍ୟଭାଗ ରଖିବ ମନରେ ।

## ମଧ୍ୟଭାଗ

ଅଭ୍ୟନ୍ତର ଅନ୍ତରାଳ ବେନିନାମେ ଜାଣ
ମଧ୍ୟଭାଗ ଅଖ୍ୟାତ ପ୍ରିୟଶିଶୁ ଗଣ ।

## ଦିଗ୍‌ବଳୟ

ଦିଶେଯହିଁ ଯୁକ୍ତପ୍ରାୟେ ଧରଣୀ ଗଗନ
ରାଜେ ଯେ ବଳୟାକାରେ ଘେରିଏ ଭୁବନ
ସେହି ଦିଗ ସମୂହର ନାମ ଚକ୍ରବାଳ
ଦିଗବଳୟ ଆବର ଅଟଇ ମଣ୍ଡଳ ।

## ମେଘ

ବାରିବାହ ବଳାହକ ଜଳଦ ଜୀମୂତ
ଧରାଧର ଧୂମଯୋନି ଘନ ଅମ୍ବୁଭୃତ
ସ୍ତନୟିତ୍ନୁ ତଡିତ୍ୱାନ ଅଭ୍ର ଜଳଧର
ବାରିଦ ମୁଦିର ନାମ ଅଟଇ ମେଘର ।

## ମେଘଚତୁଷ୍ଟୟ

ଆବର୍ତ୍ତକ ସାବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ଏଚାରି ନାମରେ ଖ୍ୟାତ ଚାରି ଜଳଧର ।

## ମେଘ ଶ୍ରେଣୀ ଓ ମେଘଭବ ଦ୍ରବ୍ୟ

ମେଘ ଶ୍ରେଣୀ ନାମ ମେଘମାଳା କାଦମ୍ବିନୀ
ଅଭ୍ରୀୟ ନାମରେ ମେଘଭବ ଦ୍ରବ୍ୟ ଘେନି ।

## ମେଘ ଗର୍ଜ୍ଜନ

ମେଘନିର୍ଘୋଷ ସ୍ତନିତ ଗର୍ଜ୍ଜିତ ରସିତ
ମନ୍ଦ୍ରଆଦି ନାମେ ମେଘଗର୍ଜ୍ଜନ ବିଦିତ ।

## ବିଜୁଳି

ସୌଦାମିନୀ ଶତହ୍ରଦା ବିଦ୍ୟୁତ ଚଞ୍ଚଳା
ଐରାବତୀ କ୍ଷଣପ୍ରଭା ତଡିତ ଚପଳା
ଶମ୍ପା ହ୍ରାଦିନୀ ଏ ନାମମାନ ବିଜୁଳିର
ଜଳଦ ବକ୍ଷରେଯାର ସ୍ଫୁରଣ ରୁଚିର ।

## ବଜ୍ରଧ୍ୱନି

ସ୍ଫୂର୍ଜଥୁ, ବଜ୍ରନିର୍ଘୋଷ ଏବେନି ନାମରେ
ବଜ୍ରଧ୍ୱନି ଅଟେ ଖ୍ୟାତ ରଖିବ ମନରେ ।

## ବଜ୍ରାଗ୍ନି ଓ ଇନ୍ଦ୍ରଧନୁ

ବଜ୍ରାଗ୍ନିର ନାମ ମେଘଜ୍ୟୋତି, ଇରମ୍ମଦ
ଇନ୍ଦ୍ରଧନୁ-ନାମ ଶକ୍ରଧନୁ, ଇନ୍ଦ୍ରାୟୁଧ ।

## ସରଳ ଇନ୍ଦ୍ରଧନୁ ଓ ବର୍ଷା

ଅବକ୍ର ଇନ୍ଦ୍ରଧନୁକୁ ବୋଲନ୍ତି ରୋହିତ
ବରଷାର ଅନ୍ୟନାମ ବୃଷ୍ଟି ବୋଲିଖ୍ୟାତ ।

## ବୃଷ୍ଟି ପ୍ରତିବନ୍ଧକ

ଅବଗ୍ରହ, ଅବଗ୍ରାହୀ, ଏହି ନାମ ବେନି
ବୃଷ୍ଟି ପ୍ରତିବନ୍ଧକର ବୁଝ ମନେ ଘେନି ।

## ପ୍ରବଳ ବୃଷ୍ଟି ଓ ଜଳକଣା

ତୀବ୍ର ବୃଷ୍ଟି ନାମ ଧାରାସମ୍ପଦ, ଆସାର
ଜଳକଣା-ନାମ ଅମ୍ବୁକଣ ଯେ ଶୀକର ।

## କରକା ଓ ମେଘାଚ୍ଛନ୍ନ ଦିନ

ଏକାର୍ଥ କରକା, ବର୍ଷୋପଳ ନାମଦୁଇ
ମେଘାଚ୍ଛନ୍ନ ଦିନକୁ ଦୁର୍ଦ୍ଦିନ ବୋଲି କହି ।

## ଆଚ୍ଛାଦନ

ଅନ୍ତର୍ଦ୍ଧା, ଅନ୍ତର୍ଦ୍ଧି, ଅପବାରଣ, ପିଧାନ
ବ୍ୟବଧା, ଛାଦନ, ଅପିଧାନ, ତିରୋଧାନ
ଘୋଡ଼ାଇବା ଅର୍ଥ ଅଟେ ଏ ଅଷ୍ଟ ନାମର
ବୁଝ ମନ ଦେଇ ପ୍ରିୟ ସୁବୋଧ କୁମର ।

## ଚନ୍ଦ୍ର

ହିମାଂଶୁ, ଚନ୍ଦ୍ରମା, ଦ୍ୱିଜରାଜ, ସୁଧାକର
ଓଷଧୀଶ, ନିଶାପତି, ଇନ୍ଦୁ, ଶଶଧର
ଅବ୍ଜ, ମୃଗାଙ୍କ, ଶୁଭ୍ରାଂଶୁ, ବିଧୁ, କ୍ଷପାକର
କୁମୁଦବାନ୍ଧବ, ସୋମ, ସୁଧାଂଶୁ ଆବର,
କଳାନିଧି ନକ୍ଷତ୍ରେଶ ଏହି ନାମ ମାନ
ଚନ୍ଦ୍ରଙ୍କର ପ୍ରତିପଦ ବୋଲି ମନେ ଘେନ ।

## କଳା ଓ ମଣ୍ଡଳ

କଳାନାମ ଚନ୍ଦ୍ରଙ୍କର ଷୋଡଶାଂଶେ କହି
ଏକାର୍ଥ ଅଟେ ମଣ୍ଡଳ, ବିମ୍ବ ପଦଦୁଇ ।

## ଖଣ୍ଡଚନ୍ଦ୍ର

ଭିଉ, ଖଣ୍ଡ, ଅର୍ଦ୍ଧ ଯେ ଶକଳ ନାମଚାରି
ଖଣ୍ଡଚନ୍ଦ୍ରର ଅଟଇ ବୁଝିବ ବିଚାରି ।

## ଚନ୍ଦ୍ରକିରଣ

ଚନ୍ଦ୍ରିକା, କୌମୁଦୀ, ଜ୍ୟୋସ୍ନା, ପୁଣି ଶଶିକର
ଏ ଚାରି ନାମ ଅଟଇ ଚନ୍ଦ୍ରକିରଣର ।

## ପ୍ରସନ୍ନତା ଓ ସୁଷମା

ଏକାର୍ଥ ପ୍ରସାଦ, ପ୍ରସନ୍ନତା ନାମଦୁଇ
ପରମ ଶୋଭାକୁ ଯେ ସୁଷମା ବୋଲି କହି ।

## ଚନ୍ଦ୍ରକଳଙ୍କ

ଅଙ୍କ, ଚିହ୍ନ, ଲକ୍ଷ୍ମ, ପୁଣି ଲକ୍ଷଣ, ଲାଞ୍ଛନ
ଚନ୍ଦ୍ର କଳଙ୍କର ଅଟେ ଏହି ନାମମାନ ।

## ଶୋଭା

କାନ୍ତି, ଦ୍ୟୁତି, ଛବି ନାମ ଅଟଇ ଶୋଭାର
ଯତନେ ରଖିବ ମନେ ସୁବୋଧ କୁମାର ।

## ହିମ

ହିମର ଅପର ନାମ ତୁହିନ ତୁଷାର
ପ୍ରାଳେୟ, ମିହିକା, ଅବଶ୍ୟାୟ ଯେ ନୀହାର ।

## ହିମ ସମୂହ

ହିମ ସମୂହର ନାମ ଅଟଇ ହିମାନୀ
ହିମସଂହତି, ଆବର ରଖ ମନେ ଘେନି ।

**ଶୀତଳ**

ଶିଶିର, ତୁଷାର, ଜଡ଼, ଆବର, ସୁଶୀମ
ଶୀତ, ହିମ ଅଟନ୍ତି ଏ ଶୀତଳର ନାମ ।

**ଧ୍ରୁବ ନକ୍ଷତ୍ର**

ଔତ୍ତାନପାଦ ଏ ନାମ ଧ୍ରୁବ ନକ୍ଷତ୍ରର
ଜ୍ୟୋତିଧାମେ ଉଚ୍ଚାସନେ ବସତି ଯାହାର ।

**ଅଗସ୍ତ୍ୟ**

କୁମ୍ଭସମ୍ଭବ, ଆବର ମଇତ୍ରାବରଣି
ଅଗସ୍ତ୍ୟଙ୍କର ଅଟଇ ଏହି ନାମ ବେନି ।

**ଲୋପାମୁଦ୍ରା**

ଅଗସ୍ତ୍ୟଙ୍କର ପତ୍ନୀ ଲୋପାମୁଦ୍ରା ନାମେଖ୍ୟାତ
ପତିବ୍ରତା ପଣେ ଜନ ସମାଜେ ବିଦିତ ।

**ତାରାଗଣ**

ନକ୍ଷତ୍ର, ତାରକା, ଉଡୁ, ଭ, ଋକ୍ଷ, ନାମରେ
ଖ୍ୟାତ ତାରାଗଣ ରାଜି ନଭୋମଣ୍ଡଳରେ ।

**ଦାକ୍ଷାୟଣୀ**

ଅଶ୍ୱିନୀ ଆଦି ଯେ ସପ୍ତବିଂଶ ତାରା ଗଣ
ଦାକ୍ଷାୟଣୀ ନାମେ ଖ୍ୟାତ ଜାଣ ଶିଶୁଗଣ ।

**ସପ୍ତବିଂଶତି ନକ୍ଷତ୍ର**

ଅଶ୍ୱିନୀ, ଭରଣୀ, ଆର୍ଦ୍ରା, କୃତ୍ତିକା, ରୋହିଣୀ,
ମୃଗଶିରା, ପୁନର୍ବସୁ, ଉତ୍ତରଫାଲ୍‌ଗୁନୀ
ପୂର୍ବଫଲ୍‌ଗୁନୀ, ବିଶାଖା, ଅନୁରାଧା, ପୁଷ୍ୟା
ଜ୍ୟେଷ୍ଠା, ମୂଳା, ପୂର୍ବାଷାଢ଼ା, ଶ୍ରବଣା, ଅଶ୍ଳେଷା
ପୂର୍ବଭାଦ୍ରପଦ, ହସ୍ତା, ଶତଭିଷା, ସ୍ୱାତୀ
ଉତ୍ତରାଷାଢ଼ା ଯେ ମଘା, ଧନିଷ୍ଠା, ରେବତୀ
ଉତ୍ତରଭାଦ୍ରପଦ ଯେ ଚିତ୍ରା ପଦମାନ
ସପ୍ତବିଂଶ ନକ୍ଷତ୍ରର ନାମ ବୋଲି ଜାଣ ।

## ଅଶ୍ୱିନୀ ଓ ବିଶାଖା ନକ୍ଷତ୍ର

ଅଶ୍ୱିନୀ ନକ୍ଷତ୍ରେ ଅଶ୍ୱଯୁକ୍ ନାମ କହି
ରାଧା ନାମରେ ବିଶାଖା ନକ୍ଷତ୍ର ରହଇ ।

## ପୁଷ୍ୟା ଓ ଧନିଷ୍ଠା ନକ୍ଷତ୍ର

ପୁଷ୍ୟା–ନାମ ପୁଷ୍ୟ, ସିଦ୍ଧ, ତିଷ୍ୟ ପଦ ତିନ
ଧନିଷ୍ଠା ନାମ ଶ୍ରବିଷ୍ଠା ରଖ ମନେ ଘେନି ।

## ପୂର୍ବ ଓ ଉତ୍ତର ଭାଦ୍ର ପଦ

ପ୍ରୋଷ୍ଠପଦା ପୁଣି ଭାଦ୍ରପଦା ନାମଦ୍ୱଇ
ପୂର୍ବୋତ୍ତର ବେନି ଭାଦ୍ରପଦର ଅଟଇ ।

## ମୃଗଶିରା ନକ୍ଷତ୍ର

ମୃଗଶୀର୍ଷ ନାମ ମୃଗଶିରା ନକ୍ଷତ୍ରର
ରଖିବ ମନରେ ଅଗ୍ରହାୟଣୀ ଆବର ।

## ଇଲ୍ୱଳା ନକ୍ଷତ୍ର

ମୃଗଶିରାଶିରେ ଯେ ନକ୍ଷତ୍ର ବିରାଜିତ
ଇଲ୍ୱଳା ନାମରେ ସେହୁ ଅଟଇ ବିଦିତ ।

## ବୃହସ୍ପତି

ସୁରାଚାର୍ଯ୍ୟ, ଅଙ୍ଗିରସ, ଧୀଷଣ, ଗୀଷ୍ପତି
ଚିତ୍ରଶିଖଣ୍ଡିଜ ଗୁରୁ, ଜୀବ, ବାଚସ୍ପତି
ଏ ନାମମାନ ଅଟଇ ବୃହସ୍ପତିଙ୍କର
ଗୁରୁପଣେ ସୁରଗଣେ ପୂଜ୍ୟ ନିରନ୍ତର ।

## ଶୁକ୍ର

ଦୈତ୍ୟଗୁରୁ, କାବ୍ୟ, କବି, ଭାର୍ଗବ, ଆବର
ଉଶନା ମିଶି ଏତେକ ନାମ ଶୁକ୍ରଙ୍କର ।

## ମଙ୍ଗଳ

ଅଙ୍ଗାରକ, ଲୋହିତାଙ୍ଗ, କୁଜ, ମହୀସୁତ
ଭୌମ ଏ ପଞ୍ଚନାମରେ ମଙ୍ଗଳ ବିଦିତ ।

## ବୁଧ ଓ ଶନି

ବୁଧଙ୍କର ନାମସୌମ୍ୟ ପୁଣି ରୋହିଣେୟ
ସୌରି, ଶନୈଶ୍ଚର ଶନିଙ୍କର ନାମଦ୍ୱୟ ।

## ରାହୁ

ତମସ, ସ୍ୱର୍ଭାନୁ, ସୈଂହିକେୟ, ବିଧୁନ୍ତୁଦ
ରାହୁର ଏ ନାମମାନ ଅଟଇ ପ୍ରସିଦ୍ଧ ।

## ସପ୍ତର୍ଷି

ଚିତ୍ରଶିଖଣ୍ଡି ନାମରେ ସପ୍ତର୍ଷି ବିଦିତ
ଉଦୀଚୀ ମଣ୍ଡଳପରେ ଯେହୁ ବିରାଜିତ
ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ ପୁଲହ
ସପ୍ତର୍ଷିଙ୍କ ନାମଏ, ବଶିଷ୍ଠ, କ୍ରତୁ, ସହ ।

## ଲଗ୍ନ

ରାଶିଙ୍କର ଉଦୟକୁ ଲଗ୍ନବୋଲି କହି
ଦ୍ୱାଦଶ ରାଶିଙ୍କନାମ ଶୁଣ ମନଦେଇ ।

## ଦ୍ୱାଦଶରାଶି

ମେଷ, ବୃଷ, ସିଂହ, କନ୍ୟା, କର୍କଟ, ମିଥୁନ
ବୃଶ୍ଚିକ, ମକର, ତୁଳା, ଧନୁ, କୁମ୍ଭ, ମୀନ

## ସୂର୍ଯ୍ୟ

କମଳିନୀପତି, ପ୍ରଭାକର, ବିଭାକର
ଦିବାକର, ଅର୍ଯ୍ୟମା, ଯେ ମିହିର, ଭାସ୍କର
ଦ୍ୱାଦଶାତ୍ମା, ଆଦିତ୍ୟ, ଯେ ସୂର, ବିବସ୍ୱାନ

ସହସ୍ର-ଅଂଶୁ, ସପ୍ତାଶ୍ୱ, ସବିତା, ତପନ
ହରିଦଶ୍ୱ, ଉଷ୍ଣରଶ୍ମି, ଅର୍କ, ବିକର୍ତ୍ତନ
ମାର୍ତ୍ତଣ୍ଡ, ଅରୁଣ, ଚିତ୍ରଭାନୁ, ବିରୋଚନ
ଅହସ୍କତି, ତ୍ୱିଷାମ୍ପତି, ପୂଷଣ, ଦ୍ୟୁମଣି
ଗ୍ରହପତି, ବିଭାବସୁ, ଭାସ୍ୱତ, ତରଣି
ବ୍ରଧ୍ନ, ଭାନୁ, ହଂସ, ମିତ୍ର, ରବି, ଅହସ୍କର,
ଖ୍ୟାତ ଅଟଇ ଏନାମମାନ ସୂର୍ଯ୍ୟଙ୍କର ।

## ସୂର୍ଯ୍ୟଙ୍କର ପାରିଷଦଗଣ ଓ ସାରଥି

ପିଙ୍ଗଳ, ଦଣ୍ଡ ମାଠର ଏତିନି ନାମରେ
ସୂର୍ଯ୍ୟ-ପାରିଷଦ ତିନି ରଖିବ ମନରେ ।
ଗରୁଡାଗ୍ରଜ, ଅନୁରୁ ପୁଣି ସୁରସୂତ
ଅରଣ କାଶ୍ୟପିନାମେ ସାରଥି ବିଦିତ ।

## ରବିମଣ୍ଡଳ

ଉପସୁର୍ଯ୍ୟକ, ପରିଧି ପୁଣି ପରିବେଶ
ଏତିନି ନାମରେ ରବିମଣ୍ଡଳ ପ୍ରକାଶ ।

## କିରଣ

ମୟୂଖ ମରୀଚି ଅସ୍ର ଅଂଶୁ ଭାନୁ କର
ଗଭସ୍ତି ଦୀଧିତି ଧୃଷ୍ଟିନାମ କିରଣର ।

## ଦୀପ୍ତି

ପ୍ରଭା ରଚ୍ ରଚି ତ୍ୱିଡ୍ ଭାସ ଛବି ଦ୍ୟୁତି
ରୋଚି ଶୋଚି ଭା ନାମରେ ଖ୍ୟାତ ଅଟେ ଦୀପ୍ତି ।

## ଖରା

ପ୍ରକାଶ ଦ୍ୟୋତ ଆତପ ଏହି ପଦତିନି
ଖରାର ଅପରନାମ ରଖ ମନେ ଘେନି ।

## ଅଳ୍ପଉଷ୍ଣ

କବୋଷ୍ଣ ମନ୍ଦୋଷ୍ଣ କୋଷ୍ଣ କଦୁଷ୍ଣ ନାମରେ
ଅଳ୍ପଉଷ୍ଣ ଖ୍ୟାତ ବୋଲି ରଖିବ ମନରେ ।

## ପ୍ରବଳତାପ ଓ ମୃଗତୃଷ୍ଣା

ପ୍ରବଳତାପର ନାମ ତିଗ୍ମ ତୀକ୍ଷ୍ଣ ଖର
ମରୀଚିକା ଅନ୍ୟନାମ ମୃଗତୃଷ୍ଣିକାର ।

## କାଳ ଓ ପ୍ରତିପଦା

କାଳ-ଅନ୍ୟ ନାମଦ୍ୱିଷ୍ଟ ଅନେହ୍ୱି ସମୟ
ଏକାର୍ଥ ପକ୍ଷତି ପ୍ରତିପଦା ନାମଦ୍ୱୟ ।

## ତିଥି

ପ୍ରତିପଦାଦିତାର ନାମ ତିଥି ବୋଲିଜାଣ
ସଂଖ୍ୟାତାର ପଞ୍ଚଦଶ ରଖିବ ସ୍ମରଣ ।

## ଦିନ

ଦିନ ନାମ ଅହ୍ନ ଘସ୍ର ଦିବସ ବାସର
ରଖିବ ଯତନେ ମନେ ସୁବୋଧ କୁମର ।

## ପ୍ରତ୍ୟୁଷ

ଅହର୍ମୁଖ ଉଷା ବ୍ରାହ୍ମମୁହୂର୍ତ୍ତ ପ୍ରଭାତ
ପ୍ରତ୍ୟୁଷ ଅଟଇ ଏତେ ନାମରେ ଆଖ୍ୟାତ ।

## ସାୟଂ

ଦିବସର ଶେଷାଂଶକୁ ସାୟଂ ବୋଲି କହି
ନାମତାର ପିତୃପ୍ରସୂ, ପ୍ରଦୋଷ ଏଦୁଇ ।

## ପୂର୍ବାହ୍ନ ମଧ୍ୟାହ୍ନ ଓ ଅପରାହ୍ନ

ଦିବା-ଆଦ୍ୟଭାଗ ନାମ ଅଟଇ ପୂର୍ବାହ୍ନ
ମଧ୍ୟାଂଶେ ମଧ୍ୟାହ୍ନ କହି ପ୍ରାନ୍ତେ ଅପରାହ୍ନ ।

## ରାତ୍ରି

ନିଶା ନିଶିଥିନୀ କ୍ଷପା ରଜନୀ ଯାମିନୀ
ତ୍ରିଯାମା ଶର୍ବରୀ ବିଭାବରୀ ତମସ୍ୱିନୀ
କ୍ଷଣଦା, ତମିସ୍ରାତମୀ ତାମସୀ ଆବର
ଏହି ଚତୁର୍ଦ୍ଦଶନାମ ଅଟଇ ରାତ୍ରିର ।

## ଜ୍ୟୋତ୍ସ୍ନାମୟୀ ରାତ୍ରି ଓ ରାତ୍ରିଗଣ

ଜ୍ୟୋତ୍ସ୍ନୀ ନାମେ ଅଟେଖ୍ୟାତ ରାତ୍ରି ଜ୍ୟୋତ୍ସ୍ନାମୟୀ
ବହୁ ରଜନୀକି ଗଣରାତ୍ରି ନାମେ କହି ।

## ପକ୍ଷିଣୀ

ପୂରବ ପର ଦିବସ ଯୁକ୍ତା ନିଶିଥିନୀ
ପକ୍ଷିଣୀ ନାମରେ ଖ୍ୟାତ ରଖ ଘେନି ।

## ଅର୍ଦ୍ଧରାତ୍ରି ଓ ପ୍ରହର

ନିଶୀଥ, ନାମରେ ଅର୍ଦ୍ଧରଜନୀକି କହି
ଏକାର୍ଥ ଜାଣ ପ୍ରହର ଯାମ ପଦଦୁଇ ।

## ପର୍ବସନ୍ଧି

ପ୍ରତିପଦା ପଞ୍ଚଦଶୀ ଏହି ତିଥିବେନି
ମଧ୍ୟଭାଗ ପର୍ବସନ୍ଧି ନାମେ ବୁଝଘେନି ।

## ପଞ୍ଚଦଶୀ ଓ ପୌର୍ଣ୍ଣମାସୀ ତିଥି

ବେନିପକ୍ଷ ଶେଷତିଥି-ନାମ ପଞ୍ଚଦଶୀ
ପୂର୍ଣ୍ଣିମାର ଅନ୍ୟନାମ ଅଟେ ପୌର୍ଣ୍ଣମାସୀ ।

## ଅନୁମତୀ ରଜନୀ

କଳାହୀନ ଚନ୍ଦ୍ରଯୁକ୍ତା ପୌର୍ଣ୍ଣମାସୀ ତିଥି
ଅନୁମତୀ ନାମେଖ୍ୟାତ ବୁଝିବ ସୁମତି ।

## ରାକାରଜନୀ

ପୂର୍ଣ୍ଣସୁଧାକର-ଯୁତା ପୂର୍ଣ୍ଣିମା ରଜନୀ
ରାକା ନାମରେ ବିଖ୍ୟାତ ରଖମନେ ଘେନି ।

## ଅମାବାସ୍ୟା

ଅମାବାସ୍ୟା ଦର୍ଶ ପୁଣି ସୂର୍ଯ୍ୟେନ୍ଦୁସଂଗମ
ଅମାବାସ୍ୟାର ଅଟଇ ଏହି ତିନିନାମ ।

## ସିନାବାଲି ଓ କୁହୁ

ଚତୁର୍ଦ୍ଦଶୀ-ଯୁକ୍ତା-ଦର୍ଶ-ନାମ ସିନାବାଲୀ
ଇନ୍ଦୁକଳାଶୂନ୍ୟ ହେଲେ କୁହୁ ନାମ ବୋଲି

## ଚନ୍ଦ୍ର ଓ ସୂର୍ଯ୍ୟଗ୍ରହଣ

ଗ୍ରହ ଉପରାଗ ନାମେ ଚନ୍ଦ୍ରାର୍କଗ୍ରହଣ
ଜାଣି ଯତନେ ବାଳକେ ରଖିବ ସ୍ମରଣ ।

## ରାହୁଗ୍ରସ୍ତ ସୂର୍ଯ୍ୟ ଓ ଚନ୍ଦ୍ର

ସୋପପ୍ଲବ ଉପରକ୍ତ ଏବେନି ନାମରେ
ରାହୁ ଗ୍ରସ୍ତ ରବି ଶିଶି ବୁଝିବ ମନରେ ।

## ଉଲ୍କାପାତ ଓ ଏକୋକ୍ତିରେ ରବିଂଶଶି

ଉଲ୍କାପାତ-ନାମ ଅଗ୍ନ୍ୟୁତ୍ପାତ ଉପାହିତ
ପୁଷ୍ପବନ୍ତଦ୍ୱୟ ନାମେ ରବି ଶଶି ଖ୍ୟାତ ।

## କାଷ୍ଠା ଓ କଳା

ଏକ କାଷ୍ଠା ହୁଏ ଅଷ୍ଟାଦଶ ନିମେଷରେ
ତିରିଶ କାଷ୍ଠାରେ କଳା ରଖିବ ମନରେ ।

## କ୍ଷଣ ଓ ମୁହୂର୍ତ୍ତ

ତିରିଶ କଳାରେ କ୍ଷଣ ହୁଅଇଟି ଜାଣ
ଏକ ମୁହୂର୍ତ୍ତର ସମ ଅଟେ ବାରକ୍ଷଣ ।

## ଅହୋରାତ୍ର ଓ ପକ୍ଷ

ତିରିଶ ମୁହୂର୍ତ୍ତେ ହୁଏ ଏକ ଅହୋରାତ୍ର
ପଞ୍ଚଦିଶ ଅହୋରାତ୍ରେ ପକ୍ଷ ବୋଲିଖ୍ୟାତ ।

## ବେନିପକ୍ଷ ଏବଂ ମାସ

କୃଷ୍ଣ ଶୁକ୍ଳ ନାମେ ପକ୍ଷ ବେନି ବୋଲିଜାଣ
ବେନିପକ୍ଷେ ଏକମାସ ବୁଝ ଶିଶୁଗଣ ।

## ଋତୁ, ଅୟନ ଓ ବର୍ଷ

ବେନିମାସେ ଋତୁ, ତିନି ଋତୁରେ ଅୟନ
ବେନି ଅୟନରେ ଏକବର୍ଷ ବୋଲି ଜାଣ ।

## ଛଅଋତୁ

ଫାଲ୍ଗୁନ ଚୈତ୍ର ମାସକୁ ବୋଲନ୍ତି ବସନ୍ତ
ଋତରାଜନ ବୋଲିଣ ଅଟଇ ସେ ଖ୍ୟାତ ।
ଗ୍ରୀଷ୍ମ ନାମରେ ବୈଶାଖ ଜ୍ୟେଷ୍ଠ ମାସବେନି
ଆଷାଢ଼ ଶ୍ରାବଣ ବର୍ଷା ଋଖ ମନେ ଘେନି ।
ଭାଦ୍ରବ ଆଶ୍ୱିନ ବେନି ଅଟଇ ଶରତ
କାର୍ତ୍ତିକ ମାର୍ଗଶିରକୁ ବୋଲନ୍ତି ହେମନ୍ତ
ପୌଷ ମାଘ ବେନିମାସ ଶିଶିର ଅଟଇ
ଏରୂପେ ଏଛଅଋତୁ ବୁଝ ମନଦେଇ ।

## ଉତ୍ତରାୟଣ ଓ ଦକ୍ଷିଣାୟନ

ଉତ୍ତରାୟଣ ବସନ୍ତ ଆଦି ଋତୁ ତିନି
ଦକ୍ଷିଣାୟନରେ ଅନ୍ୟ ତିନି ଋତୁ ଘେନି ।

## ବିଷୁବ କାଳ

ଯେ କାଳେ ଦିବା ଯାମିନୀ ହୁଅଇ ସମାନ
ବିଷୁବତ ବିଷୁବ ସେ କାଳ-ନାମଜାଣ ।

## ମାର୍ଗଶିର

ଆଗ୍ରହାୟଣିକ, ସହା, ମାର୍ଗ, ମାର୍ଗଶିର୍ଷ
ଏଚାରି ନାମରେ ଖ୍ୟାତ ମାର୍ଗଶିର ମାସ ।

## ପୌଷ ଓ ମାଘ

ପୌଷର ଅପର ନାମ ତେଷ ଯେ ସହସ୍ୟ
ତପ ନାମରେ ଅଟଇ ଖ୍ୟାତ ମାଘମାସ ।

## ଫାଲ୍ଗୁନ ଓ ଚୈତ୍ର

ଫାଲଗୁନିକ ତପସ୍ୟ ନାମେ ଫାଲଗୁନ
ଚୈତ୍ରିକ ମଧୁ ନାମରେ ଚୈତ୍ରମାସ ଘେନ ।

## ବୈଶାଖ, ଜ୍ୟେଷ୍ଠ ଓ ଆଷାଢ଼

ବୈଶାଖ କୁ ରାଧ, ଶୁକ୍ର ଜ୍ୟେଷ୍ଠ ମାସେ କହି
ଏକାର୍ଥ ଜାଣ ଆଷାଢ଼ ଶୁଚି ନାମଦୁଇ ।

## ଶ୍ରାବଣ

ଶ୍ରାବଣିକ ନଭ ନାମେ ବିଖ୍ୟାତ ଶ୍ରାବଣ
ଯତନେ ରଖିବ ମନେ ପ୍ରିୟ ଶିଶୁଗଣ ।

## ଭାଦ୍ର

ପ୍ରୋଷ୍ଠପଦ ଭାଦ୍ରପଦ ଭାଦ୍ରଯେ ନଭସ୍ୟ
ଏଚାରି ନାମରେ ଖ୍ୟାତ ଅଟେ ଭାଦ୍ରମାସ ।

## ଅଶ୍ୱିନ ଓ କାର୍ତ୍ତିକ

ଆଶ୍ୱିନକୁ କହି ଇଷ ପୁଣି ଅଶ୍ୱଯୁଜ
କାର୍ତ୍ତିକକୁ କାର୍ତ୍ତିକିକ ବାହୁଳ ଯେ ଉର୍ଜ ।

## ବସନ୍ତ

ପୁଷ୍ପସମୟ ସୁରଭି ନାମ ବସନ୍ତର
ମୃଦୁ-ମଳୟ-ଶୀତଳ ଅତି ମନୋହର ।

## ଗ୍ରୀଷ୍ମ

ଉଷ୍ଣକ ନିଦାଘ ତପ ଉଷ୍ଣ ଉଷ୍ଣାଗମ
ଉଷ୍ଣୋପଗମ ଗ୍ରୀଷ୍ମର ଏହି ଛଅନାମ ।

## ବର୍ଷା

ପ୍ରାବୃଟ ନାମରେ ଖ୍ୟାତ ଅଟେ ବର୍ଷାଋତୁ
ଅଟଇ ଏକାଳ ଶସ୍ୟ ସମ୍ପଦର ହେତୁ ।

## ବର୍ଷ

ସମ୍ବତ୍ସର ଶରତ ସମା ବତ୍ସର ହାୟନ
ଅବ୍ଦ ମିଶି ବରଷର ଏହି ନାମ ମାନ ।

## ପିତୃ ଦିନ ଓ ଦେବଦିନ

ପିତୃଦିନ ହୁଏ ମନୁଷ୍ୟଙ୍କ ଏକମାସେ
ଦେବଦିନ ହେବାପାଇଁ ଲାଗଇ ବରଷେ ।

## ବ୍ରହ୍ମାଙ୍କର ଦିନ

ଦେବଗଣଙ୍କର ଦୁଇ ସହସ୍ର ଯୁଗରେ
ବ୍ରହ୍ମାଙ୍କର ଏକଦିନ ରଖିବ ମନରେ ।

## କଳ୍ପର ପରିମାଣ

ଏକଦିନ ଏକରାତ୍ରି ହେଲେ ବ୍ରହ୍ମାଙ୍କର
ବେନି କଳ୍ପ କାଳହୁଏ ମନୁଷ୍ୟ ଲୋକର ।

## ମନ୍ୱନ୍ତର

ଏକସ୍ତରି ଯୁଗ ଗତ ହେଲେ ଦେବଲୋକେ
ଏକ ମନ୍ୱନ୍ତର ହୁଏ ଜାଣିବ ବାଳକେ ।

## କଳ୍ପ

ସମ୍ବର୍ତ୍ତ, ପ୍ରଳୟ, କ୍ଷୟ ଆଦର କଳ୍ପାନ୍ତ
କଳ୍ପର ଏ ନାମ ମାନ ଅଟଇ ବିଖ୍ୟାତ ।
**(ଭିନ୍ନ ଛନ୍ଦରେ ଲିଖିତ)**

## ପାପ

ଦୁରିତ, ଦୁଷ୍କୃତ, କିଲ୍‌ବିଷ, କଳ୍ମଷ
ଅଂହ, ଅଘ, ଏନ ପଙ୍କ ଯେ କଳୁଷ
ଏହି ନାମ ମାନ ଅଟଇ ପାପର
ରଖିବ ମନରେ ହୋଇ ତତପର ।

## ପୁଣ୍ୟ

ଧର୍ମ୍ମ, ଶ୍ରେୟ, ବୃଷ, ସୁକୃତ ଆବର
ଏହିଚାରି ନାମ ଅଟଇ ପୁଣ୍ୟର ।

## ଆନନ୍ଦ

ପ୍ରୀତି, ହର୍ଷ, ସୁଖ, ପ୍ରମୋଦ, ପ୍ରମଦ
ଆନନ୍ଦଥୁ, ଶର୍ମ୍ମ, ଆମୋଦ, ସମ୍ମଦ,
ଶାତ, ମୁଦ ନାମ ଅଟେ ଆନନ୍ଦର
ରଖିବ ମନରେ ହେ ପ୍ରିୟ କୁମର ।

## ଶୁଭ

ଶ୍ୱଃଶ୍ରେୟ, ଭବିକ, କଲ୍ୟାଣ, ମଙ୍ଗଳ
କ୍ଷେମ, ଶସ୍ତ, ଭବ୍ୟ, ଭାବୁକ, କୁଶଳ
ଶିବ, ଭଦ୍ର, ମିଶି ଏଗାର ନାମରେ
ଶୁଭ ଅର୍ଥ ଖ୍ୟାତ ରଖିବ ମନରେ ।

## ପ୍ରଶସ୍ତ ବାଚକ

ପ୍ରଶସ୍ତବାଚିର ନାମ ମତଲ୍ଲିକା
ତଲ୍ଲଜ, ପ୍ରକାଣ୍ଡ, ଉଦ୍ଧ, ମଚର୍ଚ୍ଚିକା ।

## ଶୁଭଙ୍କର ବିଧି

ଅୟ ନାମେ ଖ୍ୟାତ ଶୁଭଙ୍କର ବିଧି
ସଯତନେ ତାହା ପାଳିବ ସୁବୁଦ୍ଧି ।

## ଭାଗ୍ୟ

ଭାଗ୍ୟ ଅର୍ଥେ ଜାଣ ଦୈବ ଭାଗଧେୟ
ନିୟତି ଯେ ବିଧି ଦ୍ୱିଷନାମଚୟ ।

## କାରଣ ଓ ଆଦିକାରଣ

ହେତୁ ବୀଜ ନାମେ କାରଣକୁ ଜାଣ
ଆଦି କାରଣକୁ ବୋଲନ୍ତି ନିଦାନ ।

## ଆତ୍ମା ଓ ପ୍ରକୃତି

କ୍ଷେତ୍ରଜ୍ଞ, ପୁରୁଷ ନାମେ ଆତ୍ମା ଜାଣ
ଏକାର୍ଥ ଅଟଇ ପ୍ରକୃତି, ପ୍ରଧାନ ।

## ଅବସ୍ଥା

ଦେହାଦିର ଦଶା ଅବସ୍ଥା ନାମରେ
ଖ୍ୟାତ ଅଟେ ଜାଣି ରଖିବ ମନରେ ।

## ତ୍ରିଗୁଣ

ସତ୍ୱ, ରଜ, ତମ, ଏହି ତିନି ନାମେ
ଗୁଣ ତ୍ରୟ ଖ୍ୟାତ ଅଟେ ଧରାଧାମେ ।

**ଉତ୍ପତ୍ତି**

ଜନ୍ମ, ଜନ୍ମ, ଜନି, ଉଦ୍ଭବ, ଜନନ
ଉତ୍ପତ୍ତିର ଅଟେ ଏହି ନାମ ମାନ ।

**ପ୍ରାଣୀ**

ଜନ୍ମି, ଜନ୍ତୁ, ଜନ୍ୟୁ ଶରୀରୀ, ଚେତନ
ଏ ପାଞ୍ଚ ନାମରେ ପ୍ରାଣୀ ଖ୍ୟାତ ଜାଣ ।

**ଜାତି ଓ ବ୍ୟକ୍ତି**

ଜାତି ଅର୍ଥେ ଜାତ, ସାମାନ୍ୟକୁ ଘେନି
ଏକାର୍ଥ ପୃଥଗାତ୍ମିକା, ବ୍ୟକ୍ତି ବେନି ।

**ମନ**

ମନ ଅର୍ଥେ ଖ୍ୟାତ ମାନସ, ହୃଦୟ
ଚିତ୍ତ, ଚେତ, ସ୍ୱାନ୍ତ, ହୃଦ, ନାମଚୟ ।

## ଧୀବର୍ଗ

**ବୁଦ୍ଧି**

ଧୀ, ମତି, ମନୀଷା, ଶେମୁଷୀ, ଧୀଷଣା
ପ୍ରଜ୍ଞା, ପ୍ରେକ୍ଷା, ଚିତ୍ତ, ସମ୍ବିତ, ଚେତନା
ଜ୍ଞପ୍ତି, ପ୍ରତିପତ୍, ପୁଣି, ଉପଲବ୍ଧି
ଏକାଦଶ ନାମେ ଖ୍ୟାତ ଅଟେ ବୁଦ୍ଧି ।

**ମେଧା**

ପଟୁ ଯେଉଁ ବୁଦ୍ଧି ବିଷୟ ଧାରଣେ
ମେଧା ନାମେ ସେହୁ ଖ୍ୟାତ ରଖ ମନେ ।

**ସଂକଳ୍ପ**

ସଂକଳ୍ପ ନାମେ ମାନସ କର୍ମର
ବୁଝ ମନ ଦେଇ ସୁବୋଧ କୁମର ।

## ମାନସସୁଖ

ଚିତ୍ତାଭୋଗ, ମନସ୍କାର ନାମ ଦୁଇ
ମାନସ ସୁଖର ପ୍ରତିପଦ କହି ।

## ଚର୍ଚ୍ଚା ଓ ତର୍କ

ସଂଖ୍ୟା, ବିଚାରଣା, ନାମ ଯେ ଚର୍ଚ୍ଚାର
ତର୍କ-ନମାନ୍ତର ଉହ, ଅଧ୍ୟାହାର ।

## ସନ୍ଦେହ

ବିଚିକିତ୍ସା, ପୁଣି ସଂଶୟ, ଦ୍ୱାପର
ଏହି ନାମ ତିନି ଅଟେ ସନ୍ଦେହର

## ନିଶ୍ଚୟ ଓ ନାସ୍ତିକତା

ଏକାର୍ଥ, ନିର୍ଣ୍ଣୟ, ନିଶ୍ଚୟ ଏ ବେନି
ମିଥ୍ୟାଦୃଷ୍ଟି ନାମେ ନାସ୍ତିକତା ଘେନି ।

## ପରହିଂସା

ଦ୍ରୋହଚିନ୍ତନ ଯେ ଆବର ବ୍ୟାପାଦ
ପରହିଂସାର ଏ ବେନି ପ୍ରତିପଦ ।

## ସିଦ୍ଧାନ୍ତ ଓ ଭ୍ରାନ୍ତ

ଏକାର୍ଥ ସିଦ୍ଧାନ୍ତ, ରାଦ୍ଧାନ୍ତ ଏ ଦୁଇ
ମିଥ୍ୟାମତି, ଭ୍ରାନ୍ତି ନାମେ ଭ୍ରମ କହି

## ଅଙ୍ଗୀକାର

ଆଗୁ, ପ୍ରତିଜ୍ଞାନ, ନିୟମ, ଆଶ୍ରବ
ଅଭ୍ୟୁପଗମ ଯେ ସମାଧି,ସଂଶ୍ରବ
ପ୍ରତିଶ୍ରବ ପୁଣି ସମ୍ବିଦ ନାମରେ
ଅଙ୍ଗୀକାର ବୋଲି ରଖିବ ମନରେ ।

## ବିଜ୍ଞାନ

ବିମଳ ଜ୍ଞାନକୁ ବୋଲନ୍ତି ବିଜ୍ଞାନ
ଲଭିବାକୁ ତାହା କରିବ ଯତନ ।

## ମୁକ୍ତି

କୈବଲ୍ୟ, ନିର୍ବାଣ, ଅମୃତ, ନିଶ୍ରେୟ
ଶ୍ରେୟ, ଅପବର୍ଗ, ମୋକ୍ଷ ନାମଚୟ
ମୁକତିର ପ୍ରତିପଦ ବୋଲି ଜାଣ
ସଯତନେ ମନେ ରଖ ଶିଶୁଗଣ ।

## ଅଜ୍ଞାନ

ଅହଙ୍କୃତି, ପୁଣି ଅବିଦ୍ୟା, ଅଜ୍ଞାନ
ଏକାର୍ଥ ଅଟନ୍ତି ଏହି ନାମ ମାନ ।

## ପଞ୍ଚ ବିଷୟ

ରୂପ, ରସ, ଗନ୍ଧ, ଶବ୍ଦ, ସ୍ପର୍ଶ ପୁଣ
ପଞ୍ଚ ବିଷୟର ପଞ୍ଚନାମ ଜାଣ ।

## ବିଷୟ

ଇନ୍ଦ୍ରିୟାର୍ଥ ପୁଣି ଗୋଚର ଏ ବେନି
ବିଷୟର ପ୍ରତିପଦ ବୋଲି ଘେନି

## ଇନ୍ଦ୍ରିୟ

ହୃଷୀକ, ବିଷୟୀ ନାମ ଇନ୍ଦ୍ରିୟର
ରଖିବ ମନରେ ହୋଇ ତତପର ।

## ପଞ୍ଚକର୍ମେନ୍ଦ୍ରିୟ

ପାୟୂ, ପାଦ, ପାଣି, ଉପସ୍ଥ ଆବର
ବାକ୍, ନାମ ପଞ୍ଚ କର୍ମଇନ୍ଦ୍ରିୟର ।

## ଷଟ୍‌ଜ୍ଞାନେନ୍ଦ୍ରିୟ

ମନ, ଚକ୍ଷୁ, ନାସା, ଜିହ୍ୱା, ତ୍ୱକ୍, ଶ୍ରବଣ
ଛଅ ନାମେ ଛଅ ଜ୍ଞାନେନ୍ଦ୍ରିୟ ଜାଣ ।

## ଷଡ୍ରସ

କଟୁ, ତିକ୍ତ, ଅମ୍ଳ, ମଧୁର, ଲବଣ
କଷାୟ, ଏ ଷଡ ରସ ବୋଲି ଜାଣ ।

## ପରିମଳ

ବିମର୍ଦ୍ଦନୋଥିତ ମନୋହର ଗନ୍ଧ
ପରିମଳ ନାମେ ଅଟଇ ପ୍ରସିଦ୍ଧ ।

## ଆମୋଦ

ମନୋହର ଗନ୍ଧେ ବୋଲନ୍ତି ଆମୋଦ
ରଖିବ ମନରେ ପ୍ରିୟ ଶିଶୁ ବୃନ୍ଦ ।

## ଅତି ଦୂରଗାମୀ ଗନ୍ଧ

ସମାକର୍ଷୀ ପୁଣି ନିର୍ହାରୀ ଏ ବେନି
ଅତି ଦୂରଗାମୀ ଗନ୍ଧ-ନାମେ ଘେନି ।

## ସୁଗନ୍ଧ

ଏକାର୍ଥ ଅଟନ୍ତି ସୁରଭି, ସୁଗନ୍ଧ,
ଘ୍ରାଣତର୍ପଣ ଯେ ପୁଣି ଇଷ୍ଟଗନ୍ଧ ।

## ମୁଖବାସକର ଗନ୍ଧ

ମୁଖବାସକ ଯେ ଆମୋଦି ଏ ବେନି
ମୁଖ-ବାସକର ଗନ୍ଧ-ନାମେ ଘେନି ।

## ଚିତାଧୂମଗନ୍ଧ

ବିସ୍ର, ଆମଗନ୍ଧ ଏ ବେନି ନାମରେ
ଚିତାଧୂମଗନ୍ଧ ରଖିବ ମନରେ ।

## ଶୁକ୍ଳବର୍ଣ୍ଣ

ବଳକ୍ଷ, ଧବଳ, ଗୌର, ଅବଦାତ
ଶ୍ୱେତପାଣ୍ଡର ଯେ ଶୁଭ୍ର, ଶୁଚି, ଶ୍ୱେତ
ବିଶଦ, ଅର୍ଜ୍ଜୁନ, ସିତ ପଦ ମାନ
ଶୁକଳ ବର୍ଣ୍ଣର ନାମ ବୋଲି ଘେନ

## ପାଣ୍ଡୁର ଓ ଇଷତ୍ ପାଣ୍ଡୁର

ଏକ ଅର୍ଥ ପାଣ୍ଡୁ, ହରିଣ, ପାଣ୍ଡୁର
ଅଳ୍ପ ପାଣ୍ଡୁରକୁ ବୋଲନ୍ତି ଧୂସର ।

### କୃଷ୍ଣବର୍ଣ୍ଣ

ଅସିତ୍, ଶ୍ୟାମଳ, ନୀଳ, କାଳି, ଶ୍ୟାମ
ମେଚକ ଏମାନ କୃଷ୍ଣବର୍ଣ୍ଣ -ନାମ ।

### ପୀତ ଓ ହରିତ୍ ବର୍ଣ୍ଣ

ଗୌର, ହରିଦ୍ରାଭ ନାମେ ଖ୍ୟାତ ପୀତ
ହରିବର୍ଣ୍ଣ - ନାମ ପାଲାଶ ହରିତ ।

### ରକ୍ତବର୍ଣ୍ଣ

ରକ୍ତବର୍ଣ୍ଣ ନାମେ ରୋହିତ, ଲୋହିତ,
ବୁଝ ଶିଶୁଗଣ ହୋଇ ଏକଚିତ୍ତ ।

### ଗାଢ଼ ରକ୍ତବର୍ଣ୍ଣ

ଶୋଣ, କୋକନଦଛବି ପଦ ବେନି
ରକ୍ତୋତ୍ପଳ ତୁଲ୍ୟ ବର୍ଣ୍ଣ-ନାମେ ଘେନି ।

### ଧୂମଳବର୍ଣ୍ଣ

କୃଷ୍ଣ ରକ୍ତବର୍ଣ୍ଣ ହୋଇଣ ମିଳିତ,
ଧୂମଳ ଆବର ଧୂମ୍ର ବୋଲି ଖ୍ୟାତ ।

### ପାଟଳ ଓ ଶ୍ୟାବବର୍ଣ୍ଣ

ଶ୍ୱେତ ରକ୍ତ ମିଶି ପାଟଳ ହୁଅଇ
ଶ୍ୟାବ ଯେ କପିଶ କୃଷ୍ଣ ପୀତେ କହି ।

### ପିଙ୍ଗଳ ବର୍ଣ୍ଣ

କପିଳ, ପିଶଙ୍ଗ, କଦ୍ରୁ ଯେ କଡାର
ପିଙ୍ଗ ନାମ ପାଞ୍ଚ ଅଟେ ପିଙ୍ଗଳର,
ନୀଳ ପୀତ ବେନି ବର୍ଣ୍ଣ ହେଲେ ଯୁକ୍ତ
ପିଙ୍ଗଳ ନାମରେ ହୁଅଇ ଆଖ୍ୟାତ ।

### ଶବଳବର୍ଣ୍ଣ

କଲୁଷ, କିର୍ମୀର, ଚିତ୍ର ଯେ କର୍ବୁର,
ଏତ, ନାମ ପାଞ୍ଚ ଶବଳ ବର୍ଣ୍ଣର,
ବହୁବିଧ ବର୍ଣ୍ଣ ହୋଇଲେ ମିଳିତ
ଶବଳ ନାମରେ ହୁଅଇ ଆଖ୍ୟାତ ।

## ଶବ୍ଦାଦି ବର୍ଗ

### ସରସ୍ୱତୀ

ବ୍ରାହ୍ମୀ, ଭାଷା, ବାକ୍, ବାଣୀ, ଗୀର ଯେ ଭାରତୀ
ଆଖ୍ୟାତ ଅଟନ୍ତି ଏତେ ନାମେ ସରସ୍ୱତୀ ।

### ବାକ୍ୟ

ବଚ, ଉକ୍ତି, ଭାଷିତ, ଯେ ଲପିତ, ବଚନ,
ବ୍ୟାହାର ପୁଣି ବାଣୀଙ୍କ ପ୍ରତିପଦ ମାନ
ବାକ୍ୟର ଅପର ନାମ ବୋଲି ଅଟେ ଖ୍ୟାତ
ସୁକୁମାର ଶିଶୁଗଣ ବୁଝ ଦେଇ ଚିତ୍ତ ।

### ବାକ୍ୟ ଓ ବେଦ

କାରକାନ୍ୱିତ କ୍ରିୟାକୁ ବାକ୍ୟ ନାମେ କହି
ଶ୍ରୁତି ଆମ୍ନାୟ ବେଦର ପ୍ରତିପଦ ଦୁଇ

### ଅସଂସ୍କୃତ ବାକ୍ୟ

ଅପଭ୍ରଂଶ, ଅପଶବ୍ଦ ଏ ବେନି ନାମରେ
ଅସଂସ୍କୃତ ବାକ୍ୟ ଖ୍ୟାତ ରଖିବ ମନରେ

### ତ୍ରୟୀ ଓ ତ୍ରୟୀଧର୍ମ୍ମ

ତିନି ବେଦର ଅଟଇ ଖ୍ୟାତ ତ୍ରୟୀ ନାମ
ବେଦ ବିହିତ ବିଧିର ନାମ ତ୍ରୟୀ ଧର୍ମ୍ମ ।

### ତିନି ବେଦ

ଋକ୍, ଯଜୁ, ସାମ ମିଶି ଏ ତିନି ନାମରେ,
ତିନି ବେଦ ଅଟେ ଖ୍ୟାତ ରଖିବ ମନରେ ।

### ବେଦାଙ୍ଗ

ବେଦାଙ୍ଗ ନାମରେ ଶିକ୍ଷା, କଳ୍ପ, ବ୍ୟାକରଣ,
ନିରୁକ୍ତ, ଛନ୍ଦୋବିଚିତି, ଜ୍ୟୋତିଃ ବୋଲି ଜାଣ

### ଓଁକାର ଓ ଇତିହାସ

ଓଁକାର, ପ୍ରଣବ ନାମେ ଅଟଇ ଆଖ୍ୟାତ
ଇତିହାସର ଅପର ନାମ ପୁରାବୃତ୍ତ ।

## ତ୍ରିବିଧ ସ୍ୱର

ଉଦାତ୍ତ ଯେ ଅନୁଦାତ୍ତ, ସ୍ୱରିତ ନାମରେ
ତ୍ରିବିଧ ସ୍ୱର ଆଖ୍ୟାତ ରଖିବ ମନରେ ।

## ତର୍କବିଦ୍ୟା ଓ ଅର୍ଥଶାସ୍ତ୍ର

ଏକାର୍ଥକ ତର୍କବିଦ୍ୟା, ଅନ୍ୱୀକ୍ଷୀକୀ ଦୁଇ;
ଦଣ୍ଡନୀତି ନାମେ ଜାଣ ଅର୍ଥଶାସ୍ତ୍ର କହି ।

## ଆଖ୍ୟାୟିକା

ଉପଲବ୍ଧାର୍ଥ ପ୍ରବନ୍ଧ-ନାମ ଅଖ୍ୟାୟିକା
ରଖିବ ମନରେ ପ୍ରିୟ ବାଳକ ବାଳିକା ।

## ପୁରାଣ ଓ କଥା

ଏକାର୍ଥ ଅଟଇ ପଞ୍ଚଲକ୍ଷଣ, ପୁରାଣ,
କଥା ନାମରେ କଳ୍ପିତ-ପ୍ରବନ୍ଧକୁ ଜାଣ ।

## ଢଗ ଓ ସ୍ମୃତି

ପ୍ରବହ୍ଲିକା, ପ୍ରହେଳିକା ନାମ ଯେ ଢ଼ଗର
ଧର୍ମସଂହିତା, ସ୍ମୃତିର ଅଟେ ନାମାନ୍ତର ।

## ସଂଗ୍ରହ ଓ ସମସ୍ୟା

ସଂଗ୍ରହର ନାମାନ୍ତର ସମାହୃତି ଖ୍ୟାତ
ସମସ୍ୟାର ଅନ୍ୟ ନାମ ଅଟେ ସମାସାର୍ଥ ।

## ଲୋକ ପ୍ରବାଦ

ସତ୍ୟ ଅବା ମିଥ୍ୟା ହେଉ ଯେ ଲୋକ ପ୍ରବାଦ
ଜନଶ୍ରୁତି, କିମ୍ବଦନ୍ତୀ ତାର ପ୍ରତିପଦ ।

## ବୃତ୍ତାନ୍ତ

ବୃତ୍ତାନ୍ତର ନାମ ବାର୍ତ୍ତା, ପ୍ରବୃତ୍ତି, ଉଦନ୍ତ
ସଯତନେ ଶିଶୁଗଣ ବୁଝ ଦେଇ ଚିତ୍ତ ।

## ନାମ

ନାମଧେୟ, ଆହ୍ୱା, ଆଖ୍ୟା ପୁଣି ଅଭିଧାନ
ଆହ୍ୱୟ, ନାମ, ଏକାର୍ଥ ଏହି ପଦମାନ ।

## ଆହ୍ୱାନ ଓ ସଂହୂତି

ଡାକିବା ନାମ ଆହ୍ୱାନ, ଅକାରଣା, ହୂତି
ବହୁଲୋକ ଡାକିବାକୁ ବୋଲନ୍ତି ସଂହୂତି ।

## କଳହ ଓ ଉପନ୍ୟାସ

କଳହର ଅନ୍ୟ ନାମ ଅଟଇ ବିବାଦ;
ଏକାର୍ଥ ବାଙ୍‌ମୁଖ ଉପନ୍ୟାସ ବେନିପଦ ।

## ଦୃଷ୍ଟାନ୍ତ ଓ ଶପଥ

ଦୃଷ୍ଟାନ୍ତକୁ ବୋଲି ଉଦାହାର, ଉପୋଦ୍‌ଘାତ;
ଶପନ ଶବ୍ଦର ଅର୍ଥ ଅଟଇ ଶପଥ ।

## ପ୍ରଶ୍ନ ଓ ଉତ୍ତର

ଅନୁଯୋଗ ପୃଚ୍ଛା ନାମ ଅଟଇ ପ୍ରଶ୍ନର,
ପ୍ରତିବାକ୍ୟର ଅପର ନାମ ଯେ ଉତ୍ତର ।

## ମିଥ୍ୟାବାଦ

ମିଥ୍ୟା ଅଭିଯୋଗ, ଅଭ୍ୟାଖ୍ୟାନ ପଦ ଦୁଇ
ମିଥ୍ୟାବାଦର ଅପର ନାମ ବୋଲି କହି ।

## ଅଭିଶାପ

ମିଥ୍ୟାଭିଶଂସନ, ଅଭିଶାପ ବେନି ପଦ
ଏକାର୍ଥ ବାଚକ ବୋଲି ଜାଣ ଶିଶୁବୃନ୍ଦ ।

## ପ୍ରଣାଦ ଓ ଯଶ

ଅନୁରାଗଜ ଶବ୍ଦକୁ ବୋଲନ୍ତି ପ୍ରଣାଦ
କୀର୍ତ୍ତି, ସମଜ୍ଞା, ଯଶର ବେନି ପ୍ରତିପଦ ।

## ଆମ୍ରେଡିତ

ଏକକଥା ଦୁଇ ତିନିଥର ହେଲେ ଉକ୍ତ
ଆମ୍ରେଡିତ ନାମରେ ସେ ହୁଏ ଅଭିହିତ ।

## ଘୋଷଣା

ଉଚ୍ଚୈର୍ଘୁଷ୍ଟ, ଘୋଷଣା ଯେ ଏ ବେନି ନାମରେ
ଉଚ୍ଚସ୍ୱରେ ଭାଷଣକୁ ରଖିବ ମନରେ ।

## କାକୁ

ଶୋକାଦି କାରଣେ ବିକୃତ ଯେ କଣ୍ଠଧ୍ୱନି
କାକୁ ନାମ ଅଟେ ତାର ରଖ ମନେ ଘେନି ।

## ନିନ୍ଦା

ଅବର୍ଣ୍ଣ, ଆକ୍ଷେପ, କୁତ୍ସା, ଜୁଗୁପ୍ସା, ନିର୍ବାଦ,
ପରିବାଦ, ଉପକ୍ରୋଶ, ପୁଣି ଅପବାଦ,
ଗର୍ହଣ ମିଶି ନିନ୍ଦାର ନବ ପ୍ରତିପଦ
ରଖିବ ଯତନେ ମନେ ପ୍ରିୟ ଶିଶୁବୃନ୍ଦ ।

## କଠୋର ବାକ୍ୟ

ପାରୁଷ୍ୟ ଯେ ଅଭିବାଦ ଏ ବେନି ନାମରେ
କଠୋର ବଚନ ବୋଲି ରଖିବ ମନରେ

## ତିରସ୍କାର

ଭର୍ତ୍ସନା ଯେ ଅପକାରଗୀର ପଦ ବେନି
ତିରସ୍କାରର ଅପର ନାମ ବୋଲି ଘେନି ।

## ପରିଭାଷଣ

ତିରସ୍କାର ବାଣୀ ଯେବେ ହୁଏ ନିନ୍ଦାଯୁକ୍ତ
ପରିଭାଷଣ ନାମରେ ହୁଅଇ ଆଖ୍ୟାତ ।

## ଆକ୍ଷାରଣା

ମଇଥୁନ ପ୍ରତି ଯେଉଁ ଆକ୍ରୋଶ ବଚନ
ଆକ୍ଷାରଣା ନାମ ତାର ଜାଣ ଶିଶୁଗଣ ।

## ଆଳାପ ପ୍ରଳାପ

ଆଳାପର ଅନ୍ୟନାମ ଅଟେ ଆଭାଷଣ
ପ୍ରଳାପ ନାମରେ ଅନର୍ଥକ ବାକ୍ୟ ଜାଣ ।

## ମୁହୁର୍ମୁହୁ ବାକ୍ୟ

ଅନୁଳାପ, ମୁହୁର୍ଭାଷ୍ୟ ଏ ବେନି ନାମରେ
ମୁହୁର୍ମୁହୁ ଉକ୍ତ ବାକ୍ୟ ବୁଝିବ ମନରେ ।

## ଶୋକାର୍ଥବଚନ

ବିଳାପ, ପରିବେଦନ ଏହି ପଦ ବେନି
ଶୋକାର୍ତ୍ତ ବାଣୀର ଅନ୍ୟନାମ ବୋଲି ଘେନି ।

## ବିରୋଧଉକ୍ତି ଓ ପରସ୍ପରର କଥନ

ବିରୋଧି ଉକ୍ତିର ଅନ୍ୟ ନାମ ବିପ୍ରଳାପ
ପରସ୍ପର କଥନକୁ ବୋଲନ୍ତି ସଂଳାପ ।

## ସୁବଚନ ଓ ଗୋପନ ବାକ୍ୟ

ଏକଅର୍ଥ ସୁପ୍ରଳାପ, ସୁବଚନ ଦୁଇ
ଗୋପନ ବାକ୍ୟେ ନିହ୍ନବ ଅପଳାପ କହି ।

## ସନ୍ଦେଶ ବଚନ

ସନ୍ଦେଶ ବାକ୍, ବାଚିକ ଯେ ଏ ବେନି ନାମରେ
ସନ୍ଦେଶ ବଚନ ବୋଲି ରଖିବ ମନରେ

## ଅକଲ୍ୟାଣଯୁକ୍ତ ବାକ୍ୟ ଓ ଶୁଭବାକ୍ୟ

ଅକଲ୍ୟାଣ ଯୁକ୍ତ ବାକ୍ୟେ ବୋଲନ୍ତି ଉଷତି;
କଲ୍ୟା ନାମେ ଶୁଭ ବାକ୍ୟ ଜାଣିବ ସୁମତି ।

## ମଧୁରବାକ୍ୟ

ସାନ୍ତ୍ୱ ନାମ ଅଟେ ଅତି ମଧୁର ବାକ୍ୟର
ରଖିବ ମନରେ ଆହେ ସୁବୋଧ କୁମର ।

## ଯୁକ୍ତିଯୁକ୍ତ ବାକ୍ୟ

ସଂଗତ, ପୁଣି ହୃଦୟଙ୍ଗମ ପଦ ଦୁଇ
ଯୁକ୍ତିଯୁକ୍ତ ବଚନର ନାମ ବୋଲି କହି ।

## ସତ୍ୟପୂର୍ଣ୍ଣ ପ୍ରିୟବାକ୍ୟ ଓ ଅଶ୍ଳୀଳ ବାକ୍ୟ

ସତ୍ୟପୂର୍ଣ୍ଣ ପ୍ରିୟ ବାକ୍ୟେ ବୋଲନ୍ତି ସୁନୃତ
ଅଶ୍ଳୀଳ ଗ୍ରାମ୍ୟବାକ୍ୟର ନାମ ବୋଲି ଖ୍ୟାତ ।

## ପୂର୍ବାପର ବିରୁଦ୍ଧାର୍ଥ ବାକ୍ୟ

ପୂର୍ବାପର ବିରୁଦ୍ଧାର୍ଥ ଅଟେ ଯେ ବଚନ
ସଙ୍କୁଳ, କ୍ଲିଷ୍ଟ ଏ ବେନି ନାମ ତାର ଜାଣ ।

## ଅସମ୍ପୂର୍ଣ୍ଣ ଉଚ୍ଚାରିତ ବାକ୍ୟ

ଅସମ୍ପୂର୍ଣ୍ଣ ଉଚ୍ଚାରିତ ଅଟେ ଯେ ବଚନ
ଗ୍ରସ୍ତ ନାମ ଅଟେ ତାର ଜାଣ ଶିଶୁଗଣ

## ଶୀଘ୍ର ଉଚ୍ଚାରିତ ବାକ୍ୟ

ନିରସ୍ତ, ଦ୍ରୁତୋଦିତ ଏବେନି ନାମରେ
ଶୀଘ୍ର ଉଚ୍ଚାରିତ ବାକ୍ୟ ରଖିବ ମନରେ

## ମୁଖ ବାରିବିନ୍ଦୁ ସହ ଉକ୍ତ ବାକ୍ୟ

ମୁଖ ବାରିବିନ୍ଦୁ ସହ ଉକ୍ତ ଯେ ବଚନ
ଅମ୍ବୁ କୃତ, ସନିଷ୍ଠେବ ନାମ ତାର ଜାଣ ।

## ନିରର୍ଥକ ବାକ୍ୟ

ଅନର୍ଥକ ବଚନକୁ ବୋଲନ୍ତି ଅବଦ୍ଧ
ନ ଭାଷିବ ତାହା କେବେ ଆହେ ଶିଶୁବୃନ୍ଦ

## କୁତ୍ସିତ ବାକ୍ୟ

କୁତ୍ସିତ ବଚନ ମୁଖେ ହେଲେ ଉଚ୍ଚାରିତ
ଅନକ୍ଷର, ଅବାଚ୍ୟ ନାମରେ ତାହା ଖ୍ୟାତ ।

## ଅତି ଅସମ୍ଭବ ବାକ୍ୟ

ମ୍ଳିଷ୍ଟ, ଅବିସ୍ପଷ୍ଟ ନାମେ ଅବ୍ୟକ୍ତ ବଚନ
ବିତଥ, ଅନୃତ ନାମେ ମିଥ୍ୟା ବାକ୍ୟ ଜାଣ ।

## ସତ୍ୟବାକ୍ୟ

ସମ୍ୟକ୍ ପୁଣି ଋତ, ତଥ୍ୟ, ଏହି ନାମ ତିନି
ସତ୍ୟ ବଚନର ପ୍ରତିପଦ ବୋଲି ଘେନି ।

## ଶବ୍ଦ

ନିନଦ, ନିନାଦ, ନାଦ, ନିସ୍ୱନ, ନିସ୍ୱାନ,
ବିରାବ, ଆରବ, ରବ, ସ୍ୱନ, ଧ୍ୱନି, ଧ୍ୱାନ,
ଆରବ, ସଂରାବ, ସ୍ୱାନ, ନିର୍ଘୋଷ ନିହ୍ରାଦ,
ଏତେନାମ ଶବଦର ଅଟେ ପ୍ରତିପଦ ।

## ବସ୍ତ୍ରାଦିର ଶବ୍ଦ ଓ ଭୂଷଣାଦିର ଶବ୍ଦ

ବସ୍ତ୍ର ପତ୍ରାଦି ଶବ୍ଦକୁ ବୋଲନ୍ତି ମର୍ମର
ଶିଞ୍ଜିତ ନାମ ଅଟଇ ଭୂଷଣ-ଶବ୍ଦର ।

## ବୀଣାଦିର ସ୍ୱନ

ନିକ୍ୱଣ, ନିକ୍ୱାଣ, କ୍ୱଣ, କ୍ୱାଣ, ଯେ କ୍ୱଣନ
ପ୍ରକ୍ୱଣ, ପ୍ରକ୍ୱାଣ ନାମେ ବୀଣାଦିର ସ୍ୱନ ।

## କୋଳାହଳ

କୋଳାହଳ, କଳକଳ ଏ ବେନି ନାମରେ
ଅନେକ ଅବ୍ୟକ୍ତ ଧ୍ୱନି ରଖିବ ମନରେ ।

## ବହୁପକ୍ଷୀଙ୍କର ମିଶ୍ରିତ ଧ୍ୱନି

ବହୁ ପକ୍ଷୀଙ୍କର କୃତ ଅବ୍ୟକ୍ତ ଯେ ସ୍ୱନ
ବାଶିତ, ରୁତ ଏ ବେନି ନାମ ତାର ଜାଣ ।

## ପ୍ରତିଧ୍ୱନି

ପ୍ରତିଶ୍ରୁତ, ପ୍ରତିଧ୍ୱାନ, ଏହି ପଦ ବେନି
ପ୍ରତିଶବଦର ପ୍ରତିପଦ ବୋଲି ଘେନି ।

## ଗୀତ

ଗାନ ଏ ପଦ ଗୀତର ଅଟେ ନାମାନ୍ତର
ରଖିବ ମନରେ ପ୍ରିୟ ସୁବୋଧ କୁମର ।

# ନାଟ୍ୟବର୍ଗ

## ସପ୍ତସ୍ୱର

ଷଡ୍‌ଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ,
ଧୈବତ, ନିଷାଦ, ମିଶି ଏହି ସାତ ନାମ
ସପତ ସ୍ୱରର ବୋଲି ରଖିବ ମନରେ
ଉତ୍ପତ୍ତି ସ୍ଥାନକୁ ଶୁଣ ଏଥୁ ଅନନ୍ତରେ ।
ମୟୂରରୁ ଷଡ୍‌ଜ, ବୃଷଭରୁ ଯେ ଋଷଭ,
ଛାଗୁଁ ଗାନ୍ଧାର, କୌଞ୍ଚରୁ ମଧ୍ୟମ ସମ୍ଭବ
ପିକରୁ ପଞ୍ଚମ, ଭେକଠାରୁ ଯେ ଧୈବତ,
ବାରଣଠାରୁ ନିଷାଦ ହୋଇଅଛି ଜାତ ।

## କାକଳୀ

ସୂକ୍ଷ୍ମ, ମଧୂର ଅବ୍ୟକ୍ତ ଅଟେ ଯେଉଁ ସ୍ୱନ
କାକଳୀ ନାମରେ ତାହା ଖ୍ୟାତ ଅଟେ ଜାଣ ।

## କଳ ଓ ମନ୍ଦ୍ରଧ୍ୱନି

ମଧୂର ଅସ୍ଫୁଟ ସ୍ୱନେ କଳ ନାମେ କହି;
ଗମ୍ଭୀର ଧ୍ୱନିର ନାମ ମନ୍ଦ୍ର ଯେ ଅଟଇ ।

## ତାର ଓ ଏକତାଳ

ଉଚ୍ଚ ଶବଦ ଅଟଇ 'ତାର' ନାମେ ଖ୍ୟାତ
'ଏକତାଳ' ନାମେ ବାଦ୍ୟ ସହ ନୃତ୍ୟଗୀତ ।

## ବୀଣା

ସପ୍ତତନ୍ତ୍ରୀ ବୀଣା ପରିବାଦିନୀ ନାମରେ
ଖ୍ୟାତ ଅଟେ, ଶିଶୁଗଣ ରଖିବ ମନରେ ।

## ତତ ଓ ଆନଦ୍ଧ

ତତ ନାମରେ, ଜାଣିବ ବୀଣାଦିର ବାଦ୍ୟ
ମୃଦଙ୍ଗାଦିର ବାଦ୍ୟକୁ ବୋଲନ୍ତି ଆନଦ୍ଧ ।

## ଶୁଷିର ଓ ଘନ

ଶୁଷିର ନାମରେ ଖ୍ୟାତ ବଂଶି ଆଦି ବାଦ୍ୟ
ଘନ ନାମେ କାଂସ୍ୟକରତାଳାଦିର ଶବ୍ଦ ।

## ବାଦିତ୍ର

ବୀଣା, ବଂଶି, କରତାଳ, ମୃଦଙ୍ଗ ଏକତ୍ର
ହେଲେ, ତା ନାମ ଅତୋଦ୍ୟ ଆବର ବାଦିତ୍ର ।

## ମୃଦଙ୍ଗ

ମୁରଜ ଅପର ନାମ ଅଟେ ମୃଦଙ୍ଗର
ତନି ନାମେ ଅଟେ ତାହା ବିଭିନ୍ନ ଆକାର;
ଅଙ୍କ୍ୟ, ଆଲିଙ୍ଗ୍ୟ, ଉର୍ଦ୍ଧ୍ୱକ ଏହି ନାମ ତିନି
ତ୍ରୟବିଧ ମୃଦଙ୍ଗର ରଖ ମନେ ଘେନି ।

## ଢ଼କ୍କା

ଯଶପଟହ ଢ଼କ୍କାର ଅଟେ ପ୍ରତିପଦ
ଢୋଲ ନାମରେ ଏ ଦେଶେ ଅଟଇ ପ୍ରସିଦ୍ଧ ।

## ଭେରି

ବୃହତ ଆୟତନରେ ଯେ ଢ଼କ୍କା ଅଟଇ
ନାମ ତାହାର ଦୁନ୍ଦୁଭି ଭେରି ପଦ ଦୁଇ ।

## ପଟହ

ଆନକ ଅଟଇ ପଟହର ନାମାନ୍ତର
ରଖିବ ମନରେ ଆହେ ସୁବୋଧ କୁମର ।

## କୋଣ ଓ ପ୍ରବାଳ

ବୀଣା-ବାଦନ ଦଣ୍ଡର ନାମ ଅଟେ କୋଣ;
ପ୍ରବାଳ ବୀଣାଦଣ୍ଡର ନାମାନ୍ତର ଜାଣ ।

## କକୁଭ

କୁଭ ଯେ ପ୍ରସେବକ ଏହି ପଦ ବେନି
ବୀଣା ଅଗ୍ରସ୍ଥିତ ବକ୍ର କାଷ୍ଠ-ନାମେ ଘେନି ।

## ବୀଣାର ଅବୟବ

ବୀଣାର ଅବୟବକୁ କୋଳମ୍ବକ କହି
ସଯତନେ ଶିଶୁଗଣ ବୁଝ ମନ ଦେଇ ।

## ଉପନାହ

ବୀଣାସ୍ଥିତ କାଷ୍ଠ, ଯହିଁ ବନ୍ଧାହୁଏ ତାର
ଉପନାହ, ନିବନ୍ଧନ ବେନି ନାମ ତାର ।

## ନାନା ବାଦ୍ୟ

ଡମ୍ବରୁ, ମଡ୍ଡୁ, ଡିଣ୍ଡିମ, ମର୍ଦ୍ଦର, ଝର୍ଝର
ପଣବାଦି ନାମ ମାନ, ବାଦ୍ୟ ବିଶେଷର ।

## ନର୍ତ୍ତକୀ, ତତ୍ତ୍ୱ, ଓଘ ଓ ଘନଗତି

ନର୍ତ୍ତକୀର ଅନ୍ୟ ନାମ ଲାସିକା ଅଟଇ,
ନୃତ୍ୟେ ବିଳମ୍ବ ଗତିକି ତତ୍ତ୍ୱ ବୋଲି କହି
ଶିଘ୍ରଗତି ଓଘ, ମଧ୍ୟଗତି–ନାମ ଘନ
ରଖିବ ଯତନେ ମନେ ପ୍ରିୟ ଶିଶୁଗଣ ।

## ତାଳ ଓ ଲୟ

ଗାୟନ, ନୃତ୍ୟ ବାଦ୍ୟର ଯେ ବିଚ୍ଛେଦ କାଳ
ନାଟ୍ୟ ଉକ୍ତିରେ ଅଟଇ ନାମ ତାର ତାଳ ।
ସେ ତିନିର ସମତାକୁ ଲୟ ବୋଲି କହି
ସୁକୁମାର ଶିଶୁଗଣ ବୁଝ ମନ ଦେଇ ।

## ନୃତ୍ୟ

ତାଣ୍ଡବ, ନଟନ, ନାଟ୍ୟ, ଲାସ୍ୟ ଯେ ନର୍ତ୍ତନ
ନୃତ୍ୟର ଅପର ନାମ ଏହି ପଦ ମାନ ।

## ତୌର୍ଯ୍ୟତ୍ରିକ

ନୃତ୍ୟ ଗୀତ, ବାଦ୍ୟ ତ୍ରୟ ଏକ ବଚନରେ
ତୌର୍ଯ୍ୟତ୍ରିକ, ନାଟ୍ୟ ବୋଲି ରଖିବ ମନରେ

## ନାରୀବେଶି ନର୍ତ୍ତକ

ଭ୍ରୂକୁଂସ, ଭ୍ରୂକୁଂସ, ଯେ ଭ୍ରୂକୁଂସ ପଦ ତିନି
ନାରୀବେଶୀ ନର୍ତ୍ତକର ନାମ ବୋଲି ଘେନି ।

## ବେଶ୍ୟା ଓ ଭଗିନୀପତି

ନାଟ୍ୟୋକ୍ତିରେ ଅଜ୍ଜୁକା ନାମରେ ବେଶ୍ୟାଖ୍ୟାତ
ଭଗିନୀପତିର ନାମ ଅଟଇ ଆବୁତ୍ତ ।

## ପଣ୍ଡିତ, ପିତା ଓ ଯୁବରାଜ

ପଣ୍ଡିତଙ୍କୁ ଭାବ କହି, ପିତାଙ୍କୁ ଆବୁକ,
ଯୁବରାଜଙ୍କ କୁମାର ଯେ ଭର୍ତ୍ତୃଦାରକ ।

## ରାଜା ଓ ରାଜନନ୍ଦିନୀ

ରାଜାର୍ଥକ ଦେବ, ଭଟ୍ଟାରକ ପଦ ଦୁଇ,
ଭର୍ତ୍ତୃଦାରିକା ଯେ ରାଜନନ୍ଦିନୀଙ୍କୁ କହି ।

## ପାଟରାଣୀ

ରାଜାସହ ଅଭିଷିକ୍ତା ଅଟନ୍ତି ଯେ ରାଣୀ
ଦେବୀ ନାମ ତାହାଙ୍କର ରଖ ମନେ ଘେନି ।

*ଅଜ୍ଜୁକା ଓ ଭାବାଦି ଏହି ନାମ ମାନ ନାଟ୍ୟୋକ୍ତିରେ ବ୍ୟବହୃତ ହୁଏ ।

## ଅନଭିଷିକ୍ତା ରାଣୀ

ଅନଭିଷିକ୍ତା ଯେ ରାଣୀ ଭଟ୍ଟିନୀ ନାମରେ
ଆଖ୍ୟାତ ଅଟନ୍ତି ବୋଲି ରଖିବ ମନରେ ।

## ଅବଧ୍ୟ

ଅବଧ୍ୟ ଅଟଇ ଅବ୍ରହ୍ମଣ୍ୟ, ନାମେ ଖ୍ୟାତ
ସୁକୁମାର ଶିଶୁଗଣ ବୁଝ ଦେଇ ଚିତ୍ତ ।

## ଜନନୀ, ବାଳିକା ଓ ମାନ୍ୟବ୍ୟକ୍ତି

ଜନନୀକି ଅମ୍ବା, ବାଳିକାକୁ ବାସୂ କହି
ମାନ୍ୟ ବ୍ୟକ୍ତିଙ୍କର ନାମ ମାରିଷ ଅଟଇ ।

## ଜ୍ୟେଷ୍ଠା ଭଗିନୀ

ଅତିକା ନାମ ଅଟଇ ଜ୍ୟେଷ୍ଠା ଭଗିନୀର
ବୁଝ ମନ ଦେଇ ପ୍ରିୟ ସୁବୋଧ କୁମର ।

## ନିର୍ବାହ

ନିର୍ବାହର ନାମାନ୍ତର ନିଷ୍ଠା, ନିର୍ବହଣ,
ରଖିବ ଯତନେ ମନେ ପ୍ରିୟ ଶିଶୁଗଣ ।

## ନୀଚ ନାରୀ ଓ ଦାସୀର ଡାକିବା ନାମ

ହଣ୍ଡେ ନାମେ ନୀଚ ନାରୀ ହୁଅଇ ଆହୂତ
ଦାସୀକି ଡାକିବା ନାମ ହିଞ୍ଜେ ବୋଲି ଖ୍ୟାତ ।

## ସଖୀକି ଡାକିବାରେ ନାମ

ସଖୀକି ଡାକିବା ନାମ ହଲା ବୋଲି ଜାଣ
ନାଟ୍ୟୋକ୍ତିରେ ଏମାନ ଅଟଇ ପ୍ରୟୋଜନ ।

## ଅଙ୍ଗଚାଳନା

ଅଙ୍ଗବିକ୍ଷେପ ଓ ଅଙ୍ଗହାର ପଦ ବେନି
ଅଙ୍ଗ ଚାଳନାର ଅନ୍ୟ ନାମ ବୋଲି ଘେନି ।

## ଅଭିନୟ ଓ ଆଙ୍ଗିକ କର୍ମ

ଅଭିନୟର ଅପର ନାମ ଯେ ବ୍ୟଞ୍ଜକ;
ଅଙ୍ଗ ନିଷ୍ପନ୍ନ କର୍ମକୁ ବୋଲନ୍ତି ଆଙ୍ଗିକ ।

## ସାତ୍ତ୍ୱିକ କର୍ମ

ଦ୍ୱାର ସତ୍ତ୍ୱ ଯେଉଁ କର୍ମହୁଏ ସମାପନ
ସାତ୍ତ୍ୱିକ ନାମ ତାହାର ଜାଣ ଶିଶୁଗଣ ।

## ରସ

ଶୃଙ୍ଗାର, ବୀର, ବିଭତ୍ସ, କରୁଣ, ଅଦ୍ଭୁତ,
ହାସ୍ୟ, ଭୟାନକ, ରୌଦ୍ର, ବାତ୍ସଲ୍ୟ ଯେ ଶାନ୍ତ,
ଏହି ଦଶ ନାମେ ଦଶରସ ଅଟେ ଖ୍ୟାତ
ସଯତନେ ଶିଶୁଗଣ ବୁଝ ଦେଇ ଚିତ୍ତ ।

## ଶୃଙ୍ଗାର ଓ ବୀରରସ

ଶୁଚି, ଉଜ୍ଜ୍ୱଳ ଏନାମ ଶୃଙ୍ଗାର ରସର;
ଉତ୍ସାହବର୍ଦ୍ଧନ ବୀରରସ ନାମାନ୍ତର ।

## କରୁଣରସ

କରୁଣ ରସର ନାମ କୃପା, ଦୟା, ଘୃଣା
ଅନୁକମ୍ପା, ଅନୁକ୍ରୋଶ, କାରୁଣ୍ୟ କରୁଣା ।

## ହାସ୍ୟ ଓ ବିଭତ୍ସ ରସ

ହସ, ହାସ ନାମେ ହାସ୍ୟରସ ଅଭିହିତ
ବିଭତ୍ସ ରସ ବିକୃତ ନାମରେ ଆଖ୍ୟାତ ।

## ଅଦ୍ଭୁତ ରସ

ବିସ୍ମୟ, ଆଶ୍ଚର୍ଯ୍ୟ, ଚିତ୍ର ଏହି ପଦ ତିନି
ଅଦ୍ଭୁତ ରସର ଅନ୍ୟ ନାମ ବୋଲି ଘେନି ।

## ଭୟାନକ ରସ

ଭୈରବ, ଭୀଷ୍ମକ, ପ୍ରତିଭୟ, ଭୟଙ୍କର,
ଦାରୁଣ, ଭୀଷ୍ମ, ଭୀମ ଯେ ଭୟାନକ ଘୋର,
ଏକାର୍ଥ ବାଚକ ବୋଲି ଏହି ପଦ ମାନ
ରଖିବ ଯତନେ ମନେ ପ୍ରିୟ ଶିଶୁଗଣ ।

## ରୌଦ୍ର ଓ ଶାନ୍ତରସ

ରୌଦ୍ର ରସର ଅପର ନାମ ଉଗ୍ର, ଖ୍ୟାତ
ଶାନ୍ତ ରସର ଅପର ନାମ ଯେ ଶମିତ ।

## ଭୟ

ସାଧ୍ୱସ, ଭୀ, ଭୀତି, ତ୍ରାସ, ଦର ପୁଣି ଭୟ,
ଏକାର୍ଥ ବାଚକ ଜାଣ ଏହି ପଦ ଚୟ ।

## ଭାବ, ଅନୁଭାବ

ଏକାର୍ଥ ମନବିକାର, ଭାବ ପଦ ଦୁଇ
ଭାବବୋଧକକୁ ଅନୁଭାବ ବୋଲି କହି ।

## ଅହଂକାର ଓ ମାନ

ଅହଂକାରର ନାମ ଯେ ଗର୍ବ, ଅଭିମାନ
ଚିତ୍ତସମୁନ୍ନତି, ମାନ ଏକାର୍ଥକ ଜାଣ ।

## ଅନାଦର

ଅବହେଳା, ତିରସ୍କ୍ରିୟା, ରୀଢ଼ା, ପରିଭବ,
ଅବମାନନା, ଅବଜ୍ଞା, ପୁଣି ପରି ଭାବ,
ଅସୂକ୍ଷଣ ମିଶି ଆଠନାମେ ଅନାଦର
ବିଦିତ ଅଟଇ ଜାଣ ସୁବୋଧ କୁମର ।

## ଲଜ୍ଜା

ମନ୍ଦାକ୍ଷ, ହ୍ରୀ, ତ୍ରପା, ବ୍ରୀଡା, ଏ ଚାରି ନାମରେ
ଲଜ୍ଜା ଅଟେ ଅଭିହିତ ରଖିବ ମନରେ ।

## ଅପତ୍ରପା

ଅନ୍ୟଜନ ଠାରୁ ଯେଉଁ ଲଜ୍ଜା ହୁଏ ଜାତ
ଅପତ୍ରପା ନାମରେ ସେ ହୁଅଇ ଆଖ୍ୟାତ ।

## କ୍ଷମା ଓ ପରଧନସ୍ପୃହା

କ୍ଷାନ୍ତି, ତିତିକ୍ଷା ନାମରେ କ୍ଷମା ଅଭିହିତ;
ଅଭିଧ୍ୟା ନାମରେ ପରଧନ ସ୍ପୃହା ଖ୍ୟାତ

## ଇର୍ଷା ଓ ଅସୂୟା

ଇର୍ଷାର ଅପରି ନାମ ଅକ୍ଷାନ୍ତି ଅଟଇ;
ଗୁଣରେ ଦୋଷାରୋପକୁ ଅସୂୟା ଯେ କହି ।

## ବିରୋଧ ଓ ଶୋକ

ବୈର, ବିଦ୍ୱେଷ ଏ ବେନି ନାମ ବିରୋଧର;
ଶୁଚ, ମନ୍ୟୁ ଶୋକର ଅଟଇ ନାମାନ୍ତର ।

## ଅନୁତାପ

ବିପ୍ରତୀସାର ଯେ ପଶ୍ଚାତ୍ତାପ ପଦ ବେନି
ଅନୁତାପର ଅପର ନାମ ବୋଲି ଘେନି ।

## କ୍ରୋଧ

କୋପ, ଅମର୍ଷ, ପ୍ରତିଘ, ରୋଷ, ରୁଷ, କ୍ରୁଧ,
କ୍ରୋଧର ଅଟଇ ଏହି ଛଅ ପ୍ରତିପଦ ।

## ଶୁଚି ଚରିତ୍ର ଓ ଉନ୍ମତ୍ତତା

ଶୀଳ, ଶୁଚି ଚରିତ୍ରର ଅଟେ ପ୍ରତିପଦ
ଚିତ୍ତବିଭ୍ରମର ଅନ୍ୟ ନାମ ଯେ ଉନ୍ମାଦ ।

## ସ୍ନେହ

ପ୍ରେମ, ହାର୍ଦ୍ଦ, ପ୍ରିୟତା ଯେ ଏ ତିନି ନାମରେ
ବିଦିତ ଅଟଇ ସ୍ନେହ, ରଖିବ ମନରେ ।

## ଇଚ୍ଛା

ଦୋହଦ, ଆକାଂକ୍ଷା, ବାଞ୍ଛା ତୃଷା, ଲିପ୍ସା, ଇହା,
ମନୋରଥ, ଅଭିଳାଷ, କାମ, ତର୍ଷ, ସ୍ପୃହା,
ଏହି ଏକାଦଶ ନାମ ଅଟଇ ଇଚ୍ଛାର
ରଖିବ ମନରେ ପ୍ରିୟ ସୁବୋଧ କୁମର ।

## ଅତିଶୟ ଇଚ୍ଛା ଓ ଧର୍ମ ଚିନ୍ତା

ଅତିଶୟ ଇଚ୍ଛାକୁ ଲାଳସା ବୋଲି କହି
ଏକାର୍ଥ ଉପାଧି, ଧର୍ମଚିନ୍ତା ପଦ ଦୁଇ ।

## ମାନସିକ ବ୍ୟଥା ଓ ସ୍ମରଣ

ଆଧି ନାମରେ ଆଖ୍ୟାତ ଅଟେ ମନୋବ୍ୟାଥା
ସ୍ମରଣର ନାମ ସ୍ମୃତି, ଆଧ୍ୟାନ ଯେ ଚିନ୍ତା ।

## ଉତ୍କଣ୍ଠା ଓ ଅଧ୍ୟବସାୟ

ଏକାର୍ଥ ଉତ୍କଣ୍ଠା, ଉତ୍କଳିକା ପଦ ଦ୍ୱୟ
ଅଧ୍ୟବସାୟର ନାମ ଅଟଇ ଉତ୍ସାହ ।

## ବୀର୍ଯ୍ୟ

ଶକ୍ତି ସମନ୍ୱିତ ଅଟେ ଯେଉଁ ଉତ୍ସାହରେ
ବୀର୍ଯ୍ୟ ନାମେ ଖ୍ୟାତ ତାହା ରଖିବ ମନରେ ।

## କପଟ

ବ୍ୟାଜ, ଦମ୍ଭ, ଉପଧି, ଯେ କୈତବ ଆବର
ଛଦ୍ମ ମିଶି ପାଞ୍ଚନାମ ଅଟେ କପଟର ।

## ଶଠତା ଓ ପ୍ରମାଦ

କୁସୃତି, ବିକୃତି, ଶଠତାର ପ୍ରତିପଦ;
ଏକାର୍ଥ ଜାଣ ଅନବଧାନତା, ପ୍ରମାଦ ।

## କୌତୁକ

କୁତୂହଳ, କୌତୂହଳ, କୁତୁକ ନାମରେ
କୌତୁକ ଅଟେ ବିଦିତ ରଖିବ ମନରେ ।

## ବିଳାସ

ବିବ୍ବୋକ, ଲଳିତ, ହେଳା, ଲୀଳା ଯେ ବିଭ୍ରମ
ବିଳାସର ଅଟେ ଜାଣ ଏହି ପାଞ୍ଚନାମ ।

## ହାବ

ଶୃଙ୍ଗାର ଭାବଜ କ୍ରିୟା ହାବ ନାମେ ଖ୍ୟାତ
ସଯତନେ ଶିଶୁଗଣ ବୁଝ ଦେଇ ଚିତ୍ତ ।

## ପରିହାସ

ଦ୍ରବ, କେଳି, କ୍ରୀଡା, ଲୀଳା, ନର୍ମଯେ ଆବରି
ପରିହାସର ଏ ମାନ ଅଟେ ନାମାନ୍ତର ।

## ଛଳ

ବ୍ୟାଜ, ଅପଦେଶ, ଲକ୍ଷ୍ୟ ଏହି ତିନି ପଦ
ଛଳର ଅପର ନାମ ବୋଲି ଅଟେ ସିଦ୍ଧ ।

## କ୍ରୀଡା ଓ ଝାଳ

ଖେଳା, କୂର୍ଦ୍ଦନ କ୍ରୀଡାର ଅଟେ ପ୍ରତିପଦ
ଝାଳର ନାମ ନିଦାଘ, ଘର୍ମ ପୁଣି ସ୍ୱେଦ ।

## ନଷ୍ଟଚେଷ୍ଟା

ଶୋକାଦି ଯୋଗେ ଯେ ସ୍ଥିରଭାଗ ହୁଏ ଜାତ
ନଷ୍ଟଚେଷ୍ଟତା, ପ୍ରଳୟ ନାମେ ସେ ଆଖ୍ୟାତ ।

## ଆକାର ଗୋପନ

ଅବହିତ୍‌ଥା, ଆକାର ଗୁପ୍ତି ଏ ପଦ ବେନି
ଲଜ୍ଜା ହେତୁ ରତିଚିହ୍ନ ଗୋପନର ଘେନି ।

## ସମ୍ଭ୍ରମ

ଲଜ୍ଜାଦି ହେତୁରୁ ଯେ ଶୀଘ୍ରତା ହୁଏ ଜାତ
ସମ୍ବେଗ, ସମ୍ଭ୍ରମ ନାମେ ଅଟେ ସେ ଆଖ୍ୟାତ ।

## ଉଚ୍ଚ ହାସ୍ୟ ଓ ମୃଦୁହାସ୍ୟ

ଆଚ୍ଛୁରିତକ ନାମରେ ଉଚ୍ଚହାସ୍ୟ ଖ୍ୟାତ
ଈସତ ହାସ୍ୟର ନାମ ଅଟଇ ଯେ ସ୍ମିତ ।

## ମଧ୍ୟମହାସ୍ୟ ଓ ରୋମାଞ୍ଚ

ମଧ୍ୟମ ହାସ୍ୟକୁ ବିହସିତି ବୋଲି କହି
ଏକାର୍ଥ ରୋମାଞ୍ଚ, ଲୋମହର୍ଷଣ ଏ ଦୁଇ ।

## କ୍ରନ୍ଦନ ଓ ହାଇ

କ୍ରନ୍ଦିତ, ରଦିତ, କ୍ରୁଷ୍ଟ ନାମ କ୍ରନ୍ଦନର
ଜୃମ୍ଭା, ଜୃମ୍ଭଣ ହାଇର ଅଟେ ନାମାନ୍ତର ।

## ବିସମ୍ବାଦ

ଅଙ୍ଗୀକୃତ ଯେ ବିଷୟ ହେଲେ ଅପାଳିତ
ବିପ୍ରଲମ୍ଭ, ବିସମ୍ବାଦ ନାମେ ହୁଏ ଖ୍ୟାତ

## ସ୍ଖଳନ ଓ ନିଦ୍ରା

ସ୍ଖଳନର ନାମାନ୍ତର ଅଟଇ ଚିଙ୍ଗଣ
ନିଦ୍ରାର ଅପର ନାମ ସ୍ୱାପ ଯେ ଶୟନ ।

### ସ୍ୱପ୍ନ ଓ ତନ୍ଦ୍ରା

ସମ୍ବେଶର ନାମାନ୍ତର ଅଟଇ ସ୍ୱପନ;
ପ୍ରମିଳାର ଅନ୍ୟ ନାମ ତନ୍ଦ୍ରାବୋଲି ଜାଣ ।

### ଭ୍ରୂଭଙ୍ଗୀ ଓ ବିରାଗଦୃଷ୍ଟି

ଭ୍ରୂଭଙ୍ଗି ନାମରେ ଖ୍ୟାତ ଭ୍ରୁକୁଟି ଅଟଇ
ଅଦୃଷ୍ଟି ନାମେ ବିରାଗ-ଦର୍ଶନକୁ କହି ।

### ପ୍ରକୃତି ଓ ସ୍ୱରୂପ

ସଂସିଦ୍ଧି ନାମେ ପ୍ରକୃତି ଅଟେ ଅଭିହିତ;
ସ୍ୱଭାବ, ନିସର୍ଗ ନାମେ ସ୍ୱରୂପ ବିଦିତ ।

### କମ୍ପ

କମ୍ପର ଅପର ନାମ ବେପଥୁ ଅଟଇ
ସୁକୁମାର ଶିଶୁଗଣ ବୁଝ ମନ ଦେଇ ।

### ଉତ୍ସବ

କ୍ଷଣ, ଉଦ୍ଧର୍ଷ, ଯେ ମହ, ଆବର ଉଦ୍ଧବ
ଏ ଛଅଟି ଶବ୍ଦର ଅର୍ଥ ଅଟଇ ଉତ୍ସବ ।

## ପାତାଳ ବର୍ଗ

### ପାତାଳ

ଅଧୋଭୁବନ, ଯେ ବଳିସଦ୍ମ ରସାତଳ,
ନାଗଲୋକ, ନାମେ ଜାଣ ଆଖ୍ୟାତ ପାତାଳ ।

### ଛିଦ୍ର ଓ ଭୂମିସ୍ଥିତ ଗର୍ତ୍ତ

ବଳ, ରନ୍ଧ୍ର, ନିର୍ବ୍ୟଥନ, ଶୁଷିର, ବିବର,
ଶୁଷି, କପା, ରୋକ ପୁଣି ଶ୍ୱଭ୍ର ଯେ କୁହର,
ଏ ଦଶ ନାମରେ ଛିଦ୍ର ଅଟଇ ଆଖ୍ୟାତ
ଅବଟ ନାମରେ ଖ୍ୟାତ ଭୂମିସ୍ଥିତ ଗର୍ତ୍ତ ।

## ରନ୍ଧ୍ର ଯୁକ୍ତ ଦ୍ରବ୍ୟ

ରନ୍ଧ୍ର ଯୁକ୍ତ ଦ୍ରବ୍ୟକୁ ଶୁଷିର ବୋଲି କହି
ସୁକୁମାର ଶିଶୁଗଣ ବୁଝ ମନ ଦେଇ ।

## ଅନ୍ଧକାର

ଧ୍ୱାନ୍ତ, ତମ, ତମିସ୍ର ଯେ ଅତିର ଆବର
ଏ ପରି ନାମେ ଆଖ୍ୟାତ ଅଟେ ଅନ୍ଧକାର ।

## ଗାଢ ଅନ୍ଧକାର

ଗାଢ ଅନ୍ଧକାର ଅନ୍ଧତମସ ନାମରେ
ଆଖ୍ୟାତ ଅଟଇ ଜାଣି ରଖିବ ମନରେ ।

## ଅଳ୍ପ ଅନ୍ଧାର ଓ ବିଶ୍ୱବ୍ୟାପି ଅନ୍ଧାର

ଅଳ୍ପ ଅନ୍ଧାରର ନାମ ଯେ ଅବତମସ;
ବିଶ୍ୱବ୍ୟାପି ଅନ୍ଧାରକୁ ବୋଲି ସନ୍ତମସ ।

## ନାଗ ଓ ନାଗଈଶ୍ୱର

କାଦ୍ରବେୟ ନାମେ ଜାଣ ନାଗଗଣ ଖ୍ୟାତ
ନାଗ ଈଶ୍ୱରଙ୍କ ନାମ ଶେଷ ଯେ ଅନନ୍ତ

## ବାସୁକି

ସର୍ପରାଜ ବାସୁକିର ଅଟେ ନାମାନ୍ତର
ରଖିବ ମନରେ ପ୍ରିୟ ସୁବୋଧ କୁମର ।

## ବୋଡା ଓ ଅଜଗର

ବୋଡା ସାପର ନାମ ଯେ ତିଲିତ୍ସ, ଗୋନସ
ଅଜଗର ସାପେ କହି ଶୟୁ ଯେ ବାହସ ।

## ଜଳବୁଡା ସର୍ପ

ଅଳଗର୍ଦ୍ଦ, ଜଳବ୍ୟାଳ ଏହି ପଦ ବେନି
ଜଳବୁଡା ସାପର ଅପର ନାମେ ଘେନି ।

## ଧଣ୍ଡ ସାପ

ରାଜିଲ ଡୁଣ୍ଡୁଭ ଏହି ବେନି ଶବଦରେ
ଧଣ୍ଡ ସାପ ଅଟେ ଖ୍ୟାତ ରଖିବ ମନରେ ।

## ମାଟିବିରାଡି ସାପ

ମାଲୁଧାନ, ମାତୁଳାହି ଏହି ପଦ ବେନି
ମାଟିବିରାଡି ସାପର ନାମ ବୋଲି ଘେନି ।

## କାତିଛଡା ସାପ

ନିର୍ମୁକ୍ତ ମୁକ୍ତକଞ୍ଚୁକ, ଏ ବେନି ନାମରେ
କାତିଛଡା ସାପ ଖ୍ୟାତ ରଖିବ ମନରେ ।

## ସର୍ପ

ଆଶୀବିଷ, ବିଷଧର, ଭୁଜଗ, ଭୁଜଙ୍ଗ,
ଭୁଜଙ୍ଗମ, ଅହି, ଚକ୍ରି, ଭୁଦାକ, ପନ୍ନଗ,
ସରୀସୃପ, ବ୍ୟାଳ, ଗୂଢ଼ପାଦ, କାକୋଦର
ଚକ୍ଷୁଶ୍ରବା, ଫଣି, ଦୀର୍ଘପୃଷ୍ଠ, ଦର୍ବୀକର
ଦନ୍ଦଶୂକ, ବିଳେଶୟ, କୁଣ୍ଡଳୀ, ଉରଗ,
ଭୋଗୀ, ପବନ-ଅଶନ ଆଵର ଜିହ୍ମଗ
ଏ ଚବିଶ ନାମ ସାଧାରଣ ସର୍ପଙ୍କର
ରଖିବ ଯତନେ ମନେ ସୁବୋଧ କୁମର ।

## ସର୍ପର ବିଷ, ଅସ୍ଥି ଓ ଫଣା

ସର୍ପର, ବିଷ, ଅସ୍ଥିକି ଆହେୟ ଯେ କହି;
ଏକାର୍ଥ ଅଟଇ ଫଟା, ଫଣା ପଦ ଦୁଇ ।

## ସାପକାତି

କଞ୍ଚୁକ, ନିର୍ମ୍ମୋକ ବେନି, ନାମେ ସାପକାତି
ଅଖ୍ୟାତ ଅଟଇ ବୋଲି ଜାଣିବ ସୁମତି ।

### ସର୍ପବିଷ

କ୍ଷେବଡ, ଗରଳ ବିଷର ଅଟେ ନାମାନ୍ତର
ରଖିବ ମନରେ ପ୍ରିୟ ସୁବୋଧ କୁମର ।

### ନଅ ପ୍ରକାର ବିଷ

କାଳକୂଟ, ସୌରାଷ୍ଟ୍ରିକ, ଦାରଦ, କାକୋଳ,
ଶୌକ୍ଳକେୟ, ବ୍ରହ୍ମପୁତ୍ର, ପୁଣି ହଳାହଳ,
ପ୍ରଦୀପନ, ବତ୍ସନାଭ ଏ ନବ ନାମରେ
ନବଜାତି ବିଷଖ୍ୟାତ ରଖିନ ମନରେ ।

### ଗାରଡିଆ

ବିଷବୈଦ୍ୟ, ଜାଙ୍ଗଳିକ ଏହି ପଦ ବେନି
ଗାରଡିଆର ଅପର ନାମ ବୋଲି ଘେନି ।

### ସାପୁଆ କେଳା

ସାପୁଆ କେଳାର ନାମ ଅଟେ ବ୍ୟାଳଗ୍ରାହି
ଅହିତୁଣ୍ଡିକ ଆବର ବୁଝ ମନ ଦେଇ ।

## ନରକ ବର୍ଗ

### ନରକ

ନାରକ, ନିରୟ ପୁଣି ଦୁର୍ଗତି ନାମରେ
ନରକ ଅଟେ ଆଖ୍ୟାତ ରଖିବ ମନରେ ।

### ନରକ ବିଶେଷର ନାମ

ଅବୀଚି, ମହାରୌରବ, ରୌରବ, ତପନ,
ସଂଘାତ ଯେ କାଳସୂତ୍ର ଏହି ପଦମାନ
ନରକ ବିଶେଷର ନାମ ବୋଲି ଖ୍ୟାତ
ସୁକୁମାର ଶିଶୁଗଣ ବୁଝ ଦେଇ ଚିତ୍ତ ।

### ନରକସ୍ଥିତ ପ୍ରାଣୀ

ନାରକ, ପ୍ରେତ ନାମରେ ନରକସ୍ଥ ପ୍ରାଣୀ
ଅଭିହିତ ହୁଅଇ ରଖିବ ମନେ ଘେନି ।

### ବୈତରଣୀ ନଦୀ

ଯେ ସନ୍ତାପମୟୀ ନଦୀ ଅଛି ଯମଦ୍ୱାରେ
ବୈତରଣୀ ନାମ ତାର ରଖିବ ମନରେ ।

### ଅଲକ୍ଷ୍ମୀ ଓ ବେଠି କାର୍ଯ୍ୟ

ଅଲକ୍ଷ୍ମୀର ଅନ୍ୟନାମ ନିର୍ଋତି ଅଟଇ
ବେଠିର ଅପର ନାମ ବିଷ୍ଟି, ଆଜ୍ଞୁ ଦୁଇ ।

### ତୀବ୍ର ବେଦନା

ତୀବ୍ରବେଦନାକୁ ବୋଲି କାରଣା, ଯାତନା,
ରଖିବ ଯତନେ ମନେ ହେ ପ୍ରିୟ ସୁମନା ।

### ପୀଡା

ପୀଡାର ନାମ ଆଭୀଳ, ଦୁଃଖ, ବ୍ୟଥା, ବାଧା,
ପ୍ରସୂତିଜ, ଅମାନସ୍ୟ, ବେଦନା, ଅବାଧା,
କଷ୍ଟ, କୃଚ୍ଛ୍ର, ଋଜା, ଆର୍ତ୍ତି, ଆମନସ୍ୟ, ତୋଦ
ରଖିବ ଯତନେ ମନେ ପ୍ରିୟ ଶିଶୁ ବୃନ୍ଦ ।

## ବାରିବର୍ଗ

### ସମୁଦ୍ର

ଜଳନିଧି, ରତ୍ନାକର, ଅବ୍ଧି, ଅକୂପାର,
ଉଦଧି, ଅର୍ଣ୍ଣବ, ସରସ୍ୱାନ, ପାରାବାର,
ଅଂପାପତି, ଯାଦଃପତି, ସିନ୍ଧୁ ଯେ ସାଗର
ଉଦନ୍ୱାନ୍, ସରିତ୍‌ପତି, ଜଳଧି ଆବର
ଏତେ ପଦ ସମୁଦ୍ରର ଅଟେ ନାମାନ୍ତର
ରଖିବ ଯତନେ ମନେ ସୁବୋଧ କୁମର ।

## ସପ୍ତ ସମୁଦ୍ର

ଲବଣ ଯେ ଇକ୍ଷୁ, ଜଳ, ଘୃତ, ଦଧି ଦୁଗ୍ଧ
ସୁରା ନାମେ ଅଟେ ସପ୍ତ ସମୁଦ୍ର ପ୍ରସିଦ୍ଧ ।

## ଜଳ

ଅପ୍, ତୋୟ, ପୟ, ନୀର, ଅମୃତ, ଭୁବନ,
ସଲିଳ, ବିଳାଳ, ବନ, କମଳ, ଜୀବନ
ମେଘପୁଷ୍ପ, ଘନରସ, ପାନୀୟ, ପୁଷ୍କର,
ଅମ୍ଭ, ଅର୍ଣ୍ଣ, କ୍ଷୀର, ଅମ୍ବୁ, ଉଦକ, ଶମ୍ବର,
ସର୍ବତୋମୁଖ, କବନ୍ଧ, ପାଥ, ବାରି, ବାର,
ଏହି ଷଡବିଂଶ ନାମ ଅଟଇ ତଳଭ ।

## ଜଳଫେନ ଓ ଜଳଭଉଁରି

ଆଫ୍ୟ ଅବ୍ଧୟ ନାମରେ ଜଳ ଫେନ ଖ୍ୟାତ;
ଜଳଭଉଁରିର ନାମ ଅଟଇ ଆବର୍ତ୍ତ ।

## ଲହରୀ

ଉର୍ମ୍ମି ବୀଚି ଭଙ୍ଗ ପୁଣ ତରଙ୍ଗ ନାମରେ
ଲହରୀ ହୁଏ ଆଖ୍ୟାତ ରଖିବ ମନରେ ।

## ମହା ଲହରୀ

ଉଲ୍ଲୋଳ କଲ୍ଲୋଳ ଏହି ବେନିନାମେ ଜାଣ
ମହାଲହରୀ ଆଖ୍ୟାତ ପ୍ରିୟ ଶିଶୁଗଣ ।

## ଜଳବିନ୍ଦୁ

ପୃଷନ୍ତି ଯେ ଜଳବିନ୍ଦୁ ବିପ୍ରୁଷ ପୃଷତ
ଏକାର୍ଥେ ଏପରି ନାମ ହୁଅଇ କଥିତ ।

## ନଈବାଙ୍କ

ବକ୍ର ପୁଣି ପୁଟଭେଦ ଏହି ପଦ ବେନି
ନଈବାଙ୍କର ଅପର ନାମବୋଲି ଘେନି ।

### ଝରଣା

ଜଳନିର୍ଗମ ଯେ ଭ୍ରମ ଏବେନି ନାମରେ
ଝରଣା ଅଟେ ଆଖ୍ୟାତ ରଖିବ ମନରେ ।

### ନଦୀକୂଳ ଓ ନଦୀପାର

ଏକାର୍ଥ ପ୍ରତୀର, ତୀର, କୂଳ, ତଟ, ରୋଧ;
ନଦୀ-ପର ପ୍ରାନ୍ତ ପାର ନାମରେ ପ୍ରସିଦ୍ଧ ।

### ନଦୀର ପୂର୍ବପାର ଓ ପୁଳିନ

ନଦୀ-ପୂର୍ବ ପାର ନାମ ଅଟଇ ଅବାର
ପୁଳିନ ନାମେ ଆଖ୍ୟାତ କଲୋଳ୍ଝିତ ତୀର ।

### ବେନିତୀରର ମଧ୍ୟବର୍ତ୍ତୀ ସ୍ଥାନ

ପାତ୍ର ନାମେ ବେନି ତୀର-ମଧ୍ୟବର୍ତ୍ତି ସ୍ଥାନ
ଅଖ୍ୟାତ ଅଟଇ ଜାଣ ପ୍ରିୟ ଶିଶୁଗଣ ।

### ଜଳ ମଧ୍ୟସ୍ଥିତ ଦୀପ ଓ ସିକତାମୟ କୂଳ

ଅନ୍ତରୀପ ନାମେ ଜଳମଧ୍ୟ ଦୀପ ଖ୍ୟାତ;
ସିକତାମୟ କୂଳକୁ ବୋଲନ୍ତି ସୈକତା ।

### ପଙ୍କ

ଜମ୍ବାଳ, କର୍ଦ୍ଦମ, ଶାଦ, ପୁଣି ନିଷଦ୍ବର
ଏପଦ ମାନ ପଙ୍କର ଅଟେ ନାମାନ୍ତର ।

### ଜଳ ଉଚ୍ଛୁଳିବାର ନାମ

ଜଳୋଚ୍ଛ୍ବାସ, ପରୀବାହ, ଏହି ପଦବେନି
ସଳିଳ ଉଚ୍ଛୁଳିବାର ନାମ ବୋଲି ଘେନି ।

### ଶୁଷ୍କ ନଦୀ ଗର୍ଭର କୂଅ

ଶୁଷ୍କ ନଦୀରେ ଖୋଦିତ ଜଳ ପୂର୍ଣ୍ଣ ଗର୍ତ୍ତ
କୂପକ ଯେ ବିଦାରକ ନାମେ ଅଟେ ଖ୍ୟାତ ।

## ନୌକାଗମ୍ୟ ସ୍ଥାନ ଓ ନୌକା

ନାବ୍ୟ ନାମେ ଖ୍ୟାତ ନୌକା ଯୋଗେ ଗମ୍ୟ ସ୍ଥାନ
ଏକାର୍ଥନୌକା, ନୌ, ତରୀ, ତରଣୀ ଏମାନ ।

## ଭେଳା

ଉଡ଼ୁପ ଯେ ପ୍ଲବ, କୋଳ, ଏହି ପଦ ତିନି
ଭେଳାର ଅପର ନାମ ରଖ ମନେ ଘେନି ।

## ସ୍ରୋତ ଓ ନାବିକ

ସ୍ୱତଃଜଳ ଗମନକୁ ସ୍ରୋତ ନାମେ କହି;
ଏକାର୍ଥ ନାବିକ, କର୍ଣ୍ଣଧାର ପଦ ଦୁଇ ।

## ନୌକା ଯୋଗେ ପାରିହେବାର ବେତନ

ନୌକା ଆରୋହଣେ ପାର ହେବା ବେତନର
ନାମ ଅଟେ ଖ୍ୟାତ ତରପଣ୍ୟ ଯେ ଆତର ।

## ଜଳସେଚନୀ

କାଷ୍ଠରେ ନିର୍ମିତ ହୁଏ ଯେ ଜଳସେଚନୀ
ନାମତାର ଦ୍ରୋଣୀ ପୁଣି କାଷ୍ଠାମ୍ବୁବାହିନୀ ।

## ସାମୁଦ୍ରିକ ବଣିକ

ସାମୁଦ୍ରିକ ବାଣିଜ୍ୟ କରଇ ଯେଉଁ ନର
ପୋତବଣିକ ଯେ ସାଂଯାତ୍ରିକ ନାମ ତାର ।

## ଦଣ୍ଡବାହି ନାବିକ

ପୋତବାହକ ଯେ ନିୟାମକ ପଦବେନି
ଦଣ୍ଡ ବାହି ନାବିକର ନାମ ବୋଲି ଘେନି ।

## ନୌକାର ଦୌଡି ବନ୍ଧା ହେବାର ସ୍ତମ୍ଭ

କୂପକ, ଗୁଣବୃକ୍ଷକ ଏବେନି ନାମରେ
ନୌକା ଗୁଣବନ୍ଧ ସ୍ତମ୍ଭ ରଖିବ ମନରେ ।

## କାତ ବାଡି

ନୌକାଦଣ୍ଡ, କ୍ଷେପଣି ଏବେନି ନାମେ ଜାଣ
କାତବାଡି ଅଟେ ଖ୍ୟାତ ପ୍ରିୟ ଶିଶୁଗଣ ।

## କେରୁଆଳ

କେନିପାତକ, ଅଚିତ୍ର, ଏବେନି ନାମରେ
କେରୁଆଳ ଅଟେଖ୍ୟାତ ରଖିବ ମନରେ ।

## ନୌକା ପରିଷ୍କାରକ କାଷ୍ଠ କୁଦାଳ

ଅଭ୍ରିନାମ ଅଟେଖ୍ୟାତ କାଷ୍ଠକୁଦାଳର
ତାହା ଯୋଗେ ନଉକା କରନ୍ତି ପରିଷ୍କାର ।

## ନୌକାର ଜଳସେଚନ ପାତ୍ର

ଯେ ପାତ୍ରେ ନୌକାର ଜଳ କରନ୍ତି ସେଚନ
ନାମ ତାର ସେକପାତ୍ର ଆବର ସେଚନ ।

## ନଦୀ ଅତିକ୍ରାନ୍ତ ନୌକା

ନଦୀ ଅତିକ୍ରମି ଯେଉଁ ନୌକା ପର ପାରେ
ଥାଏ, ତାହା ଅଭିହିତ ଅତିନୁ ନାମରେ ।

## ନିର୍ମଳ ଓ ଗୋଳିଆ

ନିର୍ମଳର ନାମାନ୍ତର ନିର୍ମଳ ଓ ଅଚ୍ଛ;
ଗୋଳିଆ-ନାମ ଆବିଳ, କଳୁଷ, ଅନଚ୍ଛ ।

## ନିମ୍ନ ଓ ଉପର

ନିମ୍ନର ଅପର ନାମ ଗଭୀର, ଗମ୍ଭୀର;
ଏକାର୍ଥ ଅଟଇ ଜାଣ ଉତ୍ତାନ ଉପର ।

## ଅତିଗଭୀର

ଅଗାଧ, ଅତଳସ୍ପର୍ଶ ଏବେନି ନାମରେ
ଅତିଗଭୀର ଆଖ୍ୟାତ ରଖିବ ମନରେ ।

## କେଉଟ ଓ ଜାଲ

କେଉଟର ନାମ ଦାସ, କୈବର୍ତ୍ତ, ଧୀବର;
ଆନାୟ ଜାଲର ଜାଣ ଅଟେ ନାମାନ୍ତର ।

## ଛଣିପଟ

ଶଣସୂତ୍ର, ପବିତ୍ରକ, ଏହି ପଦ ବେନି
ଛଣିପଟର ଅପର ନାମ ବୋଲି ଘେନି ।

## ମାଛରଖା ଖଲେଇ

ମତ୍ସ୍ୟଧାନୀ, କୁବେଣୀ ଯେ ଏହି ପଦ ଦୁଇ
ମାଛରଖା ଖଲେଇର ନାମ ବୋଲି କହି ।

## ମାଛକଣ୍ଟା

ବଡ଼ିଶ, ମତ୍ସ୍ୟବେଧନ ଏବେନି ନାମରେ
ମାଛ କଣ୍ଟା ଅଭିହିତ ରଖିବ ମନରେ ।

## ମତ୍ସ୍ୟ

ଶକୁଳୀ, ବିସାର ପୁଣି ପୃଥୁରୋମା, ମୀନ
ଅଣ୍ଡକ, ମତ୍ସ୍ୟ ଆବର ଝସ, ବୈସାରିଣ,
ମାଛର ଅଟଇ ଏହି ଆଠ ପ୍ରତିପଦ
ମତ୍ସ୍ୟ ଭେଦେ ନାମ ଭେଦ ଶୁଣ ଶିଶୁ ବୃନ୍ଦ ।

## ଗଡିଶା ମାଛ

ଗଡକ, ଶକୁଳାର୍ଭକ ଏବେନି ନାମରେ
ଗଡଶା ମାଛ ଆଖ୍ୟାତ ରଖିବ ମନରେ ।

## ବାଳିଆ ମାଛ

ସହିସ୍ରଦଂଷ୍ଟ୍ରା, ପାଠିନ ଏହିପଦ ବେନି
ବାଳିଆ ମାଛର ନାମାନ୍ତର ବୋଲି ଘେନି ।

## ଚେଙ୍ଗ ମାଛ

ଉଲୁପି, ଶିଶୁକ ଏହି ଦୁଇ ନାମେ ଜାଣ
ଚେଙ୍ଗମାଛ ଅଭିହିତ ପ୍ରିୟ ଶିଶୁଗଣ ।

## ଏଣ୍ଡଲା ମାଛ

ନଲମୀନ, ଚିଲିଚିମ ଏବେନି ଶବଦ
ଏଣ୍ଡାଳ ମାଛର ଜାଣ ଅଟେ ପ୍ରତିପଦ ।

## କରାଣ୍ଡି ମାଛ

କରାଣ୍ଡିମାଛ, ସଫରୀ, ପ୍ରୋଷ୍ଠୀନାମେ ଖ୍ୟାତ,
ସୁକୁମାର ଶିଶୁଗଣ ବୁଝଦେଇ ଚିତ୍ତ ।

## ମାଛ ମନ୍ଦା

କ୍ଷୁଦ୍ରାଣ୍ଡ, ମତ୍ସସଂଘାତ ପୁର ପୋତାଧାନ
ବେନିନାମେ ମାଛମନ୍ଦା ଅଭିହିତ ଜାଣ,
ଯେଉଁ କ୍ଷୁଦ୍ର ମତ୍ସ୍ୟଦଳ ସଦ୍ୟ ଡିମ୍ବ ଜାତ
ମାଛମନ୍ଦା ନାମେ ସେହୁ ଅଟନ୍ତି ଆଖ୍ୟାତ ।

## ମତ୍ସ୍ୟଭେଦ

ରୋହିତ, ରାଜିବ, ଶାଳ, ଶକୁଳ, ମଙ୍ଗୁର,
ତିମି, ତିମିଙ୍ଗିଳ, ନାମ ମତ୍ସ୍ୟ ପ୍ରଭେଦର ।

## ଜଳଜନ୍ତୁ ଓ କଚ୍ଛପ

ଯାଦଃ ନାମେ ଜଳଜନ୍ତୁ ହୁଅନ୍ତି ଆଖ୍ୟାତ;
କଚ୍ଛପ, କୂର୍ମ୍ମ, କମଠ ନାମେ ଅଭିହିତ ।

## ଜଳଜନ୍ତୁ ଭେଦ

ଶଙ୍କର, ମକର, ଭଦ୍ରପୁଣି ଶିଶୁମାର
ଏହି ନାମଧରି ଜଳଜନ୍ତୁ ବିଶେଷର ।

## କଙ୍କଡା

କର୍କଟକ, କୁଳିର ଏବେନି ନାମେ ଜାଣ
କଙ୍କଡା ଅଟେ ଆଖ୍ୟାତ ପ୍ରିୟ ଶିଶୁଗଣ ।

## ହାଙ୍ଗର ଓ କୁମ୍ଭୀର

ହାଙ୍ଗର ମାଛର ନାମ ଗ୍ରାହ, ଅବହାର;
ନକ୍ରନାମେ ଅଭିହିତ ଅଟଇ କୁମ୍ଭୀର ।

## ଜିଆ

ମହୀଲତା, କିଞ୍ଚୁଲୁକ ପୁଣି ଗଣ୍ଡୁପଦ
ଏତିନି ନାମ ଜିଆର ଜାଣ ଶିଶୁବୃନ୍ଦ ।

## ଗୋଧି ଓ ଜୋକ

ଗୋଧିର ଅପର ନାମ ନିକାହା, ଗୋଧିକା;
ଜୋକର ପ୍ରସିଦ୍ଧ ନାମ ରକ୍ତପା, ଜଳୌକା ।

## ମୁକ୍ତାଜାତକାରୀ ଶାମୁକା

ମୁକୁତା ହୁଅଇ ଯେଉଁ ଶାମୁକାରୁ ଜାତ
ମୁକ୍ତାସ୍ଫୋଟ, ଶୁକ୍ତିନାମେ ଅଟେ ସେ ଆଖ୍ୟାତ ।

## ଶାମୁକା

ଶମ୍ବୁକ ଯେ ଜଳଶୁକ୍ତି ଏବେନି ନାମରେ
ଶାମୁକା ଅଟେ ଆଖ୍ୟାତ ରଖିବ ମନରେ ।

## ଶଙ୍ଖ ଓ କ୍ଷୁଦ୍ର ଶଙ୍ଖ

ଶଙ୍ଖର ଅପର ନାମ କମ୍ବୁ ଅଟେ ଖ୍ୟାତ;
କ୍ଷୁଦ୍ରଶଙ୍ଖ, ଶଙ୍ଖନଖ ନାମେ ଅଭିହିତ ।

## ବେଙ୍ଗ

ଭେକ, ମଣ୍ଡୁକ, ବର୍ଷାଭୂ, ଶାଲୁର, ଦର୍ଦ୍ଦୁର
ପ୍ଲବ ମିଶି ଛଅନାମ ଅଟଇ ବେଙ୍ଗର ।

## ସ୍ତ୍ରୀ ଜାତୀୟ ଜିଆ

ଶିଳୀ, ଗଣ୍ଡୁପଦୀ ଏହି ବେନି ନାମେ ଜାଣ
ସ୍ତ୍ରୀ ଜାତୀୟ ଜିଆ ଖ୍ୟାତ ପ୍ରିୟ ଶିଶୁଗଣ ।

## ସ୍ତ୍ରୀ ଜାତୀୟ କଚ୍ଛପ

ସ୍ତ୍ରୀ ଜାତି କଚ୍ଛପ ଦୁଳୀ, କମଠୀ ନାମରେ
ଆଖ୍ୟାତ ଅଟଇ ଜାଣି ରଖିବ ମନରେ ।

## ବେଙ୍ଗୁଲୀ ଓ ସ୍ତ୍ରୀ ଜାତୀୟ ମାଗୁର ମାଛ

ବେଙ୍ଗୁଲୀ ବର୍ଷାମ୍ବୀ, ଭେକୀ ନାମେ ଅଭିହିତ;
ସ୍ତ୍ରୀ ଜାତି ମାଗୁର ମାଛ ଶୃଙ୍ଗୀ ନାମେ ଖ୍ୟାତ ।

## ଗେଣ୍ଡା

ଦୁର୍ନାମ, ଦୀର୍ଘକୋଷିକା ଏହି ପଦ ବେନି
ସାମାନ୍ୟ ଗେଣ୍ଡାର ଅନ୍ୟ ନାମ ବୋଲି ଘେନି ।

## ଜଳାଶୟ ଓ ଅଗାଧ ଜଳାଶୟ

ଜଳାଧାର, ନାମେ ଜଳାଶୟ ଅଭିହିତ;
ଅଗାଧଯେ ଜଳାଶୟ ହ୍ରଦ ନାମେ ଖ୍ୟାତ ।

## ଆହାବ ଓ କୂପ

ଗବାଦିଙ୍କ ପାନ ଅର୍ଥେକୂପ ସମୀପରେ
ନିର୍ମ୍ମିତ ଯେ ଜଳାଶୟ ପ୍ରସ୍ତର ଆଦିରେ
ନାମ ତାହାର ଆହାବ ଆବର ନିପାନ;
କୂପନାମ ଜାଣ ଅନ୍ଧୁ, ପ୍ରହି, ଉଦପାନ ।

## କୂପର ପ୍ରାନ୍ତଭୂମି ଓ ଘୋଡଣି

କୂପ-ପ୍ରାନ୍ତଭୂମି ତ୍ରିକ, ନେମି ବୋଲି ଖ୍ୟାତ;
କୂପ-ଘୋଡଣି ବିନାହ ନାମେ ଅଭିହିତ ।

## ପୁଷ୍କରିଣୀ

ପୁଷ୍କରିଣୀର ଅପର ନାମ ଅଟେ ଖ୍ୟାତ
ସୁକୁମାର ଶିଶୁଗଣ ବୁଝ ଦେଇ ଚିତ୍ତ ।

## ଦେବଖାତ

ସ୍ୱଭାବରୁ ଜାତ ଅଟେ ଯେଉଁ ଦେବଖାତ
ଆଖ୍ୟାତ ଦେବଖାତକ ନାମେସେ ଆଖ୍ୟାତ ।

## ପଦ୍ମ ଶୋଭିତ ଅଗାଧ ଜଳାଶୟ

ଯେ ଅଗାଧ ଜଳାଶୟ ପଦ୍ମେ ମନୋହର
ନାମ ତାର ପଦ୍ମାକର, ତଡାଗ, କାସାର,
ତଡାଗର ନାମାନ୍ତର ସରସୀ ଯେ ସର,
ରଖିବ ମନରେ ପ୍ରିୟ ସୁବୋଧ କୁମର ।

## କ୍ଷୁଦ୍ର ଜଳାଶୟ

ବେଶନ୍ତ, ପଲ୍ୱଳ, ଅଳ୍ପସର ପଦ ତିନି
କ୍ଷୁଦ୍ର ଜଳାଶୟର ଅପର ନାମେ ଘେନି ।

## ବାପୀ ଓ ଗଡଖାଇ

ଦୀର୍ଘିକା ନାମରେ ବାପୀ ଅଟେ ଅଭିହିତ;
ଖେୟ, ପରୀଖା ନାମରେ ଗଡଖାଇ ଖ୍ୟାତ ।

## ଶସ୍ୟ କ୍ଷେତ୍ର ପାଇଁ ବନ୍ଧଯୋଗେ ସଞ୍ଚିତ ଜଳାଧାର

ଜଳାଶୟ ବନ୍ଧଯୋଗେ ହୋଇଣ ନିର୍ମିତ
ଶସ୍ୟକ୍ଷେତ୍ର ପାଇଁ ଜଳ ହୁଅଇ ସଞ୍ଚିତ
ଆଧାର ନାମରେ ସେହୁ ଅଟେ ଅଭିହିତ
ସୁକୁମାର ଶିଶୁଗଣ ବୁଝ ଦେଇ ଚିତ୍ତ ।

## ନଦୀ

ସ୍ରୋତସ୍ୱତୀ, ଶୈବଳିନୀ, ସରିତ୍, ତଟିନୀ,
ତରଙ୍ଗିଣୀ, ଦ୍ୱୀପବତୀ, ସ୍ରବନ୍ତୀ, ହ୍ରାଦିନୀ,
ନିମ୍ନଗା, ଆପଗା, ଧୁନୀ, ଏହି ପଦମାନ
ନଦୀର ଅପରନାମ ଜାଣ ଶିଶୁଗଣ ।

## ଗଙ୍ଗାନଦୀ

ଭୀଷ୍ମସୂ, ତ୍ରିସ୍ରୋତା, ତ୍ରିପଥଗା, ମନ୍ଦାକିନୀ,
ବିଷ୍ଣୁପଦୀ, ଭାଗୀରଥୀ, ସୁର-ତରଙ୍ଗିଣୀ
ଜହ୍ନୁ-ନନ୍ଦିନୀ, ଜାହ୍ନବୀ ଏନବ ନାମରେ,
ଗଙ୍ଗାନଦୀ ଅଟେ ଖ୍ୟାତ ରଖିବ ମନରେ ।

## ଯମୁନା ନଦୀ

ସୂର୍ଯ୍ୟତନୟା, କାଳିନ୍ଦୀ, ଶମନ-ଭଗିନୀ
ଏତେ ନାମେ ଅଭିହିତ ଯମୁନା ତଟିନୀ ।

## ନର୍ମଦା ନଦୀ

ମେକଳ କନ୍ୟକା, ସୋମୋଦ୍ଭବା ଯେ ଆବର
ରେବାମିଶି ନାମତିନି ନର୍ମ୍ମଦା ନଦୀର ।

## କରତୋୟା[୧] ଓ ବାହୁଦା ନଦୀ[୨]

କରତୋୟା ନଦୀ ସଦାନୀରା ନାମେ ଖ୍ୟାତ;
ବାହୁଦା ସୈତବାହିନୀ ନାମେ ଅଭିହିତ ।

## ଶତଦ୍ରୁ[୩] ଓ ୪ ବିପାଶାନଦୀ [୪]

ଶିତଦ୍ରୁ ନାମ ଅଟଇ ଶତଦ୍ରୁ ନଦୀର;
ବିପାଶ ଅଟଇ ବିପାଶାର ନାମାନ୍ତର ।

□□

---

୧- ପୂର୍ବେ ଏହି ନଦୀ ମହାସ୍ରୋତସ୍ୱତୀ ରୂପେ ପ୍ରବାହିତ ହେଉଥିଲା । ବର୍ତ୍ତମାନ କ୍ଷୁଦ୍ରାକାରରେ ଜଳପାଇଗୁଡ଼ି ଜିଲ୍ଲାର ଉତ୍ତର ପଶ୍ଚିମରେ ବୈକୁଣ୍ଠପୁର ନାମକ ଜଙ୍ଗଲରୁ ଉତ୍ପନ୍ନ ହୋଇ ଦକ୍ଷିଣ ଗତିରେ ଆସି ରଙ୍ଗପୁର ମଧ୍ୟ ଦେଇ ବଗୁଡ଼ା ଜିଲ୍ଲାର ଦକ୍ଷିଣରେ 'ହଲହଲିଆ' ନଦୀ ସଙ୍ଗେ ମିଶିଅଛି ।

୨- ହିମାଳୟ ନିସୃତା ସ୍ୱନାମ ଖ୍ୟାତ ନଦୀ ବିଶେଷ

୩- ଚୀନ ଶାସନାଧୀନ ହିମାଳୟ ପ୍ରଦେଶରୁ ଉତ୍ପନ୍ନ ହୋଇ ଏଲିବାଳ ନଦୀ ସଂଗେ ମିଶିଅଛି । ଏହାର ଆଧୁନିକ ନାମ ଶତଲେଜ୍ ।

୪-ଏହାର ଆଧୁନିକ ନାମ ବିୟସ୍ ।

## ଶୋଣ[୧] ନଦୀ ଓ କୃତ୍ରିମ କ୍ଷୁଦ୍ର ତଟିନୀ

ହିରଣ୍ୟବାହୁ ନାମରେ ଶୋଣ ଅଭିହିତ;
କ୍ଷୁଦ୍ର କୃତ୍ରିମ ତଟିନୀ କୁଲ୍ୟାନାମେ ଖ୍ୟାତ ।

## ପାଞ୍ଚଟି ବିଖ୍ୟାତ ନଦୀ

ଶରାବତୀ ୨; ଚନ୍ଦ୍ରଭାଗା ୩, ବେତ୍ରବତୀ ୪ ପୁଣି
ସରସ୍ୱତୀ ୫, କାବେରି ୬ ଏ ପଞ୍ଚନଦୀ ଜାଣି ।

୧- ଛତିଶଗଡର ଉତ୍ତରସ୍ଥ ରତନପୁର ଅନ୍ତର୍ଗତ ଅମର କଣ୍ଟକ ପର୍ବତର ଉଚ୍ଚଅଧିତ୍ୟକା ଭୂମିର ବହିର୍ଗତ ହୋଇ ଗଙ୍ଗାର ଦକ୍ଷିଣ କୂଳରେ ଆସି ମିଶି ଅଛି ।

୨- ଭୂତତ୍ତ୍ୱବିଦ୍‌ମାନଙ୍କ ଅନୁମାନରେ ଏହାର ନାମାନ୍ତର 'ରାମଗଙ୍ଗା ନଦୀ' । କୁମାୟୁନ ରୋହିଲଖଣ୍ଡ ଓ ଯୁକ୍ତ ପ୍ରଦେଶରେ ପ୍ରବାହିତ ।

୩- ପଞ୍ଜାବର ପଞ୍ଚନଦର ଅନ୍ୟତମ । ତାଣ୍ଡି ନଗର ନିକଟରେ ଚନ୍ଦ୍ର ଓ ଭାଗା ନାମକନଦ ଦ୍ୱୟର ସଂଯୋଗରେ ଚନ୍ଦ୍ରଭାଗା ନାମ ଧାରଣ କରି ପ୍ରବାହିତ ହେଉଅଛି ।

୪- ଏହାର ନାମାନ୍ତର ବେତ୍‌ବା; ମାଳବ ଦେଶରୁ ଉତ୍ପନ୍ନ ହୋଇ ଯମୁନା ନଦୀରେ ମିଳିତ ହୋଇଅଛି ।

୫- ଏହି ନଦୀ ପୁରାତନ ବୈଦିକ ଯୁଗରୁ ହିନ୍ଦୁ ଆର୍ଯ୍ୟମାନଙ୍କର ପରମ କଲ୍ୟାଣଦାୟିନୀ ସିରମୁର୍ ରାଜ୍ୟର କ୍ଷୁଦ୍ର ଶୈଳମାଳାର ବହିର୍ଗତ ହୋଇ ଥାନେଶ୍ୱର ଓ କୁରକ୍ଷେତ୍ର ଭେଦକରି କର୍ଣ୍ଣାଳ ଜିଲ୍ଲା ଓ ପାତିୟାଳା ରାଜ୍ୟରେ ପ୍ରବେଶ କରି ଆସି ସିର୍ସା ଜିଲ୍ଲାରେ କାଗାର (ଦୃଷଦ୍‌ବତୀ) ନଦୀରେ ମିଶିଅଛି । ପୂର୍ବେ ଏହି ନଦୀର ବିଶାଳ ଜଳରାଶି ବହୁ ପ୍ରଦେଶରେ ଜଳସିକ୍ତ କରି ଗଙ୍ଗାଯମୁନା ସଂଗେ ମିଶି ତ୍ରିବେଣୀର ସୃଷ୍ଟି କରିଥିଲା । ସରସ୍ୱତୀ ନଦୀ ବର୍ତ୍ତମାନ ମଧ୍ୟ ପ୍ରୟାଗରେ ଅନ୍ତଃସଲିଳା ରୂପେ ପ୍ରବାହିତ ବୋଲି ସାଧାରଣର ବିଶ୍ୱାସ ।

୬.- ଦକ୍ଷିଣାପଥରେ ପ୍ରବାହିତ ଗୋଟିଏ ନଦୀ କୁରଗ ରାଜ୍ୟରେ ପଶ୍ଚିମଘାଟରେ ବ୍ରହ୍ମଗିରି ଠାରୁ ନିର୍ଗତ ହୋଇ ଦକ୍ଷିଣ ପୂର୍ବାଭିମୁଖରେ ମହୀସୁର ଅଧିତ୍ୱକା ଅତିକ୍ରମ କରି ମାନ୍ଦ୍ରାଜ ପ୍ରଦେଶ ମଧ୍ୟ ଦେଇ ବଙ୍ଗୋପସାଗରରେ ପଡିଅଛି ।

## ନଦୀ ଓ ସିନ୍ଧୁର ସଂଗମସ୍ଥାନ

ନଦୀ ସିନ୍ଧୁର ମିଳନ ହୁଏ ଯେ ସ୍ଥାନରେ
ସମ୍ଭେଦ ନାମ ତାହାର ରଖିବ ମନରେ ।

## କ୍ଷୁଦ୍ର ଓ କୃତ୍ରିମ ଜଳପଥ ଅର୍ଥାତ୍ ଅଣା

କ୍ଷୁଦ୍ର କୃତ୍ରିମ ଅଟଇ ଯେଉଁ ଜଳପଥ
ପ୍ରଣାଳୀ, ପୟପଦବୀ ନାମେ ସେ ଆଖ୍ୟାତ ।

## ଦେବୀକା ନଦୀ ଜାତ ଦ୍ରବ୍ୟ

ଦେବୀକା ନଦୀରେ ଯେଉଁ ପଦାର୍ଥ ଜନ୍ମଇ
ଦାବିକ ନାମରେ ତାହା ବିଖ୍ୟାତ ଅଟଇ ।

## ସରଯୂନଦୀ ଜାତଦ୍ରବ୍ୟ

ସରଯୂ ନଦୀରେ ଜାତ ଅଟେ ଯେଉଁ ଦ୍ରବ୍ୟ
ପ୍ରସିଦ୍ଧ ନାମ ତାହାର ଅଟଇ ସାରବ ।

## କୁମୁଦ

ଚନ୍ଦ୍ରକାନ୍ତା, କୁମୁଦିନୀ, କୈରବ, କହ୍ଲାର
ଇନ୍ଦୁକମଳ, ଚନ୍ଦ୍ରିକାମ୍ବୁଜ ଯେ ଆବର ।
ଗନ୍ଧ ସୋମ ମିଶି ଏହି ସପତ ନାମରେ
ଆଖ୍ୟାତ ଅଟେ କୁମୁଦ ରଖିବ ମନରେ ।

## ଶ୍ୱେତପଦ୍ମ

ଶତପତ୍ର, ପୁଣ୍ଡରୀକ, ନଳ, ସିତାମ୍ଭୋଜ
ମହାପଦ୍ମ, ମହୋତ୍ପଳ, ନଳିନ, ସରୋଜ
ଏତେନାମେ ଶ୍ୱେତପଦ୍ମ ଅଟେ ଅଭିହିତ
ସୁକୁମାର ଶିଶୁଗଣ ବୁଝ ଦେଇ ଚିତ୍ତ ।

## ରକ୍ତପଦ୍ମ

ଅରୁଣ କମଳ, ରକ୍ତୋତ୍ପଳ, କୋକନଦ
ହିଲ୍ଲନ, ରକ୍ତାମ୍ବୁ, ରବିପ୍ରିୟ, ଅରବିନ୍ଦ
ଶୋଣପଦ୍ମ ପୁଣି ରକ୍ତସନ୍ଧିକ ନାମରେ
ରକ୍ତପଦ୍ମ ଅଭିହିତ ରଖିବ ମନରେ ।

## ନୀଳୋତ୍ପଳ

ନୀଳୋତ୍ପଳ, କୁବଳୟ, ଭଦ୍ର, ଇନ୍ଦୀବର
ଏ ନାମଚାର ଅଟଇ ନୀଳଉତ୍ପଳର ।

## ସାଧାରଣ ପଦ୍ମ

ପଙ୍କେରୁହ, ସରସୀଜ, ସାରସ, ସରୋଜ
କମଳ, ରାଜୀବ, କଞ୍ଜ, ଅମ୍ବୁଜ, ପଙ୍କଜ
ତାମରସ, ବିସିନୀ ଯେ ଉତ୍ପଳ ନାମରେ
ସାଧାରଣ ପଦ୍ମଖ୍ୟାତି ରଖିବ ମନରେ ।

## ପଦ୍ମଲତା

ମୂଳ, ଦଳ, ପୁଷ୍ପଯୁକ୍ତି ଯେଉଁ ପଦ୍ମଲତା
କମଳିନୀ ନାମେ ସେହୁ ହୁଏ ଅଭିହିତା

## ପଦ୍ମର କନ୍ଦା ଓ କେଶର

ପଦ୍ମର କନ୍ଦାର ନାମ ଅଟଇ ଶାଳୁକ;
କେଶରର ନାମାନ୍ତର ଅଟଇ କିଞ୍ଜଲ୍କ ।

## ପଦ୍ମନାଳ ଓ ମୃଣାଳ ଅର୍ଥାତ୍ ପଦ୍ମଚେର

ନାଳାନାମେ ପଦ୍ମନାଳ ଅଟେ ଅଭିହିତ;
ମୃଣାଳର ନାମାନ୍ତର ବିସ ବୋଲି ଖ୍ୟାତ ।

## ପଦ୍ମର ନୂତନ ପତ୍ର

ସମ୍ବର୍ତ୍ତିକା ନବଦଳ ଏବେନି ନାମରେ
ପଦ୍ମର ନୂତନ ପତ୍ର ରଖିବ ମନରେ ।

## ବୀଜକୋଷ

ବୀଜକୋଷର ଅପର ନାମ ବରାଟକ
ରଖିବ ମନରେ ପ୍ରିୟ ସୁବୋଧ ବାଳକ

## ପଦ୍ମମଧୁ ଓ ପଦ୍ମବନ

ମକରନ୍ଦ ନାମେ ଜାଣ ପଦ୍ମମଧୁ ଖ୍ୟାତ;
ଷଣ୍ଡନାମେ ପଦ୍ମବନ ଅଟେ ଅଭିହିତ ।

### ଚେରଯୁକ୍ତ ପଦ୍ମମୂଳ

କରହାଟ, ଶିଫାକନ୍ଦ ଏବେନି ନାମରେ
ଚେରଯୁକ୍ତ ପଦ୍ମମୂଳ ରଖିବ ମନରେ ।

### ପାଣି 'ଦଳ'

ବାରିପର୍ଣ୍ଣୀ, କୁମ୍ଭିକା ଏବେନି ନାମେ ଜାଣ
ପାଣି 'ଦଳ' ଅଟେ ଖ୍ୟାତ ପ୍ରିୟ ଶିଶୁଗଣ ।

## ଭୂମିବର୍ଗ

### ପୃଥ୍ୱୀ ଓ ମାଟି

ଅଚଳା, ଅନନ୍ତା, ରସା, ସ୍ଥିରା, ବିଶ୍ୱମ୍ଭରା
ଧରଣୀ, ଧରିତ୍ରୀ, କ୍ଷୌଣୀ, ସର୍ବଂସହା, ଧରା,
କାଶ୍ୟପୀ, ଜ୍ୟା, ଭୂ, ମେଦିନୀ, ମହୀ, ବସୁମତୀ
ବସୁଧା, ଅବନୀ, ଗୋତ୍ରା, ବସୁନ୍ଧରା, କ୍ଷିତି
ଉର୍ବୀ, କୁ, ଭୂମିନାମରେ ପୃଥିବୀ ଆଖ୍ୟାତ
ମୃତ୍, ମୃତ୍ତିକା ନାମରେ ମାଟି ଅଭିହିତ ।

### ଉତ୍ତମ ମାଟି ଓ ଖାରୁଆ ମାଟି

ଉତ୍ତମ ମାଟିକି ମୃତ୍ସା, ମୃତ୍ସ୍ନା ବୋଲି କହି;
ଏକାର୍ଥ କ୍ଷାରମୃତ୍ତିକା, ଉଷ, ପଦଦ୍ୱଇ ।

### ଉର୍ବରମାଟି

ଯେଉଁ ମୃତ୍ତିକାରେ ନାନା ଶସ୍ୟ ହୁଏ ଜାତ
ଉର୍ବରା ନାମରେ ସେହୁ ହୁଅଇ ଆଖ୍ୟାତ

### ଲୁଣିଆ ମାଟି

ଉଷବାନ, ଉଷର ଏବେନି ନାମେ ଜାଣ
ଲୁଣିଆ ମାଟି ଆଖ୍ୟାତ ପ୍ରିୟ ଶିଶୁଗଣ ।

### ନିର୍ଜଳ ଭୂଭାଗ ଓ ମରୁଭୂମି

ନିର୍ଜଳ ଭୂଭାଗ, ସ୍ଥଳ, ସ୍ଥଳି ନାମେ ଖ୍ୟାତ
ଧନ୍ୱନ୍ ନାମରେ ମରୁଭୂମି ଅଭିହିତ ।

## ପତିତ ଭୂମି

ଖିଲ, ଅପ୍ରହତ ଏହି ବେନିନାମେ ଜାଣ
ପତିତ ଭୂମି ଆଖ୍ୟାତ ପ୍ରିୟ ଶିଶୁଗଣ ।

## ଜଗତ

ଜଗତୀ, ଲୋକ, ପିଷ୍ଟପ, ସଂସାର, ଭୁବନ
ଜଗତର ନାମ ଅଟେ ଏହି ପଦମାନ ।

## ଭାରତବର୍ଷ

ଯେ ଦେଶରେ ଆମ୍ଭେମାନେ ଅଟୁ ଅବସ୍ଥିତ
ଭାରତବର୍ଷ ନାମେ ସେ ଅଟେ ଅଭିହିତ ।

## ଦାକ୍ଷିଣାତ୍ୟ ଓ ଆର୍ଯ୍ୟାବର୍ତ୍ତ

ପୂରୁବରୁ ପଶ୍ଚିମକୁ ରହି ବିନ୍ଧ୍ୟଗିରି
ଭାରତବର୍ଷରୁ ଅଛି ବେନିଭାଗ କରି;
ଦକ୍ଷିଣାଂଶ ବ୍ୟାପିଅଛି ସମୁଦ୍ର ପର୍ଯ୍ୟନ୍ତ
ଦାକ୍ଷିଣାତ୍ୟ ନାମରେ ସେ ଅଟଇ ଆଖ୍ୟାତ ।
ହିମାଦ୍ରି, ବିନ୍ଧ୍ୟାଚଳର ମଧ୍ୟଗତ ସ୍ଥାନ
ପୂଣ୍ୟଭୂମି ଆର୍ଯ୍ୟାବର୍ତ୍ତ ନାମେ ଖ୍ୟାତ ଜାଣ ।

## ଦେଶ

ଉପବର୍ତ୍ତନ, ବିଷୟ ଏହିପଦ ବେନି
ଦେଶର ଅପର ନାମ ରଖ ମନେଘେନି ।

## ଗ୍ରାମ

ନିବୃତ, ଜନପଦ ଏବେନି ନାମେଜାଣ
ଗ୍ରାମ ଅଟେ ଅଭିହିତ ପ୍ରିୟ ଶିଶୁଗଣ ।

## ବହୁନଡ ଅର୍ଥାତ୍ ନଳଯୁକ୍ତ ସ୍ଥାନ

ନଡ୍ୱତ, ନଡ୍ୱଲ ଏହି ବେନି ଶବଦରେ
ବହୁନଳ ୧ ଯୁକ୍ତସ୍ଥାନ ରଖିବ ମନରେ ।

**ବହୁକୁମୁଦ ଯୁକ୍ତସ୍ଥାନ**

ବହୁତ କୁମୁଦ ହୁଏ ଯେଉଁ ସ୍ଥାନେ ଜାତ
କୁମୁଦ୍‌ବାନ୍ ନାମରେ ସେ ହୁଅଇ ଆଖ୍ୟାତ ।

**ବହୁବେତଯୁକ୍ତ ଓ ବହୁତୃଣ ଯୁକ୍ତସ୍ଥାନ**

ବେତସ୍ୱାନ୍ ନାମେ ବହୁବେତଯୁକ୍ତ ସ୍ଥାନ
ଶାଦ୍ୱଳ ସ୍ଥାନ ଶ୍ୟାମଳ ତୃଣେ ଶୋଭମାନ ।

**ପଙ୍କମୟଭୂମି**

ପଙ୍କଯୁକ୍ତ ସ୍ଥାନ ଖ୍ୟାତ ପଙ୍କିଳ ନାମରେ
ସୁକୁମାର ଶିଶୁଗଣ ରଖିବ ମନରେ ।

**ଜଳମୟ ଅର୍ଥାତ୍ ସତତ ଆର୍ଦ୍ରପ୍ରଦେଶ**

ଜଳପ୍ରାୟ, ଅନୂପ ଯେ କଚ୍ଛ ପଦ ତିନି
ଜଳମୟ ପ୍ରଦେଶର ନାମ ବୋଲି ଘେନି ।

**ମାକଡା ପଥର**

ଶର୍କରା, କଙ୍କର ନାମେ ମାକଡା ପଥର
କଥିତ ହୁଅଇ ଜାଣ ସୁବୋଧ କୁମର ।

**ଶର୍କରାବନ୍ତ ଦେଶ**

ଶାର୍କର ଓ ଶର୍କରିଳ ଏହି ପଦ ବେନି
ଶର୍କରାବନ୍ତ ଦେଶର ନାମ ବୋଲି ଘେନି ।
ବହୁ ପ୍ରସ୍ତର କଙ୍କର ଯେଉଁ ଦେଶେ ଜାତ
ଶର୍କରାବନ୍ତ ନାମରେ ଅଟେ ସେ ଆଖ୍ୟାତ ।

**ବାଲୁକାମୟ ସ୍ଥାନ**

ସୈକତ ଓ ସିକତିଳ ଏହି ପଦ ବେନି
ବାଲୁକାମୟ ସ୍ଥାନର ନାମ ବୋଲି ଘେନି

**ନଦୀମାତୃକ ଦେଶ**

ନଦୀ ଜଳରେ ଯେ ଦେଶେ ଶସ୍ୟ ହୁଏ ଜାତ
ନଦୀ ମାତୃକ ନାମରେ ସେ ଦେଶ ଆଖ୍ୟାତ ।

## ଦେବମାତୃକ ଦେଶ

ବୃଷ୍ଟିଜଳ ଯୋଗେ ଯହିଁ ଶସ୍ୟ ହୁଏ ଜାତ
ଦେବ ମାତୃକ ନାମରେ ସେ ଦେଶ ଆଖ୍ୟାତ ।

## ରାଜନ୍ୱାନ୍ ଦେଶ

ଯେ ଦେଶର ରାଜା ରାଜ-ଧର୍ମପରାୟଣ
ରାଜନ୍ୱାନ୍ ନାମେ ଖ୍ୟାତ ସେହି ଦେଶ ଜାଣ ।

## ରାଜବାନ୍ ଦେଶ

ସାଧାରଣ ଭାବେ କରେ ଯେ ପ୍ରଜାପାଳନ
ସେ ରାଜାଙ୍କ ଦେଶନାମ ଅଟେ ରାଜବାନ୍ ।

## ଗୋଷ୍ଠ ଓ ପୂର୍ବଗୋଷ୍ଠ

ଗୋସ୍ଥାନକ ନାମେ ଗୋଷ୍ଠ ଅଟେ ଅଭିହିତ
ଗୋଷ୍ଠିକ ନାମରେ ପୂର୍ବଗୋଷ୍ଠ ଅଟେ ଖ୍ୟାତ ।

## ନଗରାଦିର ନିକଟବର୍ତ୍ତିସ୍ଥାନ

ନଗରାଦିର ନିକଟବର୍ତ୍ତି ଯେଉଁ ସ୍ଥାନ
ପର୍ଯ୍ୟନ୍ତଭୂ, ପରିସର ନାମତାର ଜାଣ ।

## ଜଳ ନିବାରକ ମୃତ୍ତିକାଦିର ବନ୍ଧ

ଜଳ ନିବାରକ ଯେଉଁ ମୃଣ୍ମୟାଦି ବନ୍ଧ
ସେତୁ, ଆଳି ନାମେ ତାହା ଅଟଇ ପ୍ରସିଦ୍ଧ

## ଉଇହୁଙ୍କା

ବାମଳୂର, ନାକୁ ପୁଣି ବଲ୍ମୀକ ନାମରେ
ଉଇହୁଙ୍କା ଅଭିହିତ ରଖିବ ମନରେ ।

## ବାଟ

ଅୟନ, ସରଣି, ମାର୍ଗ, ପଦବୀ, ପଦ୍ଧତି
ଅଧ୍ୱ, ବର୍ତ୍ମ, ପନ୍ଥି ପୁଣି ଏକପଦୀ, ସୃତି
ବର୍ତ୍ତନୀ, ପଦ୍ୟା ମିଶିଣ ଏହି ପଦମାନ
ବାଟର ନାମ ଅଟଇ ଜାଣ ଶିଶୁଗଣ ।

## ଉତ୍ତମପଥ

ସୁପଥ, ସତ୍‌ପଥ, ଅତିପଥ୍ ପଦ ତିନି
ଉତ୍ତମ ପଥର ନାମାନ୍ତର ବୋଲି ଘେନି ।

## କୁପଥ

ବ୍ୟଧ୍ୱ, ଦୁରଧ୍ୱ, ବିପଥ, କଦଧ୍ୱ, କାପଥ
ଏପଞ୍ଚ ନାମରେ ଜାଣ କୁପଥ ଆଖ୍ୟାତ ।

## ଅବାଟ ଓ ଚତୁଷ୍ପଥ

ଅବାଟର ନାମାନ୍ତର ଅପଥ୍, ଅପଥ,
ଶୃଙ୍ଗାଟକ ନାମେ ଚତୁଷ୍ପଥ ଅଭିହିତ ।

## ବୃକ୍ଷାଦି ବିହୀନ ଦୂରପଥ

ବୃକ୍ଷାଦି ବିହୀନ ଅଟେ ଯେଉଁ ଦୂରପଥ
କାନ୍ତାର ନାମରେ ସେହୁ ଅଟଇ ଆଖ୍ୟାତ ।

## ଦୁଇକ୍ରୋଶ

କ୍ରୋଶଯୁଗ, ଗବ୍ୟୁତି ଏବେନି ନାମେ ଜାଣ
ଅଭିହିତ ଅଟେ ଦୁଇକ୍ରୋଶ ପରିମାଣ ।

## ଚାରିଶତହସ୍ତ ପରିମିତ ଭୂମି

ଯେଉଁଭୂମି ଚାରିଶତ ହସ୍ତ ପରିମିତ
ନଳ ନାମରେ ଅଟଇ ତାହା ଅଭିହିତ ।

## ରାଜପଥ

ଘଣ୍ଟାପଥ, ସଂସରଣ ଏବେନି ନାମରେ
ରାଜପଥ ଅଭିହିତ ରଖିବ ମନରେ ।

## ପୁରଦ୍ୱାର

ଉପନିଷ୍କର ନାମରେ ଖ୍ୟାତ ପୁରଦ୍ୱାର
ରଖିବ ମନରେ ପ୍ରିୟ ସୁବୋଧ କୁମର ।

## ପୁରବର୍ଗ

### ପୁର

ପୁଟଭେଦନ, ନଗରୀ, ସ୍ଥାନୀୟ, ପତ୍ତନ
ନିଗମ ମିଶି ପୁରର ଏହିନାମ ମାନ ।

### ଶାଖା ନଗର

ପ୍ରଧାନ ନଗର ପାଶେ ଯେ ନଗର ସ୍ଥିତ
ଶାଖା ନଗର ନାମରେ ହୁଏ ସେ କଥିତ ।

### ବେଶ୍ୟା ଘର

ବେଶ୍ୟାଜନସମାଶ୍ରୟ ବେଶ ପଦବେନି
ବେଶ୍ୟା ଘରର ଅପର ନାମ ବୋଲି ଘେନି ।

### କ୍ରୟ ବିକ୍ରୟସ୍ଥାନ

ପଣ୍ୟବୀଥିକା, ନିଷଦ୍ୟା, ବିପଣ, ଆପଣ
କ୍ରୟ ବିକ୍ରୟ ସ୍ଥାନର ଏହି ନାମମାନ ।

### ଅନ୍ତପୁରର ପଥ

ପ୍ରତୋଳୀ, ବିଶିଖା ରଥ୍ୟା ଏହି ପଦତିନି
ଅନ୍ତପୁରରସ୍ଥ ପଥର ନାମ ବୋଲି ଘେନି ।

### ଖାତୋଦ୍ଧୃତ ମାଟି

ଯେଉଁ ମାଟି ହୋଇଥାଏ ଖାତରୁ ଉଦ୍ଧୃତ
ବପ୍ର, ଚୟ ନାମେ ତାହା ହୁଏ ଅଭିହିତ ।

### ପ୍ରାଚୀର

ପ୍ରାକାର, ବରଣ, ସାଲ ଏତିନି ନାମରେ
ପ୍ରାଚୀର ଅଟେ ଆଖ୍ୟାତ ରଖିବ ମନରେ ।

### ଗୃହର କାନ୍ଥ

ଭିତ୍ତି, କୁଡ୍ୟ ନାମେ ଗୃହକାନ୍ଥ ଅଭିହିତ
ସୁକୁମାର ଶିଶୁଗଣ ବୁଝ ଦେଇଚିତ୍ତ ।

୧- ନକ- ନତା

## ଗୃହ

ଉଦବସିତ, ମନ୍ଦିର, ଆଗାର, ସଦନ
ବସ୍ତ୍ୟ, ବେଶ୍ମ, ସଦ୍ମ, ଗେହ, ନିଳୟ, ଭବନ
ନକାଯ୍ୟ, ନିଶାନ, ବାସ, କୂଟ, ନିକେତନ
ଶାଳା, ସଭା, ନିବସତି, ଆଗାର ସାଦନ
ଆବାସ, ନିବାସ ମିଶି ଏହି ପଦମାନ
ଗୃହର ନାମ ଅଟଇ ପ୍ରିୟ ଶିଶୁଗଣ ।

## ଚକବନ୍ଦୀ ଘର

ଚତୁଃଶାଳ, ସଞ୍ଜବନ ଏହି ପଦବେନି
ଚକବନ୍ଦୀ ସଦନର ନାମ ବୋଲି ଘେନି ।

## ପର୍ଣ୍ଣଶାଳା

ପର୍ଣ୍ଣନିର୍ମିତ ଯେଶାଳା ମୁନି ଆଦିଙ୍କର
ପର୍ଣ୍ଣଶାଳା, ଉଟଜ ଏ ବେନି ନାମତାର

## ଯଜ୍ଞସ୍ଥାନ ଓ ଶିକ୍ଷଶାଳା

ଯଜ୍ଞସ୍ଥାନକୁ ବୋଲାନ୍ତି ଚୈତ୍ୟ, ଆୟତନ
ଶିକ୍ଷଘର-ନାମ ଶିକ୍ଷଶାଳା, ଆବେଶନ ।

## ଘୋଡାଶାଳ

ବାଜିଶାଳା, ମନ୍ଦୁରା ଏବେନି ନାମେ ଜାଣ
ଘୋଡାଶାଳ ଅଭିହିତ ପ୍ରିୟ ଶିଶୁଗଣ ।

## ଜଳଛତ୍ର ଘର

ପ୍ରପା, ପାନୀୟ ଶାଳକା ଏବେନି ନାମରେ
ଜଳଛତ୍ରଘର ଖ୍ୟାତ ରଖିବ ମନରେ ।

## ଛାତ୍ରାଦିଙ୍କ ଆବାସ ଓ ମଦ୍ୟଗୃହ

ଛତ୍ରାଦିଙ୍କର ନିଳୟ ମଠନାମେ ଖ୍ୟାତ;
ଗଞ୍ଜା ନାମରେ ମଦିରାଗୃହ ଅଭିହିତ ।

## ଶୟନ ଗୃହ

ଗର୍ଭାଗାର, ବାସଗୃହ ଏହି ପଦବେନି
ଶୟନ ଗୃହର ଅନ୍ୟନାମ ବୋଲି ଘେନି ।

## ପ୍ରସବ ଗୃହ ଓ ଗବାକ୍ଷ ଅର୍ଥାତ ଝରକାବାଟି

ଅରିଷ୍ଟ ଅପର ନାମ ସୂତିକା ଗୃହର;
ବାତାୟନ ଗବାକ୍ଷର ଅଟେ ନାମାନ୍ତର ।

## ଆଶ୍ରୟ ଗୃହ

ଜନାଶ୍ରୟ, ମଣ୍ଡପ ଏବେନି ନାମେ ଜାଣ
ଆଶ୍ରୟ ଗୃହ ଆଖ୍ୟାତ ପ୍ରିୟ ଶିଶୁଗଣ ।

## ଧନୀମାନଙ୍କ ଘର

ଧନୀମାନଙ୍କର ଗୃହ ହର୍ମ୍ମ୍ୟ ନାମେ ଖ୍ୟାତ
ସୁଶୀଳ ବାଳକ ଗଣ ବୁଝ ଦେଇଚିତ୍ତ ।

## ରାଜଗୃହ ଓ ଦେବଗୃହ

ରାଜ ଆଉ ଦେବଗୃହେ ବୋଲନ୍ତି ପ୍ରାସାଦ
ରାଜସଦନର ନାମାନ୍ତର ଅଟେ ସୌଧ ।

## ରାଜାଙ୍କର ସାମାନ୍ୟ ଗୃହ

ଉପରକାରିକା, ଯେ ଉପକାର୍ଯ୍ୟ ପଦବେନି
ରାଜାଙ୍କ ସାମାନ୍ୟ ନାମ ବୋଲି ଘେନି ।

## ରାଜଅନ୍ତଃପୁର

ଅବରୋଧନ, ଶୁଦ୍ଧାନ୍ତ ପୁଣି ଅବରୋଧ
ରାଜଅନ୍ତଃପୁର ଏତେ ନାମରେ ପ୍ରସିଦ୍ଧ ।

## ଅଟ୍ଟାଳିକା

ଅଟ୍ଟ, କ୍ଷୌମ ବେନି ନାମେ ଅଟ୍ଟାଳିକା ଖ୍ୟାତ
ସୁବୋଧ ବାଳକଗଣ ବୁଝ ଦେବଚିତ୍ତ ।

## ଗୃହର ସମ୍ମୁଖ ଦ୍ୱାର

ପ୍ରଘଣ, ପ୍ରଘାଣ ପୁଣି ଅଳିନ୍ଦ ଏତିନି
ଗୃହ-ସମ୍ମୁଖ-ଦ୍ୱାରର ନାମ ବୋଲି ଘେନି ।

## ଦ୍ୱାରବନ୍ଧର ଅଗ୍ରଭାଗ

ଗୃହାବଗ୍ରହଣୀ ପୁଣି ଦେହଳୀ ନାମରେ
ଦ୍ୱାରବନ୍ଧ-ଅଗ୍ରଭାଗ ରଖିବ ମନରେ ।

## ଅଗଣା ଓ ଦ୍ୱାରର ଏରଣ୍ଡିବନ୍ଧ

ଅଗଣା-ନାମ ଅଙ୍ଗଣ, ଅଜିର, ଚତ୍ୱର;
'ଶିଳା' ନାମ ଅଟେ ଦ୍ୱାର-ଏରଣ୍ଡି ବନ୍ଧର

## ଦ୍ୱାରର ନାଗବନ୍ଧ ଓ ଅର୍ନ୍ତଦ୍ୱାର

ଦ୍ୱାରର ନାଗବନ୍ଧକୁ ନାସାନାମେ କହି;
ଏକାର୍ଥ ପ୍ରଚ୍ଛନ୍ନ, ଅନ୍ତର୍ଦ୍ୱାର ପଦ ଦୁଇ ।

## ପାର୍ଶ୍ୱର ଦ୍ୱାର

ପକ୍ଷଦ୍ୱାର, ପକ୍ଷକ ଏବେନି ନାମେଜାଣ
ପାର୍ଶ୍ୱଦ୍ୱାର ଅଟେ ଖ୍ୟାତ ପ୍ରିୟ ଶିଶୁଗଣ

## ଘରଓଳି ଅର୍ଥାତ୍ ଉଚ୍ଛୁନା ଓ ଚାଳ

ବଳୀକ, ନୀଧ୍ର ନାମରେ ଘର-ଓଳି ଖ୍ୟାତ;
ପଟଳ, ଛବିସ୍ ନାମରେ ଚାଳ ଅଭିହିତ ।

## ଘରର ମୂର୍ଦ୍ଧନୀ

ଗୋପାନସୀ, ବଳଭୀ ଏ ବେନିନାମେ ଜାଣ
ଗୃହର ମୂର୍ଦ୍ଧନୀ ଖ୍ୟାତ ପ୍ରିୟ ଶିଶୁଗଣ ।

## ପାରାଭାଡି

କପୋତକାଳିକା ପୁଣି ବଟଙ୍କ ନାମରେ
ପାରାଭାଡି ଅଟେ ଖ୍ୟାତ ରଖିବ ମନରେ ।

## ଦ୍ୱାର ଓ ବେଦି

ଦ୍ୱାରର ଅପରନାମ ଅଟେ ପ୍ରତିହାର
ବିତର୍ଦ୍ଧି ଅଟଇ ବେଦିକାର ନାମାନ୍ତର ।

## ଦୁର୍ଗଦ୍ୱାର

ତୋରଣ ଯେ ବର୍ହିଦ୍ୱାର ଏବେନି ନାମରେ
ଦୁର୍ଗଦ୍ୱାର ଅଟେ ଖ୍ୟାତ ରଖିବ ମନରେ ।

## ପୁରଦ୍ୱାର

ପୁରଦ୍ୱାର, ଗୋପୁର ଏବେନି ନାମେଜାଣ
ପୁରର ଦ୍ୱାର ଆଖ୍ୟାତ ପ୍ରିୟ ଶିଶୁଗଣ ।

## କପାଟ ଓ ଅର୍ଗଳ

କପାଟର ନାମାନ୍ତର ଅରର ଅଟଇ;
କପାଟକିଳଣି ନାମେ ଅର୍ଗଳକୁ କହି ।

## ପାହାଚ

ଆରୋହଣ, ସୋପାନ ଏବେନି ନାମେ ଜାଣ
ପାହାଚ ଅଟେ ଆଖ୍ୟାତ ପ୍ରିୟଶିଶୁଗଣ

## ନିଶୁଣୀ ଓ ଛାଞ୍ଚୁଣୀ

ନିଶୁଣୀ କି ବୋଲି ଅଧିରୋହଣୀ, ନିଃଶ୍ରେଣୀ
ଛାଞ୍ଚୁଣୀର ନାମ ସମାର୍ଜନୀ ଯେ ଶୋଧନୀ ।

## ଝାଡୁଆ (ଅଳିଆ)

ଝାଡୁଆରନାମ ଅବକର ଯେ ସଙ୍କର
ରଖିବ ଯତନେ ମନେ ସୁବୋଧ କୁମର ।

## ଗୃହରେ ପଶିବା ଓ ଗୃହରୁ ବାହାରିବାପଥ

ଗୃହ ପ୍ରବେଶର ପଥ ମୁଖ ନାମେ ଖ୍ୟାତ;
ନିଃସରଣ ନାମେ ଖ୍ୟାତ ବାହାରିବା ପଥ ।

## ପରିଷ୍କୃତ ସ୍ଥାନ

ପରିଷ୍କୃତ ସ୍ଥାନ ସନ୍ନିବେଶ, ନିକର୍ଷଣ
ବେନିନାମେ ଅଭିହିତ ଜାଣ ଶିଶୁଗଣ ।

## ଗ୍ରାମ ଓ ବାସ୍ତୁ ଅର୍ଥାତ୍ ବାସଯୋଗ୍ୟ ଭୂମି

ଗ୍ରାମର ଅପରନାମ ଅଟେ ସମ୍ବସଥ;
ବେଶ୍ମଭୂ ନାମରେ ବାସ୍ତୁଭୂମି ଅଭିହିତ ।

### ଗ୍ରାମର ପ୍ରାନ୍ତଭାଗ ଓ ସୀମା

ଏକାର୍ଥ ଅଟଇ ଉପଶଲ୍ୟ ଯେ ଗ୍ରାମାନ୍ତ;
ସୀମାର ଅପର ନାମ ସୀମବୋଲି ଖ୍ୟାତ ।

### ଗୋପାଳ ଗୃହସମୂହ

ଗୋପାଳ ଗୃହ ସମୂହ ଯହିଁ ଅବସ୍ଥିତ
ସେ ସ୍ଥାନ ଅଭିରପଲ୍ଲି, ଘୋଷ ନାମେ ଖ୍ୟାତ ।

### ଶବରାଳୟ

ଶବରାଳୟର ଅନ୍ୟ ନାମଯେ ପକ୍ୱଣ
ରଖିବ ଯତନେ ମନେ ପ୍ରିୟ ଶିଶୁଗଣ ।

## ଶୈଳବର୍ଗ

### ପର୍ବତ

ମହୀଧର, ଧର, ଅଦ୍ରି, ଶିଳୋଚ୍ଚୟ, ଗିରି
ଅଚଳ, ଅହାର୍ଯ୍ୟ, କ୍ଷ୍ମାଭୃତ୍‌, ସ୍ଥାବର, ଶିଖରି
ଗ୍ରାବା, ଗୋତ୍ର, ଶୈଳ, ଶୃଙ୍ଗୀ, ନଗ, ସାନୁମାନ
ପର୍ବତର ନାମ ଅଟେ ଏହି ପଦମାନ ।

### ଲୋକାଲୋକ ଓ ତ୍ରିକୂଟ ପର୍ବତ

ଚକ୍ରବାଳ ନାମ ଲୋକାଲୋକ ପର୍ବତର;
ତ୍ରିକକୂଦ, ତ୍ରିକୂଟର ଅଟେ ନାମାନ୍ତର ।

### ଅସ୍ତ ଓ ଉଦୟଗିରି

ଅସ୍ତାଚଳକୁ ବୋଲନ୍ତି ଚରମାକ୍ଷ୍ମାଭୃତି
ପୂର୍ବାଚଳ ନାମେ ଖ୍ୟାତ ଉଦୟ ପର୍ବତ ।

### ସପ୍ତପର୍ବତ ଓ ଶୃଙ୍ଗ

ଗନ୍ଧମାର୍ଦ୍ଦନ, ନିଷଧ, ବିନ୍ଧ୍ୟ, ହିମବାନ
ପାରିପାତ୍ରକ, ଯେ ହେମକୂଟ, ମାଲ୍ୟବାନ
ଏସପତ ନାମେ ଖ୍ୟାତ ସପତ ପର୍ବତ
କୂଟ, ଶିଖର ନାମରେ ଶୃଙ୍ଗ ଅଭିହତି ।

### ପଥର

ଶିଳା, ଅଶ୍ମା, ଦୃଷତ୍‌, ଗ୍ରାବ, ପାଷାଣ, ପ୍ରସ୍ତର
ଉପଳମିଶି ଏତେକ ନାମ ପଥରର ।

## ପ୍ରପାତ ଓ ଗିରିର ମଧ୍ୟଭାଗ

ଏକାର୍ଥ ଅଟନ୍ତି ଭୃଗୁ, ଅତଟ, ପ୍ରପାତ
କଟକ ନାମେ ଗିରିର ମଧ୍ୟଭାଗ ଖ୍ୟାତ ।

## ପର୍ବତର ଏକଦେଶ

ସ୍ନୁ, ପ୍ରସ୍ଥ, ଆବର ସାନୁ ଏହିପଦ ତିନି
ଗିରିର ଏକଦେଶର ନାମ ବୋଲି ଘେନି ।

## ପ୍ରସ୍ରବଣ

ଝରଜଳ ଯହିଁ ପଡି ବହୁଳ ହୁଅଇ
ଉସ, ପ୍ରସ୍ରବଣ ନାମେ ଖ୍ୟାତ ସେ ଅଟଇ ।

## ବାରିପ୍ରବାହ

ବାରିପ୍ରବାହ, ନିର୍ଝର ନାମେ ଅଟେ ଖ୍ୟାତ
ସୁବୋଧ ବାଳକଗଣ ବୁଝ ଦେଇଚିତ୍ତ ।

## ଗହ୍ୱର ଓ ଖଣି

ଗହ୍ୱରର ନାମ ଦରୀ, ଗୁହା ଯେ କନ୍ଦର;
ଖଣିର ଅପର ନାମ ଅଟଇ ଆକର ।

## ଗଣ୍ଡଶୈଳ

ଯେ ସ୍ଥୂଳ ପ୍ରସ୍ତର ଅଟେ ପର୍ବତଚ୍ୟୁତ
ଗଣ୍ଡଶୈଳ ନାମରେ ସେ ହୁଏ ଅଭିହିତ ।

## ପ୍ରତ୍ୟନ୍ତ ପର୍ବତ

ପର୍ବତ ସମୀପେ ଥାଏ ଯେ କ୍ଷୁଦ୍ର ପର୍ବତ
ପାଦ, ପ୍ରତ୍ୟନ୍ତ ପର୍ବତ ନାମେ ସେ ଆଖ୍ୟାତ ।

## ଉପତ୍ୟକା ଓ ଅଧିତ୍ୟକା

ଗିରି-ସମୀପ ଭୂମିର ନାମ ଉପତ୍ୟକା
ଉପରିସ୍ଥ ଭୂମି ନାମ ଅଟେ ଅଧିତ୍ୟକା ।

## ଉପଧାତୁ ଓ ଗୈରିକ

ମନଃଶୀଳା ଆଦି ଉପଧାତୁ ନାମେ ଖ୍ୟାତ;
ଗୈରିକ ନାମରେ ଗେରୁମାଟି ଅଭିହିତ ।

# ବନୌଷଧି ବର୍ଗ

## ବନ

ଅଟବୀ, ଗହନ, ପୁଣି ଅରଣ୍ୟ, କାନନ,
ବିପିନ ମିଶି ବନର ଏହି ନାମମାନ ।

## ମହାବନ

ମହାରଣ୍ୟ, ଅରଣ୍ୟାନୀ, ଏ ବେନି ନାମରେ
ମହାବନ ଅଭିହିତ ରଖିବ ମନରେ ।

## ଗୃହ ପାଖର ଉପବନ

ଯେ କୃତ୍ରିମ ଉପବନ ସମୀପେ ଗୃହର
ଗୃହାରାମ, ନିଷ୍କୁଟ ଏବେନି ନାମ ତାର ।

## ଉପବନ

କୃତ୍ରିମ ବନ ଆରାମ ପୁଣି ଉପବନ
ବେନିନାମେ ଅଭିହିତ ଜାଣ ଶିଶୁଗଣ ।

## ବୃକ୍ଷ ବାଟିକା

ମନ୍ତ୍ରୀ ଓ ବେଶ୍ୟା ଗୃହର ପାଶେ ଯେ ଆରାମ-
ବୃକ୍ଷବାଟିକା ଅଟଇ ଜାଣ ତାର ନାମ ।

## ଉଦ୍ୟାନ

ରାଜାଙ୍କର ଯେଉଁ ସାଧାରଣ ଉପବନ
ନାମ ତାହାର ଆକ୍ରୀଡ ଆବର ଉଦ୍ୟାନ ।

## ପ୍ରମଦ ବନ

ରାଜ ଅନ୍ତଃପୁରସ୍ଥିତ ଯେ ବିହାର -ବନ
ପ୍ରମଦ ବନ ନାମରେ ଆଖ୍ୟାତ ସେ ଜାଣ ।

## ଶ୍ରେଣୀ

ବୀଥୀ, ଆଳି, ପଂକ୍ତି, ଲେଖା ଆବଳି ଆବର
ରାଜନାମ ଶ୍ରେଣୀର ଅଟଇ ନାମାନ୍ତର ।

## ବନ୍ୟା ଓ ଅଙ୍କୁର

ବନ୍ୟା ନାମରେ ବିପିନ ସମୂହ ପ୍ରସିଦ୍ଧ
ଅଙ୍କୁରର ନାମାନ୍ତର ଅଭିନବୋଦ୍ଭିଦ ।

## ବୃକ୍ଷ

ବିଟପି, ପାଦପ, ଶାଖୀ, କୁଠ, ମହୀରହ,
ଦ୍ରୁମ, ଅଗମ, ପଳାଶୀ,ତରୁ, ଅନୋକହ,
ଦ୍ରୁ, ଶାଳ ମିଶି ଏ ଏକାଦଶ ନାମେ ଜାଣ
ବୃକ୍ଷ ଅଟେ ଅଭିହିତ ପ୍ରିୟ ଶିଶୁଗଣ ।

## ବାନସ୍ପତ୍ୟ

ପୁଷ୍ପଫଳୋତ୍ପତ୍ତିଶୀଳ ଯେଉଁ ବୃକ୍ଷମାନ
ବାନସ୍ପତ୍ୟ ନାମେ ତାହା ଅଭିହିତ ଜାଣ ।

## ବନସ୍ପତି

ପୁଷ୍ପ ହୀନ ଫଳ ଶୀଳ ବୃକ୍ଷ ବନସ୍ପତି-
ନାମେ ଅଟେ ଅଭିହିତ ବୁଝିବ ସୁମତି ।

## ଓଷଧି

ଯେ ବୃକ୍ଷ ହୁଅଇ ନାଶ ଫଳପାକ ପରେ
ଅଭିହିତ ହୁଏ ତାହା ଓଷଧି ନାମରେ ।

## ଅବନ୍ଧ୍ୟ ଓ ବନ୍ଧ୍ୟବୃକ୍ଷ

ଅବନ୍ଧ୍ୟ ବୃକ୍ଷର ନାମ ଅଟ ଫଳେଗ୍ରହି;
ଅଫଳ, ଅବକେଶୀ ଯେ ବନ୍ଧ୍ୟବୃକ୍ଷେ କହି ।

## ଫଳବାନ୍ ଓ ଲଣ୍ଡାବୃକ୍ଷ

ଫଳବାନ ଯେଉଁ ବୃକ୍ଷ-ନାମତାର ଫଳୀ;
ସ୍ଥାଣୁ, ଧ୍ରୁବ, ଶଙ୍କୁନାମେ ଲଣ୍ଡାବୃକ୍ଷେ ବୋଲି ।

## ପ୍ରସ୍ଫୁଟିତ

ସ୍ଫୁଟ, ଫୁଲ୍ଲ, ବିକଶିତ, ପ୍ରଫୁଲ୍ଲ, ଉତ୍ଫୁଲ୍ଲ,
ବ୍ୟାକୋଷ, ବିକଚ, ସ୍ମିତ, ହସିତ, ସଂଫୁଲ୍ଲ
ଉଲ୍ଲସିତ, ବିଜୃମ୍ଭିତ, ଉନ୍ମେଷିତ, ସ୍ମେର
ପ୍ରସ୍ଫୁଟିତର ଏମାନ ଅଟେ ନାମାନ୍ତର ।

**କ୍ଷୁପ**

କ୍ଷୁଦ୍ରଶାଖା, କ୍ଷୁଦ୍ରଡାଳ ଅଟଇ ଯାହାର
ଅଭିହିତ ନାମ କ୍ଷୁପ ଅଟଇ ତାହାର ।

**ଶାଖାହୀନ ବୃକ୍ଷ**

ଅପ୍ରକାଣ୍ଡ, ଗୁଳ୍ମ, ସ୍ତମ୍ଭ, ଏତିନି ନାମରେ
ଶାଖାହୀନ ବୃକ୍ଷ ଖ୍ୟାତ ରଖିବ ମନରେ ।

**ଲତା**

ବଲ୍ଲୀ, ବ୍ରତତୀ ଲତାର ଅଟେ ନାମାନ୍ତର
ରଖିବ ମନରେ ପ୍ରିୟ ସୁବୋଧ କୁମର ।

**ବହୁଶାଖାଯୁକ୍ତ ଲତା**

ବିରୁତ୍, ଗୁଲ୍ମିନୀ, ଉଲୁପ ଏହି ପଦ ତିନି
ବହୁଶାଖିନୀ ଲତାର ନାମ ବୋଲି ଘେନି ।

**ବୃକ୍ଷାଦିର ଉଚ୍ଚତା**

ଉଚ୍ଛ୍ରାୟ, ଉତ୍ସେଧ, ପୁଣି ଉଚ୍ଛ୍ରୟ ନାମରେ
ବୃକ୍ଷଆଦିର ଉଚ୍ଚତା ବୁଝିବ କୁମରେ ।

**ସ୍କନ୍ଧ**

ପାଦପର ମୂଳଠାରୁ ଶାଖା ପରିଯନ୍ତ
ପ୍ରକାଣ୍ଡ, ସ୍କନ୍ଧ ନାମରେ ଅଭିହିତ ।

**ନୂଆଡାଳ, ଶାଖା ଓ ସ୍କନ୍ଧ ଶାଖା**

ନବୀନ ଡାଳକୁ ଲତା; କ୍ଷୁଦ୍ରେ ଶାଖା କହି;
ବୃହତର ନାମ ଶାଳା, ସ୍କନ୍ଧଶାଖା ଦୁଇ ।

**ଚେର ଓ ଓହଳ**

ଶିଫା, ଜଟା ନାମବେନି ଅଟଇ ଚେରର;
ଅବରୋହ ନାମଅଟେ ବୃକ୍ଷ-ଓହଳର ।

**ବୃକ୍ଷର ଅଗ ଓ ମୂଳ**

ବୃକ୍ଷାଗ୍ରର ନାମ ଅଟେ ଶିର ଯେ ଶିଖର;
ବ୍ରଧ୍ନ, ଅଂଘ୍ରିନାମ ବେନି ଅଟଇ ମୂଳର ।

## ବୃକ୍ଷର ମଞ୍ଜ ଓ କାଠ

ବୃକ୍ଷର ଯେ ମଞ୍ଜି, ସାର, ମଜ୍ଜନାମେ ଖ୍ୟାତ;
କାଷ୍ଠ, ଦାରୁ, ନାମେ କାଠଅଟେ ଅଭିହିତ ।

## ବୃକ୍ଷର ବକଳ

ତ୍ୱକ୍, ବଲ୍କ, ବଲ୍କଲ, ଶଲ୍କ, ଏଋରି ନାମରେ
ବୃକ୍ଷର କଳ ଖ୍ୟାତ ରଖିବ ମନରେ ।

## ଜାଳିବା କାଠ

ଇନ୍ଧନ, ଏଧ, ସମିଧ୍, ଇଧ୍ମ ଯେ ଆବର
ଏଋରି ନାମ ଅଟଇ ଜାଳିବା କାଠର ।

## ବୃକ୍ଷ ଗହ୍ୱର ଓ ମଞ୍ଜରୀ

ବୃକ୍ଷ ଗହ୍ୱରର ନାମ ନିଷ୍କୁହ, କୋଟର;
ବଲ୍ଲରୀ ଅଟଇ ମଞ୍ଜରୀର ନାମାନ୍ତର ।
(ପଲ୍ଲବ-ଅଙ୍କୁର ରୂପି ଅଭିନବ ଜାତ
ମଞ୍ଜରୀ ନାମେ ସେ ସୁକୁମାର ଲତା ଖ୍ୟାତ)

## ପତର

ପର୍ଣ୍ଣ, ଛଦ, ଦଳ, ପତ୍ର, ପଲାଶ, ଛଦନ,
ପତରର ଅଟେ ଜାଣ ଏହି ନାମମାନ ।

## ନୂଆପତ୍ର

କିଶଳୟ, ପଲ୍ଲବ ଏବେନି ନାମେଜାଣ
ନୂଆପତ୍ର ଅଟେଖ୍ୟାତ ପ୍ରିୟ ଶିଶୁଗଣ ।

## ବୃକ୍ଷର ସର୍ବାଙ୍ଗ

ବୃକ୍ଷର ସର୍ବାଙ୍ଗ ଶାଖା ପଲ୍ଲବ ସହିତ
ବିସ୍ତାର, ବିଟପ ନାମେ ହୁଏ ଅଭିହିତ ।

## କଞ୍ଚାଫଳ ଓ ଶୁଖାଫଳ

ଶଲାଟୁ ନାମରେ କଞ୍ଚାଫଳ ଅଭିହିତ;
ବାନ ନାମେ ଶୁଷ୍କଫଳ ଅଟଇ ଆଖ୍ୟାତ ।

## ଅତିକ୍ଷୁଦ୍ର କଢ଼ ଓ ସାଧାରଣ କଢ଼ି

ଅତିକ୍ଷୁଦ୍ର କଢ଼ିନାମ କ୍ଷାରକ, ଜାଳକ;
କଢ଼ିର ନାମ ଅଟଇ କଳିକା, କୋରକ ।

## ଗୁଚ୍ଛିକୃତ ଫୁଲ ଓ ଫୁଟନ୍ତ କଢ଼ି

ଗୁଚ୍ଛକ ସ୍ତବକ ନାମେ ଗୁଚ୍ଛିକୃତ ଫୁଲ;
ଫୁଟନ୍ତ କଢ଼ର ନାମ କୁଟ୍ମଳ, ମୁକୁଳ ।

## ଫୁଲ

ପୁଷ୍ପ, ପ୍ରସୂନ, କୁସୁମ, ସୁମ ଯେ ସୁମନ,
ଫୁଲର ଅଟଇ ଜାଣ ଏହି ନାମମାନ ।

## ପୁଷ୍ପ ମଧୁ ଓ ପରାଗ

ପୁଷ୍ପମଧୁ-ନାମ ପୁଷ୍ପରସ, ମକରନ୍ଦ;
ସୁମନୋରଜ ନାମରେ ପରାଗ ପ୍ରସିଦ୍ଧ ।
(ପୁଷ୍ପଧୂଳି ପରି ଯାହା ଥାଏ କୁସୁମରେ
ଅଭିହିତ ହୁଏ ତାହା ପରାଗ ନାମରେ)

## ଅଶ୍ୱତ୍ଥଫଳ ଓ ବାଉଁଶଫଳ

ଅଶ୍ୱତ୍ଥ-ଫଳ ଆଶ୍ୱତ୍ଥ ନାମରେ ଆଖ୍ୟାତ
ବାଉଁଶ ଫଳ ବୈଣବ ନାମେ ଅଭିହିତ ।
ପକ୍ଷ ଅର୍ଥାତ୍ ପାକୁଡ ଫଳ ଓ

## ବଟଫଳ

ପକ୍ଷ ଗଛର ଫଳକୁ ପ୍ଲାକ୍ଷନାମେ କହି
ଏକାର୍ଥକ ନୈୟଗ୍ରୋଧ, ବଟଫଳ ଦୁଇ ।

## ଇଙ୍ଗୁଦୀଫଳ ଓ ବୃହତୀ ଫଳ

ଇଙ୍ଗୁଦି ଫଳର ନାମ ଅଟଇ ଐଙ୍ଗୁଦ;
ବୃହତୀ ଫଳ ବାର୍ହତ ନାମରେ ପ୍ରସିଦ୍ଧ ।

## ଜମ୍ବୁଫଳ

ଜମ୍ବୁ, ଜାମ୍ବବ ନାମରେ ଜାମ୍ବୁଫଳ ଖ୍ୟାତ
ସୁକୁମାର ଶିଶୁଗଣ ବୁଝ ଦେଇ ଚିତ୍ତ ।

## ପାଟଳୀ ଫଳ

ପାଟଳୀ ବୃକ୍ଷର ଫଳ ପାଟଳା ନାମରେ
ଖ୍ୟାତ ଜାଣି ଶିଶୁଗଣ ରଖିବ ମନରେ ।

## ପିପ୍ପଳ

କୁଞ୍ଜରାଶନ, ଅଶ୍ୱତ୍ଥପୁଣି ଚଳଦଳ,
ବୋଧିଦ୍ରୁମ, ଏତେନାମେ ଆଖ୍ୟାତ ପିପ୍ପଳ ।

## କପିତ୍ଥ ବା କଇଥ

ଦଧିଫଳ, ପୁଷ୍ପଫଳ, ମନ୍ମଥ, ଦଧିତ୍ଥ,
ଗ୍ରାହି, ଦନ୍ତଶଠ ନାମେ କଥିତ କପିତ୍ଥ ।

## ଯଜ୍ଞଡୁମ୍ବରି

ଯଜ୍ଞାଙ୍ଗ, ହେମଦୁଗ୍ଧକ ପୁଣି ଉଦୁମ୍ବର,
ଜନ୍ତୁଫଳ ନାମଧରି ଯଜ୍ଞଡୁମ୍ବରିର ।

## କଞ୍ଚନ ଗଛ

କୁଦାଳ, ଯୁଗପତ୍ରକ, ପୁଣି କୋବିଦାର,
ଚମରିକ ନାମଧରି କଞ୍ଚନ ଗଛର ।

## ଛତିଆନା ଗଛ

ବିଷମଚ୍ଛଦ, ଶାରଦୀ, ପୁଣି ସପ୍ତପର୍ଣ୍ଣ,
ବିଶାଳ ବଲ୍କଳ, ମିଶି ଏହି ପଦମାନ
'ଛତିଆନା' ପାଦପର ନାମବୋଲି ଖ୍ୟାତ
ସୁବୋଧ ବାଳକଗଣ ବୁଝ ଦେଇ ଚିତ୍ତ ।

## ସୁନାରି ଗଛ

ଆରଗ୍‌ବଧ, ରାଜବୃକ୍ଷ, ପୁଣି ଆରେବତ,
ଚତୁରଙ୍ଗୁଳ ଯେ କୃତମାଳ, ବ୍ୟାଧିଘାତ,
ସୁବର୍ଣ୍ଣକ, ସମ୍ପାକ ଏ ଆଠନାମେ ଜାଣ
ସୁନାରି ଗଛ ଆଖ୍ୟାତ ପ୍ରିୟ ଶିଶୁଗଣ ।

### ଜମ୍ବୀର ଗଛ

ଦନ୍ତଶଠ, ଜମ୍ଭ, ପୁଣି ଜମ୍ଭଲ ନାମରେ
ଜମ୍ବୀର ବୃକ୍ଷ ଆଖ୍ୟାତ ରଖିବ ମନରେ ।

### ବରୁଣ ଗଛ

ତକ୍ତଶାକ, କୁମାରକ, ସେତୁ ଯେ ବରଣ,
ବରୁଣ ଗଛର ଜାଣ ଏହି ନାମମାନ ।

### ପୁନ୍ନାଗ ବୃକ୍ଷ

ଦେବବଲ୍ଲଭ, ପୁରୁଷ, ତୁଂଗ ଯେ କେସର,
ଏହି ନାମମାନ ଅଟେ ପୁନ୍ନାଗ ବୃକ୍ଷର ।

### ମନ୍ଦାର

ପାରିଜାତ, ନିମ୍ବତରୁ, ପାରିଭଦ୍ର ତିନି
ମନ୍ଦାର ବିଶେଷର ଯେ ନାମବୋଲି ଘେନି ।

### ତିନିଶ ବୃକ୍ଷ

ଚିତ୍ରକୃତ, ବଞ୍ଜୁଳ, ଅତିମୁକ୍ତକ, ସ୍ୟନ୍ଦନ,
ନେମୀ, ରଥଦ୍ରୁ ମଶିଣ ଏହି ପଦମାନ
ତିନିଶ ବୃକ୍ଷର ଜାଣ ଅଟେ ପ୍ରତିପଦ
ଅଯୋଧାଦି ଦେଶେ ଜାତ, ଜାଣ ଶିଶୁବୃନ୍ଦ ।

### ଆମ୍ବଡା ଗଛ

ଆମ୍ରାତକ, କପୀତନ, ପୀତନ ଏତିନି
ଆମ୍ବଡା ଗଛର ଅନ୍ୟ ନାମବୋଲି ଘେନି ।

### ମହୁଲ ଓ ଜଳଜ ମହୁଲ

ମଧୁଷ୍ଠୀଳ, ବାନପ୍ରସ୍ଥ, ପୁଣି ମଧୁଦ୍ରୁମ,
ମଧକ, ଯେ ଗୁଡପୁଷ୍ପ ଏହି ପାଞ୍ଚନାମ
ମହୁଲ ଗଛର ଜାଣ ଅଟେ ନାମାନ୍ତର;
ମଧୁଲକ ନାମ ଜଳଜାତ-ମହୁଲର ।

### ପୀଲୁବୃକ୍ଷ

ଗୁଡଫଳ, ସ୍ରଂସିନାମେ ପୀଲୁବୃକ୍ଷ ଖ୍ୟାତ
ସୁକୁମାର ଶିଶୁଗଣ ବୁଝ ଦେଇ ଚିତ୍ତ ।

### ପର୍ବତଜାତ ପୀଲୁବୃକ୍ଷ

ପୀଲୁବୃକ୍ଷ ହୁଏ ଯେବେ ଗିରିପରେ ଜାତ,
ଅକ୍ଷୋଡ, ଯେ କର୍ପରାଳ ନାମେ ସେ ଆଖ୍ୟାତ ।

### ଆଙ୍କୋଲ ଗଛ

ଅଙ୍କୋଠ, ଯେ ନିକୋଚକ ଏହି ପଦବେନି
ଅଙ୍କୋଲ ଗଛର ଅନ୍ୟନାମ ବୋଲି ଘେନି ।

### ପଳାଶ

ବ୍ରହ୍ମବୃକ୍ଷକ, କିଂଶୁକ, ପର୍ଣ୍ଣ, ବାତପୋଥ
ଏତେକ ନାମେ ପଳାଶ ଅଟେ ଅଭିହିତ ।

### ବେତ

ବିଦୂଳ, ଶୀତ, ବାନୀର, ଅଭ୍ରପୁଷ୍ପ, ରଥ,
ବେତସ, ବଞ୍ଜୁଳ ନାମେ ଖ୍ୟାତଅଟେ ବେତ ।

### ପାଣିବେତ

ବିଦୂଳ, ନାଦେୟୀ, ଅମ୍ବୁବେତ, ପରିବ୍ୟାଧ,
ପାଣିବେତ ଏହିପରି ନାମରେ ପ୍ରସିଦ୍ଧ ।

### ସଜନା

ତୀକ୍ଷ୍ଣଗନ୍ଧକ, ମୋଚକ, ଶିଗ୍ରୁ, ଶୋଭାଞ୍ଜନ,
ଅକ୍ଷୀବ ମିଶି ସଜନାର ଏନାମ ମାନ ।

### ରକ୍ତସଜନା ଓ ବଟବୃକ୍ଷ

ରକ୍ତସଜନା ବୃକ୍ଷକୁ ମଧୁଶିଗ୍ରୁ କହି;
ବଟ-ନାମ ବହୁପାଦ, ନ୍ୟଗ୍ରୋଧ ଏଦୁଇ ।

### ରିଠାଗଛ ଓ ଆମ୍ବଗଛ

ଫେନିଳ, ଅରିଷ୍ଟ ନାମେ ରିଠାଗଛ ଖ୍ୟାତ;
ଆମ୍ବଗଛ-ନାମ ଆମ୍ର, ରସାଳ ଯେ ଚୂତ ।

### ସୁଗନ୍ଧମୟ ଆମ୍ବଗଛ

ଅତୀବ ସୁଗନ୍ଧମୟ ଅଟଇ ଯେ ଚୂତ
ସହକାର ନାମେ ତାହା ହୁଏ ଅଭିହିତ ।

## ଗୟାଅଶ୍ୱତ୍ଥ

ପକ୍ଷ, ଜଟୀ, ପର୍କଟି ଏତିନି ନାମେ ଜାଣ,
ଗୟାଅଶ୍ୱତ୍ଥ ଆଖ୍ୟାତ ପ୍ରିୟ ଶିଶୁଗଣ ।

## ବେଲଗଛ

ଶାଣ୍ଡିଲ୍ୟ, ଶୈଳୁଶ ପୁଣି, ଶ୍ରୀଫଳ, ମାଲୂର,
ଏନାମ ଧରି ଅଟଇ, ବିଲ୍ୱପାଦପର ।

## ଲୋଧଗଛ

ଗାଲବ; ସାବର, ଲୋଧ୍ର, ତିଲ୍ୟ ଯେ ମାର୍ଜନ
ତିରୀଟ ମିଶି ଲୋଧର ଏହି ନାମମାନ ।

## ଗୁଗ୍‌ଗୁଳ ବୃକ୍ଷ

ଉଲୁଖଳ ଯେ କୌଶିକ କୁମ୍ଭ ନାମତିନି
ଗୁଗ୍‌ଗୁଳ ବୃକ୍ଷର ନାମାନ୍ତର ବୋଲି ଘେନି ।

## ବହୁବାର

ବହୁବାରକ ଉଦ୍ଦାଳ ଶ୍ଳେଷ୍ମାତକ ଶୀତ
ଶେଲ ମିଶି ଏତେନାମେ ବହୁବାର ଖ୍ୟାତ ।

## ପିଆଳ

ସନ୍ନକଦ୍ରୁ ଧନୁଷଟ ପୁଣି ରାଜାଦନ
ପିଆଳ ବୃକ୍ଷର ଅଟେ ଏହି ନାମମାନ ।

## ଗମ୍ଭାରୀ ଗଛ ଓ ବରକୋଳି ଗଛ

ମଧୁପର୍ଣ୍ଣିକା କାଶ୍ମର୍ଯ୍ୟ ଗମ୍ଭାରୀ ଶ୍ରୀପର୍ଣ୍ଣୀ
ସର୍ବତୋଭଦ୍ରା କାଶ୍ମରୀ ଭଦ୍ରା ଭଦ୍ରପର୍ଣ୍ଣୀ
ଏତେକ ନାମେ ଆଖ୍ୟାତ ଅଟଇ ଗମ୍ଭାରୀ
ବରକୋଳି ଗଛ-ନାମ କର୍କନ୍ଧୂ ବଦରୀ ।

## ବର୍ଥିର କୋଳିଫଳ

କୋଳ କୁବଳ ଫେନିଳ ସୌବୀର ବଦର
ଘୋଣ୍ଟା ମିଶି ଛଅନାମ ବର୍ଥିର କୋଳିର ।

## ଭଇଁଷକୋଳି ଓ ଝାଉଗଛ

ସ୍ୱାଦୁକଣ୍ଟକ, ଗ୍ରନ୍ଥିଳ ପୁଣି ବ୍ୟାଘ୍ରପାଦ,
ସ୍ରୁତାବୃକ୍ଷ, ବିକଙ୍କତ ଏହି ପାଞ୍ଚପଦ
ଭଇଞ୍ଚ କୋଳିର ଅନ୍ୟନାମ ବୋଲି ଖ୍ୟାତ;
ପିଚୁଳ ଝାବୁକ ନାମେ ଝାଉ ଅଭିହିତ ।

## ନାଗରଙ୍ଗ ବା ନାରଙ୍ଗ

ନାଦେୟୀ, ଭୂମିଜମ୍ବୁକା ସୁରଙ୍ଗ, ସରଙ୍ଗ
ଐରାବତ ଏତେନାମେ ଖ୍ୟାତ ନାଗରଙ୍ଗ ।

## କେନ୍ଦୁବୃକ୍ଷ

ଶିତିସାରକ, ତିନ୍ଦୁକ, ସ୍ଫୂର୍ଜକ, ଆବର
କାଳସ୍କନ୍ଧ ନାମଧରି 'କେନ୍ଦୁ' ପାଦପର ।

## ମାଙ୍କଡା କେନ୍ଦୁ

ମାଙ୍କଡାକେନ୍ଦୁ ଗଛକୁ ବୋଲନ୍ତି କୁଳକ
କାକପୀଲୁକ କାକେନ୍ଦୁ ଯେ କାଳତିନ୍ଦୁକ ।

## ଘଣ୍ଟାପାଟଳୀ ଗଛ

ଗୋଲୀଢ, ଝାଟଳ, ମୋକ୍ଷ, ମୁଷ୍କକ ଆବର
ଏତେନାମ ଅଟେ ଘଣ୍ଟାପାଟଳୀ ଗଛର ।

## ତିଳକବୃକ୍ଷ

ଶ୍ରୀମତ, କ୍ଷୁରକ, ଏବେନି ନାମରେ ତିଳକ
ଖ୍ୟାତ ଜାଣି ରଖମନେ ସୁବୋଧ ବାଳକ ।

## କାଫଡ

ଶ୍ରୀପର୍ଣ୍ଣିକା କୁମୁଦିକା କୈଟର୍ଯ୍ୟ ଆବର
କୁମ୍ଭୀ କଟ୍‌ଫଳ ଏତେକ ନାମ କାଫଡର ।

## ରକ୍ତଲୋଧ

କ୍ରମୁକ, ପଟ୍ଟିକାଖ୍ୟପଟି, କାକ୍ଷା, ପ୍ରସାଦନ,
ରକ୍ତଲୋଧ ପାଦପର ଏହି ନାମମାନ ।

## ବ୍ରହ୍ମଦାରୁ ନାମକ ବୃକ୍ଷ

ବ୍ରହ୍ମଣ୍ୟ କ୍ରମୁକ, ପୁଷ୍ପ, ତୁଳ ପୂଗ, ନୂଦ
ବ୍ରହ୍ମଦାରୁ ବୃକ୍ଷ ଏତେ ନାମରେ ପ୍ରସିଦ୍ଧ ।

## କଦମ୍ବ

ନୀପ ପୁଷ୍ପକ, ସୁରଭି, ପୁଣି ହଳିପ୍ରିୟ,
କଦମ୍ବର ଅଟେ ଜାଣ ଏହି ନାମଚୟ ।

## ଭାଲିଆ ଗଛ

ଅଗ୍ନିମୁଖୀ, ଭଲ୍ଲାତକୀ, ପୁଣି ଅରୁଷ୍କର
ବୀରବୃକ୍ଷ ନାମଧରି ଭାଲିଆ ଗଛର ।

## ଗନ୍ଧପିପ୍ପଳି

ଗର୍ଦ୍ଦଭାଣ୍ଡ କନ୍ଦରାଳ, ପ୍ଲକ୍ଷ, କପୀତନ
ଗନ୍ଧପିପ୍ପଳିର ଜାଣ ଏହି ନାମମାନ ।

## ତେନ୍ତୁଳି ଗଛ

ତିନ୍ତିଡୀ, ଚିଞ୍ଚା, ଅମ୍ଳିକା ଏହି ପଦତିନି
ତେନ୍ତୁଳି ବୃକ୍ଷର ଅନ୍ୟନାମ ବୋଲି ଘେନି ।

## ପିଆସାଳ

ବନ୍ଧୁକପୁଷ୍ପ, ଜୀବକ, ସର୍ଜକ ଆସନ,
ପ୍ରିୟକ ଯେ ପୀତସାଳ ଏହି ପଦମାନ
ପିଆସାଳ ପାଦପର ଅଟେ ନାମାନ୍ତର
ରଖିବ ମନରେ ପ୍ରିୟ ସୁବୋଧ କୁମର ।

## ସାଳଗଛ

ସର୍ଜ, କାର୍ଯ୍ୟ ଅଶ୍ୱକର୍ଣ୍ଣ ଯେ ସସ୍ୟମ୍ବର,
ସାଳବୃକ୍ଷର ଏମାନ ଅଟେ ନାମାନ୍ତର ।

## ଅର୍ଜ୍ଜୁନ ଗଛ

ନଦୀସର୍ଜ୍ଜ, ବୀରତରୁ, ଇନ୍ଦ୍ରଦ୍ରୁ, ଆବର
କକୁଭ ଏପାଞ୍ଚନାମ ଅର୍ଜ୍ଜୁନ ବୃକ୍ଷର ।

## କ୍ଷୀରକୋଳି

କ୍ଷୀରିକା ଯେ ଫଳାଧକ୍ଷ ପୁଣି ରାଜାଦନ
କ୍ଷୀରକୋଳି ପାଦପର ଏହି ନାମମାନ ।

## ଇଙ୍ଗୁଦୀ ଓ ଭୂର୍ଜଗଛ

ତାପସତରୁ ଅପରନାମ ଇଙ୍ଗୁଦୀର;
ମୃଦୁତ୍ୱକ୍ ଚର୍ମ୍ମ ଏବେନି ଭୂର୍ଜପାଦପର ।

## ଶିମୁଳି

ପିଚ୍ଛଳା, ପୂରଣୀ, ମୋଚ୍ଚ, ସ୍ଥିରାୟୁ, ଶାଲ୍ମଳୀ;
ଏ ପାଞ୍ଚ ନାମେ ଆଖ୍ୟାତ ଅଟଇ ଶିମୁଳି ।

## ଶିମୁଳି ଅଠା

ଶାଲ୍ମଳିବେଷ୍ଟ, ପିଚ୍ଛା ଏ ବେନି ନାମେଜାଣ
ଶିମୁଳି ଅଠା ଆଖ୍ୟାତ ପ୍ରିୟଶିଶୁଗଣ ।

## ଶିମୁଳିଭେଦ

ରୋଚନ, କୂଟଶାଲ୍ମଳି ଏବେନି ନାମରେ
ବେନିଜାତି ମୋଚଖ୍ୟାତ ରଖିବ ମନରେ ।

## କରଞ୍ଜଗଛ

ଚିରବିଲ୍ୱ, ନକ୍ତମାଳ, କରଜ ଆବର
କରଞ୍ଜକ ନାମଚରି କରଞ୍ଜ ବୃକ୍ଷର ।

## ଲତାକରଞ୍ଜ ଓ ଡାଳ କରଞ୍ଜ

ପ୍ରକାର୍ଯ୍ୟ, ପୂତିକରଜ, କଳହନାଶନ,
କଳିମାରକ; ପୂତିକ ଏହି ପଦମାନ
ଲତାକରଞ୍ଜ ବୃକ୍ଷର ନାମବୋଲି ଖ୍ୟାତ;
କଣ୍ଟାକରଞ୍ଜ ଷଡଗ୍ରନ୍ଥି ନାମେ ଅଭିହିତ ।

## ବିଷକରଞ୍ଜ ଓ କଣ୍ଟାକରଞ୍ଜ

ମାକଡା କରଞ୍ଜ ନାମ ମର୍କଟୀ ଅଟଇ;
ଅଙ୍ଗାରବଲ୍ଲରୀ ବିଷକରଞ୍ଜକୁ କହି ।

## ରୋହିଣୀ ଗଛ

ରୋହିତକ, ପ୍ଲୀହଶତ୍ରୁ, ରୋହିତ ଆବର
ଦାଡ଼ିମପୁଷ୍ପକ ନାମ ରୋହିଣୀ ଗଛର ।

## ଖଇର ଗଛ

ବାଲତନୟ ଗାୟତ୍ରୀ ଯେ ଦନ୍ତଧାବନ,
ଖଇର ବୃକ୍ଷର ଜାଣ ଏହି ନାମମାନ ।

## ଶୁକ୍ଲଖଇର

ସୋମବଲ୍କ, କଦର ଏବେନି ନାମେଜାଣ
ଶୁକ୍ଲଖଇର ଆଖ୍ୟାତ ପ୍ରିୟ ଶିଶୁଗଣ ।

## ବିଟ ଖଇର ଓ ଶମୀ ବୃକ୍ଷ

ବିଟ ଖଇରର ନାମ ଅଟେ ଅରି ମେଦ;
ସକ୍ତୁଫଳା ଶିବା ନାମେ ଶମୀ ସୁପ୍ରସିଦ୍ଧ ।

## କ୍ଷୁଦ୍ରଶମି

କ୍ଷୁଦ୍ର ଶମୀ ପାଦପକୁ ବୋଲନ୍ତି ଶମୀର
ରଖିବ ମନରେ ପ୍ରିୟ ସୁବୋଧ କୁମର ।

## ଜଡାଗଛ

ବ୍ୟାଘ୍ରପୁଚ୍ଛ, ଉରୁବୁକ, ଏରଣ୍ଡ, ରୁଚୁକ,
ଗନ୍ଧର୍ବହସ୍ତକ, ଚଞ୍ଚୁ, ମଣ୍ଡ, ବ୍ୟଡମ୍ବକ
ପଞ୍ଚାଙ୍ଗୁଳ, ଚିତ୍ରକ, ଯେ ଗବ, ବର୍ଦ୍ଧମାନ,
ଜଡା ଗଛର ଅଟଇ ଏହି ନାମମାନ,

## ମରୁଆଁ ଗଛ

ପିଣ୍ଡୀତକ ମରୁବକ ଶ୍ୱସନ ମଦନ,
କରହାଟକ ଯେ ଶଲ୍ୟ ଏହି ପଦମାନ
ମରୁଆଁ ବୃକ୍ଷର ଅନ୍ୟନାମ ବୋଲି ଖ୍ୟାତ
ସୁକୁମାର ଶିଶୁଗଣ ! ବୁଝଦେଇ ଚିତ୍ତ ।

## ଦେବଦାରୁ

ଭଦ୍ରଦାରୁ ପୁଣି କାଷ୍ଠଦାରୁ ପୀତ ଦାରୁ,
ପାରିଭଦ୍ରକ ଦାରୁକ ପୁଣି ଶକ୍ରତରୁ,
ଶାମ୍ଭବ ସୁରାହ୍ୱ ଦେବକାଷ୍ଠ ଦ୍ରୁକିଳିମ ।
ଦେବଦାରୁ ବୃକ୍ଷର ଏ ଏକାଦଶ ନାମ ।

## ପାଟଳୀବୃକ୍ଷ

ଫଳେରୁହା କୃଷ୍ଣବୃନ୍ତ କୁମ୍ଭୀ କାଚସ୍ଥଳୀ
ଅମୋଘା ପାଟଳୀ ମଧୁଦୂତୀ କାଳାସ୍ଥଳି,
ଅଳି ବଲ୍ଲଭା ବସନ୍ତ ଦୂତିକା ଆବର
ଏନାମ ମାନ ଅଟଇ ପାଟଳୀ ବୃକ୍ଷର ।

## ପ୍ରିୟଙ୍ଗୁ ଗଛ

ଶ୍ୟାମା ଗୁନ୍ଦ୍ରା ବିଶ୍ୱକ୍‌ସେନା ଲତା ଗୋବନ୍ଦନୀ
କାରମ୍ଭା ପ୍ରିୟକ ଫଳୀ ମଦଳା ଫଳିନୀ,
ଗନ୍ଧଫଳୀ ପ୍ରିୟବଲ୍ଲୀ ଶୋଭା ଗୌରୀ କଙ୍ଗୁ,
ଏତେ ନାମେ ଅଭିହିତ ଅଟଇ ପ୍ରିୟଙ୍ଗୁ ।

## ଫଣଫଣା ଗଛ

ମଣ୍ଡୂକପର୍ଣ୍ଣ କଟ୍ୱଙ୍ଗ ଶୁକନାସା ନଟ
ପତ୍ରୋର୍ଣ୍ଣ ଟୁଣ୍ଟୁକ ଦୀର୍ଘବୃନ୍ତ କୁଟନ୍ନଟ,
ଶୋନାକ ଶୋଣକ ରୁକ୍ଷ ଏତେକ ନାମରେ
ଫଣଫଣା ବୃକ୍ଷଖ୍ୟାତ ରଖିବ ମନରେ ।

## ଅଁଳାଗଛ

ତିଷ୍ୟଫଳା ଆମଳକୀ ବୟସ୍ଥା ଆବର
ଅମୃତା ଏତେକ ନାମ ଅଁଏଁଳା ଗଛର ।

## ବାହାଡା

ବିଭୀତକ ଭୂତବାସ ଅକ୍ଷ କଳିଦ୍ରୁମ ।
ତୁଷ କର୍ଷଫଳ ଛଅ ବାହାଡାର ନାମ ।

### ହରିଡ଼ା

ଅଭୟା ଅମୃତା ପଥ୍ୟା ଅବ୍ୟଥା ଚେତକୀ
ପୂତନା ଶ୍ରେୟସୀ ହେମବତୀ ହରିତକୀ ।
କାୟସ୍ଥ ଆବର ଶିବା ଏତେକ ନାମରେ
ହରିଡା ବୃକ୍ଷ ଆଖ୍ୟାତ ରଖିବ ମନରେ ।

### ସରଳବୃକ୍ଷ

ପୀତଦ୍ରୁ ପୀତକାଷ୍ଠ ଏବେନି ନାମେଜାଣ
ସରଳବୃକ୍ଷ ଆଖ୍ୟତ ପ୍ରିୟଶିଶୁଗଣ ।

### ସ୍ଥଳପଦ୍ମ

ଦ୍ରୁମୋତ୍ପଳ ପରିବ୍ୟାଧ ପୁଣି କର୍ଣ୍ଣିକାର
ଏତେ ନାମଅଟେ 'ସ୍ଥଳପଦ୍ମ' ପାଦପର ।

### ଜଉଠ ଗଛ

ଲକୁଚ ଲିକୁଚ ଉହୁ ଏହି ପଦତିନି
ଜଉଠ ଗଛର ଅନ୍ୟନାମ ବୋଲି ଘେନି ।

### ପନସ

କଣ୍ଟକିଫଳ ଫଳିନ ସ୍ଥୁଳ ଚର୍ମକୋଷ
ଅପୁଷ୍ପଫଳଦ ନାମେ ଆଖ୍ୟାତ ପନସ ।

### ହିଙ୍ଗୁଳ ଗଛ

ନିଚୂଳ ଅମ୍ବୁଦ ପୁଣି ଇଙ୍ଗଳି ନାମରେ
ହିଙ୍ଗୁଳ ବୃକ୍ଷ ଆଖ୍ୟାତ ରଖିବ ମନରେ ।

### କାକଡୁମ୍ବରି

କାକୋଡୁମ୍ବରିକା ଫଲ୍ଗୁ ମଳୟୁ ଫଲ୍ଗୁନୀ
କାକଡୁମ୍ବରିର ଏତେ ନାମ ବୋଲିଘେନି ।

### ନିମ୍ବଗଛ

ଅରିଷ୍ଟ ସର୍ବତୋଭଦ୍ର ଶୀତ ପିଚୁମର୍ଦ୍ଦ
ହିଙ୍ଗୁନିର୍ଯ୍ୟାସ ମାଳକ ନେତା ଅର୍କପାଦ
ରାଜଭଦ୍ରକ ତିକ୍ତକ କୀକଟ ଛର୍ଦ୍ଦନ
ନିମ୍ବଗଛର ଅଟଇ ଏହି ନାମମାନ ।

## ଶିଶୁଗଛ ଓ ବକୁଳଗଛ

ଅଗୁରୁ ଶିଂଶପା ବୀରା ପିଙ୍ଗଳା ପିଚ୍ଛିଳା
କୃଷ୍ଣସାର ଭସ୍ମଗର୍ଭା ପିଚ୍ଛଳା କପିଳା
ଏତେନାମେ ଶିଶୁଗଛ ଅଟେ ଅଭିହିତ;
ବକୁଳ ବୃକ୍ଷ କେସର ନାମରେ କଥିତ ।

## ଶିରୀଷବୃକ୍ଷ

ମୃଦୁପୁଷ୍ପ ଶୁକତରୁ ଭଣି କପୀତନ,
ସ୍ୱର୍ଣ୍ଣପୁଷ୍ପକ ଭଣରୀ ଯେ ବିଷନାଶନ,
ଶଙ୍ଖିନୀ ଫଳ ଶ୍ୟାମଳ ଭଣିଳ ଭଣିର ।
ଏନାମମାନ ଅଟଇ ଶିରୀଷ ବୃକ୍ଷର ।

## ଚମ୍ପାଗଛ

ଚମ୍ପକ ହେମପୁଷ୍ପକ ସୁରଭି ଋମେୟ
ଚମ୍ପାବୃକ୍ଷର ଅଟଇ ଏହି ନାମଚୟ ।

## ଚମ୍ପା କଳିକା ଓ ଅଶୋକ

ଗନ୍ଧଫଳୀ ନାମେ ଚମ୍ପାକଳିକା ଆଖ୍ୟାତ;
ବଞ୍ଜୁଳ ନାମେ ଅଶୋକ ଅଟେ ଅଭିହିତ ।

## ଦାଡିମବୃକ୍ଷ

ପିଣ୍ଡପୁଷ୍ପ ମଣିବୀଜ କରକ ନାମରେ
ଦାଡିମ୍ବ ବୃକ୍ଷ ଆଖ୍ୟାତ ରଖିବ ମନରେ ।

## ନାଗେଶ୍ୱର

ନାଗକେଶର ଋମେୟ କାଞ୍ଚନ କେଶର
ଏସରି ନାମେ କଥିତ ଅଟେ ନାଗେଶ୍ୱର ।

## ଜୟନ୍ତୀଗଛ

ବୈଜୟନ୍ତିକା ତର୍କାରୀ ନାଦେୟୀ ଆବର
ଜୟା ମିଶି ନାମସରି ଜୟନ୍ତୀ ଗଛର ।

## ଅଗିବଥୁ

ଗଣକାରିକା କଣିକା ଜୟା ଅଗ୍ନିମନ୍ଥ,
ଶ୍ରୀପର୍ଣ୍ଣ ଏପାଞ୍ଚ ନାମେ ଅଗିବଥୁ ଖ୍ୟାତ ।

## କୁରେହି

ଗିରିପଲ୍ଲିକା ବସକ କୁଟଳ ପାଣ୍ଡୁର,
ଶକ୍ର ମିଶି ପାଞ୍ଚନାମ କୁରେହି ଗଛର

## କୁରେହି ମଞ୍ଜି

ଇନ୍ଦ୍ରଯବ ଭଦ୍ରଯବ କଳିଙ୍ଗ ନାମରେ
କୁରେହିର ବୀଜ ଖ୍ୟାତ ରଖିବମନରେ ।

## ପାଣିଅଁଳା

କୃଷ୍ଣପାକଫଳ କରମର୍ଦ୍ଦକ ସୁଷେଣ
ପାଣିଅଁଏଳା ଗଛର ଏହି ନାମମାନ ।

## ତମାଳ

କାଳସ୍କନ୍ଧ ତପିଞ୍ଛ ଏବେନି ନାମେଜାଣ
ତମାଳ ବୃକ୍ଷ ଆଖ୍ୟାତ ପ୍ରିୟ ଶିଶୁଗଣ ।

## ବେଗୁନିଆଁ

ନିର୍ଗ୍ନଣ୍ଡି ନିର୍ଗୁଣ୍ଡୀ କରହାଟ ସିନ୍ଧୁବାର
ଇନ୍ଦ୍ରସୁରିଷ ସିନ୍ଧୁକ ପୌଲୋମି ଆବର
ସିନ୍ଧୁ ବାରକ ସୁରମା ସିନ୍ଧୁକ ନାମରେ
ବେଗୁନିଆଁ ଗଛ ଖ୍ୟାତ ରଖିବ ମନରେ ।

## ଦେବତାଡ

ବେଣୀ ଖରା ଗରୀ ଆଖୁ ତାଡ ମହାଛଦ
ଦେବତାଡ ବୃକ୍ଷ ଏତେ ନାମରେ ପ୍ରସିଦ୍ଧ ।

## ହାତିଶୁଣ୍ଢା

ଶ୍ରୀହସ୍ତିନୀ ଭୁରୁଣ୍ଡୀ ଏବେନି ନାମେଜାଣ
ହାତିଶୁଣ୍ଢା ବୃକ୍ଷ ଖ୍ୟାତ ପ୍ରିୟ ଶିଶୁଗଣ ।

## ମଲ୍ଲିକା

ତୃଣଶୂନ୍ୟ ଶୀତଭୀରୁ ଭୂପଦୀ ନାମରେ
ମଲ୍ଲିକା ଗଛ ଆଖ୍ୟାତ ରଖିବ ମନରେ ।

## ବନମଲ୍ଲୀ ଓ ଶେଫାଳିକା ଅର୍ଥାତ୍ ଗଙ୍ଗଶିଉଳି

ଅଷ୍ଫୋଟା ନାମରେ ଖ୍ୟାତ କାନନମଲ୍ଲିକା;
ସୁବହା ନାମେ କଥିତ ଅଟେ ଶେଫାଳିକା ।

## ଶୁକ୍ଳ ଶେଫାଳିକା

ଭୂତବେଶୀ ପୁଣି ଶ୍ୱେତସୁରସା ନାମରେ
ଶୁକ୍ଳ ଶେଫାଳିକା ଖ୍ୟାତ ରଖିବ ମନରେ ।

## ନୀଳ ଶେଫାଳୀ ଓ କୁନ୍ଦଫୁଲ ଗଛ

ନିର୍ଗୁଣ୍ଡୀ ନୀଳିକା ନାମ ନାଳ ଶେଫାଳୀର;
ମାଘ୍ୟ ନାମଅଟେ କୁନ୍ଦ କୁସୁମ ଗଛର ।

## ଯୂଇଗଛ

ମାଗଧୀ ଗଣିକା ଯୂଥୀ ଅମ୍ବଷ୍ଠା ଆବର
ଯୂଇ ଫୁଲ ଗଛର ଅଟଇ ନାମାନ୍ତର ।

## ପୀତବର୍ଣ୍ଣ ଯୂଇଗଛ

ହେମପୁଷ୍ପିକା ନାମରେ ପୀତବର୍ଣ୍ଣ ଯୂଥୀ
ଅଭିହିତ ଅଟେ ମନେ ରଖିବ ସୁମତି ।

## ମାଧବୀ ଲତା

ଅତିମୁକ୍ତ ପୁଣ୍ଡକ ଯେ ବାସନ୍ତୀ ଆବର
ଏନାମମାନ ଅଟଇ ମାଧବୀ ଲତାର ।

## ଜାଇଲତା

ସୁମନା ମାଳତୀ ପୁଣି ଜାତି ପଦତିନି
ଜାଇ ଲତାର ଅପର ନାମ ବୋଲିଘେନି ।

## ନିଆଳୀ

ସପ୍ତଳା ନବମଲ୍ଲିକା ଏବେନି ନାମରେ
ନିଆଳୀ ଗଛ ଆଖ୍ୟାତ ରଖିବ ମନରେ ।

### ବନ୍ଧୂଲି

ବନ୍ଧୁ ଜୀବକ ବନ୍ଧୁକ ରକ୍ତକ ଆବର
ବନ୍ଧୂଲି ଗଛର ଏତେ ଅଟେ ନାମାନ୍ତର ।

### ଘୃତକୁମାରୀ

ସହା କୁମାରୀ ତରଣୀ ଏହି ପଦତିନି
ଘୃତକୁମାରୀର ନାମାନ୍ତର ବୋଲି ଘେନି ।

### ଅଇଁଲାଇ ଫୁଲ

ଅମ୍ଳାନ ମହାସହା ଏବେନି ନାମେଜାଣ
ଅଇଁଲାଇ ଗଛ ଖ୍ୟାତ ପ୍ରିୟ ଶିଶୁଗଣ ।

### ରକ୍ତ ଓ ପୀତ ବର୍ଣ୍ଣର ଅଇଁଲାଇ ଫୁଲଗଛ

ରକ୍ତବର୍ଣ୍ଣ ଅମ୍ଳାନର ନାମ କୁରୁବକ;
ପୀତବର୍ଣ୍ଣେ ବୋଲି ସହଚରୀ କୁରୁଣ୍ଟକ ।

### ନୀଳପୁଷ୍ପଝିଣ୍ଟୀ

ବାଣା ଦାସୀ ଆର୍ତ୍ତଗଳ ଏତିନି ନାମରେ
ନୀଳ ପୁଷ୍ପଝିଣ୍ଟୀଖ୍ୟାତ ରଖିବ ମନରେ ।

### ଦାସକେରଣ୍ଟା ଓ ମନ୍ଦାର

ସୌରୀୟକ ଝିଣ୍ଟୀ ନାମ ଦାସକେରଣ୍ଟାର;
ଉକ୍ତପୁଷ୍ପ ଜବା ନାମେ ଆଖ୍ୟାତ ମନ୍ଦାର ।

### ତିଳଫୁଲ ଓ କମଳା ଗଛ

ବଜ୍ରପୁଷ୍ପ ନାମାନ୍ତର ତିଳକୁସୁମର;
କମଳାର ନାମ ଫଳପୂର, ବୀଜପୂର ।

### ମାତୁଲୁଙ୍ଗ

ରୁଚକ, ମାତୁଲୁଙ୍ଗକ, ଏବେନି ନାମରେ
ମାତୁଲୁଙ୍ଗ ଅଭିହିତ ରଖିବ ମନରେ ।

## କରବୀର (କନିଅର)

ପ୍ରତିହାସ, ଶତପ୍ରାସ, ଚଣ୍ଡାତ ଆବର
ହୟମାରକ ନାମରେ ଖ୍ୟାତ କରବୀର ।

## ମରୁଭୂମିଜାତ ଉଷ୍ଟ୍ରପ୍ରିୟ କଣ୍ଟକବୃକ୍ଷ

ତୀକ୍ଷ୍ଣକଣ୍ଟକ, କବୀର, ଗ୍ରନ୍ଥିଳ, କ୍ରକର,
ଏତେନାମ ଉଷ୍ଟ୍ରପ୍ରିୟ କଣ୍ଟକ ବୃକ୍ଷର ।

## ଦୁଦୁରାଗଛ

ଉନ୍ମତ୍ତ, କିତବ, ଧୂର୍ତ୍ତ, କନକ, ଧୁସ୍ତୂର,
ମାତୁଳ, ମଦନ ନାମ ଦୁଦୁରା ଗଛର ।

## ଦୁଦୁରାଫଳ ଓ ଶୁକ୍ଳ ତୁଳସୀ

ଦୁଦୁରାଫଳର ନାମ ମାତୁଳପୁତ୍ରକ;
ଶୁକ୍ଳ ତୁଳସୀର ନାମ ପର୍ଣ୍ଣାସ, ଅର୍ଜ୍ଜକ ।

## କ୍ଷୁଦ୍ରପତ୍ର ବିଶିଷ୍ଟ ତୁଳସୀ

ଫଣିଜ୍ଜକ, ଶରପତ୍ର ଏହି ପଦବେନି
କ୍ଷୁଦ୍ରପତ୍ର ତୁଳସୀର ନାମବୋଲି ଘେନି ।

## କଳାତୁଳସୀ ଓ ବାବୁଇ ଅର୍ଥାତ୍ ଲଣ୍ଡାବାଗୁରୀ

କୃଷ୍ଣ ତୁଳସୀର ନାମ ଅଟେ କାଳମାନ;
ବର୍ବରୀ, କବରୀ ନାମ ବାବୁଇର ଘେନ ।

## ତୁଳସୀ

ପାପନାଶିନୀ, କାୟସ୍ଥା, ଭୂତଘ୍ନୀ, ବୈଷ୍ଣବୀ
ପତ୍ରପୁଷ୍ପା, ପୂଜ୍ୟା, ଗୌରୀ, ପବିତ୍ରା ମାଧବୀ
ସୁରଭି, ସୁରସା, ହରିପ୍ରିୟା, କଠିଞ୍ଜର
ସୁଭଗା, ପାବନୀ, ତୀବ୍ରା, ସୁବରା ଆବର
ସୁଲଭା, ସୁଗନ୍ଧା ନାମେ ତୁଳସୀ ପ୍ରସିଦ୍ଧ
ରଖିବ ଯତନେ ମନେ ପ୍ରିୟ ଶିଶୁବୃନ୍ଦ ।

## ଚିତାମୂଳ

ବହ୍ନି, ପାଠି, ଚିତ୍ରକ ଏ ତିନି ନାମେଜାଣ
ଚିତାମୂଳ ଗଛଖ୍ୟାତ ପ୍ରିୟ ଶିଶୁଗଣ ।

## ଶ୍ୱେତ ଅରଖ

ଅଳର୍କ, ରାଜାର୍କ, ପ୍ରତାପସ ପଦତିନି
ଶ୍ୱେତ ଅରଖଗଛର ନାମବୋଲି ଘେନି ।

## ରକ୍ତ ଅରଖଗଛ

ଆଦିତ୍ୟପୁଷ୍ପିକା, ଦିବ୍ୟପୁଷ୍ପିକା, ବିଶ୍ୱୋର,
ଏତିନି ନାମ ଅଟଇ ରକ୍ତ ଅରଖର ।

## ସାଧାରଣ ଅରଖ

ଅର୍କ, ବସୁକ, ଜମ୍ଭନ, ସୂର୍ଯ୍ୟାହ୍ୱ, ମନ୍ଦାର,
ଗଣରୂପ, ବିକୀରଣ, ଖର୍ଜୁଘ୍ନ, ବିକ୍ଷୀର,
କ୍ଷୀରବଳ, ପୁଚ୍ଛି, କ୍ଷୀରକାଣ୍ଡକ, ଆସ୍ଫୋତ,
ସାମାନ୍ୟ ଅରଖ ଏତେନାମରେ ଆଖ୍ୟାତ ।

## ଗଇଶ

ଏକାଷ୍ଠକ, ବସୁ , ଶିବମଲ୍ଲୀ, ପାଶୁପତ,
ବକ ମିଶି ପଞ୍ଚ ନାମେ ଗଇଶ ଆଖ୍ୟାତ ।

## ବୃକ୍ଷର ମଲାଙ୍ଗ

ଜୀବନ୍ତିକା, ବୃକ୍ଷରୁହା, ବନ୍ଦା, ବୃକ୍ଷାଦନୀ,
ଏତେପଦ ମଲାଙ୍ଗର ନାମବୋଲି ଘେନି ।

## ଗୁଳୁଚୀ

ଅମୃତା, ତନ୍ତ୍ରୀକା, ଛିନ୍ନରୁହା, ବତ୍ସାଦନୀ,
ଗୁଡୁଚୀ, ବିଶଲ୍ୟା, ସୋମବଲ୍ଲୀ, ମଧୁପର୍ଣ୍ଣୀ,
ଜୀବନ୍ତିକା ମିଶି ଏହି ନବନାମେ ଜାଣ
ଗୁଳୁଚୀ ଲତା ଆଖ୍ୟାତ ପ୍ରିୟ ଶିଶୁଗଣ ।

## ମୂର୍ବା

ମଧୂରସା, ମଧୂଳିକା, ଗୋକର୍ଣ୍ଣୀ, ତେଜନୀ,
ସ୍ରୁବା, ଦେବୀ, ମଧୁଶ୍ରେଣୀ, ପୁଣି ପୀଲୁପର୍ଣ୍ଣୀ,
ମୋରଟା ମିଶି ଏନବ ନାମେ ମୂର୍ବା ଖ୍ୟାତ ।
ସୁକୁମାର ଶିଶୁଗଣ ବୁଝ ଦେଇ ଚିତ୍ତ ।

## ଅକାନବିନ୍ଧି

ଅମ୍ୱଷ୍ଠା, ଶ୍ରେୟସୀ, ପାଠା, ପ୍ରାଚୀନା, ସ୍ଥାପନୀ,
ଏକାଷ୍ଠୀଳା, ପାପଚେଲୀ, ରସା ବିଦ୍ଧକର୍ଣ୍ଣୀ,
ବନତିକ୍ତକା, ଅବିଦ୍ଧପୂର୍ଣ୍ଣୀ, ବୃହତ୍ତିକ୍ତା
ଅକନବିନ୍ଧ ଏତେକ ନାମେ ଅଭିହିତା ।

## କଟୁକୀ

କଟମ୍ୱରା, ମତ୍ସ୍ୟପିତ୍ତା, ଅଶୋକ ରୋହିଣୀ,
କଟୁରୋହିଣୀ ଚକ୍ରାଙ୍ଗୀ ଯେ ଶକୁଳାଦନୀ,
କଟୁମିଶି ସାତନାମ କଟୁକୀ ଲତାର
ରଖିବ ମନରେ ପ୍ରିୟ ସୁବୋଧ କୁମାର ।

## ବାଇଡ଼ୁଙ୍କଲତା

ପ୍ରାବୃଷାୟଣୀ, କଣ୍ଡୁରା, ଜଡା, ଆତ୍ମଗୁପ୍ତା
ଅବ୍ୟଣ୍ଡା, ମର୍କଟୀ, ଶୁକଶିମ୍ବୀ, ଋଷ୍ୟପ୍ରୋକ୍ତା
କପିକଚ୍ଛୁ,ଗୁପ୍ତା, ଚଣ୍ଡା, ଦୁଃସ୍ପର୍ଶା ଆବର
ବାଇଡୁଙ୍କର ଏମାନ ଅଟେ ନାମାନ୍ତର ।

## ମୂଷାକାନୀ

ନ୍ୟଗ୍ରୋଧୀ ଦ୍ରବନ୍ତୀ ବୃଷା ଚିତ୍ରା, ପ୍ରତ୍ୟକ୍‌ଶ୍ରେଣୀ
ମୂଷିକପର୍ଣ୍ଣୀ ଶମ୍ୱରୀ, ରଣ୍ଡା, ସୁରଶ୍ରେଣୀ
ଉପଚିତ୍ରା ମିଶି ଏହି ଦଶନାମେ ଜାଣ
ମୂଷାକାନୀ ଅଟେଖ୍ୟାତ ପ୍ରିୟ ଶିଶୁଗଣ ।

## ଅପାମାରଙ୍ଗ

ଅପାମାର୍ଗ, ଧାମାର୍ଗବ, କୁବ୍ଜ, ମୟୂରକ,
ପ୍ରତ୍ୟେକ୍‌ପର୍ଣ୍ଣୀ, କୀଶପର୍ଣ୍ଣୀ, କଣ୍ଟୀ, ଶୈଖରିକ,
କିଣିହୀ, ଖରମଞ୍ଜରୀ, ଶିଖରୀ, ବାସର
ଏତେନାମ ଅଟେ 'ଅପାମାରଙ୍ଗ' ଗଛର ।

## ବାହ୍ମଣୀଝଣ୍ଟା

ଫଞ୍ଜିକା, ବ୍ରାହ୍ମଣୀ, ପଦ୍ମା, ବର୍ବର, ବର୍ଦ୍ଧକ,
ବ୍ରାହ୍ମଣଯଷ୍ଟିକା, ଭାର୍ଗୀ, ଯେ ବାଳେୟ ଶାକ,
ଅଙ୍ଗାରବଲ୍ଲୀ ମିଶିଣ ଏହି ନାମମାନ
ବ୍ରାହ୍ମଣୀଝଣ୍ଟାର ବୋଲି ଜାଣ ଶିଶୁଗଣ ।

## ମଞ୍ଜିଷ୍ଠା

ଯୋଜନବଲ୍ଲୀ, ବିକସା, ଜଙ୍ଗୀ, ଭଣ୍ଡୀ, ଗୌରୀ,
ମଣ୍ଡୂକପର୍ଣ୍ଣୀ, ସମଙ୍ଗା, ଭଣ୍ଡିକା, ଭଣ୍ଡୀରୀ
କାଳମେଷିକା, ଚିତ୍ରାଙ୍ଗୀ, ମଞ୍ଜୁଷା, ରୋହିଣୀ,
ଏତେପଦ ମଞ୍ଜିଷ୍ଠାର ନାମବୋଲି ଘେନି ।

## ଦୁଲଭା

ଧନ୍ୱୟାସ, କୁନାଶକ, ଯବାସ, ଅନନ୍ତା,
ରୋଦନୀ, କଚ୍ଛୁରା, ଦୁରାଲଭା, ସମୁଦ୍ରାନ୍ତା,
ଯାସ, ଦୁଷ୍ପର୍ଶ ମିଶିଣ ଏ ଦଶ ନାମରେ
ଜୁଲଭା ଅଟେ ଆଖ୍ୟାତ ରଖିବ ମନରେ ।

## କୃଷ୍ଣପର୍ଣ୍ଣୀ

ଚିତ୍ରପର୍ଣ୍ଣୀ, ପୃଥକ୍‌ପର୍ଣ୍ଣୀ, ଗୁହା, ପୃଷ୍ଟିପର୍ଣ୍ଣୀ,
ସିଂହପୁଚ୍ଛା, କ୍ରୋଷ୍ଟୁବିନ୍ନା, କଳଶି, ଧାବନୀ,
ଅଂଘ୍ରିବଲ୍ଲୀକା, ତ୍ରିପର୍ଣ୍ଣୀ, ଦୀର୍ଘା, ପୂର୍ଣ୍ଣପଣୀ,
ଏତେନାମେ ଅଭିହିତ ଅଟେ କୃଷ୍ଣପର୍ଣ୍ଣୀ ।

## ଅଙ୍କରାନ୍ତି

କଣ୍ଟକାରିକା, ବୃହତୀ, ବ୍ୟାଘ୍ରୀ, ପ୍ରଚ୍ଛେଦନୀ,
ନିର୍ଦ୍ଦିଗ୍ଧିକା, କ୍ଷୁଦ୍ରା, କୁଳୀ, କ୍ଷୁଦ୍ରା, କଣ୍ଟକିନୀ,
ଦୁଷ୍ପର୍ଶା, ରାଷ୍ଟ୍ରିକା, ସିଂହୀ, ନିଦ୍ଦିଗ୍ଧା, ଧାବନୀ,
ଅଙ୍କରାନ୍ତିର ଏତେକ ନାମ ବୋଲି ଘେନି ।

## ନୀଳୀଗଛ

ମଧୁପର୍ଣ୍ଣିକା, ଗ୍ରାମିଣା, ଶ୍ରୀଫଳୀ, ରଞ୍ଜିନୀ,
ଭୂଣୀ, କାଳା, କ୍ଲତକିକା, ତୁତ୍ଥା, ଦୋଳୀ, ଦ୍ରୋଣୀ
ନୀଳିମା ମିଶିଏ ଏକାଦଶ ନାମେଜାଣ
ନାଳୀଗଛ ଅଟେଖ୍ୟାତ ପ୍ରିୟ ଶିଶୁଗଣ ।

## ଶରାଞ୍ଜ

ସୋମରାଜୀ, ଅବଲ୍ଗୁଜ, ବାକୁଚୀ, ସୁବଲ୍ଲୀ,
କୃଷ୍ଣଫଳା, କାଳମେଷୀ, ପୁଣି ପୂତିଫଳୀ,
ସୋମବଲ୍ଲିକା, ମିଶଣ ଏ ଆଠ ନାମରେ
ଶରାଞ୍ଜ ଅଟେ ଆଖ୍ୟାତ ରଖିବ ମନରେ ।

## ପିପ୍ପଳୀ ଓ ରଇଁ କାଠ

ଉପକୁଲ୍ୟା, କୃଷ୍ଣା, ଶୌଣ୍ଡୀ, ମାଗଧୀ, ଉଷଣା,
ବୈଦେହୀ, ଚପଳା, କୋଳା, କଟୁ ବୀଜା, କଣା
ଏତେକ ନାମେ ପିପ୍ପଳୀ ଅଟେ ଅଭିହିତ;
ଚବ୍ୟ, ଚବିକା ନାମରେ ରଇଁକାଠ ଖ୍ୟାତ ।

## ଗଜପିପ୍ପଳୀ

କପିବଲ୍ଲୀ, କୋଳବଲ୍ଲୀ, ଶ୍ରେୟସୀ ବଶିର,
ଏତେକନାମ ଅଟଇ ଗଜପିପ୍ପଳୀର ।

## କାଇଁଚ

କାକଚିଞ୍ଚା, କୃଷ୍ଣଳା ଯେ ଗୁଞ୍ଜା, କାକାଦନୀ,
ଏତେପଦ କାଇଁଚର ନାମବୋଲି ଘେନି ।

## ଗୋକ୍ଷୁରା

ପଳଙ୍କଷା, ଇକ୍ଷୁଗନ୍ଧା, କ୍ଷୁର, ଗୋକ୍ଷୁରକ,
ବନଶୃଙ୍ଗାଟ, ଶ୍ୱଦଂଷ୍ଟ୍ରା, ତ୍ରିକ, ଗୋକଣ୍ଟକ,
ସ୍ୱାଦୁକଣ୍ଟକ, ତ୍ରିପୁଟ, ତ୍ରିକଟ, ଇକ୍ଷୁର,
ଏ ନାମ ମାନ ଅଟଇ ଗୋକ୍ଷୁରା ଗଛର ।

## ଅତୁସୀ ଓ କ୍ଷୀରାଇ ଗଛ

ବିଶ୍ୱା, ବିଷା, ଅତିବିଷା, ଶୃଙ୍ଗୀ, ପ୍ରତିବିଷା,
ଅରୁଣା ଆବର ମହୌଷଧ, ଉପବିଷା,
ଅତୁସୀ ଅଟଇ ଏତେ ନାମେ ଅଭିହିତ
କ୍ଷରାବୀ, ଦୁଗ୍ଧିକା ନାମେ କ୍ଷୀରାଇ କଥିତ ।

## ଛତୁଆରୀ

ଶତମୂଳୀ, ବହୁସୁତା, ବରୀ, ଇନ୍ଦିବରୀ,
ଅଭୀରୁ, ଅହେରୁ, ନାରାୟଣୀ, ଶତାବରୀ,
ଋଷ୍ୟପ୍ରୋକ୍ତା, ଭୀରୁପତ୍ରୀ ଏ ଦଶ ନାମରେ
ଛତୁଆରୀ ଅଟେ ଖ୍ୟାତ ରଖିବ ମନରେ ।

## ଦାରୁହଳଦୀ

କାଳେୟକ, ହରିଦ୍ରବ, ପୀତଦ୍ରୁ, ପର୍ଚ୍ଚନୀ,
ଦାର୍ବୀ, ପଚମ୍ପଚ, ଦାରୁହରିଦ୍ରା, କାମିନୀ,
ଦାରୁନିଶା, ଦାରୁପୀତା, ଦାରୁ, କର୍କଟିନୀ,
ଦାରୁହଳଦୀର ଏତେ ନାମବୋଲି ଘେନି ।

## ବଚ

ଶତପର୍ବିକା, ଗୋଲୋମୀ, ଷଡଗ୍ରନ୍ଥି ଆବର
ବଚ, ଉଗ୍ରଗନ୍ଧା ନାମ ଅଟଇ ବଚର ।

## ଶୁକ୍ଳବଚ ଓ ବଜ୍ରମୂଳୀ

ହୈମବତୀ ନାମେ ଶୁକ୍ଳବଚ ଅଭିହିତ;
ବଳା, ବାଟ୍ୟାଳକ ନାମେ ବଜ୍ରମୂଳୀ ଖ୍ୟାତ ।

### ବାସଙ୍ଗ

ବାସକ, ବାଜିଦନ୍ତକ, ବୈଦ୍ୟାମାତୃ, ବୃଷ,
ବାସିକ, ସିଂହାସ୍ୟ, ସିଂହି, ବାସା, ଅଟରୁଷ,
ବୈଦ୍ୟସିଂହୀ, ସିଂହପର୍ଣ୍ଣୀ, ବାଜି, ବସାଦନୀ,
ଏତେପଦ ବାସଙ୍ଗର ନାମବୋଲି ଘେନି ।

### ଅପରାଜିତା

ବିଷ୍ଣୁକ୍ରାନ୍ତା, ଗିରିକର୍ଣ୍ଣୀ, କଟଭୀ, ଆସ୍ଫୋତା,
ଏତେ ନାମରେ ଅପରାଜିତା ଅଭିହିତା ।

### କୋଇଲଖା

ଇକ୍ଷୁଗନ୍ଧା, କେକିଳାକ୍ଷ, କାଣ୍ଡେକ୍ଷୁ, ଈକ୍ଷୁର,
କୋଇଲଖାର ଏତେକ ଅଟେ ନାମାନ୍ତର ।

### ପାନମହୁରୀ

ମଧୁରିକା, ଶୀତଶିବ, ମିଶ୍ରେୟା, ଶାଲେୟ
ମିସୀ, ଛତ୍ରା, ଅବାକ୍‌ପୁଷ୍ପୀ, ଏହିନାମ ଚୟ,
ପାନମହୁରୀର ବୋଲି ଅଟଇ ବିଦିତ
ମନେରଖ ଶିଶୁଗଣ ହୋଇ ଏକଚିତ୍ତ ।

### ସିଜୁ

ସମନ୍ତଦୁଗ୍ଧା, ସୀହୁଣ୍ଡ, ବଜ୍ରଦ୍ରୁ, ଆବର
ସ୍ନୁକ୍, ସ୍ନୁହୀ, ଗୁଡା ନାମ ଅଟଇ ସିଜୁର ।

### ବିଡଙ୍ଗ

ଅମୋଘା, ଚିତ୍ରତଣ୍ଡଳା, ତଣ୍ଡୁଳ, ପାବକ,
କୃମିଘ୍ନ, କୃମିହା, ବେଲ୍ଲି, ତଣ୍ଡଲୁ, ଭସ୍ମକ,
ଚିତ୍ରବୀଜା, ଜନ୍ତୁହନ୍ତ୍ରୀ, ଚିତ୍ରା, ରସାୟନ,
ବିଡଙ୍ଗର ନାମଅଟେ ଏହି ପଦମାନ ।

### ଛଣିପଟ

ଷଣପୁଷ୍ପିକା, ଲୋମଶା, ଘଣ୍ଟାରବ ତିନି
ଛଣିପଟର ଅପର ନାମ ବୋଲି ଘେନି ।

## ତିହୁଡି

ସର୍ବାନୁଭୂତି, ସରଳା, ରେଚନୀ ନାମରେ
ତିହୁଡି ଅଟେ ଆଖ୍ୟାତ ରଖିବ ମନରେ ।

## କୃଷ୍ଣ ତିହୁଡି

ମସୂର ବିଦଳା, କାଳମେଷିକା, ପାଳିନ୍ଧୀ
ଅର୍ଦ୍ଧଚନ୍ଦ୍ରା, ସୁଷେଣିକା, ଶ୍ୟାମା ଯେ ପାଳିନ୍ଦି,
ଏତେକ ନାମ ଅଟଇ କଳା ତିହୁଡିର
ରଖିବ ଯତନେ ମନେ ସୁବୋଧ କୁମର ।

## ଶୁକ୍ଳ ତିହୁଡି

ତ୍ରିବୃତ୍, ସୁବହା, ତ୍ରିଭଣ୍ଡୀ, ତ୍ରିପୁଟା ନାମରେ
ଶୁକ୍ଳତିହୁଡି ଆଖ୍ୟାତ ରଖିବ ମନରେ ।

## ରକ୍ତ ତିହୁଡି

ନିସ୍ତୁତା, ତ୍ରିବୃତ୍ତା, କଟୁରଣା, ବ୍ୟାଘ୍ରାଦନୀ
ରକ୍ତ ତିହୁଡିର ଏତେ ନାମବୋଲି ଘେନି ।

## ଯାଠିମଧୁ

ମଧୁଯଷ୍ଟିକା, କ୍ଳୀତକ, ମଧୁକ, ଏତିନି
ଯାଠିମଧୁର ଅପର ନାମ ବୋଲି ଘେନି ।

## ଭୂଇଁକଖାରୁ

କ୍ଷୀରଶୁକ୍ଳା, ଇକ୍ଷୁଗନ୍ଧା, କ୍ରୋଷ୍ଟୀ ଯେ ବିଦାରୀ
ଭୂମିକୁଷ୍ମାଣ୍ଡର ଅଟେ ଏହି ନାମଝରି ।

## ମଦରଙ୍ଗା

ଲାଙ୍ଗୁଳୀ, ତୋୟପିପ୍ପଳୀ ଯେ ଶକୁଳାଦନା
ଶାରଦୀ, ମଦରଙ୍ଗାର ନାମେ ଏତେ ଘେନି ।

## ମୟୂରଚୂଳୀ

ଲୋରମସ୍ତକ, ଖରୀଶ୍ୱା, କାରବୀ, ମୟୂର,
ଦୀପ୍ୟ ମିଶି ଏତେନାମ ମୟୂରଚୂଳୀର ।

## ଶ୍ୟାମାଲତା

ଉତ୍ପଳଶାରିବା, ଶ୍ୟାମା, ଶାରିବା, ଅନନ୍ତା
ଗୋପୀ ମିଶି ପାଞ୍ଚନାମେ ଖ୍ୟାତ ଶ୍ୟାମାଲତା ।

## ଋଦ୍ଧି

ଯୋଗ୍ୟ, ସିଦ୍ଧି, ଲକ୍ଷ୍ମୀ ଏହି ତିନି ନାମେ ଜାଣ
ଋଦ୍ଧି ମହୌଷଧି ଖ୍ୟାତ ପ୍ରିୟ ଶିଶୁଗଣ ।

## କଦଳୀ

ସୁଫଳା, ଅଂଶୁମତ୍‌ଫଳା, ମୋଚକ କଦଳା
ରମ୍ଭା, ମୋଚ୍ଚ, ବାରବୂଷା, ରୋଚକ, କାଷ୍ଠଳ
ଏତେପଦ କଦଳୀର ଅଟେ ନାମାନ୍ତର
ରଖିବ ଯତନେ ମନେ ସୁବୋଧ କୁମର ।

## ମୁଦ୍ଗପର୍ଣ୍ଣୀ ଓ ବନକାର୍ପାସ

କାକମୁଦ୍ଗା, ସହା ନାମେ ଖ୍ୟାତି ମୁଦ୍ଗପର୍ଣ୍ଣୀ,
ଭରଦ୍ୱାଜୀ ନାମେ ବନ କାର୍ପାସକୁ ଘେନି ।

## କପା ବା କାର୍ପାସ ଗଛ

ବଦରା, କାର୍ପାସା, ସମୁଦ୍ରାନ୍ତା, ତୁଣ୍ଡିକେରୀ
କପାଗଛର ଅଟଇ ଏହି ନାମଚ୍ଛରି ।

## ବାର୍ତ୍ତାକୀ ବା ବାଇଗଣ

ଦୁଷ୍ପ୍ରଧର୍ଷିଣୀ, କୀଙ୍ଗୁଳୀ ସିଂହୀଯେ ଭଣ୍ଟାକ୍ୟ,
ଏତେ ନାମରେ ଆଖ୍ୟାତ ହୁଅଇ ବାର୍ତ୍ତାକ୍ୟ ।

## ରାସ୍ନା

ନାକୁଳୀ, ଗନ୍ଧନାକୁଳୀ ସୁଗନ୍ଧା, ସୁରସା,
ନକୁଳେଷ୍ଟା, ଭୁଜଙ୍ଗାକ୍ଷି, ରସା, ଅତିରସା,
ଛତ୍ରାକୀ, ସୁବହା, ରସ୍ୟା, ରସନା ନାମରେ
ରାସ୍ନା ଅଟେ ଅଭିହିତ ରଖିବ ମନରେ ।

## ଶାଳପର୍ଣ୍ଣୀ

ଗନ୍ଧାଂଶୁମତୀ, ବିଦାରୀ, ସ୍ଥିରା, ଧ୍ରୁବା, ପୁଣି
ଏତେକ ନାମରେ ଖ୍ୟାତ ଅଟେ ଶାଳପର୍ଣ୍ଣୀ ।

## କକଡାଶୃଙ୍ଗୀ

ଶୃଙ୍ଗୀ, ବୃଷ, ବୃଷଭ ଏ ତିନି ନାମେଜାଣ
କକଡାଶୃଙ୍ଗୀ କଥିତ ପ୍ରିୟ ଶିଶୁଗଣ ।

## ବଜ୍ରମୂଳୀ

ହ୍ରିସ୍ୱଗବେଧୂକା, ଝଷା, ଗାଙ୍ଗେରୁକୀ ତିନି
ନାଗବଳା ମିଶି ବଜ୍ରମୂଳୀ-ନାମେଘେନି ।

## ଘୋଷାଲତା

ଘୋଷକ, ଯେ ଧାମାର୍ଗବ ଏବେନି ନାମରେ
ଘୋଷାଲତା ଅଭିହିତ ରଖିବ ମନରେ ।

## ପୀତ ଘୋଷା ଓ ପଟୋଳିକା

ମହାଜାଲୀ ନାମେଜାଣ ପୀତ ଘୋଷାଲତା
ପଟୋଳିକା ଲତା ଜାଲୀ ନାମେ ଅଭିହିତା ।

## ଭୂଇଁଜାମ୍ବୁ

ନାଦେୟୀ, ଭୂମିଜମ୍ବୁକା, ଜାଳୀ ପଦ ତିନି
ଭୂଇଁ ଜାମ୍ବୁର ଅପର ନାମବୋଲି ଘେନି ।

## ଲହଲାଙ୍ଗଳିଆ

ଲାଙ୍ଗଳିକା, ଅଗ୍ନିଜିହ୍ୱା ଏବେନି ନାମରେ
ଲହଲାଙ୍ଗଳିଆ ଖ୍ୟାତ ରଖିବ ମନରେ ।

## ଗୁଆଳୀଲତା

ଗୋଧାପଦୀ, ସୁବହା ଏ ବେନି ନାମେ ଜାଣ
ଗୁଆଳୀଲତା ଆଖ୍ୟାତ ପ୍ରିୟ ଶିଶୁଗଣ ।

## ତାଳମୂଳୀ

ମୂଷଳୀ, ତାଳମୂଳିକା ଏ ବେନି ନାମରେ
ତାଳମୂଳୀ ଅଟେ ଖ୍ୟାତ ରଖିବ ମନରେ ।

## ଦରିଆଶାକ

ଗୋଜିହ୍ୱା, ଦାର୍ବିକା ନାମ ଦରିଆ ଶାକର
ରଖିବ ଯତନେ ମନେ ସୁବୋଧ କୁମର ।

## ପାନ

ତାମ୍ବୁଲବଲ୍ଲୀ, ତାମ୍ବୁଲୀ, ନାଗବଲ୍ଲୀ ତିନି
ପାନଲତାର ଅପର ନାମ ବୋଲି ଘେନି ।

## ରେଣୁକ

ଭସ୍ମଗନ୍ଧିନୀ, ହରେଣୁ ଦ୍ୱିଜା, କୌନ୍ତୀ, ପୁଣି
କପିଳା ନାମେ ରେଣୁକ ଗନ୍ଧଦ୍ରବ୍ୟେ ଘେନି ।

## ଏଲ୍‌ବାଲୁକା ଅର୍ଥାତ୍ ଗନ୍ଧ ବାଲୁକା

ହରିବାଲୁକ, ଐଳେୟ, ସୁଗନ୍ଧି, ବାଲୁକ ।
ଏତେ ନାମେ ଖ୍ୟାତ ଅଟେ ଯେ ଏଳବାଲୁକ ।

## କୁନ୍ଦୁରୁ ଅର୍ଥାତ୍ କୁନ୍ଦୁରୁ ଖୋଟ୍

ପାଲଙ୍କି, ମୁକୁନ୍ଦ, କୁନ୍ଦ ଏତିନି ନାମରେ
କୁନ୍ଦୁରୁଅଟେ ଆଖ୍ୟାତ ରଖିବ ମନରେ ।

## କୁରୁବେଲୀ

କେଶ-ଅମ୍ବୁ-ବାଚୀ, ପୁଣିବର୍ହିଷ୍ଠ, ହ୍ରୀବେର
ବାଳ ମିଶି ଏତେ ନାମ ଯେ କୁରୁବେଲୀର ।

## ଶୈଳଜ

ଶୈଳଜର ନାମ କାଳାନୁସାର୍ଯ୍ୟ, ଶୈଳେୟ,
ଅଶ୍ମପୁଷ୍ପ, ଶୀତଶିବ, ବୃଦ୍ଧ, ପଦଚୟ ।

## ମୁରାମାଂସୀ

ଗନ୍ଧିନୀ ଯେ ଦୈତ୍ୟା, ଗନ୍ଧକୁଟୀ, ତାଳପର୍ଣ୍ଣୀ
ମୁରାମାଂସୀର ଏତେକ ନାମ ବୋଲି ଘେନି ।

## ଶଲ୍ଲକୀ

ଗଜଭକ୍ଷ୍ୟା, ମହେରଣା, ରସା, କୁନ୍ଦୁରକୀ,
ସୁରଭୀ, ସୁବହା ନାମେ ଆଖ୍ୟାତ ଶଲ୍ଲକୀ ।

## ଧାତକୀ ଗଛ

ଧାତୁପୁଷ୍ପିକା, ସୁଭିକ୍ଷା, ଅଗ୍ନିଜ୍ୱାଳା ତିନି
ଧାତକୀ ଗଛର ଅନ୍ୟ ନାମ ବୋଲି ଘେନି ।

## ଅଳାଇଚ

ବଡ ଅଳାଇଚ ନାମ ଅଟଇ ବହୁଳା,
ପୃଥ୍ୱୀକ, ନିଷ୍କୁଟି, ଏଳା ପୁଣି ଚନ୍ଦ୍ରବାଳା ।

## କ୍ଷୁଦ୍ରଏଳା ଅର୍ଥାତ୍ ଗୁଜୁରାତି

ଉପକୁଞ୍ଚିକା, କୋରଙ୍ଗୀ, ତ୍ରିପୁଟା, ସୁକ୍ଷ୍ମୈଳା,
ତୃଟା, ତୁଟି ଏତେ ନାମେ ଖ୍ୟାତ କ୍ଷୁଦ୍ର ଏଳା ।

## କୁଡ଼୍

କୁଡ଼୍ ଗଛର ଅପର ନାମ ଯେ ଉତ୍ପଳ,
ବ୍ୟାଧି, କୃଷ୍ଣ, ପାରିଭଦ୍ୟ, ବାପ୍ୟ ଯେ ପାକଳ ।

## ସୈ୍ରରପୁଷ୍ପି ନାମକ ଲତା

ଶଙ୍ଖିନୀ, କେଶିନୀ, ସୈ୍ରରପୁଷ୍ପିକା ନାମରେ
ସୈ୍ରରପୁଷ୍ପି ନାମେ ଲତା ରଖିବ ମନରେ ।

## ଭୂଇଁଅଁଳା

ତାଳୀ, ଶିବା, ତାମଲକୀ, ଅଝଝଟା, ଅମଳା
ଝଟା ବିତୁନ୍ନକ ନାମେ ଖ୍ୟାତ ଭୂଇଁଅଁଳା ।

### ସ୍ଥଳପଦ୍ମ

ପ୍ରପୌଣ୍ଡରୀକ, ପୁଣ୍ଡର୍ଯ୍ୟ, ଏବେନି ନାମରେ
ସ୍ଥଳପଦ୍ମ ଅଟେ ଖ୍ୟାତ ଜାଣିବ କ୍ରମରେ ।

### ନନ୍ଦୀ ନାମକ ବୃକ୍ଷ

ତୂନ୍ନ, କୁବେରକ, କୂଣି, କଚ୍ଛ, କାନ୍ତଳକ,
ଏତେ ନାମରେ ଆଖ୍ୟାତ ଅଟେ ନନ୍ଦୀ ବୃକ୍ଷ ।

### ଚୋର ନାମକ ଗନ୍ଧଦ୍ରବ୍ୟ

ଗଣହାସକ, ରାକ୍ଷସୀ, ଧନହରୀ, କ୍ଷେମ
ଚୋର ନାମକ ଦ୍ରବ୍ୟର ଏହି ଚାରିନାମ ।

### ନଖୀ

ଚକ୍ରକାରକ, କରଜ ପୁଣି ବ୍ୟାଡାୟୁଧ,
ବ୍ୟାଘ୍ର ନଖ ନାମେ ନଖୀ ଅଟଇ ପ୍ରସିଦ୍ଧ ।

### ନାଳୀ ନାମକ ଗନ୍ଧଦ୍ରବ୍ୟ

ଶୁଷିରା, ବିଦ୍ରୁମଲତା, ନଟୀ, ନଳୀ ପୁଣି
କପୋତାଂଘ୍ରି, ନାମେ ନାଳୀ ଗନ୍ଧଦ୍ରବ୍ୟ ଘେନି

### ହଟ୍ଟ ବିଳାସିନୀ ନାମକ ଗନ୍ଧଦ୍ରବ୍ୟ

ହନୁ ଯେ ଅଞ୍ଜନକେଶୀ, ଆବର ଧମନୀ
ଏତେ ନାମେ ଖ୍ୟାତଅଟେ ହଟ୍ଟ ବିଳାସିନୀ ।

### ନଖିଭେଦ

ଶୁକ୍ତି, ଶଙ୍ଖ, କୋଲଦଳ, ନଖ ପୁଣି ଖୁର,
ଏ ନାମ ମାନ ଅଟଇ ନଖି ବିଶେଷର ।

### କେଉଟିଆ ମୁଥା

ପରିପେଲବ, ବାଳେୟ, ପ୍ଲବ, ଦାଶପୁର,
କୈବର୍ତ୍ତୀ ମୁସ୍ତକ, କୁଟନ୍ନଟ, ଯେ ଗୋପୁର,
ଗୋବର୍ଦ୍ଧମିଣିଣ ଏହି ଆଠନାମେ ଜାଣ
କେଉଟିଆ ମୁଥା ଖ୍ୟାତ ପ୍ରିୟ ଶିଶୁଗଣ ।

## ଗଣ୍ଠିଅନା

ଗ୍ରନ୍ଥିପର୍ଣ୍ଣ, ବର୍ହିପୁଷ୍ପ; ଗ୍ରୌଣେୟ, କୁକୁର
ଶୁକ ମିଶି ଏତେନାମ ଯେ ଗଣ୍ଠିଅନାର ।

## ପିଡଙ୍ଗ ଶାକ

ମରୁଜ୍ୱାଳା, ପୃକ୍କା, ଦେବୀ, ଲଘୁ, ସମୁଦ୍ରାନ୍ତା,
ବଧୂ, କୋଟି, ବର୍ଷା, ଲଙ୍କାପିକା, ପୁଣିତା
ପିଶୁନା ଆବର ମିଶି ଏ ଦଶ ନାମରେ
ପିଡଙ୍ଗ ଶାକ ଆଖ୍ୟାତ ରଖିବ ମନରେ ।

## ଜଟାମାଂସୀ

ଜଟିଳା, ଲୋମଶା ପୁଣି ତପସ୍ୱୀନୀ, ମିସୀ,
ଏତେକ ନାମରେ ଖ୍ୟାତ ଅଟେ ଜଟାମାଂସୀ ।

## ତେଜପତ୍ର

ତ୍ୱକ୍‌ପତ୍ର, ଉତ୍କଟ, ଭୃଙ୍ଗ, ତ୍ୱଚ, ଚୈଚ ପୁଣି
ବରାଙ୍ଗକ ଏତେନାମେ ତେଜପତ୍ର ଜାଣି ।

## ଓଷଧି

ବିନାଶ ହୁଅଇ ଯାହା ଫଳ ପାକପରେ
ସେ ଉଦ୍‌ଭିଦ ଖ୍ୟାତ ଅଟେ ଓଷଧି ନାମରେ ।

## ବନସ୍ପତି

ପୁଷ୍ପବିନା ଯେଉଁ ବୃକ୍ଷେ ଫଳ ହୁଏ ଜାତ
ବନସ୍ପତି ନାମେ ସେହୁ ହୁଅଇ ଆଖ୍ୟାତ ।

## ବାନସ୍ପତ୍ୟ

ଯେଉଁ ବୃକ୍ଷ ଥାଏ ପୁଷ୍ପ ଫଳେ ଯୁକ୍ତ ହୋଇ
ବାନସ୍ପତ୍ୟ ନାମେ ସେହୁ ଆଖ୍ୟାତ ହୁଅଇ ।

## ବିରୁଧ

ବିନା ଆଶ୍ରୟେ ଯେ ଲତା ହୁଅଇ ବର୍ଦ୍ଧିତ
ବିରୁଧ ନାମରେ ସେହୁ ହୁଏ ଅଭିହିତ ।

## ଶାକ ଓ କନ୍ଦ

ବୃକ୍ଷର ପତ୍ର ପୁଷ୍ପାଦି ଶାକ ନାମେ ଖ୍ୟାତ
କନ୍ଦ ନାମରେ କୋମଳ ମୂଳ ଅଭିହିତ ।

## କାଣିମାରିଷ

ଅଳ୍ପ ମାରିଷ ଯେ ତଣ୍ଡୁଳୀୟ ନାମ ବେନି
କାଣି ମାରିଷର ନାମାନ୍ତର ବୋଲି ଘେନି ।

## ବିଶଲ୍ୟକରଣୀ

ଅଗ୍ନିପୁଷ୍ପା, ଶକ୍ରପୁଷ୍ପି, ଅନନ୍ତା, ଫଳିନୀ
ବିଶଲ୍ୟ ନାମରେ ଖ୍ୟାତ ବିଶଲ୍ୟକରଣୀ ।

## ବୃଦ୍ଧଦାରକ

ଋକ୍ଷଗନ୍ଧା, ଆବେଗୀ ଯେ ଜୁଙ୍ଗ, ଛଗଳାନ୍ତ୍ରୀ
ବୃଦ୍ଧଦାରକର ଏତେ ନାମ ବୋଲି ଘେନି ।

## ସୋମଲତା

ମତ୍ସ୍ୟାକ୍ଷି, ବୟସ୍ଥା, ବ୍ରାହ୍ମୀ, ଯେ ସୋମବଲ୍ଲରୀ
ସୋମଲତାର ଅଟଇ ଏହି ନାମ ଚାରି ।

## ସ୍ୱର୍ଣ୍ଣକ୍ଷୀର

ହେମବତୀ, ହିମାବତୀ, ପୁଣି ପଟୁପର୍ଣ୍ଣୀ
ସ୍ୱର୍ଣ୍ଣକ୍ଷୀରର ଅଟଇ ଏହି ନାମ ତିନି ।

## ମାଷପର୍ଣ୍ଣୀ

ହୟପୁଚ୍ଛୀ, କାମ୍ବୋଜୀଯେ ମହାସହା ତିନି
ମାଷପର୍ଣ୍ଣୀର ଅପର ନାମ ବୋଲି ଘେନି ।

## ବିମ୍ବ

ରକ୍ତଫଳା, ପୀଲୁକର୍ଣ୍ଣ, ପୁଣି ତୁଣ୍ଡିକେରୀ
ବିମ୍ବିକା ମିଶି ବିମ୍ବର ଏହି ନାମଚାରି ।

## ଲାଉ

ବର୍ବରା, କବରୀ, ଅଜଗନ୍ଧିକା ଆବର
ଖରପୁଷ୍ପା ତୁମ୍ବୀ ନାମ ଲାଉ ଲତିକାର ।

**ରାସ୍ନା**

ଏଳାପର୍ଣ୍ଣୀ, ଯୁକ୍ତରସା, ସୁବହା ନାମରେ
ରାସ୍ନା ବୃକ୍ଷ ଅଭିହିତ ରଖିବ ମନରେ ।

**ଅମ୍ଳିତିଶାଗ**

'ଅମ୍ଳିତି' ଶାଗର ନାମ ଝଙ୍ଗେରୀ, ଚୂକ୍ରିକା
ଦଶନଖଟା, ଅମ୍ବଷ୍ଠା ଯେ ଅମ୍ଳଲୋଣିକା,

**ଖଟାପାଳଙ୍ଗ**

ଅମ୍ଳବେତସ, ସହସ୍ରବେଧି, ଚୂକ୍ରପୁଣି
ଶତବେଧି ନାମେ ଖଟା ପାଳଙ୍ଗକୁ ଘେନି ।

**ଖଇରୀ ଶାଗ**

ନମସ୍କାରୀ, ଗଣ୍ଡକାଳୀ, ସମଙ୍ଗା, ଖଦରୀ
ଖଇରୀ ସାଗର ଅଟେ ଏହି ନାମ ଚାରି ।

**ଜୀବନ୍ତୀ**

ଜୀବା, ଜୀବନୀୟା, ମଧୁ ଆବର ଜୀବନୀ
ଚାରିନାମ ଜୀବନ୍ତୀର ନାମ ବୋଲି ଘେନି ।

**ଜୀବକ**

କୂର୍ଚ୍ଚଶୀର୍ଷ, ନ୍ରିସ୍ୱାଙ୍ଗଯେ ଶୃଙ୍ଗ, ମଧୁରକ
ଏତେ ନାମରେ ଆଖ୍ୟାତ ଅଟଇ ଜୀବକ ।

**ଭୂଇଁଲିମ୍ବ**

କିରାତତିକ୍ତ ଅନାର୍ଯ୍ୟତିକ୍ତ, ଯେ ଭୂଲିମ୍ବ
ଏତେ ନାମେ ଅଭିହିତ ଅଟେ ଭୂଇଁଲିମ୍ବ ।

**ସପ୍ତଲା ନାମକ ଗଛ**

ଚର୍ମକଷା, ଭୁରିଫେନା, ବିମଳା, ସାତଳା,
ଏତେ ନାମରେ ଆଖ୍ୟାତ ହୁଅଇ ସପ୍ତଲା ।

**ଗନ୍ଧ କାକୋଳି**

ବାୟସୋଳୀ, ସ୍ୱାଦୁରସା, ବୟସ୍ଥା ଏତିନି
ଗନ୍ଧକାକୋଳି ଗଛର ନାମ ବୋଲି ଘେନି ।

**ଦନ୍ତୀ**

ନିକୁମ୍ଭ, ଦନ୍ତିକା, ପ୍ରତ୍ୟକ୍‌ଶ୍ରେଣୀ, ମକୂଳକ
ଉଦୁମ୍ବରପର୍ଣ୍ଣୀ ନାମେ ଖ୍ୟାତ ଦନ୍ତୀ ବୃକ୍ଷ ।

**ବନଯୁଆଣି**

ଅଜମୋଦା, ଉଗ୍ରଗନ୍ଧା ଏବେନି ନାମରେ
ବନଯୁଆଣି ଆଖ୍ୟାତ ରଖିବ ମନରେ ।

**ଯୁଆଣି**

ବ୍ରହ୍ମଦର୍ଭା, ଯବାନିକା ଏହି ନାମ ବେନି
ଯୁଆଣି ଗଛର ଅନ୍ୟ ନାମ ବୋଲି ଘେନି ।

**ପୁଷ୍କର ଓ ପଲାଣ୍ଡୁ**

ପୁଷ୍କରର ନାମ ପଦ୍ମପତ୍ର, ଯେ କାଶ୍ମୀର
'ସୁକୁନ୍ଦକ' ପଲାଣ୍ଡୁର ଅଟେ ନାମାନ୍ତର ।

**ପଦ୍ମଚାରିଣୀ**

ଅବ୍ୟଥା, ଚାରଟୀ, ପଦ୍ମା, ଅତିଚରା, ପୁଣି
'ପଦ୍ମଚାରିଣୀ'ର ଏତେ ନାମବୋଲି ଘେନି ।

**କମଳାଗୁଣ୍ଡି**

କାମ୍ପିଲ୍ଲ, କର୍କଶ, ଚନ୍ଦ୍ରରକ୍ତାଙ୍ଗ, ରୋଚନୀ,
କମାଳଗୁଣ୍ଡିର ଏତେ ନାମ ବୋଲି ଘେନି ।

**ଚକୁଣ୍ଡା ଓ ପୁରୁଣୀ**

ପ୍ରପୁନ୍ନାଡ, ଏଡଗଜ ପଦ୍ମାଟ ଦଦ୍ରୁଘ୍ନ,
ଚକ୍ରମର୍ଦ୍ଦ ଭରଣାକ୍ଷ ଏହି ନାମ ମାନ
ଚକୁଣ୍ଡା ଗଛର ବୋଲି, ଅଟଇ କଥିତ
ପୁରୁଣୀ, ଶୋଥଘ୍ନୀ ପୁନର୍ନବା ନାମେ ଖ୍ୟାତ ।

**ହରିତ୍‌ବର୍ଣ୍ଣ ପଲାଣ୍ଡୁ**

ଲତାର୍କ, ଦ୍ରୁଦ୍ରୁମ ଏହି ବେନି ନାମେ ଜାଣ
ହରିତ ବର୍ଣ୍ଣ ପିଆଜ ଖ୍ୟାତ ଶିଶୁଗଣ ।

## ଲଶୁନ

ମହାକନ୍ଦର, ଅରିଷ୍ଟ, ସୋନକ, ଗୃଞ୍ଜନ,
ଏ ପାଞ୍ଚ ନାମେ ଆଖ୍ୟାତ ଅଟଇ ଲଶୁନ ।

## ସୁନସୁନିଆଁ ଶାଗ

ସୁନିଷର୍ଣ୍ଣକ, ବିତୁନ୍ନ ଏହି ନାମ ବେନି
'ସୁନସୁନିଆଁ' ଶାଗର ନାମ ବୋଲି ଘେନି ।

## ଅଶନପର୍ଣ୍ଣୀ

ଅପରାଜିତା, ବାତକ, ଶୀତଳ ନାମରେ
ଅଶନପର୍ଣ୍ଣୀ ଆଖ୍ୟାତ ରଖିବ ମନରେ ।

## ଫୁଟି ଫୁଟିକା ଲତା

ଲତା, ପଣ୍ୟା, ଜ୍ୟୋତିଷ୍ମତୀ, କଟଭୀ ଆବର
ପାରାବତାଂଘ୍ରି ନାମଯେ ଫୁଟି ଫୁଟିକାର ।

## ଭଦାଳିଗଛ

ବଳଭଦ୍ରିକା, ତ୍ରାୟନ୍ତୀ, ବାର୍ଷିକ ଆବର
ତ୍ରାୟମାଣା ନାମ ଅଟେ ଭଦାଳି ଗଛର ।

## ବରାହକନ୍ଦ

ବିଷ୍ୱକ୍‌ସେନପ୍ରିୟା, ବୃଷ୍ଟି, ବଦରା, ବରାହୀ,
ବରାହକନ୍ଦର ଏତେ ନାମ ବୋଲି କହି ।

## ଭୃଙ୍ଗରାଜ ଓ କାକୁଡି

ମାର୍କବ, ଭୃଙ୍ଗରାଜର ଅଟେ ନାମାନ୍ତର
ଇର୍ବାରୁ କର୍କଟୀ ନାମ କାକୁଡି ଲତାର ।

## କଖାରୁ

କୁଷ୍ମାଣ୍ଡକ, କର୍କାରୁ ଏବେନି ନାମେଜାଣ
କଖାରୁଲତା ଆଖ୍ୟାତ ପ୍ରିୟ ଶିଶୁଗଣ ।

## ପଟୋଳଲତା

କୂଳକ, ତିକ୍ତକ ପୁଣି ପଟୁ ମିଶି ତିନି
ପଟୋଳ ଲତାର ଅନ୍ୟନାମ ବୋଲିଘେନି ।

## ପିତାଲାଉ

ଇକ୍ଷ୍ୱାକୁ, ଯେ କଟୁତୁମ୍ବୀ ଏବେନି ନାମରେ
ପିତାଲାଉ ଲତାଖ୍ୟାତ ରଖିବ ମନରେ ।

## ଲାଉଗଛ ଓ କଳମ୍ବଶାକ

ଲାଉଗଛ ନାମ ତୁମ୍ବୀ ଅଲାବୂ ଏବେନି
କଦମ୍ବୀ ନାମେ କଳମ୍ବ ଲତିକାକୁ ଘେନି ।

## ପୁଇଲତା ଓ ମୂଳା

ଉପୋଦିକା ନାମେ ପୁଇଲତା ଅଟେ ଖ୍ୟାତ
ମୂଳକ ନାମରେ ମୂଳା ଅଟେ ଅଭିହିତ ।

## ଲୁଣଲୁଣିଶାଗ

କାକମାଚି, ବାୟସୀ ଏବେନି ନାମେ ଜାଣ
'ଲୁଣଲୁଣି' ଶାଗ ଖ୍ୟାତ ପ୍ରିୟ ଶିଶୁଗଣ ।

## ଶୌପ ଓ ବଥୁଆ ଶାକ

ଶତପୁଷ୍ପା, ଅବାକପୁଷ୍ପି, ଛତ୍ରା, ଅତିଛତ୍ରା
ମଧୁର, କାରବୀ, ମିଶି ପୁଣି ସିତଛତା,
ଏତେକ ନାମରେ ଶୌପ ଅଟଇ ଆଖ୍ୟାତ ।
ବାସ୍ତୁକ ନାମେ ବଥୁଆ ଶାକ ଅଭିହିତ ।

## ପ୍ରସାରଣୀ

କଟମ୍ଭରା, ରାଜଶାଳା, ଭଦ୍ରବଳା ପୁଣି
ସରଣା ନାମରେ ଜାଣ ଖ୍ୟାତ ପ୍ରସାରଣୀ ।

## ରଜନୀଗନ୍ଧା

ରଜନୀଗନ୍ଧାର ନାମ ଜତୁକା ରଜନୀ
ଚକ୍ରବର୍ତ୍ତିନୀ, ସଂସ୍ପର୍ଶା, ଜତୁକୃତା, ଜନୀ ।

## ଗନ୍ଧଶୁଣ୍ଠି

ଗନ୍ଧମୂଳୀ, ଷଡ୍‌ଗ୍ରନ୍ଥିକା, ପଳାଶ, କର୍ବୁର,
ଶଟୀମିଶି ଏତେ ଗନ୍ଧଶୁଣ୍ଠି-ନାମାନ୍ତର ।

## କଲରା

କାରବେଲ୍ଲ, କଠିଲ୍ଲକ, ସୁଷବୀ ଏତିନି
କଲରା ଲତାର ଅନ୍ୟ ନାମ ବୋଲି ଘେନି ।

## ହିଡମୋଚ୍ଛଶାକ

ହିଡମୋଚ୍ଛଶାକ, ହୀନମୋଚିକା ନାମରେ
ଖ୍ୟାତ ଜାଣି ଶିଶୁଗଣ ରଖିବ ମନରେ ।

## ଦୂବ

ଶତପର୍ବିକା, ସହସ୍ରବୀର୍ଯ୍ୟା ଯେ ଅନନ୍ତା
ରୁହା ଦୂର୍ବା, ତିକ୍ତପର୍ବା, ଭାର୍ଗବୀ, ହରିତା,
ଏ ପାଦମାନ ଦୂବର ଅଟେ ନାମାନ୍ତର
ରଖିବ ଯତନେ ମନେ ସୁବୋଧ କୁମର ।

## ଶ୍ୱେତଦୂବ

ଶକୁଲାକ୍ଷକ, ଗଣ୍ଡାଳୀ, ଗୋଲୋମୀ ଆବର
ଶତବୀର୍ଯ୍ୟ ନାମଘରି ଶ୍ୱେତ ଭାର୍ଗବୀର ।

## ମୁଥା

କୁରୁବିନ୍ଦ, ମେଘ, ମୁସ୍ତା, ମୁସ୍ତକ ଆବର
ମେଘାର୍ଥକ ନାମ ମାନ ଅଟଇ ମୁଥାର

## ଭଦ୍ରମୁଥା ଓ ଶୁଷ୍କ ବଂଶକୁଞ୍ଜ

ଗୁନ୍ଦ୍ରାନାମେ ଭଦ୍ରମୁଥା ଅଟେ ଅଭିହିତ
କୀଚକ ନାମରେ ଶୁଷ୍କ ବଂଶକୁଞ୍ଜ ଖ୍ୟାତ ।

## ବାଉଁଶ ଓ ଶର

ତୃଣଧ୍ୱଜ, ତ୍ୱଚିସାର, ତ୍ୱକ୍‌ସାର, କର୍ମାର,
ଶତପର୍ବ, ଯବଫଳ, ତେଜନ, ମସ୍କର,
ବେଣୁ, ବଂଶ ନାମେ ଅଟେ ବାଉଁଶ ଆଖ୍ୟାତ
ଗୁନ୍ଦ୍ର, ତେଜନକ ନାମେ ଶର ଅଭିହିତ ।

## ନଳ ବୃକ୍ଷ

ନଡ, ଧମନ ଯେ ପୋଟଗଳ ପଦତିନି
ନଳ ବୃକ୍ଷର ଅପର ନାମ ବୋଲି ଘେନି ।

## କାଉଁଶି

କାଶ, ଇକ୍ଷୁଗନ୍ଧା, ପୋଟଗଳ ନାମେ ଜାଣ
କାଉଁଶି ଅଟେ ଆଖ୍ୟାତ ପ୍ରିୟ ଶିଶୁଗଣ ।

## ତୀକ୍ଷ୍ଣଧାର ଯୁକ୍ତତୃଣ

ତୀକ୍ଷ୍ଣଧାର ଯୁକ୍ତ ତୃଣ ବଲ୍ବଜ ନାମରେ
ଖ୍ୟାତ ଅଟେ ପ୍ରିୟଶିଶୁ ! ରଖିବ ମନରେ ।

## ଆଖୁ ଓ କନ୍ତାରି ଆଖୁ

ରସାଳ, ଇକ୍ଷୁନାମରେ ଆଖୁ ଅଭିହିତ
କନ୍ତାରି ଆଖୁର ନାମ ପୁଣ୍ଡ୍ର ବୋଲିଖ୍ୟାତ ।

## କଳାଆଖୁ ଓ ସୁଆଁ ଘାସ

କଳା ଆଖୁର ଅପର ନାମ କାନ୍ତାରକ
ଶୁଆଁ ଘାସର ଅପର ନାମ ଯେ ଶ୍ୟାମାକ ।

## ବେଣାଘାସ

ବୀରଣ, ଯେ ବୀରତର ଏହି ପଦବେନି
ବେଣାଗଛର ଅପର ନାମ ବୋଲି ଘେନି ।

## ବେଣାଚେର

ନଳଦ, ଇଷ୍ଟକାପଥ, ସେବ୍ୟ, ଜଳାଶୟ,
ଉଶୀର, ଅଭୟ, ଲାମଜକ, ଲଘୁଲୟ,
ଅବଦାହ, ଅମୃଣାଳ, ଏତେକ ନାମରେ
ବେଣାଚେରେ ଅଟେ ଖ୍ୟାତ ରଖିବ ମନରେ ।

## ଗରଗଡ ଓ ନୂଆଘାସ

ଗର୍ମୁତ୍ ନାମେ ଗରଗଡ ଅଟେ ଅଭିହିତ
ଶଷ୍ପ, ବାଳତୃଣ ନାମେ ନୂଆଘାସ ଖ୍ୟାତ ।

## କୁଶ

କୁଥ ଦର୍ଭ, ପବିତ୍ର ଯେ ଏହି ପଦ ତିନି
କୁଶର ଅପର ନାମ ରଖ ମନେ ଘେନି ।

## ଗନ୍ଧତୃଣ

ଦେବଜଗ୍ଧକ, ରୋହିଷ, ସୌଗନ୍ଧିକ, ଧ୍ୟାମ,
କତ୍ତୃଣ ପୌର ଏବେତ ଗନ୍ଧତୃଣ ନାମ ।

## ଛତିଆନା ଗଛ

ଛତ୍ରା, ଅତିଛତ୍ରା ପୁଣି ପାଳଘ୍ନ ନାମରେ
ଛତିଆନା ଗଛ ଖ୍ୟାତ ରଖିବ ମନରେ ।

## ଇଙ୍କଡ ଗଛ

ମାଳାତୃଣକ, ଭୂତୃଣ ଏହି ପଦ ଦୁଇ
ଇଙ୍କଡ ଗଛର ନାମାନ୍ତର ବୋଲି କହି ।

## ଘାସ ଓ ସାମାନ୍ୟ ତୃଣ

ଯବସ ଘାସର ଅନ୍ୟ ନାମ ବୋଲିଜାଣ
ସାମାନ୍ୟ ତୃଣର ନାମ ଅଟଇ ଅର୍ଜୁନ ।

## ତୃଣ ଓ ନଡ ସମୂହ

ତୃଣ୍ୟା ନାମେ ତୃଣରାଶି ଅଟେ ଅଭିହିତ
ନଡ଼ ସମୂହର ନାମ ନଡ୍ୟା ବୋଲି ଖ୍ୟାତ ।

## ତାଳ ଓ ନଡିଆ

ତୃଣରାଜ ନାମେ ଜାଣ ଖ୍ୟାତ ଅଟେ ତାଳ
ନଡିଆର ନାମ ଯେ ଲାଙ୍ଗଳୀ, ନାରିକେଳ ।

## ଗୁଆଗଛ

କ୍ରମୁକ, ଗୁବାକ, ପୁଗ, ଘୋଣ୍ଟା ଯେ ଖପୁର
ଗୁଆ ଗଛର ଏମାନ ଅଟେ ନାମାନ୍ତର ।

## ତୃଣଦ୍ରୁମ

ହିନ୍ତାଳ, କେତକୀ ତାଳୀ ଖର୍ଜୁରୀ, ଖର୍ଜୁର
ତୃଣଦ୍ରୁମ ନାମ ଅଟେ ଏହି ମାନଙ୍କର ।

## ସିଂହାଦିବର୍ଗ

### ସିଂହ

ମୃଗେନ୍ଦ୍ର, ପଞ୍ଚାସ୍ୟ ପୁଣି ହର୍ଯ୍ୟକ୍ଷ, କେଶରୀ,
କାନନାଶ୍ରୟ ଶୈଳାଟ କଣ୍ଠୀରବ, ହରି,
ଗଜରିପୁ ମିଶି ଏହି ନଅନାମେ ଜାଣ
ସିଂହ ଅଟେ ଅଭିହିତ ପ୍ରିୟ ଶିଶୁଗଣ ।

### ବାଘ

ଶାର୍ଦ୍ଦୂଳ ଯେ ଦ୍ୱୀପି, ବ୍ୟାଘ୍ର ଏହି ପଦତିନି
ବାଘର ଅପର ନାମ ରଖ ମନେ ଘେନି ।

### ହେଟାବାଘ

ତରକ୍ଷୁ ଯେ ମୃଗାଦନ ଏହି ପଦ ଦୁଇ
ହେଟାବାଘର ଅପର ନାମ ବୋଲି କହି ।

### ବରାହ ଓ ଝିଙ୍କମୂଷା

ଘୃଷ୍ଟି, ଦଂଷ୍ଟ୍ରି, ପୋତ୍ରି, କୋଳ, କିଟି, କ୍ରୋଡ, କିର,
ସ୍ତବ୍ଧରୋମ, ଘୋଣୀପୁଣି ଶୂକର ଭୂଦାର,
ଏତେକ ନାମରେ ଅଟେ ବରାହ ଆଖ୍ୟାତ
ଶ୍ୱାବିତ୍ ଶିଙ୍ଖ ନାମେ ଝିଙ୍କମୂଷା ଅଭିହିତ ।

### ଝିଙ୍କକାଠି

ଶଲଲୀ, ଶଲଲ, ଶଲ ଏହି ପଦ ତିନି
ଝିଙ୍କ-କାଠିର ଅପର ନାମ ବୋଲି ଘେନି ।

### ବାନର

ବନୌକା, ମର୍କଟ, କପି, ପ୍ଲବଗ, ପ୍ଲବଙ୍ଗ,
ବଳୀମୁଖ, ଦଧିଶୋଣ, କୀଶ, ଶାଖାମୃଗ,
ଏତେକ ନାମେ ଆଖ୍ୟାତ ଅଟଇ ବାନର
ରଖିବ ଯତନେ ମନେ ସୁବୋଧ କୁମର ।

### ଭାଲୁ

ଭଲ୍ଲୁକ, ଭାଲୁକ, ଋକ୍ଷ, ଅଚ୍ଛଭଲ୍ଲ ପୁଣି
ଭାଲୁର ଅପର ନାମ ରଖ ମନେ ଘେନି ।

## ଗଣ୍ଡା

ଗଣ୍ଡକ, ଯେ ଖଡ୍ଗ, ଏ ତିନି ନାମରେ
ଗଣ୍ଡା ଅଟେ ଅଭିହିତ ରଖିବ ମନରେ ।

## ମହିଷ

ଲୁଲାପ ଯେ ବାହଦ୍ୱିଷ, ସୈରିଭ କାସର
ଏହି ଛରି ନାମ ଜାଣ ଅଟେ ମହିଷର ।

## ବିଲୁଆ ଓ ବଳିଆ

ଭୂରିମାୟ, ଶିବା, କ୍ରୋଷ୍ଟୁ, ଫେରବ, ଜମ୍ବୂକ,
ମୃଗଧୂର୍ତ୍ତକ, ଶୃଗାଳ, ଫେରୁଯେ ବଞ୍ଚକ,
ଏହି ନଅନାମ ଜାଣ ଅଟେ ବିଲୁଆର
ଇହାମୃଗ, କୋକ, ବୃକନାମ ବଳିଆର ।

## ବିରାଡ଼ି

ବୃଷଦଂଶକ, ବିଡାଳ, ଆଖଭୁଜ୍ ମାର୍ଜାର,
ଓତୁ, ମିଶି ପଞ୍ଚନାମ ଅଟେ ବିରାଡ଼ିର ।

## ଗୋଧି

ଗୋଧିକାତ୍ମକ, ଗୌଧେର, ଗୌଧାର, ଗୌଧେୟ,
ଗୋଧିର ଅଟଇ ଜାଣ ଏହି ନାମଚୟ ।

## ବାହୁଟିଆ ମୃଗ

ବାତପ୍ରମୀ, ବାଜିମୃଗ ଏ ବେନି ନାମରେ
ବାହୁଟିଆ ମୃଗ ଖ୍ୟାତ ରଖିବ ମନରେ ।

## ମୃଗ

ଅଜ୍ଜନଯୋନି, ବାତାୟୁ, ହରିଣ, କୁରଙ୍ଗ,
ଏତେ ନାମେ ଅଭିହିତ ସାଧାରଣ ମୃଗ ।

## ହରିଣୀ ଓ ହରିଣର ଚର୍ମ୍ମାଦି

ଐଣେୟ ନାମେ ହରିଣୀ ଚର୍ମ୍ମାଦି କି ଜାଣ
ହରିଣର ଚର୍ମ୍ମାଦିର ନାମ ଅଟେ ଐଣ ।

## ନଅଜାତି ମୃଗ

ମୟୂର, ରୋହିତ, ନ୍ୟଙ୍କୁ, ବିଭୁଣ, ସମ୍ବର,
ରଙ୍କୁ, ଶଶ, ଏଣମିଶି ହିରିଣ ଆବର
ନଅଜାତି ମୃଗ ଏହି ନଅ ନାମେ ଖ୍ୟାତ
ସୁକୁମାର ଶିଶୁଗଣ ବୁଝ ଦେଇ ଚିତ୍ତ ।

## ଗନ୍ଧର୍ବାଦି ଛଅ ପ୍ରକାର ଜନ୍ତୁ

ଗନ୍ଧର୍ବ, ଶରଭ, ରାମ, ଗବୟ, ସୃମର
ଶଶ ମିଶି ଛଅ ନାମ ଜନ୍ତୁ ବିଶେଷର ।

## ସିଂହାଦି ଓ ବିଛା

ପଶୁନାମେ ମୃଗେନ୍ଦ୍ରାଦି ଗବାଦିଙ୍କୁ ଜାଣ
ବିଛାର ନାମ ବୃଶ୍ଚିକ, ଅଳି ପୁଣି ଦ୍ରୁଣ ।

## ସଂବାଳୁଆ ପୋକ

ବୃଶ୍ଚିକ, ଯେ ଶୁକକୀଟ ଏବେନି ନାମରେ
ସଂବାଳୁଆ ପୋକ ଖ୍ୟାତ ରଖିବ ମନରେ ।

## କାନବିଛା

କର୍ଣ୍ଣଜଳୌକସ ପୁଣି ଶତପଦୀ ବେନି
କାନବିଛାର ଅପର ନାମ ବୋଲି ଘେନି ।

## ଏଣ୍ଡୁଅ ଓ କ୍ଷୁଦ୍ରକୀଟ

ଅଣ୍ଡୁଅ ନାମ ସରଟ କୃକଲାସ ଦୁଇ
କ୍ଷୁଦ୍ର କୀଟକୁ ନୀଳାଙ୍ଗୁ କୃମି ନାମେ କହି ।

## ମୂଷା

ଇନ୍ଦୁର ମୂଷିକ ଆଖୁ ଏହି ତିନି ପଦ
ମୂଷାର ଅପର ନାମ ଜାଣ ଶିଶୁବୃନ୍ଦ ।

## ଚୁଟିଆ ମୂଷା

ଗିରିକା ବାଳମୂଷିକା ଏ ବେନି ନାମରେ
ଚୁଟିଆମୂଷା ଆଖ୍ୟାତ ରଖିବ ମନରେ ।

## ମାଙ୍କଡସା

ଊର୍ଣ୍ଣନାଭ ମର୍କଟକ ଲୁଣ ତନ୍ତୁବାୟ
ମାଙ୍କଡସାର ଅଟଇ ଏହି ନାମ ଚୟ ।

## ଝିଟିପିଟି

ମୁସଲୀ ଗୃହଗୋଧିକା ଏହି ପଦ ବେନି
ଝିଟିପିଟିର ଅପର ନାମ ବୋଲି ଘେନି ।

## ପାରା

ପାରାବତ କଳରବ ଆବର କପୋତ
ଏ ତିନି ନାମରେ ପାରା ଅଟେ ଅଭିହିତ ।

## ସଞ୍ଚାଣ ଓ ଖଞ୍ଜରୀଟ

ସଞ୍ଚାଣର ନାମ ପତ୍ରୀ ଶ୍ୟେନ ଶଶାଦନ
ଖଞ୍ଜରୀଟର ଅପର ନାମ ଯେ ଖଞ୍ଜନ ।

## ପେଚା

ଉଲୂକ ବାୟସାରାତି ପେଚକ ନାମରେ
ପେଚା ଅଟେ ଅଭିହିତ ରଖିବ ମନରେ ।

## ଭଦଭଦଳିଆ

ବ୍ୟାଘ୍ରାଟ ଯେ ଭରଦ୍ୱାଜ ଏହି ପଦ ଦୁଇ
ଭଦଭଦଳିଆର ଅପର ନାମ ବୋଲି କହି ।

## ହାଡଗିଳା ଓ ଚାତକ

ହାଡଗିଳାର ନାମ ଯେ ଲୌହପୃଷ୍ଠ କଙ୍କ,
ଶାରଙ୍ଗ ସ୍ତୋତକ ନାମେ ଆଖ୍ୟାତ ଚାତକ ।

## ଚାଷପକ୍ଷୀ

କିକିଦିବି ମଣିଗ୍ରୀବ ନୀଳାଙ୍ଗ ନନ୍ଦନ,
ଚାଷପକ୍ଷୀର ଅଟଇ ଏହି ନାମ ମାନ ।

## କଜଳପାତି

କଳିଙ୍ଗ ଭୃଙ୍ଗ ଧୂମ୍ୟାଟ ଏହି ପଦ ତିନି
କଜଳପାତିର ଅନ୍ୟ ନାମ ବୋଲି ଘେନି ।

## କୁକ୍କୁଟ

କୃକବାକୁ ତାମ୍ରଚୂଡ଼ ଯେ ଚରଣାୟୁଧ
ଏତେକ ନାମରେ ଅଟେ କୁକ୍କୁଟ ପ୍ରସିଦ୍ଧ ।

## ଘରଚଟିଆ

କଳବିଙ୍କ ଚଟକ ଏ ବେନି ନାମେ ଜାଣ
ଘରଚଟିଆ ଆଖ୍ୟାତ ପ୍ରିୟ ଶିଶୁଗଣ ।

## ସ୍ତ୍ରୀଜାତୀୟ ଚଟକ ଓ ପୁଂସ ଶିଶୁ ଚଟିଆ

ଚଟକା ନାମ ଅଟଇ ମାଇ ଚଟିଆର
ପୁଂସ ଶିଶୁଚଟକର ନାମ ଚଟକୈର ।

## କୁରେଟୁ ଓ ଖଇରି ନାମକ ପକ୍ଷୀ

କର୍କରେଟୁ ନାମ ଅଟେ କରେଟୁ ପକ୍ଷୀର
ଖଇରି ପକ୍ଷୀର ନାମ କୃକଣ କୃକର ।

## କୋଇଲି

ବନପ୍ରିୟ ପରପୁଷ୍ଟ ପିକ ପରଭୃତ
କଳକଣ୍ଠ କୁହୂକଣ୍ଠ ଗନ୍ଧର୍ବ ବାସନ୍ତ,
ବସନ୍ତଦୂତ କୋକିଳ ମଧୁସଖା ମତ୍ତ,
କୋଇଲି ଅଟଇ ଏତେ ନାମରେ ଆଖ୍ୟାତ ।

## କାଉ

ଆତ୍ମଘୋଷ କୌଶିକାରି କରଟ ଅରିଷ୍ଟ
ବଳିଭୁକ୍ ବାୟସ ଧ୍ୱାଂକ୍ଷ କାକ ବଳିପୁଷ୍ଟ,
ସକୃତ୍‌ପ୍ରଜ ବାତଜବ କୃଷ୍ଣ ପରଭୃତ
ଏତେକ ନାମରେ କାଉ ଅଟେ ଅଭିହିତ ।

## ଡାମରାକାଉ

ଦ୍ରୋଣକାକ କାକୋଳ ଏ ବେନି ନାମେ ଜାଣ
ଡାମରାକାଉ ଆଖ୍ୟାତ ପ୍ରିୟ ଶିଶୁଗଣ ।

## ଡାହୁକ ଓ ଚିଲ୍ଲପକ୍ଷୀ

ଦାତ୍ୟୂହ କାଳକଣ୍ଠକ ନାମ ଡାହୁକର
ଆତାୟୀ ଚିଲ୍ଲପକ୍ଷୀର ଅଟେ ନାମାନ୍ତର ।

## ଶାଗୁଣା ଓ ଶୁଆପକ୍ଷୀ

ଦାକ୍ଷାଯ୍ୟ ଗୃଧ୍ର ଏ ବେନି ନାମ ଶାଗୁଣାର
ଶୁଆପକ୍ଷୀର ଅପର ନାମ ଶୁକ କୀର ।

## ରାମବକ ଓ ବକି

ରାମବକ ନାମ କ୍ରୁନ୍‌ଚ କ୍ରୌଞ୍ଚ ପଦଦ୍ୱଇ
ବକର ଅପର ନାମ କହ୍ୱ ବୋଲି କହି ।

## ସାରସ

ପଦ୍ମାର୍ଥକ ଶବ୍ଦ ପୁଣି ସାରସ ପୁଷ୍କର
ଏ ନାମ ମାନ ଅଟଇ ସାରସ ପକ୍ଷୀର ।

## ଚକୁଆ

କୋକ ଚକ୍ର ଚକ୍ରବାକ ଆବର ରଥାଙ୍ଗ,
ଚକ୍ରବାକ ଶବ୍ଦେ ଖ୍ୟାତ 'ଚକୁଆ' ବିହଙ୍ଗ ।

## କାମପକ୍ଷୀ

କାଦମ୍ବ ଯେ କଳହଂସ ଏହି ପଦ ବେନି
କାମପକ୍ଷୀର ଅପର ନାମ ବୋଲି ଘେନି ।

## କପୋତ

ଉତ୍କ୍ରୋଶ, କୁରର ନାମ କପୋତ ପକ୍ଷୀର
ରଖିବ ଯତନେ ମନେ ସୁବୋଧ କୁମର ।

## ହଂସ

ଶ୍ୱେତଗରୁତ, ଚକ୍ରାଙ୍ଗ, ଯେ ମାନସୌକସ
ଏ ତିନି ନାମେ ଆଖ୍ୟାତ ସାଧାରଣ ହଂସ ।

## ରାଜହଂସ

ଶୁକ୍ଳଯାର ସର୍ବଅଙ୍ଗ, ରକ୍ତ ଚଞ୍ଚୁ ପଦ
ରାଜହଂସ ନାମେ ଜାଣ ସେ ହଂସ ପ୍ରସିଦ୍ଧ ।

## ମଲ୍ଲିକ ନାମକ ହଂସ

ମଳିନ ଚଞ୍ଚୁପଦାଦି ଅଟେ ଯେ ହଂସର
ମଲ୍ଲିକ ଅଟଇ ଜାଣ ତାର ନାମାନ୍ତର ।

## ଧାର୍ତ୍ତରାଷ୍ଟ୍ର ନାମକ ହଂସ

ଚଞ୍ଚୁ ଚରଣାଦି ଯାର ଅଟେ କୃଷ୍ଣବର୍ଣ୍ଣ
ସେ ହଂସର ଖ୍ୟାତ ନାମ ଧାର୍ତ୍ତରାଷ୍ଟ୍ର ଜାଣ ।

## ଶରାଳି

ଆଟି, ଆଡି, ଶରାରି ଏ ତିନି ନାମେ ଜାଣ
ଶରାଳି ପକ୍ଷୀ ଆଖ୍ୟାତ ପ୍ରିୟ ଶିଶୁଗଣ ।

## କ୍ଷୁଦ୍ରବକ

ବଳାକା, ବିଷକଣ୍ଠିକା ଏହି ପଦ ବେନି
କ୍ଷୁଦ୍ର ବକର ଅପର ନାମ ବୋଲି ଘେନି ।

## ସ୍ତ୍ରୀ ଜାତୀୟ ହଂସ ଓ ସାରସ

ବରଟା, ନାମରେ ଖ୍ୟାତ ସ୍ତ୍ରୀ ଜାତୀୟ ହଂସ
ଲକ୍ଷଣା ନାମରେ ଜାଣ ସ୍ତ୍ରୀ ଜାତି ସାରସ ।

## ବାଦୁଡି ଓ ଅସର୍ପା

କତୁକା, ଅଜିନପତ୍ରା ନାମ ବାଦୁଡିର
ପରୋଷ୍ଣୀ ତୈଳପ୍ରିୟ ନାମ ଅସର୍ପାର ।

## ନୀଳବର୍ଣ୍ଣ ମାଛି ଓ ସାଧାରଣ ମାଛି

ବର୍ବଣା ନାମରେ ନୀଳବର୍ଣ୍ଣ ମାଛି ଖ୍ୟାତ,
ମକ୍ଷିକା ନାମେ ସାମାନ୍ୟ ମାଛି ଅଭିହିତ ।

## ମହୁମାଛି

ସରଘା, ମଧୁମକ୍ଷିକା ଏହି ପଦ ଦୁଇ
ମହୁମାଛିର ଅପର ନାମ ବୋଲି କହି ।

## କ୍ଷୁଦ୍ର ମଧୁମକ୍ଷିକା

ପୁତ୍ତିକା ଆବର ପତଙ୍ଗିକା ପଦବେନି
କ୍ଷୁଦ୍ର ମଧୁମକ୍ଷିକାର ନାମ ବୋଲି ଘେନି ।

## ବଣୁଆ ମଶା

ଗୋମକ୍ଷିକା, ଦଂଶ ବନମକ୍ଷିକା, ଦଂଶକ
ଏତେ ନାମରେ ଆଖ୍ୟାତ ଅରଣ୍ୟ ମଶକ ।

## କ୍ଷୁଦ୍ର ମଶା ଓ ବିରୁଡି

ଦଂଶୀ କ୍ଷୁଦ୍ର ମଶକର ଅଟେ ନାମାନ୍ତର
ଗନ୍ଧୋଳୀ, ବରଟା ନାମ ଅଟେ ବିରୁଡିର ।

## ଝିଙ୍କାରୀ

ଝିଲ୍ଲିକା, ଝୀରୁକା, ଚୀରି, ଆବର ଭୃଙ୍ଗାରୀ
ଏରୂରି ନାମରେ ଖ୍ୟାତ ଅଟଇ ଝିଙ୍କାରୀ ।

## ପତଙ୍ଗ ଓ ହରଡ ନାମକ ପକ୍ଷୀ

ଶଲଭ ନାମେ ପତଙ୍ଗ ହୁଏ ଅଭିହିତ
ହରଡ ପକ୍ଷୀର ନାମ ଅଟଇ ହାରୀତ ।

## ଜୁଲୁଜୁଲିଆ ପୋକ

ଖଦ୍ୟୋତ, ଜ୍ୟୋତିରିଙ୍ଗଣ ଏହି ପଦ ବେନି
ଜୁଲୁଜୁଲିଆ ପୋକର ନାମ ବୋଲି ଘେନି ।

## ଭ୍ରମର ଓ ଲୁଆ ଚଢ଼ାଇ

ମଧୁପ, ଦ୍ୱିରେଫ, ମଧୁକର, ମଧୁଲିହ,
ମଧୁବ୍ରତ ଷଟ୍‌ପଦ ଯେ ଅଳି, ପୁଷ୍ପଲିହ,
ଭୃଙ୍ଗ ମିଶି ଏତେ ନାମେ ଆଖ୍ୟାତ ଭ୍ରମର
ଲାବ ନାମଅଟେ ଜାଣ ଲୁଆ ଚଡାଇର ।

## ମୟୂର

ଭୁଜଙ୍ଗଭୁକ୍, ଶିଖାବଳ, ନୀଳକଣ୍ଠ, ଶିଖୀ,
ବର୍ହିଣ, ବର୍ହି, କଳାପୀ, ଶିଖଣ୍ଡୀଯେ କେକୀ
ଏନବ ନାମରେ ଅଟେ ଆଖ୍ୟାତ ମୟୂର
ମନେ ରଖ ପ୍ରିୟଶିଶୁ ହୋଇ ତତପର ।

## ମୟୂରର ଧ୍ୱନି ଓ ଚନ୍ଦ୍ରିକା

କେକା ନାମରେ କଥିତ ମୟୂରର ଧ୍ୱନି
ଚନ୍ଦ୍ରିକା ନାମ ଚନ୍ଦ୍ରକ ମେଚକ ଏବେନି ।

## ମୟୂର ଚୂଳ ଓ ପୁଚ୍ଛ

ଶିଖା, ଚୂଡା ନାମେ ତାର ଚୂଳ ଅଭିହିତ
ଶିଖଣ୍ଡ ଯେ ପିଚ୍ଛ ବର୍ହି ନାମେ ପୁଚ୍ଛ ଖ୍ୟାତ ।

## ପକ୍ଷୀ

ବିହଙ୍ଗମ, ବିହାୟସ, ଶକୁନି, ପତତ୍ରୀ,
ଖଗ, ଶକୁନ୍ତି, ଶକୁନ, ପତ୍ରରଥ, ପତ୍ରୀ,
ପତତ୍, ଅଣ୍ଡଜ; ପତଗ, ଶକୁନ୍ତ, ବିହଗ,
ଚଞ୍ଚୁଭୃତ୍, ନଗୌକ, ଦ୍ୱିଜ, ବିକିର ବିହଙ୍ଗ,
ବାଦି, ନୀଡୋଦ୍ଭବ, ପିତ୍ସତ୍, ଯେ ନଭସଙ୍ଗମ
ବିଷ୍କିର, ମିଶି ପକ୍ଷୀର ଜାଣ ଏତେ ନାମ ।

## ପାଣିକୁଆ ଓ ହଂସରାଳୀ

ମଦ୍ଗୁନାମେ ପାଣିକୁଆ ଅଟଇ ଆଖ୍ୟାତ
କାରଣ୍ଡବ ନାମେ ହଂସରାଳୀ ଅଭିହିତ ।

## ଗୁଣ୍ଡୁରି ଓ ତିତିରି

ପ୍ଲବ ନାମରେ ଆଖ୍ୟାତ ଅଟଇ ଗୁଣ୍ଡରି
ବସନ୍ତଗୌର ପକ୍ଷୀକ ବୋଲନ୍ତି ତିତିରି ।

## କୁମ୍ଭାଟୁଆ ଓ ବାୟାଚଢେଇ

କୁମ୍ଭାଟୁଆର କକୁଭ ଅଟେ ନାମାନ୍ତର
ବର୍ତ୍ତକ, ବର୍ତ୍ତିକା ନାମ ବାୟା ଚଢେଇର ।

## ଚକୋର ଓ ଟେଣ୍ଟୋଇ

ଚକୋରର ନାମ ଜୀବଞ୍ଜୀବ, ଚକୋରକ,
ଟେଣ୍ଟୋଇର ନାମ କୋଯୋଷ୍ଟକ ଉଟିକ ।

## ପକ୍ଷୀର ପକ୍ଷ

ତନରହ, ଗରୁତ୍ ପତ୍ର ପତତ୍ର ଯେ ଛଦ
ପକ୍ଷୀ-ପକ୍ଷ ଅଟେ ଏତେ ନାମରେ ପ୍ରସିଦ୍ଧ ।

## ପକ୍ଷମୂଳ ଓ ଥଣ୍ଟ

ପକ୍ଷତି ନାମରେ ପକ୍ଷମୂଳ ଅଟେ ଖ୍ୟାତ
ଚଞ୍ଚୁ, ତ୍ରୋଟି ନାମେ ଥଣ୍ଟ ଅଟେ ଅଭିହିତ ।

## ପକ୍ଷୀର ଆଦ୍ୟଗତି ଓ ଅଧୋଗତି

ପକ୍ଷୀର ଆଦ୍ୟଗତିକି ବୋଲନ୍ତି ପ୍ରଡୀନ
ଅଧୋଗମନର ନାମ ଅଟଇ ସଂଡୀନ ।

## ପକ୍ଷୀର ଉର୍ଦ୍ଧ୍ୱଗମନ ଓ ଡିମ୍ବ

ଉର୍ଦ୍ଧ୍ୱଗମନର ନାମ ଅଟଇ ଉଡ୍ଡୀନ
ପେଶୀ କୋଷ ଅଣ୍ଡ ନାମେ ପକ୍ଷୀଡିମ୍ବ ଜାଣ ।

## ପକ୍ଷୀର ବସା

କୁଳାୟ ନୀଡ ନାମରେ ବସା ପକ୍ଷୀଙ୍କର
ଅଭିହିତ ହୁଏ ଜାଣ ସୁବୋଧ କୁମର ।

## ପକ୍ଷୀର ଛୁଆ

ଶାବ ପୃଥୁକଡିମ୍ଭ ଶିଶୁପାକ ପୋତ
ଅର୍ଭକ ନାମର ପକ୍ଷୀ ଛୁଆ ଅଟେ ଖ୍ୟାତ ।

## ପକ୍ଷୀଦମ୍ପତି ଓ ସ୍ୱଜାତି ସମୂହ

ପକ୍ଷୀ ଦମ୍ପତିର ନାମ ଦ୍ୱନ୍ଦ ଯେ ମିଥୁନ;
ସ୍ୱଜାତି-ସମୂହ ନାମ ବର୍ଗ ବୋଲି ଜାଣ ।

## ଯୋଡି ଦ୍ରବ୍ୟ

ଯୂଗ, ଯୁଗ, ଯୁଗଳ ଏତିନି ନାମେ ଜାଣ
ଯୋଡି ଦ୍ରବ୍ୟ ଅଟେ ଖ୍ୟାତ ପ୍ରିୟ ଶିଶୁଗଣ ।

## ବହୁଦ୍ରବ୍ୟ ସମଷ୍ଟି

ସମୂହ, ନିବହ, ବ୍ୟୂହ, ସନ୍ଦୋହ, ବିସର,
ବ୍ରଜ, ସ୍ତୋମ, ଓଘ, ବ୍ରାତ, ସଂଘାତ, ନିକର
ସମୁଦାୟ, ସମୁଦୟ, ବାର, ଗଣ, ଚୟ,
ସଂଚୟ, ସଂହତି, ନିକୁରମ୍ବ, ସମବାୟ
କଦମ୍ବ, ବୃନ୍ଦ, ଯେ କୁଳ ଏହି ନାମ ମାନ
ବହୁ ଦ୍ରବ୍ୟ ସମଷ୍ଟିର ଜାଣ ଶିଶୁଗଣ

## ଜନ୍ତୁ ଓ ପକ୍ଷୀସମୂହ

ଜନ୍ତୁ ସମୂହର ନାମ ସଂଘ ପୁଣି ସ୍ୱାର୍ଥ
ପକ୍ଷୀ ସମୂହର ନାମ ଅଟଇ ଯେ ଯୂଥ ।

## ପଶୁ ଓ ମନୁଷ୍ୟାଦି ସମୂହ

ପଶୁ ସମୂହର ନାମ ଅଟଇ ସମଜ
ମନୁଷ୍ୟାଦି ସମୂହକୁ ବୋଲନ୍ତି ସମାଜ ।

## ସମଧର୍ମାବଲମ୍ବୀ ଦ୍ରବ୍ୟ ସମୂହ

ସମାନ ଧର୍ମାବଲମ୍ବୀ ଦ୍ରବ୍ୟ ସମୂହର
ଅଭିହିତ ନାମ ଜାଣ ଅଟଇ ନିକର ।

## ଧାନ୍ୟାଦି ସମୂହ

ପୁଞ୍ଜ ରାଶି କୂଟ ପୁଣି ଉତ୍କର ନାମରେ
ଧାନ୍ୟାଦି ସମୂହ ଖ୍ୟାତ ରଖିବ ମନରେ ।

## ପାରା ଓ ଶୁକ ସମୂହ

ପାରା ସମୂହର ନାମ ଅଟଇ କାପୋତ
ଶୌକ ନାମେ ଶୁକପକ୍ଷୀ ସମୂହ ଆଖ୍ୟାତ ।

## ମୟୂର ଓ ତିତ୍ତିରି ସମୂହ

କେକି ସମୂହର ନାମ ଅଟଇ ମାୟୂର
ତିତ୍ତିରିଙ୍କ ସମୂହକୁ ବୋଲନ୍ତିତୈତ୍ତିର ।

## ଗୃହପାଳିତ ଜୀବ

ପକ୍ଷୀ ମୃଗଆଦି ଜୀବ ଯେ ଗୃହପାଳିତ
ଛେକ ଗୃହ୍ୟକ ନାମରେ ହୁଅନ୍ତି କଥିତ ।

(ପ୍ରଥମଖଣ୍ଡ ସଂପୂର୍ଣ୍ଣ)

# ଆୟୁର୍ବେଦ

ଯଦ୍ଵାରା ଆୟୁର ବିଶେଷ ବିବରଣ ଜଣାଯାଏ, ତାହାକୁ ଆୟୁର୍ବେଦ ବୋଲାଯାଏ । ଏହା ଅତି ପ୍ରାଚୀନ କାଳରୁ ଆବିଷ୍କୃତ ହୋଇଅଛି । ପ୍ରଭୁତଧିଶକ୍ତି ସଂପନ୍ନ ପ୍ରାଚୀନ ଆର୍ଯ୍ୟଗଣ ଏହାର ଆବିଷ୍କର୍ତ୍ତା । ଯେତେବେଳେ ସମସ୍ତ ମାନବ ସମାଜ ରୋଗ ଶୋକରେ ଅତିଶୟ ବ୍ୟଥିତ ହୋଇ ନିଜର କର୍ତ୍ତବ୍ୟ କର୍ମରେ ନିରୁତ୍ସାହିତ ହୋଇ ଜୀବନକୁ ଅସାର ବୋଧ କରି ଜୀବନ୍ମୃତ ବତ କାଳଯାପନ କରିବାକୁ ଲାଗିଲେ ( ଏହାର ବିଶେଷ କାରଣ ଶାସ୍ତ୍ର ଦ୍ରଷ୍ଟବ୍ୟ) ସେହି ସମୟରେ ପରୋପକାରୀ ପୂଣ୍ୟାତ୍ମା ମହର୍ଷିଗଣ ବହୁଧ୍ୟାନ (ଚିନ୍ତା) ଓ ଗବେଷଣା ବଳରେ ଏହାର ଆବିଷ୍କାର କରିଛନ୍ତି । ଅନନ୍ତର ଏହି ଆୟୁର୍ବେଦ ଦ୍ଵାରା କ୍ରମେ କ୍ରମେ ମାନବ ମଣ୍ଡଳି ସୁଖ ସ୍ଵଚ୍ଛନ୍ଦର ଅଧିକାରୀ ହୋଇଛନ୍ତି । ସେହି ଅତି ପ୍ରାଚୀନ କାଳରୁ ବର୍ତ୍ତମାନ ପର୍ଯ୍ୟନ୍ତ ଏହା ଆମ୍ଭମାନଙ୍କର ମଙ୍ଗଳସାଧନ କରି ଆସୁଅଛି । କିନ୍ତୁ ବର୍ତ୍ତମାନ ଏହାର ଶକ୍ତି ଭିନ୍ନ ପ୍ରକାର ହୋଇଯାଇଅଛି । ସେହି ସମୟରେ ପ୍ରତ୍ୟେକ ମାନବ ଆୟୁର୍ବେଦକୁ ଏବଂ ଆୟୁର୍ବେଦାଚାର୍ଯ୍ୟଗଣଙ୍କ ଯଥେଷ୍ଟ ସମାଦର କରୁଥିଲେ । କିନ୍ତୁ ବର୍ତ୍ତମାନ ଏହା (ଆୟୁର୍ବେଦ) ଠିକ ବିପରୀତ ବେଶଧାରଣ କରିଅଛି । ଏହାର କାରଣ କଣ ? ଅତି ପ୍ରାଚୀନ କାଳରେ ମାନବମାନଙ୍କ ସ୍ଵାସ୍ଥ୍ୟଲାଭ ଓ ସ୍ଵାସ୍ଥ୍ୟରକ୍ଷାର ଅନ୍ୟ ଉପାୟ ନ ଥିଲା । ବିଶେଷତଃ ସେମାନେ ନୀତିପ୍ରିୟ ନ୍ୟାୟ୍ ପରାୟଣ ଓ ପ୍ରକୃତବାଦୀ ଥିଲେ । କାର୍ଯ୍ୟତଃ ଆୟୁର୍ବେଦର ସୁଧାମୟ ଫଳରେ ସେମାନେ ଆୟୁର୍ବେଦାଚାର୍ଯ୍ୟଗଣଙ୍କୁ ଦେବତାପରି ଜ୍ଞାନ କରୁଥିଲେ । ଆଉ ତତ୍‌କାଳୀନ ଆୟୁର୍ବେଦାଚାର୍ଯ୍ୟାଗଣ ମଧ୍ୟ ନ୍ୟାୟ ପରାୟଣ, ଧର୍ମ୍ମପ୍ରିୟ, ସମଦର୍ଶୀ ଓ ପରୋପକାରୀ ଥିଲେ । ସେମାନେ ରୋଗୀମାନଙ୍କୁ ପୁତ୍ରବତ ଜ୍ଞାନ କରି ଅତି ଯତ୍ନ ସହକାରେ ନିସ୍ଵାର୍ଥ ଭାବେ ଚିକିତ୍ସା କରି ରୋଗମୁକ୍ତ କରୁଥିଲେ । ତାହାହିଁ ଲେଖିଯାଇଅଛନ୍ତି । '' ବ୍ରାହ୍ମଣମାନେ ଲୋକହିତ ପାଇଁ, କ୍ଷତ୍ରିୟମାନେ ସ୍ଵାସ୍ଥ୍ୟରକ୍ଷା ପାଇଁ ଓ ବୈଶ୍ୟମାନେ ଅର୍ଥୋପାର୍ଜ୍ଜନ ପାଇଁ ଆୟୁର୍ବେଦ ଶିକ୍ଷା କରିବେ ।'' ବାସ୍ତବରେ ସେହି କାଳର ବ୍ରାହ୍ମଣମାନେ ପ୍ରାଣପଣରେ ପରୋପକାର ବ୍ରତ

ସାଧନ କରୁଥିଲେ । ସେହି ହେତୁ ଲୋକମାନେ ବ୍ରାହ୍ମଣମାନଙ୍କୁ ଅତିଶୟ ଭକ୍ତି କରୁଥିଲେ । ସେମାନେ ବହୁ ଚିନ୍ତା, ବହୁ ଶିକ୍ଷାକରି ସ୍ଥିର ଗମ୍ଭୀର ବୁଦ୍ଧି ପରିଚାଳନା କରି କାର୍ଯ୍ୟରେ ବ୍ରତୀ ହେଉଥିଲେ । ଫଳତଃ ତାଙ୍କର ଅଯାଚିତ ଅକଳ୍ପିତ ଧର୍ମ୍ମ, ଅର୍ଥ, କାମମୋକ୍ଷ ସେମାନଙ୍କର ଆଶ୍ରୟ କରୁଥିଲା । ଲୋକେ କାୟମନୋବାକ୍ୟରେ ସେମାନଙ୍କର ପକ୍ଷପାତୀ ଥିଲେ ଏବଂ ସେମାନଙ୍କର ଗୁଣଗାନ କରୁଥିଲେ କିନ୍ତୁ ଆଜି ଦେଖ !

କାହାର ଅବସ୍ଥା କଣ ହୋଇଅଛି ? ଦେଶର ଅନେକ ଲୋକମାନେ ଏହାକୁ ଘୃଣା ଚକ୍ଷୁରେ ଦେଖୁଅଛନ୍ତି । ଆଉ ପ୍ରାଚୀନ ଧର୍ମ୍ମ ପ୍ରରାୟଣତା, ନୀତିପ୍ରିୟତା, କର୍ତ୍ତବ୍ୟ ତତ୍ପରତା ବର୍ତ୍ତମାନ ଯୁଗରେ ପ୍ରାୟ ନାହିଁ । ଏହାର କୌଣସି କୌଣସି ଅଙ୍ଗ ବିଦେଶକୁ ନୀତ ହୋଇ ଭିନ୍ନ ଭିନ୍ନ ବେଶ ଧାରଣ କରିଅଛି । ଭିନ୍ନ ଭିନ୍ନ ଭାଷା ଭିନ୍ନ ଭିନ୍ନ ଧର୍ମର ସୃଷ୍ଟିରେ ବିଭିନ୍ନ ଧର୍ମାବଲମ୍ବୀ ରାଜାମାନଙ୍କର (ମୁସଲମାନ ପ୍ରଭୃତି) ଶାସନରେ ଆର୍ଯ୍ୟଭାଷା, ଆର୍ଯ୍ୟ ଧର୍ମ୍ମ ଓ ଆର୍ଯ୍ୟ ଚିକିତ୍ସାର କି ଦୂରବସ୍ଥା ଘଟିଅଛି । ବିଦେଶୀୟ ଚିକିତ୍ସାର ଅଧୀନ ହୋଇ ବର୍ତ୍ତମାନ ଲୋକେ ଅନାଦର କରୁଅଛନ୍ତି, କରିବାର ମଧ୍ୟ କଥା । କାରଣ ମାନବ ସର୍ବଦା ସୁବିଧାକୁ ଲକ୍ଷ୍ୟକରେ । ବିଦେଶୀୟ ଉତ୍ପୀଡନରେ ଲୋକେ ବାଧ୍ୟ ହୋଇ କର୍ତ୍ତବ୍ୟ ବିମୁଖ ହେବାରୁ କୃଷି, ବାଣିଜ୍ୟ ଶିଳ୍ପାଦି ସମସ୍ତ କର୍ମ ସୁନ୍ଦର ରୂପେ ସମ୍ପାଦିତ ହୋଇପାରିଲା ନାହିଁ । ସେହି ସଙ୍ଗେ ସଙ୍ଗେ ଆୟୁର୍ବେଦ ମଧ୍ୟ ଅଧୋଗତି ପ୍ରାପ୍ତ ହେଲା । ଅନନ୍ତର ଯେତେବେଳେ ଇଂରାଜ ଜାତି ଏ ଦେଶରେ ଆଧିପତ୍ୟ ବିସ୍ତାର କଲେ, ସେହି ସମୟରେ ଆୟୁର୍ବେଦ ସୁପ୍ତ ବା ଲୁପ୍ତ ପ୍ରାୟ । ଏପରି ଅବ୍ୟବସ୍ଥାରେ ଦେଶୀୟ ଲୋକମାନେ ସୁବିଧା ପାଇଁ ଡାକ୍ତରୀ ଚିକିତ୍ସାର (ଡାକ୍ତରୀ ଚିକିତ୍ସା ଯେ ଉତ୍କୃଷ୍ଟ ନୁହେ, ଏହା କେହି କହିବେ ନାହିଁ, କିନ୍ତୁ ତାହା ଶୀତ ପ୍ରଧାନ ଦେଶର ଉପଯୋଗୀ, ଏ ଦେଶର ଉପଯୋଗୀ ନୁହେଁ ବୋଲି ଅନେକ ମହାତ୍ମା ପ୍ରକାଶ କରନ୍ତି) ଆଶ୍ରୟ କରି ଆୟୁର୍ବେଦକୁ ଅନାଦର କଲେ । ସେହି ହେତୁ ଆୟୁର୍ବେଦ ଉନ୍ନତି କରିପାରୁନାହିଁ । ଲୋକେ ବର୍ତ୍ତମାନ କର୍ତ୍ତବ୍ୟ ଭ୍ରଷ୍ଟ ହୋଇ ଅତି ଦୀନ ବେଶରେ କାଳକ୍ଷେପଣ କରୁଅଛନ୍ତି । କାହାରି କାହାରି ମନରେ ଏହାର ପ୍ରତି ଅନୁରାଗ ସଞ୍ଚାର ହୋଇଥିଲେ ମଧ୍ୟ ନିଜର ଅଭାବର ଅଧୀନରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ମୌନ ଭାବ ଧାରଣ କରୁଅଛନ୍ତି । ଏହା ସାଧାରଣ ସମ୍ପ୍ରଦାୟର କଥା । କିନ୍ତୁ କେବଳ ଯେ ଦେଶବାସୀଙ୍କର ଅନାଦର ହେତୁ ଆୟୁର୍ବେଦର ଅବନତି ଘଟିଅଛି, ଏହା ନୁହେଁ । ଏ ବିଷୟରେ ଆୟୁର୍ବେଦାଚାର୍ଯ୍ୟ ଗଣଙ୍କର ଅବସ୍ଥା ପ୍ରତି ଟିକିଏ ଲକ୍ଷ୍ୟ କରିବାକୁ ହେବ । ବର୍ତ୍ତମାନ ଅଧିକାଂଶ ଆୟୁର୍ବେଦାଚାର୍ଯ୍ୟ (କବିରାଜ)ମାନେ ପ୍ରଥମତଃ ଶାସ୍ତ୍ରାଦିରେ ବିଶେଷ ବିଜ୍ଞ ନୁହନ୍ତି ସ୍ୱଳ୍ପ ଶିକ୍ଷାରେ ନିଜକୁ ଜଣେ ବଡ କବିରାଜ ମନେ କରି ଅର୍ଥୋପାର୍ଜ୍ଜନ କରିବାକୁ ପ୍ରୟାସୀ । ଅନେକ କବିରାଜ କେବଳ ସ୍ୱାର୍ଥ ସାଧନ (ଅର୍ଥୋପାର୍ଜ୍ଜନ) ହିଁ ଆୟୁର୍ବେଦ କାର୍ଯ୍ୟର ଉଦ୍ଦେଶ୍ୟ ବୋଲି ମନେ କରନ୍ତି । ରୋଗି ରୋଗମୁକ୍ତ ହେଉ ବା ନ ହେଉ ପ୍ରଥମେ ପଇସା ନ ହେଲେ ଚିକିତ୍ସା କରିବାକୁ

ଅନିଚ୍ଛୁକ । ଏପରିକି (ରୋଗୀ ଗୃହ ପର୍ଯ୍ୟନ୍ତ) ଶହେ ପାହୁଣ୍ଡ ପଥଶ୍ରମ ସକାଶେ କିଛି ଆର୍ଥିକ ଉପହାର (ମୂଲ୍ୟ) ନ ହେଲେ ରୋଗୀ ଦେଖିବାକୁ କାହାରି କାହାରି ଗୋଡ ରାଜି ହୁଏ ନାହିଁ । ଉପଯୁକ୍ତ ବ୍ୟବସ୍ଥା ଦେବାକୁ ମଧ୍ୟ ରସନା ଉଲଟି ପଡେ । କେହି କହୁନାହିଁ ଯେ ସେମାନେ (ଯଦି ଅସମର୍ଥ) ବିନା ମୂଲ୍ୟରେ ଚିକିତ୍ସା ଓ ଔଷଧ ବିତରଣ କରି ହୃତ ସର୍ବସ୍ୱ ହୋଇ ପରିଶେଷରେ ଭିକ୍ଷାଜୀବୀ ହେବେ (ହେବା ହିଁ ଶ୍ରେୟସ୍କର, କିନ୍ତୁ ବର୍ତ୍ତମାନ ଯୁଗରେ ସର୍ବସାଧାରଣଙ୍କର ଅନୁମୋଦନୀୟ ନୁହେ) ତେବେ ପରିମାଣ ଉପରେ ପରିମିତ ଲାଭରେ ଔଷଧର ମୂଲ୍ୟନେଇ ଜୀବିକା ନିର୍ବାହ କରିବା ଉଚିତ । କିନ୍ତୁ ଦେଶ ସେବାରେ, ଲୋକହିତରେ, ଧର୍ମମୋକ୍ଷର ଅନୁରୋଧରେ କି ଏକ ବିନ୍ଦୁ ରକ୍ତ ବ୍ୟୟ କରିବା ଉଚିତ ନୁହେଁ? ଏହି ଶ୍ରେଣୀର କବିରାଜମାନଙ୍କର ଇଦୃଶୀ ପ୍ରକୃତି ଯୋଗୁ ଲୋକେ ଏମାନଙ୍କୁ (କବିରାଜମାନଙ୍କୁ) ବିଶ୍ୱାସ କରନ୍ତି ନାହିଁ, ଭକ୍ତି କରନ୍ତି ନାହିଁ ବା ଆଦର କରନ୍ତି ନାହିଁ । ଏହା ଉକ୍ତ କବିରାଜମାନଙ୍କର ଅଶିକ୍ଷିତ ଓ ନୀଚ ପ୍ରକୃତିର ପରିଚାୟକ ନୁହେଁକି ? ଯଦି ସେମାନେ ପ୍ରକୃତ ବୈଦ୍ୟ ପଦବାଚ୍ୟ, ତେବେ ଅବଶ୍ୟ ଶାସ୍ତ୍ରୋପଦେଶ ଅନୁସାରେ କାର୍ଯ୍ୟ କରନ୍ତେ । ଶାସ୍ତ୍ରାଦେଶ ସହିତ ଏମାନଙ୍କ କାର୍ଯ୍ୟ ତୁଳନା କଲେ ଗୋଦାନ ଏବଂ ଗୋହତ୍ୟା ତୁଳନା ପରି ବୋଧହୁଏ । ତାହାହିଁ ମହର୍ଷିମାନେ କହିଯାଇଅଛନ୍ତି, 'ତପ୍ତ ଲୌହଗୁଡିକା ବା ସର୍ପବିଷ ଭକ୍ଷଣ ଦ୍ୱାରା ଉଦର ପୂରଣ କରିବା ଉଚିତ, ତଥାପି ଭଣ୍ଡବେଶ ଧାରଣ କରି ବୈଦ୍ୟନାମ ରଟାଇ ଦୀନ ଗରିବ ରୋଗୀମାନଙ୍କ ଠାରୁ ଅର୍ଥଶୋଷଣ କରିବା ଉଚିତ ନୁହେଁ ' ଶାସ୍ତ୍ରରେ କଥିତ ଅଛି- '' ଶାସ୍ତ୍ରରେ ନିର୍ମଳ ଜ୍ଞାନ, ଆତ୍ମାପବିତ୍ରତା, ଚିକିତ୍ସା କର୍ମଦର୍ଶନ ଓ ଚିକିତ୍ସା ଦକ୍ଷତା ଏହା ପ୍ରକୃତ ଚିକିତ୍ସକର ଗୁଣ । ଏହି ସବୁ ଷଡରିପୁ ଦମନ ଓ ସୁକୃତ ସାଧନ ବିନା ଲବ୍ଧ ହୋଇ ନ ପାରେ । ବର୍ତ୍ତମାନ ଯୁଗରେ ଉକ୍ତ ଗୁଣ ବିଶିଷ୍ଟ ଚିକିତ୍ସକ ଅତି ଅଳ୍ପ ଦେଖିବାକୁ ପାଇଥାଉଁ । ଏହି ଶିକ୍ଷା ଦୋଷର ଦୁଇଟି କାରଣ ଥିବାର ଅନୁମିତ ହୁଏ । ଅନେକେ ଅର୍ଥାଭାବରୁ ସଦଗୁରୁର ଅଭାବରୁ ଓ ପୁସ୍ତକାଦିର ଅଭାବରୁ ନିଜର ଶିକ୍ଷାପୂରଣ କରିପାରନ୍ତିନାହିଁ । ଅନେକେ ଅଳ୍ପ ଶିକ୍ଷାରେ ନିଜକୁ ମହତ ବୋଧ କରି କାର୍ଯ୍ୟରେ ବ୍ରତୀ ହୋଇ ଶିକ୍ଷାରୁ ବିରତ ହୁଅନ୍ତି । ଫଳତଃ ଏ ଦୁହେଁ ଏକ ଶ୍ରେଣୀର ଅଧିକାରୀ ହୁଅନ୍ତି । ବର୍ତ୍ତମାନ ଅଧିକାଂଶ ଚିକିତ୍ସକ ଯେ ଚିକିତ୍ସକ ଗୁଣ ସମ୍ପନ୍ନ ନୁହନ୍ତି ତାହାର ଭୁରି ଭୁରି ପ୍ରମାଣ ମିଳେ । ''ଶାହାସ୍ତ୍ରରୁ ଦେଖା'' ବୋଲି ଗୋଟିଏ କଥା ଦେଶରେ ପ୍ରଚଳିତ ଅଛି ତାହା ବୈଦ୍ୟର ଯଷ୍ଟି ଅଟେ । କିନ୍ତୁ ଏହା ବୈଦ୍ୟ ମହୋଦୟ ସର୍ବଦା ଧରି ପାରନ୍ତି ନାହିଁ । ଏବଂ ଏହା ବ୍ୟତୀତ କୌଣସି କାର୍ଯ୍ୟ କରିପାରନ୍ତି ନାହିଁ । ରୋଗୀ କହେ ''ବୈଦ୍ୟ ମହାଶୟ । ଶହାସ୍ତ୍ରର ଦେଖନ୍ତୁତ ମୋହର ମୁଣ୍ଡ ବଥଉଛି ଦାସ୍ତ ଖୋଲାସା ହେଉନାହିଁ କଣ କରିଛି ।'' ତହୁଁ ବୈଦ୍ୟ ମହୋଦୟ ଶାହାସ୍ତ୍ରର ଦେଖି ଔଷଧ ବତାଇ ଦିଅନ୍ତି । ଆଉ ଗୋଟିଏ କଥା କୌଣସି କୌଣସି ବୈଦ୍ୟ ଯଦିବା ଚିକିତ୍ସକ ପଦବାଚ୍ୟ ଆୟୁର୍ବେଦର ଉନ୍ନତି ନିମିତ୍ତ ଚେଷ୍ଟିତ ତେବେ ସେ ମଧ୍ୟ ନାନା କାରଣରୁ କୃତକାର୍ଯ୍ୟ

ହୋଇପାରନ୍ତି ନାହିଁ । ଯୋଦ୍ଧା ଯେପରି ଉତ୍ତମ ଅସ୍ତ୍ରଶସ୍ତ୍ର ବ୍ୟତୀତ କୌଣସି ବୀରତ୍ୱ ଦେଖାଇ ନ ପାରେ, ଚିକିତ୍ସକ ମଧ୍ୟ ଉତ୍ତମ ଔଷଧ୍ୟ ବ୍ୟତୀତ ନିଜର ବୈଦ୍ୟତ୍ୱ ଦେଖାଇ ନ ପାରେ ଅର୍ଥାତ୍ ରୋଗୀର ରୋଗ ନିବାରଣ ସାକାଶେ ଅସମର୍ଥ ହୁଏ ।

ଔଷଧ ସମସ୍ତ ଶାସ୍ତ୍ରାନୁସାରେ, ବିଶୁଦ୍ଧ ନିୟମରେ ବିଶୁଦ୍ଧ ଉପକରଣ (ଭେଷଜ)ରେ ପ୍ରସ୍ତୁତ ହେବା ଉଚିତ । ବର୍ତ୍ତମାନ ଔଷଧ ପ୍ରସ୍ତୁତ କରିବାକୁ ଯେଉଁ ସବୁ ଭେଷଜ ବ୍ୟବହୃତ ହେଉଅଛି । ସେ ସମସ୍ତ ଅଧିକାଂଶ ଏକାନ୍ତ ଅନୁପଯୋଗୀ ଅଟେ । ଯେଉଁ କେତେକ ଭେଷଜ ବିଦେଶ ଜାତ ତନ୍ମଧ୍ୟରୁ ଅଧିକାଂଶ କେହି ପୁରୁଣା, କେହି ସାରଶୂନ୍ୟ, କେହି କୀଟଦ୍ରଂଷ୍ଟ । ଦେଶୀୟ ଭେଷଜ ସମୂହରେ ମଧ୍ୟ ଦୋଷପୂର୍ଣ୍ଣ । ଦେଶ, କାଳ, ପାତ୍ର, ରୋଗାଦିର ଅନୁରୋଧରେ ପକ୍ୱ ଗ୍ରାହ୍ୟ ଭେଷଜ ପରିବର୍ତ୍ତେ କଞ୍ଚା,କଳ୍କଳ ଗ୍ରାହ୍ୟ ଭେଷଜ ପରିବର୍ତ୍ତେ ଡାଳମୂଳ ସମେତ ଗୃହୀତ ହେଉଅଛି । ପୁଣି କୀଟାଦି ଦଂଷ୍ଟ, ଅନୁପଯୁକ୍ତ ସ୍ଥାନ ଜାତ ଅଋତୁଜାତ ଅପୂର୍ଣ୍ଣାଙ୍ଗ ଉପଯୁକ୍ତ ରସହୀନାଦି ଭେଷଜ ମଧ୍ୟ ଗୃହୀତ ହେଉଅଛି । ଏହି ଦୁଇଟି କଥା ଔଷଧର ବିଶୁଦ୍ଧତା ରକ୍ଷାର ପ୍ରଧାନ ଅନ୍ତରାୟ ଅଟେ ଏହି ଦୁଇଟି ଅସୁବିଧା ମୋଚନ ନିମିତ୍ତ ବଣିକ, ଚିକିତ୍ସକ ଏବଂ ସାଧାରଣଙ୍କର ଚେଷ୍ଟିତ ହେବା ଉଚିତ । ବର୍ତ୍ତମାନ ଏହି କେତେକ ବର୍ଷ ମଧ୍ୟରେ ଆୟୁର୍ବେଦର କେତେକ ଉନ୍ନତି ସାଧିତ ହୋଇଅଛି । ତାହା ଅଧିକାଂଶ ୩ୟଶ୍ରେଣୀ (ବୈଶ୍ୟ) ବୈଦ୍ୟମାନଙ୍କର ଯତ୍ନରେ । ବର୍ତ୍ତମାନ ଏହି ବୈଦ୍ୟମାନଙ୍କର ସଂଖ୍ୟା ଅନେକ ବୃଦ୍ଧି ପାଇଅଛି । ଏମାନଙ୍କ ଯତ୍ନରେ କେତେକ ପୁସ୍ତକାଦି ମୁଦ୍ରିତ ହୋଇ ଶିକ୍ଷାର ସାହାଯ୍ୟ କରିଅଛି । ମାତ୍ର ଏହି ଶ୍ରେଣୀରୁ ଅଧିକାଂଶ ବୈଦ୍ୟମାନଙ୍କଠାରେ ଆଉ ଗୋଟିଏ ନିନ୍ଦନୀୟ ବିଷୟ ଆଦର ଲାଭ କରିଅଛି । ତାହା '' ଅତିରଞ୍ଜିତ ବିଜ୍ଞାପନ'' । ଏହା ମଧ୍ୟ ପୂର୍ବପରି ଅଶିକ୍ଷିତ ବା ଅଳ୍ପ ଶିକ୍ଷିତ ବ୍ୟକ୍ତିମାନଙ୍କ ଦ୍ୱାରା ସମାହିତ ହେଉଅଛି । କେତେ ବ୍ୟକ୍ତି ଏହାର ସାହାଯ୍ୟରେ ମହାଧନୀ ହେଉଅଛନ୍ତି । ଏବଂ କେତେ ଲୋକ ଠକାମିରେ ପଡି ବିପଦଗ୍ରସ୍ତ ହେଉଅଛନ୍ତି, ତାହା ବୋଲିବା ବାହୁଲ୍ୟ ମାତ୍ର । ଏହା ପ୍ରଦେଶାନ୍ତରେ ଅତିଶୟ ଆଧିପତ୍ୟ ଲାଭ କରିଅଛି ଏବଂ ବର୍ତ୍ତମାନ ଆମ୍ଭମାନଙ୍କର ମାତୃଭୂମି ଉତ୍କଳରେ ମଧ୍ୟ ସଂକ୍ରାମକ ରୋଗ ପରି ବିସ୍ତାର ଲାଭ କରି ଆସୁଅଛି । ହଁ, ପ୍ରକୃତ କଥା ବିଜ୍ଞାପନ ଦ୍ୱାରା ଉତ୍ତମ ପଦାର୍ଥର ଉପକାରୀତା ସାଧାରଣରେ ଜଣାଇଁ ବିକ୍ରୟ କରିବା ଅନୁଚିତ ନୁହେଁ । କିନ୍ତୁ ଚିକିତ୍ସା ଶବ୍ଦର ଅର୍ଥ ନ ବୁଝି ଔଷଧର ସହିତ ପରିଚିତ ନ ହୋଇ ଭେଳକି ମନ୍ତ୍ରରେ ୪ ଜଣଙ୍କୁ ଭୁଲାଇ ଅର୍ଥ ଶୋଷଣ କରିବା ଅନ୍ୟାୟ ନୁହେଁକି ?

ପୂତାତ୍ମା ମହର୍ଷିଗଣ କହିଯାଇଅଛନ୍ତି ''ଅଜ୍ଞ ଚିକିତ୍ସକର ଔଷଧ ଇନ୍ଦ୍ରର ବଜ୍ର ଅପେକ୍ଷା ଭୟଙ୍କର ।'' ଅତଏବ ଉପରୋକ୍ତ ଅତିରଞ୍ଜିତ ବିଜ୍ଞାପନ ପ୍ରଚାରକ ଅଜ୍ଞ ଚିକିତ୍ସକମାନେ ଦେଶର ପ୍ରାଣନାଶକ, ଧନଶୋଷକ ଏବଂ ସତ୍ୟନ୍ୟାୟ ଧର୍ମ୍ମର ସଂପୂର୍ଣ୍ଣ ବିରୋଧୀ ଅଟନ୍ତି । ଏଥିରେ କିଛି ମାତ୍ର ସନ୍ଦେହ ନାହିଁ । ଏମାନେ ସେହି ପରୋପକାରୀ ମହର୍ଷିଗଣଙ୍କର ଅଜସ୍ର

ପରିଶ୍ରମୋପାର୍ଜିତ ବିବିଧ - ଆୟୁର୍ବେଦ ବିସ୍ତାରର ପ୍ରଧାନ କଣ୍ଟକ ଅଟନ୍ତି । କିନ୍ତୁ 'ସତ୍ୟର ସର୍ବତ୍ର ଜୟ' ସେହି ଆୟୁର୍ବେଦ ସମସ୍ତ ବାଧାବିଘ୍ନ ଅତିକ୍ରମ ପୂର୍ବକ ନିଜର ସଞ୍ଚିତ ସୁଧା ବିତରଣ କରି କରି ଯେ ପର୍ଯ୍ୟନ୍ତ ପୃଥିବୀରେ କିଛି ନା କିଛି ସତ୍ୟନ୍ୟାୟ ଧର୍ମ ବିରାଜିତ ଥିବ ସେ ପର୍ଯ୍ୟନ୍ତ ଏହା ପ୍ରତ୍ୟେକ ଆର୍ଯ୍ୟମାନଙ୍କର ପ୍ରିୟପାତ୍ର ହେବ । ଏହା ନିଶ୍ଚିତ ଅଟେ । ସ୍ଥୂଳତଃ କହିବାକୁ ଗଲେ ଅତିପ୍ରାଚୀନ କାଳ ଅପେକ୍ଷା ବର୍ତ୍ତମାନ ଆୟୁର୍ବେଦର ଅତିଶୋଚନୀୟ ଅବସ୍ଥା ଘଟିଅଛି । ଯଦି ଆମ୍ଭମାନଙ୍କର ଦେଶର ପ୍ରତ୍ୟେକ ରାଜା, ଜମିଦାର ଓ ସଂଭ୍ରାନ୍ତ ବ୍ୟକ୍ତିମାନେ ଏ ସମ୍ବନ୍ଧରେ ଯତ୍ନବାନ ନ ହେବେ ତେବେ ଆୟୁର୍ବେଦର ଉନ୍ନତି ବହୁକାଳ ସାପେକ୍ଷ । ପ୍ରଥମେ ବ୍ୟୟସ୍ୱୀକାର କରି ଆୟୁର୍ବେଦ ଶିକ୍ଷା କରାଇବା, ଦ୍ୱିତୀୟରେ ସେମାନଙ୍କର କାର୍ଯ୍ୟର ସୁବିଧା ସକାଶେ ସାହାଯ୍ୟ ପ୍ରଦାନ କରିବା ଦେଶ ହିତୈଷୀ ମହାତ୍ମାମାନଙ୍କର କର୍ତ୍ତବ୍ୟ ଅଟେ । ଏହି ଦୁଇଟି କାର୍ଯ୍ୟ ଯଦି ସମ୍ପନ୍ନ ହୁଏ ତେବେ ଲୋକେ ଯେ ଏହାକୁ ଅନାଦର କରିବେ, ଏହା କଦାପି ସ୍ୱୀକାର କରାଯାଇ ନ ପାରେ । ଆୟୁର୍ବେଦର ଉତ୍ତମ ଶିକ୍ଷା, ଲୋକ ସାଧାରଣଙ୍କର ଅନୁରାଗ ସଂଚାର, ବିଶୁଦ୍ଧ ନିୟମରେ ଔଷଧ ପ୍ରସ୍ତୁତ ଓ ସୁଲଭରେ ପ୍ରଚାର ଏହି ଚାରିଟି ଆୟୁର୍ବେଦର ଉନ୍ନତି ସାଧନର ପ୍ରଧାନ ଉପାୟ ଅଟେ ।

ଯାହାର ହୃଦୟରେ ସ୍ୱଦେଶାନୁରାଗ, ସ୍ୱଭାଷାନୁରାଗ ସ୍ୱଧର୍ମ୍ମାନୁରାଗ ଜାଜ୍ଜଲ୍ୟମାନ ହୋଇ ଜାଗ୍ରତ ଅଛି, ଯାହାର ଧମନୀରେ ସେହି ଧର୍ମ୍ମାନୁରାଗୀ, ନ୍ୟାୟ ପରାୟଣ, କର୍ତ୍ତବ୍ୟନିଷ୍ଠ, ପ୍ରାଚୀନ ଆର୍ଯ୍ୟଗଣଙ୍କର ରକ୍ତାଂଶ ପ୍ରବାହିତ ହେଉଅଛି, ଯେଉଁ ମହାତ୍ମା ଜାଣନ୍ତି ଯେ, ଆମ୍ଭମାନଙ୍କର ଜୀବନ ଯାତ୍ରାପଥର ପ୍ରଦର୍ଶକ କିଏ ? ସ୍ୱଦେଶ ହିତୈଷି ସେହି ଆର୍ଯ୍ୟ ସନ୍ତାନମାନେ ବଦ୍ଧ ପରିକର ହୋଇ ଆୟୁର୍ବେଦର ଉନ୍ନତିକଳ୍ପେ ଚେଷ୍ଟିତ ହେଲେ ଆୟୁର୍ବେଦ ଯେ ଅଚିରେ ଉନ୍ନତି ସୋପାନରେ ଅଧିରୂଢ଼ ହୋଇ ନିଜର ସଞ୍ଚିତ ବିଶୁଦ୍ଧ ମହୋପକାରୀ- ଭୈଷଜ୍ୟ ସୁଧା ବିତରଣ କରି ମାନବ ମଣ୍ଡଳକୁ ସୁଖସନ୍ତୋଷ ପ୍ରଦାନ କରିବାକୁ ସମର୍ଥ ହେବ, ଏଥିରେ କିଛି ମାତ୍ର ସନ୍ଦେହ ନାହିଁ ।



# ବସନ୍ତ ନିବାସ

(ବାମଣ୍ଡାର ରାଜଧାନୀ ଦେବଗଡର ଉତ୍ତର ଦିଗରେ ପ୍ରଧାନପାଟ ପର୍ବତ ପ୍ରାୟ ଏକମାଇଲ ଦୂରରେ ଅବସ୍ଥିତ । ଏହାର ଶିଖର ଦେଶରୁ ଆବାହମାନ କାଳରୁ ଅତ୍ୟନ୍ତ ମଧୁର ଉଚ୍ଚ ଧ୍ୱନିରେ ଗୋଟିଏ ଜଳପ୍ରପାତ ପତିତ ହେଉଅଛି । ଏହି ପ୍ରପାତର ନାମ "ପ୍ରଧାନପାଟ ଜଳପ୍ରପାତ" ।

କି ଗ୍ରୀଷ୍ମ କି ବର୍ଷା ସକଳ ଋତୁରେ ଜଳପ୍ରପାତର ଜଳରାଶିର ଅଭାବ ଲକ୍ଷିତ ହୁଏନାହିଁ । ପ୍ରପାତ ଦର୍ଶନାଭିଳାଷୀ ବ୍ୟକ୍ତିମାନଙ୍କ ସୁବିଧା ନିମନ୍ତେ ଶ୍ରୀରାଜ ସରକାର ପର୍ବତର କିଛିଦୂରରୁ ପ୍ରପାତର ତଳଦେଶ ପର୍ଯ୍ୟନ୍ତ ପକ୍କାର ସୋପାନ ଶ୍ରେଣୀ ନିର୍ମାଣ କରାଇ ଦେଇଅଛନ୍ତି ।

ପର୍ବତର କଳେବର ଓ ଅଧୋଦେଶ ଆମ୍ର ଓ ବନଜ ବିବିଧ ଜାତୀୟ, ବିବିଧ ବର୍ଣ୍ଣର ବୃକ୍ଷଲତା ଓ ପୁଷ୍ପାଦିରେ ମଣ୍ଡିତ ।

ପ୍ରପାତର ଉତ୍ତର ପୂର୍ବ ଓ ପଶ୍ଚିମ ଦିଗ ପର୍ବତ ଦ୍ୱାରା ଅର୍ଦ୍ଧଚନ୍ଦ୍ରାକାରେ ଆବୃତ୍ତ, କେବଳ ଦକ୍ଷିଣ ଦିଗଟି ଉନ୍ମୁକ୍ତ ଅଛି । ଏହିଦିଗରୁ ମଧ୍ୟାହ୍ନ କାଳରେ ପ୍ରପାତର ଜଳରାଶି ଉପରେ ସୂର୍ଯ୍ୟ ରଶ୍ମି ପତିତ ହୋଇ ସପ୍ତବର୍ଣ୍ଣର ବିଚିତ୍ର ଶୋଭା ଉଦ୍ଭାସିତ ହୁଏ ।

ଗ୍ରୀଷ୍ମକାଳରେ ଜଳପ୍ରପାତର ଅଦୂରେ ଠିଆ ହେଲେ, କ୍ଷଣକମଧ୍ୟରେ ଶରୀର ଶୀତଳ ହୋଇ ଶ୍ରାନ୍ତି ଦୂରହୁଏ । ବିଶ୍ୱଯନ୍ତ୍ରର ସ୍ୱରରେ ମାନବର ସ୍ୱର ସମୁଦ୍ରର ଜଳରେ ନଦୀର ଜଳପରି ମିଶି ଲୀନହୁଏ । ମହୀଧରର ପ୍ରକାଣ୍ଡ କଳେବରର ପଦ ତଳେ ଥାଇ ମାନବ ଯେତେବେଳେ ଜଗତର ବିଶାଳତା ଚିନ୍ତାକରେ ତେତେବେଳେ ତାହାର କ୍ଷୁଦ୍ରତ୍ୱ କ୍ଷୁଦ୍ରତର ହୋଇଆସେ । ନିଜର ଦୁର୍ବଳତା ଅନୁଭୂତ ହୁଏ । ଏହାର ଉପରକୁ ଉଠି ଯେତେବେଳେ ସୌରଜଗତର ଅସୀମତା ଏବଂ ବିରାଟ ପୁରୁଷଙ୍କର ଅନନ୍ତ ଶକ୍ତିର ବିଷୟ ଭାବନା କରି ନିଜକୁ ପଚାରେ "ମୁଁ କିଏ ?" ତେତେବେଳେ ତାହାର ଅସ୍ତିତ୍ୱ ଲୋପ ହୁଏ ।

ଜଗତ ବିଧାତା ପୁରୁଷଙ୍କର ପ୍ରଧାନ ଶାସ୍ତ୍ର ହିନ୍ଦୁର ବେଦ, ମୁସଲମାନର କୋରାନ, ଖ୍ରୀଷ୍ଟାନର ବାଇବେଲ । ଏହି ଶାସ୍ତ୍ରର ଗୋଟିଏ ଗୋଟିଏ ପୃଷ୍ଠା ପାଠ କରିବାକୁ ମାନବ ସହସ୍ର

ସହସ୍ର ବ୍ୟାପି କାଳ ଯତ୍ନ କରୁଅଛି । ଏହା ଅତି ପ୍ରାଚୀନ ଓ ନିତ୍ୟ ନୂତନ । ସେ ଶିକ୍ଷା ସେ ସୌନ୍ଦର୍ଯ୍ୟ କବିମାନଙ୍କର ଦୃଷ୍ଟିରେ ଧରାପଡିଥାଏ । ଏହି ସୌନ୍ଦର୍ଯ୍ୟ ସ୍ୱର୍ଗର ଗବାକ୍ଷ ।

ପ୍ରପାତର ଅନତି ଦୂରରେ ଦୃଷ୍ଟିର ସୀମା ମଧ୍ୟରେ ପର୍ବତର ପୂର୍ବ ଓ ପଶ୍ଚିମ ଦିଗର ଦିଓଟି କଟୀଦେଶରେ ମହାମାନ୍ୟ ମହାରାଜା ଶ୍ରୀସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟ ସ୍ୱାସ୍ଥ୍ୟ ନିବାସ ନିମନ୍ତେ ଅଜସ୍ର ଅର୍ଥବ୍ୟୟକରି କେତେ ଗୁଡିଏ ପକ୍କାଗୃହ ନିର୍ମାଣ କରାଉ ଅଛନ୍ତି । ନୈସର୍ଗିକ ମନୋହାରିଣୀ ପ୍ରକୃତି ଦେବୀର କ୍ରୋଡସ୍ଥିତ ଏହି ସୌଧ ଶ୍ରେଣୀର ନାମ "ବସନ୍ତ ନିବାସ"।

ବସନ୍ତ ନିବାସ ଉଦ୍ଦେଶ୍ୟେ ରଚିତ ସାହିତ୍ୟ ସେବକ କବି, ଲେଖକ ଓ ଲେଖିକାମାନଙ୍କର ପଦ୍ୟଗୁଡିକ ପରିପାଟୀ ସହକାରେ ଗୋଟିଏ ଗୋଟିଏ ଶ୍ୱେତ ମାର୍ବଲ ପ୍ରସ୍ତର ଫଳକରେ ଖୋଦିତ ହୋଇ ରଖାଯାଇଅଛି ।

"ବସନ୍ତ ନିବାସ" ପ୍ରାକୃତିକ ଶୋଭାରେ ପରିପୂର୍ଣ୍ଣ ଥିଲେହେଁ ଏହାକୁ କୃତ୍ରିମ ଶୋଭାର ମନ୍ଦିର କରିବାକୁ ସର୍ବ ବିଧ ଯତ୍ନ କରାଯାଉଅଛି ।

ଏହା ସୌନ୍ଦର୍ଯ୍ୟ, ଚିତ୍ର ନୈପୁଣ୍ୟ ଏବଂ କବି ମାନଙ୍କ ଶକ୍ତିମତାର ଏକାଧାର ହୋଇ ରହିଅଛି ।

ବସନ୍ତ ନିବାସ ସମ୍ବନ୍ଧେ ଆମ୍ଭମାନଙ୍କର ପରାମର୍ଶାନୁସାରେ ଶ୍ରୀଯୁକ୍ତ ହରିହର ମହାପାତ୍ର ଶର୍ମା ମହାଶୟଙ୍କ ଲିଖିତ ବିସ୍ତୃତ ବିବରଣୀ ଏଠାରେ ପ୍ରକାଶ କଲୁ -

(ସଂପାଦକ, ସମ୍ବଲପୁର ହିତୈଷିଣୀ : ୨୧/୨୨)

ଅପାର କରୁଣାମୟ ବିଶ୍ୱପତିଙ୍କର ଅନନ୍ତ କରୁଣାରୁ ଆମ୍ଭମାନଙ୍କର ଜନନୀ ପ୍ରତିମା ଉତ୍କଳଭୂମି ସୁଷମା ଶାଳିନୀ ପଦରେ ଚିର ଗୌରବମୟୀ । କେତେକଳ ନିନାଦିନୀ ତରଙ୍ଗ ମାଳିନୀ ଫେଣହାସିନୀ କଲ୍ଲୋଳିନୀ କେତେ ଶ୍ୟାମ ପଲ୍ଲବ ଓ ମଞ୍ଜୁଳ କୁସୁମ ଶୋଭିତ ମଧୁର ହିଲ୍ଲୋଳମୟ ବିହଙ୍ଗ ସଙ୍ଗୀତ ଝଙ୍କାରିତ ଅରଣ୍ୟାନୀ, କେତେ ନୟନ ହାରିଣୀ ରତ୍ନାଭରା ନୀରା ବିନ୍ଦୁ ମାଳିନୀ ଝର ଝର ନିର୍ଝର ନିର୍ଝରିଣୀ କେତେ ମୃଦୁଳ ମଳୟାନିଳ ସେବିତ ନିବନ୍ଧ ତରୁ ଛାୟା ଶୀତଳ ମନୋରମ କୁଞ୍ଜ ପୁଞ୍ଜ ଏହାର ବକ୍ଷୋଦେଶରେ ବିରାଜିତ ରହି ବିଶ୍ୱପତିଙ୍କର ଅପାର କରୁଣାର ଜ୍ୱଳନ୍ତ ପ୍ରମାଣ ପ୍ରଦର୍ଶନ କରାଉଅଛି । ଯେତେବେଳେ ଝିଲ୍ଲି ଝଙ୍କାରିତ କାନନବନ୍ଧୁ ଭୃଙ୍ଗରାଜର ମଧୁର ବଂଶୀ ସ୍ୱନ ଚୁମ୍ବିତ ପଲ୍ଲବ କୁସୁମ ନିବିଡ କାନନରେ ପ୍ରବିଷ୍ଟ ହେଉଁ କେତେବେଳେ କ୍ଷୁଦ୍ର ହୃଦୟ କାନନ ଅପୂର୍ବ ପ୍ରୀତିକୁସୁମରେ ବିଭୂଷିତ ହୋଇଉଠେ । ସେତେବେଳେ ଫେଣ ହାସିନୀ ତରଙ୍ଗ ମାଳିନୀ ପବିତ୍ର ସଲିଳା ତରଙ୍ଗିଣୀର ଶାଶ୍ୱତ ପ୍ରେମୋତ୍‌ଫୁଲିତା ଲୋଳଗତି ଅବଲୋକନ କରୁଁ ତେତେବେଳେ ହୃଦୟରେ ଅନନ୍ତ ଆନନ୍ଦମୟୀ ଭକ୍ତି ସଲୀଳା ପ୍ରୀତି ତରଙ୍ଗିଣୀ ପ୍ରବାହିତା ହୁଏ । ସେହି ମନୋରମ ସ୍ଥଳୀ

ମାନଙ୍କର ଅନ୍ୟତମ ଝର ଝର ନାଦିନୀ ମୌକ୍ତିକ ମାଳିନୀ ଶୁଭ୍ରହୀରା ନିର୍ଝରିଣୀର ଶୀତଳ ଶୀକର ସ୍ନିଗ୍ଧ ମୃଦୁଳ ମଳୟାନିଳର ଲଳିତ ସ୍ପର୍ଶ ପୁଲକିତ ବିବିଧ ବନ ବିହଙ୍ଗାବଳୀର ମଧୁର ସଙ୍ଗୀତ ଝଙ୍କାରିତ ଏହି ବସନ୍ତ ନିବାସ ଅବଲୋକନରେ ହୃଦୟଚିତ୍ତରେ ଅପୂର୍ବ ଆନନ୍ଦର ପ୍ରବଳଉତ୍ସ ସ୍ୱତଃ ହୃଦୟକୁ ଆହ୍ଲାଦିତ କରାଇ ପ୍ରବାହିତ ହୁଏ । ଉତ୍କଳ ମାନନୀୟ କବିବର ରାୟ ରାଧାନାଥ ରାୟ ବାହାଦୁର ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟରେ ଆହ୍ଲାଦିତ ହୋଇ ନିଜର ଅମର ଲେଖନୀରେ ଗାଇ ଅଛନ୍ତି -

"ପ୍ରଧାନ ପାଟର ପ୍ରପାତ ଭୀଷଣ
ନିର୍ଜନ ଗହନେ ଗର୍ଜେ ଅନୁକ୍ଷଣ
ନୀର ଆସ୍ତରଣ ଭୃଗୁ ପ୍ରସ୍ତେ ଯାର
ହୀରକକୁ ଦିଏ ସହସ୍ର ଧିକ୍କାର
ନିରନ୍ତର ରତ୍ନ ସୀମନ୍ତ ପରାୟେ
ଇନ୍ଦ୍ରଧନୁ ଯାର ଶିରେ ଶୋଭାପାଏ
ଯହିଁ କେଳି ଲୋଳ ଜଳଦେବୀ କେଳି
ଉପୁଜାଏ ଶତ ସଲିଳ ହାବେଳି" ।
xxxxxxxxxxx
ସେହି ପ୍ରପାତର ପୂତ ତୟୋ ରାଶି
ମିଶୁଅଛି ଏହି ବ୍ରାହ୍ମୀ ଅଙ୍ଗେଆସି ।

ଯଥାର୍ଥରେ ଯେଉଁ ମହାତ୍ମା ଏହାର ପ୍ରାଣମନ ତୋଷିଣୀ ଅମୃତମୟୀ ସୁଷମା ଥରେମାତ୍ର ଅବଲୋକନ କରି ଅଛନ୍ତି ତାଙ୍କର ହୃଦୟରେ କବିବରଙ୍କ ଗୀତ ଉକ୍ତ ପଦାବଳି ଅପୂର୍ବ ଆନନ୍ଦ ସଞ୍ଚାର କରି ପ୍ରପାତର ମଧୁର ଛବି ନୟନ ସମ୍ମୁଖରେ ପ୍ରସାରିତ କରେ ।

ବାମଣ୍ଡା ରାଜଧାନୀର ଉତ୍ତର ସୀମାନ୍ତବର୍ତ୍ତି ପ୍ରଧାନପାଟ ପର୍ବତ ଦେବଦୁର୍ଗର ଉଦିଚୀ ପ୍ରାଚୀର ସ୍ୱରୂପ ବିରାଜିତ । ଏହି ପର୍ବତର ସ୍କନ୍ଧ ଦେଶରୁହିଁ ଉକ୍ତ ହୃଦୟାହ୍ଲାଦିନୀ ପୂଣ୍ୟତୋୟା ନିର୍ଝରିଣୀ ପ୍ରବାହିତ କଳନିନାଦିନୀ ଜଳସ୍ରୋତର ପୂର୍ବ ଓ ପଶ୍ଚିମରେ ବିବିଧ ତରୁଲତା ଶୋଭିତ ମନୋହର କାନନ ବିରାଜିତ । କେଉଁଠାରେ ନବ ମଳୟର ଲଳିତ ସ୍ପର୍ଶରେ ପୁଲକିତ "ଭୂମିକୁରୁମ" ଅତୀବ ହୃଦୟାହ୍ଲାଦତୀର ପିୟୂଷୋପମ ମୃଦୁ ମଧୁର ସୁଗନ୍ଧ ବିତରଣ କରି ପ୍ରକୃତିର ମହୀୟାନ ଗୌରବ ପ୍ରଚ୍ଚର କରୁଅଛି । କେଉଁଠାରେ ମାଧବୀ ଚନ୍ଦ୍ରିକା ଚୁମ୍ବନରେ ପ୍ରେମ ପ୍ରମୋଦିତା କବିମାଳିକା ମୃଦୁ ସୁବାସ ବିତରଣ କରି ପରିଶ୍ରାନ୍ତ ପ୍ରାଣରୁ ଶ୍ରାନ୍ତି ଦୂର କରୁଅଛି । କେଉଁଠାରେ ବାସନ୍ତିକ ନିଶାନ୍ତ ଅରୁଣିମା ତୁଚ୍ଛକରି ନବକନ୍ଦଳିତ ତିନ୍ଦୁକବନ ଏବଂ କୁସୁମ ସମ୍ପଦ ଲୋଭିତ ଧାତକୀ କୁଞ୍ଜ ଦର୍ଶକର ନୟନ ମନ ଆକର୍ଷଣ କରୁଅଛି ।

ହରିତକୀ, ବିଭିତକୀ, ଶାଳ, ପିଆଶାଳ, ଅର୍ଜୁନ, ଅସନ, ଅଁଳା, ବୃଧ୍ନୀ ପ୍ରଭୃତି ତରୁ ଶ୍ୟାମାଲତା, ମାଧବୀ, ଅତଣ୍ଡି, ଶିଆଳି ପ୍ରଭୃତି ଲତା ଅନନ୍ତମୂଳ, ସହସ୍ରଭେଙ୍ଗି, ଯବତିକ୍ତ, ଶତମୂଳୀ, ଅକାନବିନ୍ଧ, ଗୁଗୁଳ, ପ୍ରଭୃତି ଔଷଧୀ...ସଇଁଗା, ଗଉଡମ୍ମୁଣ୍ଡା, ପିତାଳୁ, କୁନ୍ଦୁରୁ.... ପ୍ରଭୃତି ବନ୍ୟ କନ୍ଦ; ଗିଲରି, କପାସି, ଶାଳପର୍ଣ୍ଣୀ ପ୍ରଭୃତ ବଲ୍ଲି ନାନା ସ୍ଥାନରେ ବିରାଜିତ ରହି କାନନକୁ ବିଚିତ୍ର ଉଦ୍ଭିଦ ସମ୍ପଦରେ ଗରୀୟାନ କରି ରଖିଅଛି । ଏଣେ କପୋତ, ଲାବ, ଯୋଗିଆ, ଗୁଣ୍ଡୁରି ହଳଦୀବସନ୍ତ, ଠୁକବସନ୍ତ ଖୋକବସନ୍ତ, ଡାହୁକ, କୁମ୍ଭାଟୁଆ ପ୍ରବୃତି ବିବିଧ ବନ ବିହଙ୍ଗାବଳିର ମଧୁର କାକଳି ଓ ବିବିଧ ବର୍ଣ୍ଣର ପ୍ରସ୍ତରାଦି ନାନା ସ୍ଥାନରେ ବିଦ୍ୟମାନ ରହି କାନନକୁ ଅଧିକତର ମନୋରମ କରିଅଛି । ଏଭଳି ପ୍ରାଣମନ ନୟନାଭିରାମ ପବିତ୍ର ସ୍ଥଳୀର ସୁବ୍ୟବହାର ସର୍ବଥାବାଞ୍ଛନୀୟ । ସେହି ଉଦ୍ଦେଶ୍ୟରେ ହିଁ ଏହି ମନୋରମ ସ୍ଥାନରେ "ବସନ୍ତ ନିବାସ" ଅବସ୍ଥାପିତ ହୋଇଅଛି ।`ଏହି ବସନ୍ତ ନିବାସ ଗୃହ ନିର୍ଝରିଣୀର ଦକ୍ଷିଣ ଏବଂ ଜଳସ୍ରୋତର ପଶ୍ଚିମରେ ଅନତିଦୂରରେ ନିର୍ମିତ । ବସନ୍ତ ନିବାସ ଉପଲକ୍ଷେ ବାମଣ୍ଡାର ଲେଖକମାନଙ୍କର ଦ୍ୱାରା ବସନ୍ତ ବୃତ୍ତରେ ରଚିତ ଗୋଟିଏ ଲେଖାଁ କବିତା ସାରସ୍ୱତ ଚତ୍ୱର ନାମରେ ଅଭିହିତ ଗୋଟାଏ ବୈଠକର ଚର୍ତୁଦିଗ ଗାତ୍ରରେ ସଂଯୁତ ହେବ ବର୍ତ୍ତମାନ ଉକ୍ତ କବିତାବଳି ମାର୍ବଲ ପ୍ରସ୍ତରରେ ଖୋଦିତ ହୋଇ ରକ୍ଷିତ ହୋଇଅଛି ।

ପ୍ରଥମତଃ ବସନ୍ତ ନିବାସର ନାମ ନିର୍ଦ୍ଦେଶ ଅତୀବ କୌତୁହଳ ଓ ଶିକ୍ଷା ପୂର୍ଣ୍ଣ "ବସନ୍ତ ନିବାସ" ସକାର ଭେଦରେ ତିନିଗୋଟି ଅର୍ଥରେ ବ୍ୟବହୃତ ଅର୍ଥାତ୍ ବସନ୍ତ ନିବାଶ, ବସନ୍ତ ନିବାଷ ଓ ବସନ୍ତ ନିବାସ ।

ଏହି ଶବ୍ଦର ଅର୍ଥ ବସନ୍ତ ନିବାସ ଉପଲକ୍ଷେ ରଚିତ ପଦାବଳିରେ ସ୍ପଟିକୃତ ହୋଇଥିବାରୁ ବର୍ତ୍ତମାନ ଉକ୍ତ ପ୍ରୟାସରୁ ଲେଖନୀ ନିବୃତ୍ତ ହେଲା । ଏହି ବିଚିତ୍ର ଶବ୍ଦ ଋତୁରୀର ଆବିଷ୍କର୍ତ୍ତା ସାହିତ୍ୟ କାନନ ବିହାରୀ ଶ୍ରୀମାନ ମହାରାଜ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟ ଅଟନ୍ତି । ସୂକ୍ଷ୍ମତରରୁ ସୂକ୍ଷ୍ମତମ ରୂପେ ଆଲୋଚନା କଲେ ଏହି ତ୍ରୈର୍ଥକ ଶବ୍ଦ ଉତ୍କଳ କାହିଁକି ଭାରତର ନବ ସାହିତ୍ୟ ରତ୍ନାକରରେ ଅଭିନବ ଓ ଉଜ୍ଜ୍ୱଳ ରତ୍ନ ସ୍ୱରୂପ ଅଟେ । ମହାରାଜ ମହୋଦୟଙ୍କର ବିପୁଳ ସାରସ୍ୱତ ଗବେଷଣାର ଫଳରୂପେ ଏହା ସେହି ଶାଶ୍ୱତ ଆର୍ଯ୍ୟ ସାହିତ୍ୟରୁ ଆବିଷ୍କୃତ ହୋଇଅଛି । ମହାରାଜା ମହୋଦୟ ବସନ୍ତ ନିବାସର ସୁବ୍ୟବହାର ନିମନ୍ତେ ପ୍ରୟାସୀ ହୋଇ ଯେଉଁ ମହତ୍ କାର୍ଯ୍ୟ ସାଧନ ଓ ମହୀୟାନ ଗୌରବ ଲାଭ କରିଅଛନ୍ତି ଏହି ରତ୍ନ ରୂପୀ ତ୍ରୈର୍ଥକ ଶବ୍ଦର ଆବିଷ୍କୃତି ତାଙ୍କର ମଧୁର ନାମକୁ ସାହିତ୍ୟ ଭଣ୍ଡାରରେ ତତୋଧିକ ଗୌରବାନ୍ୱିତ କରି ରଖିବ ।

ଏହି ବସନ୍ତ ନିବାସ ଓ ଜଳପ୍ରପାତର ପୂର୍ବଦିଗରେ ପର୍ବତର କଟି ପ୍ରଦେଶରେ "ଲୁଳିତ ବାସନ୍ତ"ନିର୍ମିତ ହୋଇଅଛି । ଏହି ମନୋରମ ସ୍ଥାନରେ ନିରନ୍ତର ବାସନ୍ତିକ ମନ୍ଦାନିଳ ଲୁଳିତ ହେଉଥିବାରୁ ଏହା "ଲୁଳିତ ବାସନ୍ତ" ନାମରେ ଅଭିହିତ ଅଟେ । ଲୁଳିତ କେଳିଲୋଳ ମଳୟାନୀଳ ସ୍ତୁତିରୂପେ ସେହି ପୁରାତନ ଆର୍ଯ୍ୟ ସାହିତ୍ୟରୁ ଉଦ୍ଧୃତ ହୋଇ ନିମ୍ନାଙ୍କିତ କବିତାଟି

ମାର୍ବଲ ପ୍ରସ୍ତରରେ ଖୋଦିତ ଓ ଗୋଟିଏ ସୌଧସ୍ତମ୍ଭରେ ସଂଯୁକ୍ତ ହୋଇଅଛି । ଯଥା-
ଓଁ ତତ୍ ସତ୍

ବାତ ଆ ବାତୁ ଭେଷଜଂ ଶଂଭୁ ମୟୋଭୁନୋହୃଦେ
ପ୍ରାଣ ଆୟୁଁଷି ତାରିଷତ୍ ।୧ ।
ଯଦ ଦୋ ବାତତେ ଗୃହେଽମୃତସ୍ୟ ନିଧିର୍ହିତଃ
ତତୋ ନୋ ଦେହ ଜୀବସେ ।୩ ।

(ଋକ ବେଦ, ୧୦ମ, ୮ଅ, ୧୮୬ସୂ)

(ଅନୁବାଦ- ବାୟୁ ଔଷଧ ରୂପେ ପ୍ରବାହିତ ହେଉଥାଉନ୍ତୁ ସେ କଲ୍ୟାଣ କର ଓ ସୁଖକର ହେଉନ୍ତୁ । ସେ ଦୀର୍ଘ ଆୟୁ ପ୍ରଦାନ କରନ୍ତୁ ।୧ । ହେ ବାତ ତୁମ୍ଭର ଗୃହ ମଧ୍ୟରେ ଏହି ଯେ ଅମୃତର ନିଧି ସଂସ୍ଥାପିତ ଅଛି ତହିଁରୁ ଅମୃତ ନେଇ ଦିଅ, ଆମ୍ଭମାନଙ୍କ ଜୀବନ ଦାନ କର ।୩ ।)

ନିତାନ୍ତ ନିଦାଘ ସନ୍ତପ୍ତ ବ୍ୟକ୍ତି ଲ୍ଲଳିତ ବାସନ୍ତରେ ପ୍ରବିଷ୍ଟ ହୋଇ ଶାନ୍ତି ସୁଧାରେ ହୃଦୟ ସ୍ନିଗ୍ଧ କରି ପରମ ଆନନ୍ଦ ଲାଭ କରିପାରିବ । ବସନ୍ତ-ନିବାସ ଓ ଲ୍ଲଳିତ ବାସନ୍ତରେ ଅବସ୍ଥାନ କାଳରେ ନିରନ୍ତର ମନୋହର ଦୃଶ୍ୟାବଳୀ ନେତ୍ର ପଥରେ ନୃତ୍ୟ କରୁଥାଏ । ସେ ସମସ୍ତ ବାରାନ୍ତରେ ଉଲ୍ଲେଖ କରିବାର ବାସନା ରଖି ବର୍ତ୍ତମାନ ଆମ୍ଭମାନଙ୍କର ଭକ୍ତି ଭାଜନ ଶ୍ରୀମନ୍ ମହାରାଜ ମହୋଦୟଙ୍କର ରଚିତ ବସନ୍ତ ନିବାସ ଉଦ୍‌ବୋଧନ କବିତାଟି ପ୍ରକାଶ କଲୁ । ଏବଂ ଅନ୍ୟାନ୍ୟ କବିତାମାନ କ୍ରମରେ ପ୍ରକାଶ କରିବୁଁ ।

**ଓଁ ଶ୍ରୀ ଶଃ**

**ବସନ୍ତ ନିବାସର ଉଦ୍‌ବୋଧନ**

**ଅମିତ୍ରାକ୍ଷର ଛନ୍ଦ ।**

ସାରସ୍ୱତ - ଉପବନ - ବିହାର - ରସିକ
ଦେବଦୁର୍ଗ - କବିକୁଳ ଶାଶ୍ୱତ ନୟନେ
ଦେଖୁଥିଲେ ପ୍ରଭାମୟୀ - ନିର୍ଝରିଣୀ ବେଣୀ
ପବିତ୍ର ଅମଳ ହରଶୈଳ - ହିମବାନ-
ଗଙ୍ଗା ଉପବୀତ ସମ ପ୍ରକୃତି - ଆଲେଖ୍ୟ
ଶୀକର ଜଳଦ ଘଟା ପୁଞ୍ଜିଭୂତ ଶିଖ
(ମନ୍ଦାକିନୀ -ଫେଣ ଯଥା ଚନ୍ଦ୍ରଚୂଡ଼ ଶିରେ)
ପ୍ରଧାନ ପ୍ରଧାନପାଟ ଶିଖର ଦେହରେ
କର୍ଣ୍ଣ ରସାୟନ ଯହିଁ ପୁଂସ୍କୋକିଳ ରୁତ,
ମିଶି ସୁଲଳିତ ତାନେ ଭରଡିଆ ସ୍ୱନେ ।

ପ୍ରପାତେ ପ୍ରପାତ ବନ୍ଧୁ ମଧୁର କୂଜନେ
ମୁଖରିତ କରି ସଦା ବନ ଦରି-କୋଳ
ପ୍ରସବଣ-ଜଳକଣା  ଅନ୍ତଃସାର ରୂପୀ
ସୁବାସ-ସମୀର କୋଳେ ନିତ୍ୟ ଖେଳି ବୁଲେ
ସୁସ୍ନିଗ୍ଧ-ସୁରମ୍ୟ-ନୀଳ ବ୍ୟୋମ ପଟ ତଳେ
ରସାଇ ଜଙ୍ଗମେ ପୁଣି ରସାଇ ସ୍ଥାବରେ
ବସନ୍ତର ସ୍ମୃତି ସଦା ମନେ ଉପୁଜାଇ
ସେ ଶିଖର ଛାୟାତଳେ ସୁରମ୍ୟ ପ୍ରାସାଦ,
ବିଷ୍ଣୁ -ଆୟୁଧ-ଲାଞ୍ଛିତ ଧ୍ୱଜା ଯାର ଚୂଡେ
ଚିନାଂଶୁକ, ଉଡୁଥାଇ ଫର ଫର ହୋଇ
ପ୍ରପାତ ବିଲୁଂ ଉଥିତ ସମୀର ଲହରେ
ଲହରାଇ ଭାବ ଉର୍ମି କବିକୁଳ ହୃଦେ ।

ବସନ୍ତର ନିତ୍ୟ ଲୀଳା ପ୍ରକୃତି ଦେହରେ
ଦେଖି ବୋଲାଇଲା ଏହି "ବସନ୍ତ ନିବାସ"
ସକାର ଭେଦରେ ନାନା ଅର୍ଥ ସନ୍ନିବେଶେ
ଲଳିତ-ଲଳନା-ଚାରୁ-ଆକଳ୍ପ-ସଦୃଶ
ରଚି ନାନା ଭାବଗମ୍ୟ ସାରସ୍ୱତ ଛନ୍ଦ
ପ୍ରଧାନ ପାଟ ଈଶ୍ୱରୀ ଦେବୀ ଚାରୁ କଣ୍ଠେ
ଲମ୍ବାଇଲେ କାବ୍ୟ-ଦାମ ଗୁନ୍ଥି ସଯତନେ
କବିତା କାନନୁ ବାଛି ବାଛି ପୁଷ୍ପରାଜି
ଯଥା ଲୂତାତନ୍ତୁ ସ୍ୱତଃ ପଟ ସନ୍ନିବେଶେ
ପ୍ରପାତ-ଭୃଗୁ-ପତିତ-ସୁମନ ସୁବାସ
ଗୁନ୍ଥି ହୋଇ ଶୋଭେ ବନ ଲକ୍ଷ୍ମୀ ଉରପରେ
ନିସର୍ଗ ପ୍ରଧାନ ପାଟ ଦେବୀ ମାହେଶ୍ୱରୀ
ନିରାଜିତ ଯାର ପାଦପୀଠ ଗଙ୍ଗା-ସୁତ-
ମୌଳି-ବିଘଟିତ-ରତ୍ନ-ଦୀପଶିଖୋଜ୍ଜଳେ
କଲ୍ୟାଣୀ କଲ୍ୟାଣେ ହେଉ, ଏ ସ୍ଥଳୀ ସତତେ
ସେହି "ଗଙ୍ଗ କୁଳ-ଈଶ-ବିଳାସର ସ୍ଥଳ
ବିରାଜି ଏ ଗୀତ କାବ୍ୟ ଅମର ଅକ୍ଷରେ"
ତା: ୨୬-୦୯-୧୯୦୯

ଭାଦ୍ରବ ମାସ ଶୁକ୍ଳ ପକ୍ଷ ଏକାଦଶୀ ସୁନିଆଁ ରବିବାର ସନ ୧୩୧୭ ସାଲ

ପ୍ରିୟ ପାଠକବୃନ୍ଦ । ପୂର୍ବ ପ୍ରକାଶିତ ବିବରଣ ଓ ମାନନୀୟ ମହାରାଜା ମହୋଦୟଙ୍କର ଉଦ୍‌ବୋଧନ କବିତା ପାଠରେ ବସନ୍ତନିବାସର ସାରସ୍ୱତ ଛବି ଓ ଲୀଳା ଅବଗତ ହୋଇଅଛନ୍ତି । ବର୍ତ୍ତମାନ ଆମ୍ଭେ ନିର୍ଝରିଣୀ ଓ ସନ୍ନିକଟସ୍ଥ ମନୋରମ ଦୃଶ୍ୟରାଜି ଅବଲୋକନ ପୂର୍ବକ ବସନ୍ତ ରାଗର ଆବୃତ୍ତି କରି କରି ଚିତ୍ତ ବିନୋଦନ କରିବା ।

ଝରଝର ନାଦିନୀ ପୂତନୀରା ନିର୍ଝରିଣୀର ସ୍ନେହମୟ ଆବାହନ ସୃତି ମନ ଆକର୍ଷଣ କରୁଅଛି । ଚଞ୍ଚଳ ନୟନର ବିନୀତ ଅନୁରୋଧ ଉପେକ୍ଷା କରିନପାରି ଲେଖନୀ ପ୍ରଥମରେ ହିଁ ଉକ୍ତ ଶୀତଳ ଶୀକର ସ୍ନିଗ୍ଧ ମନ୍ଦ ମରୁତର ଚିର ଲୀଳାଭୂମି ନିର୍ଝରିଣୀର ବିବିଧ ବେଶରେ ଉପସ୍ଥିତ । ସହସ୍ର କୋଶ ଅତିକ୍ରମ କରି ନିଦାଘ ସନ୍ତାପିତ ହୃଦୟର ସନ୍ତାପ, ଶାନ୍ତି ଦୂର କରି ନିର୍ଝରିଣୀର ରମଣୀୟ ସମ୍ଭାଷଣ ଓ ଶିକର ନିଷ୍ପନ୍ଦନ ମରୁତର ସହୃଦୟ ମଧୁର ଆଲିଙ୍ଗନରେ ବିଭୋର ହୋଇ ଅନନ୍ତ ଶାନ୍ତିମୟୀ ନିଦ୍ରା ଦେବୀଙ୍କର କମଳ ଅଙ୍କରେ ସାଇତ ହେବ । ବନ୍ଧୁ ବିୟୋଗ ବିଦୂର ଅବସନ୍ନ ମାନବ ଶୂନ୍ୟ ହୃଦୟରେ ଭ୍ରମଣ କରିକରି ଏହି ମନୋରମ ସ୍ଥାନରେ ଉପସ୍ଥିତ ହେଲା ମାତ୍ରେ ଅବଶ୍ୟ କିଛି କାଳ ନିମନ୍ତେ ହେଲେ ନିଜର ହୃଦୟର ଅବସନ୍ନ ଭାର ଦୂର କରି ଦୁଃଖ ସନ୍ତାପ ଭୁଲିଯାଇ ଆନନ୍ଦ ଲାଭ କରିପାରିବ । ଅନନ୍ତ ଶାସ୍ୱତ ପ୍ରେମୋନ୍ମାଦ ଭାଗବତୋତମ, ମହାଦେବ, କଚ୍ଛମହାତ୍ମା, ଭୂପତିତ କର ଏହି ମହୀୟାନ କରୁଣାର ଆଦର୍ଶ ନିଦର୍ଶନ ଅବଲୋକନ କରି ପ୍ରେମ ମଦରେ ନାଚି ଉଠିବ । କିସ୍ଥାବର, କି ଜଙ୍ଗମ ସମସ୍ତେ ହିଁ ନିର୍ଝରିଣୀର ଝରଝର ନିନାଦରେ ବିମୋହିତ ହୋଇ ଚିରବନ୍ଧୁତା ପାଶରେ ଆବଦ୍ଧ ଅଛନ୍ତି ।

ଆମ୍ଭମାନଙ୍କର ବର୍ତ୍ତମାନ ନରପତି ମହୋଦୟ ଦର୍ଶକ ମାନଙ୍କର ଉପବେଶନ ନିମନ୍ତେ ପ୍ରପାତର ସମ୍ମୁଖରେ ପର୍ବତର ଅଚ୍ଛୋଚ୍ଛକଟିପ୍ରଦେଶରେ କେତେଗୁଡିଏ ସୌଧଆସନ ନିର୍ମାଣ କରାଇଦେଇଅଛନ୍ତି । ଏହି ଆସନରେ ଉପବେଶନ କଲା ମାତ୍ରେ ସମ୍ମୁଖରେ ଗିରିଗାତ୍ରରେ ଦର୍ଶନୀୟ, ବିଶ୍ୱକର୍ମାର ବିଚିତ୍ର କୃତି ପରିଚାୟକ ସ୍ତମ୍ଭ କୁସୁମ ସୁଶୋଭିତ ତରାଟ ବା 'ଗୁଳୁଚି'ନାମକ ପୁଷ୍ପବୃକ୍ଷ ଗୁଗୁଳ ନାମକ ଔଷଧବୃକ୍ଷ କପି ତିନ୍ଦୁକ ଆଦି ବିବିଧ ପାଦପ ଏବଂ ଚିର କର୍ମମୟ ମଧୁଚକ୍ର ମଧୁମକ୍ଷିକାମାନେ କିପରି ମନୋରମ ଓ ସୁଶୀତଳ ସ୍ଥାନରେ ବାସକରନ୍ତି ସମ୍ଭବତଃ ତାହା ପାଠକ ମାନଙ୍କର ଅଗୋଚର ନୁହେଁ । ଏମାନେ ଅତ୍ୟନ୍ତ ଗ୍ରୀଷ୍ମ ଭିରୁ କିନ୍ତୁ ଏହି ମନୋରମ ସ୍ଥାନରେ ମଧୁମକ୍ଷିକା ମାନେ ଚିରଦିନ ବାସକରି ରହି ଅଛନ୍ତି । ଚାରିପାଞ୍ଚ ଦିନ ପୂର୍ବେ ଆମ୍ଭେମାନେ ଅବଲୋକନ କରିଅଛୁଁ ଉକ୍ତସ୍ଥାନରେ ଅନ୍ୟୁନ ପନ୍ଦର ଗୋଟି ମଧୁଚକ୍ର ମଧୁମକ୍ଷିକା ମାନଙ୍କଦ୍ୱାରା କର୍ମମୟହୋଇ ବିଦ୍ୟମାନ ରହିଅଛି । ଏହାହିଁ ଉକ୍ତସ୍ଥାନର ମନୋହାରିତ୍ୱର ଯଥେଷ୍ଟ ପ୍ରମାଣ ।

ଦକ୍ଷିଣରେ "ଅସୁରଗୁଟି" ନାମକ ପ୍ରକାଣ୍ଡ ପ୍ରକାଣ୍ଡ ପ୍ରସ୍ତରରାଶି ନିଜର ବିଶାଳତା ବିସ୍ତାର କରି ବିରାଜିତ ରହିଅଛି । ଠିକ୍ ପ୍ରପାତର ସମ୍ମୁଖ ଦକ୍ଷିଣସ୍ଥିତ ପ୍ରସ୍ତର ମାଧବୀଲତାର

ଆବୃତ୍ତ ରହି ନବବସନ୍ତରେ ନବମଳୟର ଲଳିତ ହିଲ୍ଲୋଳରେ ମଧୁର ସୁରଭି ବିତରଣ କରୁଅଛି । ଏଣେ ବାମ ଦିଗରେ ନିର୍ଝରିଣୀର ବକ୍ଷୋଦେଶରେ ମଧୁମକ୍ଷିକମାନେ ଜଳବିନ୍ଦୁ ଆହରଣ କରି ସ୍ୱସ୍ୱ ମଧୁଚକ୍ରକୁ ପ୍ରତ୍ୟାଗମନ କରୁଅଛନ୍ତି... ନିର୍ଝରିଣୀର ଜଳବିନ୍ଦୁ ଆକାଶ ସ୍ପର୍ଶ କରି ରମଣୀୟ ଇନ୍ଦ୍ରଧନୁ ସୃଷ୍ଟି କରୁଛି । ଯୌଗିକ ନାମଧେୟ ବିହଙ୍ଗ କୂଳ ତରୁରେ ଓ ଥରେ ଗିରବକ୍ଷ ସଂଯୁକ୍ତ ବଲ୍ଲୀ ଶାଖାରେ ବସି ଲଳିତ ସ୍ୱରରେ ବଂଶୀବାଦନ କରୁଅଛି । ସେହି ପ୍ରପାତ ବାନ୍ଧବ ଭୃଙ୍ଗରାଜ ତରୁ ଶାଖାରେ ବସି ବିବିଧ ଧ୍ୱନିର ଅନୁଶରଣରେ ରାଜ କବି ମାନନୀୟ ଭକ୍ତି ଭାଜନ ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୂବନ ଦେବ ମହାରାଜା ମହୋଦୟ ଏହି ପ୍ରାଣ ବିମୋହିନୀ ମଧୁର ଦୃଶ୍ୟ ରାଜିରେ ମୁଗ୍ଧ ହୋଇ ଆହ୍ଲାଦମୟୀ ସ୍ୱରରେ ଗାଉ ଅଛନ୍ତି-

(ବସନ୍ତ ବୃତ୍ତେ)

କଳକଣ୍ଠ ଯହିଁ ନିରତେ କୂଜଇ
ସୁରମ୍ୟ-ବସନ୍ତ ରାଗରେ
ରସାଇ ପ୍ରେୟସୀ କୋକିଳା-ହୃଦୟ
ଭସାଇ ସମୀର-ସାଗରେ
ନିତ୍ୟରେ
ଭ୍ରମର-ଗୁଞ୍ଜନ୍ ମିଶଇ
ଏହିସେ 'ବସନ୍ତ- ନିବାଶ'ଯହିରେ
ବସନ୍ତ-ବିହଗ ରମଇ ।

ମାର୍ତ୍ତଣ୍ଡ-ମୟୂଖ ବର୍ଣ୍ଣ-ବିଶ୍ଳେଷଣେ
ଜଳ ଉତ୍ସ ଯହିଁ ଭାସ୍ୱର
ଉଦିଚୀ-ଲଲାଟ ସ୍ଥିର ତଡିତ୍-ଲତା-
ସମ ଶୋଭା ବହି ସୁନ୍ଦର ।

ଯହିଁରେ,
ଶକ୍ର, ଚାପ ଦୂରୁ ବାହାର ।

ସେହି ଏ 'ବସନ୍ତ ନିବାଷ' ବସନ୍ତେ
ଜଳ କେଳି ଯହିଁ ଅଜର ।

ଦର-ବିକଶିତ ସଜ ସୁମନାରୁ
ଗନ୍ଧବହ ବାସ ଚୋରାଇ,
କଳ୍ପନା-ସୁନ୍ଦରୀ ଚିତ୍ତ ତୋଷୁଥାଇ
ବନପ୍ରିୟ ରତ ମିଶାଇ ।

ବସନ୍ତେ,
ବସନ୍ତ ବିଭବ ଲଳିତ;
ବସନ୍ତ-ସ୍ମୃତିକୁ ଉପୁଜାଏ ଯେଣୁ 'ବସନ୍ତ-ନିବାସ' ଏହିତ ।

ଭାବମୟ-ଭିତ୍ତି- ପଟେ ମୂର୍ତ୍ତିମନ୍ତ
ପ୍ରକୃତି-ଆଲେଖ୍ୟ-ପ୍ରମୁଖ
ଶକୁନ୍ତ କାକଳୀ କଳ-ଜଳ-କେଳି
ରଞ୍ଜିତ-ମାର୍ତ୍ତଣ୍ଡ-ମୟୂଖ
ବିଚିତ୍ର,
ଚିତ୍ରିତ ବସନ୍ତ ବିଳାସ,
ଏଣୁ ଏ 'ବସନ୍ତ-ନିବାଶ'- 'ବସନ୍ତ-ନିବାଷ' 'ବସନ୍ତ-ନିବାସ' ।

ଇତିପୂର୍ବେ ପ୍ରକାଶିତ ବିବରଣରୁ ପ୍ରଧାନପାଟ ଦେବୀଙ୍କର ବିଷୟ ପାଠକ ବୃନ୍ଦ ଅବଗତ ଅଛନ୍ତି । ଏହିଠାରେ କୁଞ୍ଜବନ ମଧ୍ୟରେ ଦକ୍ଷିଣାଭିମୁଖରେ ନିର୍ଝରିଣୀ ପ୍ରବାହିତ । ଏଣେ ପଶ୍ଚିମ ଦିଗରେ ବିରାଟ ମୂର୍ତ୍ତି ବିସ୍ତାରକରି "କାଠଗଡାଣି" ବିରାଜିତ । ଯେତେବେଳେ ପର୍ବତର ଶିଖର ଦେଶରୁ ଲୋକମାନେ ଏହି କାଠ ଗଡାଣିରେ କାଠ ଛାଡନ୍ତି ସେତେବେଳେ ଭୀଷଣ ଗର୍ଜନରେ ଗିରି, ଦରି, ବନ, କମ୍ପିତ କରି ସେହି କାଠ ସବୁ ଗଡି ଆସି ଭୂମିରେ ପଡେ । ଏହି ଦୃଶ୍ୟ ଅତୀବ କୌତୂହଳ ପୂର୍ଣ୍ଣ ଓ ମନୋହର ଅଟେ । ଏହି ସ୍ଥାନରେ ନିର୍ଝରିଣୀର ଲୋଳଗତି ମଧ୍ୟ ଅତୀବ ମାଧୁରୀମୟ ଅଟେ । କେବଳ ଏହି ସ୍ଥାନର ସୁଷମାରାଶି ଲେଖିବାକୁ ଗଲେ ଗୋଟିଏ ବୃହତାକାର ପ୍ରବନ୍ଧ ହେବ । ନାନାସ୍ଥାନରେ ନାନାବନ ବିହଙ୍ଗାବଳୀ ମଧୁରତାନରେ ଶ୍ରୁତିମନ ଆକର୍ଷଣ କରୁଅଛନ୍ତି । ସ୍ଥାନେ ସ୍ଥାନେ ଅତଣ୍ଡି ନିଜର ବିଚିତ୍ର ବପୁ ବିସ୍ତାରକରି ସୁଶୀତଳ ଛାୟା ସଜାଇ ରଖିଅଛି । ସାହିତ୍ୟ କାନନ- ମତ୍ତ ମଧୁପ ଋତୁସଂହାର କାବ୍ୟର ଅନୁବାଦକ ଏବଂ ଶିବରାତ୍ରି ପ୍ରଭୃତି ପ୍ରଣେତା ମାନନୀୟ ଶ୍ରୀମାନ ବଳଭଦ୍ରଦେବ ବଡକୁମାର ମହୋଦୟ ଏହି ବସନ୍ତ ନିବାସକୁ ଲକ୍ଷ୍ୟ କରି ଲେଖିଅଛନ୍ତି-

ସତ ସତ "ବି"-ବିରୁତ ଭାଷେ ଯହିଁ
ସଦା ସଦାଗତି ଲହରେ
ଚିଦାନନ୍ଦ ଦାୟି ସ୍ୱଚ୍ଛଉତ୍ସ ଯହିଁ
ମଧୁର ମଧୁରେ ପ୍ରସାରେ ।

ଦେବଭୂ,
ରାଜନ ବସନ୍ତ-ନିବାସ
ଏହି ସେ ବସନ୍ତ ନିବାଶ,
ବସନ୍ତ-ନିବାଷ, ବସନ୍ତ-ନିବାସ ।

ମାନନୀୟ ପାଠକ ମହୋଦୟ ଗଣ ବିବିଧ କାରଣ ବଶତଃ "ବସନ୍ତ ନିବାସ" ଅବଲୋକନ କରାଇବା କାର୍ଯ୍ୟରେ ଆମ୍ଭମାନଙ୍କର ଅଯଥା ତ୍ରୁଟି ଘଟିଅଛି । ଯାହାହେଉ କ୍ଷମାଦେବୀଙ୍କର ସୌମ୍ୟବାଣୀ ପ୍ରତି ଆଶା ରଖି ବର୍ତ୍ତମାନ ପାଳନ ନିମନ୍ତେ ଉପସ୍ଥିତ ହେଲୁ । ଆମ୍ଭେମାନେ ଇତିପୂର୍ବେ ଉଲ୍ଲେଖ କରିଅଛୁ ଯେ ମହିମାବର ବାମଣ୍ଡାଧୀଶ୍ୱରଙ୍କର ସାରସ୍ୱତ ସମିତି ଯେପରି ନିତ୍ୟ କାବ୍ୟାମୃତ ରସରେ ସ୍ନିଗ୍ଧ, ଜନନୀ ପ୍ରତିମା ବାମଣ୍ଡାଧୀଶ୍ୱରୀ ମହୋଦୟାଙ୍କର ମହିୟସୀ ପ୍ରଯତ୍ନରୁ ଅନ୍ତପୁର ମଧ୍ୟ ନିତ୍ୟ ସାହିତ୍ୟ ଚର୍ଚ୍ଚାରେ ଆମୋଦିତ । ରାଜବାଟି ବାଳିକା ସମିତି ନାମରେ ପ୍ରତି ରବିବାର ଦିନ ଅଧିବେଶିତ ହୁଏ ସେହି ସମିତି ଭୁକ୍ତ ମେୟର ମାନଙ୍କର ଅନ୍ୟତମା ରାଜକୁମାରୀ ଶ୍ରୀମତୀ କୁମୁଦବତୀ ବସନ୍ତ ନିବାସର ନୈସର୍ଗିକ ମାଧୁରୀରେ ମୁଗ୍ଧା ହୋଇ ନିଜର ସାରଲ୍ୟମୟୀ ଲେଖନୀରେ ଗାଇ ଅଛନ୍ତି ।

"ବସନ୍ତ ରାଜାର ଚିର ବାସସ୍ଥାନ
ଯହିଁ ଇନ୍ଦ୍ରଧନୁ ପ୍ରକାଶ"
ଝର ଝର ନିନାଦି ପ୍ରପାତ ସଲିଳେ
ସୂର୍ଯ୍ୟକରେ ହରେ ମାନସ
ବିହଙ୍ଗ- କୂଜନ ଯେସ୍ଥଳେ ସରସ
ସେହି ଏ ବସନ୍ତ ନିବାଶ ବସନ୍ତ
ନିବାଷ , ବସନ୍ତ ନିବାସ
ରାଜକୁମାରୀ ଶ୍ରୀମତୀ କୁମୁଦ୍‌ବତୀ ଦେବୀ"

ବସନ୍ତନିବାସର ଆହ୍ଲାଦମୟୀ ସୁଷମାରେ ମୋହିତ ହୋଇ ବାମଣ୍ଡାର ବର୍ତ୍ତମାନ ନରପତି ମହୋଦୟଙ୍କର ତୃତୀୟ ଅନୁଜ ବିବିଧ ସଦ୍ ଗୁଣାକର କ୍ଷମା କରୁଣାର ଆଦର୍ଶ ଆଧାର ମିଷ୍ଟଭାଷୀ, ଉଦାର ହୃଦୟ ରାଜକୁମାର ଶ୍ରୀମାନ୍ ଦୁଷ୍ମନ୍ତ ଦେବ ମହୋଦୟ ଗାଇ ଅଛନ୍ତି-

"ପ୍ରକୃତି ଲଳନା ଅଞ୍ଚଳ ଅନିଳେ
ସଞ୍ଚରି ବିହଗ କୂଜନ
ଜଳ କେଳି କଳ ସ୍ୱନେ ମଶେ ଯହିଁ
ହସାଏ ଶାଶ୍ୱତ ଜୀବନ

ମାଧବ-କରେ ଯହିଁ ଚିର ବିଳାଶ
ସେହି ଏ ବସନ୍ତ ନିବାଶ ବସନ୍ତ
ନିବାଷ, ବସନ୍ତ ନିବାସ ।
ରାଜକୁମାର ଶ୍ରୀ ଦୁଷ୍ମନ୍ତଦେବ

ବିବିଧ ସଦ୍ ଗୁଣାକର ମଧୁଭାଷୀ ଉଦାର ହୃଦୟ ରାଜକୁମାର ଶ୍ରୀମାନ୍ ମାନନୀୟ ଜୟ ନାରାୟଣ ଦେବ ମହୋଦୟ ଗାଇ ଅଛନ୍ତି ।

ଉଷ୍ଣ ଉଦ୍ଭାସିତ ଶକ୍ରଚାପଶିର
କିରୀଟ ଭୂଷଣ ଯାହାର
ପ୍ରଶଂସା ଲହରୀ ପିକ ବୈତାଳିକ
ସ୍ତୁତିରେ ହୁଏ ଯା ପ୍ରଚ୍ଛର
ସେହିଏ ବସନ୍ତ ରାଜନ ନିବାସ
ଏ ଘେନି ବସନ୍ତ ନିବାଷ , ବସନ୍ତ ନିବାସ, ବସନ୍ତ ନିବାଶ

ରାଜକୁମାର ଶ୍ରୀ ଜୟନାରାୟଣ ଦେବ ।



# ଏକପତ୍ର

ମାନନୀୟ ଶ୍ରୀଯୁକ୍ତ ଗଡଜାତବାସିନୀର ସମ୍ପାଦକ ମହାଶୟେଷୁ
ମହାଶୟ ।

ନିମ୍ନାଙ୍କିତ ବିଷୟଟି ଆପଣଙ୍କ ପ୍ରକାଶିତ ସୁବିଖ୍ୟାତ ପତ୍ରିକାରେ ପ୍ରକାଶ କଲେ ଆନନ୍ଦିତ ହେବି ।

ପୂର୍ବେ ଶ୍ରୀଯୁକ୍ତ ରତ୍ନାକର କବିଭୂଷଣଙ୍କର ଲିଖିତ ଖଡ଼ିଆଳୟ ଯାତ୍ରା ସମ୍ବନ୍ଧୀୟ ପ୍ରବନ୍ଧରେ ଯାହାକି ବରପାଲି ନିବାସୀ ଶ୍ରୀଯୁକ୍ତ ସାଧୁ ମେହେର ମହାଶୟ ଦୋଷ ପ୍ରଦର୍ଶନ କରାଇଥିଲେ ତହିଁରେ ମୁଁ ମୋହର ମତ ଯଥା ସମୟରେ ପ୍ରକାଶ କରିଥିଲି । ବର୍ତ୍ତମାନ ମେହେର ମହାଶୟ ତହିଁର କୌଣସି ଉପଯୁକ୍ତ ଖଣ୍ଡନ ନ କରି କେବଳ ଅଯଥା ମନ୍ତବ୍ୟ ପୂର୍ଣ୍ଣ ଓ ଉପହାସବ୍ୟଞ୍ଜକ ବାକ୍ୟମାନ ପ୍ରୟୋଗ କରି ଗୋଟିଏ ପ୍ରବନ୍ଧ ଲେଖିଅଛନ୍ତି । ଯାହା ହେଉ ମେହେର ମହାଶୟଙ୍କର ଈଦୃଶ ସମାଲୋଚନା ପ୍ରିୟତାକୁ ଧନ୍ୟବାଦ ପ୍ରଦାନ କରୁଅଛି । କିନ୍ତୁ ତହିଁ ସଙ୍ଗେ ସଙ୍ଗେ ପୁନର୍ବାର ବକ୍ତବ୍ୟ ଏହିକି ମେହେର ମହାଶୟ ବାରମ୍ବାର ଲେଖନୀ ସଂଯମ ତ୍ୟାଗ କରୁଅଛନ୍ତି, କାହିଁକି ?

ସେ କହନ୍ତି ଯେ 'ମୁଁ କବିଭୂଷଣଙ୍କର ପ୍ରବନ୍ଧ ସମାଲୋଚନା କରିନାହିଁ, ସଂଶୟ ବୁଝିବା ଉଦ୍ଦେଶ୍ୟରେ ଲେଖିଅଛି' ପୁଣି ବାକ୍ୟାନ୍ତରେ କହନ୍ତି 'ମୁଁ ମଧ୍ୟ ଦୋଷଥିବାର ନିଶ୍ଚୟ କରିଅଛି ।' ଅନ୍ୟସ୍ଥଳେ କହିଅଛନ୍ତି 'ଭ୍ରମଯିବା ନିମନ୍ତେ' ଇତ୍ୟାଦି ।

ପୁଣି ସେ ପ୍ରଥମରୁ ଓ ବର୍ତ୍ତମାନ ମଧ୍ୟ କହନ୍ତି ଯେ 'କାହାର ଶକ୍ତି ଅଛି ଯେ ବାମଣ୍ଡାସ୍ଥ ଲେଖକଙ୍କ ଲେଖାରେ ବ୍ୟାକରଣ ଦୋଷ ଅଛି ବୋଲି କହିପାରିବ ଇତ୍ୟାଦି ।' ଯେ ଭ୍ରମ ସଂଶୋଧନ ଉଦ୍ଦେଶ୍ୟରେ ଲେଖନୀ ଧାରଣ କଲେ ସେ ବାକ୍ୟ ବାକ୍ୟାଂଶର ସେ ଈଦୃଶ ବିରୋଧ କରି ପ୍ରକାଶ କରିବା କେତେ ସୁସଂଗତ ଟିକିଏ ଭଲ କରି ଆଲୋଚନା କରି ଦେଖନ୍ତୁ ।

ବାମଣ୍ଡା ଲେଖକଙ୍କ ପ୍ରତି ମେହେର ମହାଶୟଙ୍କର ଏତେଦୂର ଆକ୍ଷେପ କାହିଁକି ? ତାଙ୍କ ବିବେଚନାରେ କି ବାମଣ୍ଡାର ଲେଖକଙ୍କ ଲେଖନୀରୁ ଯାହା ବାହାରିବ ତାହାହିଁ ବ୍ୟାକରଣ

ସମ୍ମତ । ନା ତାହା ବ୍ୟାକରଣ ବିରୋଧ ହେଲେ ମଧ୍ୟ ଉକ୍ତ ଲେଖନୀର ପଛେପଛେ ବ୍ୟାକରଣଟା ଗୋଡ଼ାଇଯିବ ? ଈଦୃଶ ବାକ୍ୟ ପ୍ରୟୋଗ କି ଅସଂଯତ ହୃଦୟର ପରିଚୟ ଦେଉ ନାହିଁ ?

ଯେଉଁଠାରେ ଗୁଣ ଅଛି ସେଠାରେ ଦୋଷ ମଧ୍ୟ ଥିବାର ସ୍ୱତଃସିଦ୍ଧ । ସଂସାରରେ ଏପରି କୌଣସି ପଦ ବା ପଦାର୍ଥ ନାହିଁ ଯାହାକି ସଂପୂର୍ଣ୍ଣ ରୂପେ ଦୋଷ ଶୂନ୍ୟ ବା ତ୍ରୁଟି ଶୂନ୍ୟ । ତେବେ ଯେଉଁଠାରେ ଯେ ପର୍ଯ୍ୟନ୍ତ ଦୋଷ ଦୃଷ୍ଟ ହୋଇ ନଥିବ ସେଠାରେ ସେ ପର୍ଯ୍ୟନ୍ତ ତାହା ଧର୍ତ୍ତବ୍ୟ ନୁହେଁ ।

ସାରସ୍ୱତ ମହାକବିମାନଙ୍କ ଲେଖାରେ ମଧ୍ୟ ଦୋଷ ଦେଖାଯାଉଥିବା ଓ ତାହା 'କବି ପ୍ରସିଦ୍ଧ' 'ମହାଜନ ପ୍ରୟୋଗ' ପ୍ରଭୃତି ନାମରେ ଅଭିହିତ ହୋଇ ମାର୍ଜିତ ହେଉଥିବା ସ୍ଥଳେ ବାମଣ୍ଡାର ଲେଖକଙ୍କ ଲେଖାରେ ସେ ଦୋଷ ନଥିବ ଏକଥା କେହି କହିପାରିବେ ନାହିଁ । ତେବେ ଉକ୍ତ ଦୋଷ ସରଳ ଭାବେ ଦେଖାଇ ଦେଲେ ଆଉ ବାକ୍ୟ ବୃଦ୍ଧିର କାରଣ କଣ ?

କବି ଭୂଷଣଙ୍କର ବାକ୍ୟରେ 'କାର୍ଯ୍ୟକାରଣର ବ୍ୟତିକ୍ରମ' ଓ ଅନ୍ୱୟଦୋଷ ଥିବାର କହି ମେହେର ମହାଶୟ ଲେଖିଅଛନ୍ତି କି 'ଆମ୍ଭେମାନେ ତା. ୧୩ ରିଖ ସକାଳ ୮ଘଣ୍ଟା ସମୟରେ ସୁବଳୟା ଚଟିରେ ପହଁଞ୍ଚିଲୁ । ମାତ୍ର ମହାନଦୀ ପାର ହେବା ଏଥିରେ ପ୍ରଧାନ ପ୍ରତିବନ୍ଧକ ଥିବାରୁ କାହାରି କାହାରିକୁ ରାତ୍ର ୧୨ ଘଣ୍ଟା ପର୍ଯ୍ୟନ୍ତ ପହଁଞ୍ଚିବାକୁ ଲାଗିଥିଲା ।' ବୋଲି ଲେଖି ଥିଲେ ସୁସଂଗତ ସୁଶ୍ରାବ୍ୟ ହୋଇଥାନ୍ତା । ଏଠାରେ ଦ୍ରଷ୍ଟବ୍ୟ ଏହିକି 'ଏଥିର ସର୍ବନାମ କାହା ପରିବର୍ତ୍ତରେ ବ୍ୟବହୃତ ହୋଇଅଛି ? ଯାହା ପରିବର୍ତ୍ତରେ ବ୍ୟବହୃତ ସେ ଏହାର ପୂର୍ବେ ଅଛି କି, ପରେ ଅଛି ? ମେହେର ମହାଶୟଙ୍କ ଉକ୍ତିରୁ ବୁଝାଯାଏ ଯେ ଆମ୍ଭେମାନେ ସକାଳ ୮ଘଣ୍ଟାରେ ପହଁଞ୍ଚିଲୁ ମାତ୍ର ମହାନଦୀ ପାର ହେବା ଏଥିର ପ୍ରତିବନ୍ଧକ ଥିବାରୁ ଅର୍ଥାତ ଆମ୍ଭେମାନେ ୮ଘଣ୍ଟାରେ ପହଁଞ୍ଚିବା ପ୍ରତି ମହାନଦୀ ପ୍ରତିବନ୍ଧକ ଯୋଗୁଁ ଅନ୍ୟ କେହି କେହି ୧୨ ଘଣ୍ଟା ସୁଦ୍ଧା ପହଁଞ୍ଚିଲେ । ଏଠାରେ ମହାନଦୀ ପାର ହେବା ଆମ୍ଭମାନଙ୍କର ୮ ଘଣ୍ଟା ପହଁଞ୍ଚିବା ପ୍ରତି କାରଣ ହୋଇ ଅନ୍ୟମାନଙ୍କୁ ବିଳମ୍ବରେ ପହଁଞ୍ଚିବା କାର୍ଯ୍ୟ ହୋଇଅଛି । ବୋଧହୁଏ ମେହେର ମହାଶୟଙ୍କ ବିବେଚନାରେ କାର୍ଯ୍ୟକାରଣର କ୍ରମ ଏହିଠାରେ ବିଦ୍ୟମାନ । କାର୍ଯ୍ୟରୁ କାରଣର କ୍ରମ ଯେବେ ଏତଦ୍ୱାରା ଯଥାର୍ଥ ବୋଲି ପ୍ରତିପନ୍ନ ହେଲା ତେବେ ମେହେର ମହାଶୟଙ୍କ ସଂସ୍କୃତ ବାକ୍ୟରେ ଅନ୍ୱୟ ଦୋଷ ବା କାହୁଁଥିବ ? ସମସ୍ତ ଯାତ୍ରୀମାନଙ୍କ ପ୍ରତି ମହାନଦୀ ପ୍ରତିବନ୍ଧକ ହୋଇଥିବ ଓ ସେହି କାରଣରୁ ଯେଉଁମାନେ ଆଗେ ନଦୀ ପାର ହୋଇଥିଲେ ସେମାନେ ଆଗେ ପହୁଁଞ୍ଚିଲେ ଯେଉଁମାନେ ପଶ୍ଚାତ ପାର ହୋଇଥିଲେ ସେମାନେ ବିଳମ୍ବରେ ପହୁଁଞ୍ଚିଲେ ଇତ୍ୟାଦି । ଏଥିର ଅର୍ଥାତ୍ ଭିନ୍ନ ଭିନ୍ନ ସମୟରେ ପହୁଁଞ୍ଚିବାର କାରଣଟି ଶେଷରେ ଲିଖିତ ହେବାଦ୍ୱାରା ପୂର୍ବୋକ୍ତ ଘଟଣାମାନଙ୍କ ପ୍ରତି ପ୍ରଯୁକ୍ତ ହୋଇନାହିଁ । କାରଣ କାର୍ଯ୍ୟ ଓ ଅନ୍ୱୟର ସୁସଂଗତ ହୋଇଅଛି । କ୍ରିୟା ପ୍ରୟୋଗ ସମ୍ବନ୍ଧ ବି ମେହେର ମହାଶୟ ପାଠ୍ୟପୁସ୍ତକ ଓ କୁମାରସମ୍ଭବର ଦୋହାଇ ଦେଇ ଚାଲିଯାଇଅଛନ୍ତି ।

କିନ୍ତୁ ଆଲୋଚନା ହେଉ ଯେ ଇତ୍ୟାଦି ବ୍ୟାକରଣ ବିରୋଧ କି ଇଦୃଶ କତ୍ତୃତ୍ୱାଦି ବ୍ୟତିରେକେ ଉକ୍ତ ବିରୋଧ ବର୍ତ୍ତମାନ ଯେଉଁଠାରେ ଅଛି ଟିକିଏ ଦେଖାଇଦେଇଥିଲେ ଭଲ ହୋଇଥାନ୍ତା । ଯାହା ହେଉ ଏହା ଆମ୍ଭମାନଙ୍କର ମୁଖ୍ୟ ଆଲୋଚ୍ୟ ବିଷୟ ନଥିବାରୁ ମେହେର ମହାଶୟଙ୍କୁ ଧନ୍ୟବାଦ ପ୍ରଦାନ କରି ନିବୃତ୍ତ ହେଲି । ସଂପାଦକୀୟ ମନ୍ତବ୍ୟ ସମ୍ବନ୍ଧେ ମେହେର ମହାଶୟ ଯାହା ଲେଖିଅଛନ୍ତି ସେ ସମ୍ବନ୍ଧେ ବକ୍ତବ୍ୟ ଏହି କି ଦାୟିତ୍ୱ ଲେଖକ ପ୍ରତି ପରିବର୍ତ୍ତରେ ମଧ ସାରାସାର ଓ ଆବଶ୍ୟକାନାବଶ୍ୟକାଦି ବିଷୟ ବୁଝି ପ୍ରକାଶ୍ୟାପ୍ରକାଶ୍ୟ ନିରୂପଣ କରିବା ଅଧିକାର ସଂପାଦକଙ୍କର ଅଟେ । ଲେଖକ ଯାହା ଇଚ୍ଛା ତାହା ଲେଖିଗଲେ ଆବଶ୍ୟକତା ଅନୁଭବ ନକରି ପ୍ରକାଶ କରିବାକୁ ସଂପାଦକ ବାଧ୍ୟ ନୁହଁନ୍ତି । ଏପରି ସ୍ଥଳେ କାହାରି ମନରେ କୌଣସି ସନ୍ଦେହ ଉପସ୍ଥିତ ହେଲେ କର୍ତ୍ତବ୍ୟାନୁରୋଧରେ ସଂପାଦକୀୟ ମନ୍ତବ୍ୟରେ ସନ୍ଦେହ ଭଞ୍ଜନ କରିବା ଆଶା ଅନୁଚିତ ବିବେଚିତ ହେବ ନାହିଁ କି ?

ମୁଁ ଭାଷାଜ୍ଞ ସଂସ୍କୃତଜ୍ଞ ଇତ୍ୟାଦି କେତେଗୁଡିଏ ବ୍ୟକ୍ତିଗତ ଉପହାସ ବ୍ୟଞ୍ଜକ କଥା ମେହେର ମହାଶୟ ଲେଖିଅଛନ୍ତି । ମାତ୍ର ଏହାର ଉତ୍ତରରେ ଏତିକି ମାତ୍ର କହେଁ ଯେ ମୁଁ ଉକ୍ତ ଉଭୟ ପଦର ଯୋଗ୍ୟ ନୁହେଁ ବୋଲି ବୋଧ କରେ । ବିଶେଷତଃ ଇଦୃଶ ବ୍ୟକ୍ତିଗତ ପ୍ରଶ୍ନ ଓ ଇଦୃଶ ପ୍ରଶ୍ନର ସମୁଚିତ୍ ଉତ୍ତର ବର୍ତ୍ତମାନ କ୍ଷେତ୍ରର ଉପଯୁକ୍ତ କି ନା ତାହା ପାଠକ ମହୋଦୟ ଗଣଙ୍କର ବିବେଚ୍ୟ । ଅନାବଶ୍ୟକତା ଓ ପ୍ରବନ୍ଧ ବାହୁଲ୍ୟାଦି କାରଣରୁ ଏହିପରି ଅନ୍ୟ କେତେକ ସାମାନ୍ୟ କଥାର ଆଲୋଚନାରୁ ନିବୃତ୍ତ ହୋଇ ବର୍ତ୍ତମାନ ଲେଖନୀ ତ୍ୟାଗ କଲୁ ।

ଇତି

ବିନୟାବନତ ଶର୍ମା ଶ୍ରୀ ହରିହର ମହାପାତ୍ର

(ଗଡଜାତବାସିନୀ :୧୩ ସେପ୍ଟେମ୍ବର ୧୯୧୩)

## ସାହିତ୍ୟ କ୍ଷେତ୍ରରେ ଦେବତା ଭୂତ

ସେହି ସୁଦୂର ଅତୀତ କାଳ; ପର୍ଣ୍ଣୀତରୁ ସମାକୀର୍ଣ୍ଣ ଧରଣୀରାଣୀ ଶ୍ୟାମବସନା ସରିଦୂତ୍ତରୀୟା କ୍ରମେ ନୀଳସିନ୍ଧୁ, କଲ୍ଲୋଳତାଣ୍ଡବରେ ବିଶାଳକାୟ ଐରାବତ (Mastodon), ଗଣ୍ଡାର, ଗୁହା ଋକ୍ଷ (Cave Bear) , ମହିଷ, ବରାହ ପ୍ରଭୃତି ସ୍ୱଚ୍ଛନ୍ଦ ବିହାରୀ ଜୀବକୂଳର ନୟନରେ ବିସ୍ମୟ ସଞ୍ଚାର କରିବାକୁ ଲାଗିଲା । ଉଚ୍ଛଉଚ୍ଛାରିତ ଗିରିନଦୀ ଶତଶତ, ନିର୍ଝରେ ଧାରାରେ ପୁଷ୍ଟ କଳେବରା ହୋଇ ଶତ ଶତ ପ୍ରବାହରେ ସିନ୍ଧୁମୁଖପ୍ରତି ଧାବିତ ହେଲାପରି ଜୀବପ୍ରବାହ ଜୀବନ ସଂଗ୍ରାମରେ ଧରଣୀବକ୍ଷରେ ଲୀଳାୟିତ ହେଲେ । ଶତାଧିକ ମହଣ ଓଜନର ସୁବିଶାଳ ଦନ୍ତ ଶୋଭିତ ଦନ୍ତାବଳ ଐରାବତ ପ୍ରଭୃତିଙ୍କର ଶମନ ରୂପୀ ଆଦିମ ମାନବ କନିଷ୍ଠାଦ (କ୍ୟାନ୍‌ଷ୍ୟାଡ୍) କୂଳର ମହାମାଂସ ଭୋଜନ ଲାଳସା, ନିଜର ସୂତୀକ୍ଷ୍ଣ ଶୈଳଚକ୍ରରେ ଛେଦନକରି, ସେହି ସୁମେରୁ ଗଗନତଳେ, ସ୍ୱର୍ଣ୍ଣ କେଶର ମଣ୍ଡିତ ଗ୍ରୀବ ଦୃଢ଼ତମ ପେଶୀ ବଳ ଦର୍ପିତ ବଜ୍ରଶରୀର ନୃସିଂହ (Cromagnon) ଦିଗମ୍ବର ରୂପରେ ଉତ୍ତର ମହାସମୁଦ୍ର ତଟରେ, ଶତ ସହସ୍ର ସମ୍ମିଳିତ ଇନ୍ଦ୍ରଧନୁର ସୁଷମାହାରୀ ଅରୋରାବୋରିଆଲିସ୍ ବା ମେରୁ ଜ୍ୟୋତିରେ, ବିଶ୍ୱରୂପୀ ବିରାଟ ପୁରୁଷଙ୍କର କୌସ୍ତୁଭ ମଣିର ମୋହନ ସୁଷମା ସନ୍ଦର୍ଶନକରି ବିସ୍ମୟ ପୁଲକିତ ହୃଦୟରେ ସେହି ସୁମେରୁ ବକ୍ଷରେ ନନ୍ଦନକାନନ ରଚନା କରି ଚାଲିଗଲା । କ୍ରମେ ଦାୟାଦ ରୂପେ ଆର୍ଯ୍ୟ ମାନବ ସ୍ୱାଭାବିକ ସଂଯମ ଶକ୍ତିବଳରେ ବଳୀୟାନ ହୋଇ ପ୍ରଜ୍ଞାନ ଦେବତାର ଆରାଧନା କରିବାରେ ନିରତ ରହିଲା । ସେ ସାଧନା ବଳରେ ଅପାର ଜ୍ଞାନରାଶି ଆୟତ୍ତକରି ଅତୀତ କାଳସିନ୍ଧୁ, ନୀଳସିନ୍ଧୁ ମନ୍ଥନ କରିବାକୁ ଲାଗିଲା । ଦେଖିଲା ସୁଦୂର ଅତୀତ ବକ୍ଷରେ କୋଟି କୋଟି ଜୀବ ସେହି ବିଶ୍ୱସିନ୍ଧୁ ମନ୍ଥନ କରି ସ୍ୱଚ୍ଛନ୍ଦ ସଞ୍ଚାରରେ ସେହି ସିନ୍ଧୁବକ୍ଷରେ ବିଲୀନହୋଇ ଯାଇଅଛନ୍ତି । ଦେଖିଲା–ନିରନ୍ତର ଅତୀତ ମୁଖରେ ପ୍ରଧାବିତ କାଳଭୁଜଙ୍ଗମ ସିନ୍ଧୁ ମନ୍ଥନରେ ରଜ୍ଜୁର କାର୍ଯ୍ୟ କରିଅଛି । ସେ କାଳ ସର୍ପର ସମ୍ମୁଖଭାଗ ଅର୍ଥାତ ଅତୀତରେ ଦାନବ ବିଗ୍ରହଧାରୀ ଉଲ୍ଲିଖିତ ଐରାବତ, ଗଣ୍ଡାର, ମହିଷାସୁର (Deinotherium) ହାଏନା, ଗୁହାଋକ୍ଷ ଆଦିଙ୍କ ସହିତ ସ୍ୱଜାତିଭୁକ୍ କନିଷ୍ଠାଦ ମାନବର କଙ୍କାଳରାଶି ସାଧନାର ସ୍ମୃତିସ୍ତମ୍ଭରୂପେ ବିଦ୍ୟମାନ୍ ରହିଅଛି । ଦେଖିଲା–ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ବାୟୁ,ବୃଦ୍ଧି, ବଳ, ଉତ୍ସାହ, ସାହସ; କାମ, କ୍ରୋଧ,

ଲୋଭ, ମୋହ, ଅହଂ, ଜ୍ଞାନ ଆଦି ଜାଗତିକ ସମସ୍ତ ଉପାଦାନ ସମସ୍ତ ଶକ୍ତି, ସମସ୍ତ ବୃତ୍ତି ଦେବ ଦାନବ ରୂପେ ଧରଣୀ ବକ୍ଷର ଆଲୋଡନ ଓ ଗତିସଂଗେ ସିନ୍ଧୁମନ୍ଥନ କରିଅଛନ୍ତି । ପ୍ରାଣୀକୁଳର ଆଦି ଉତ୍ପତ୍ତି ସ୍ଥଳ ସୁମେରୁ ବୃତ୍ତରେ ନୀଳସିନ୍ଧୁ ବକ୍ଷରେ ମେରୁ ଗିରି, ସୂର୍ଯ୍ୟଙ୍କର ଆକର୍ଷଣରେ ଖୁଆଦଣ୍ଡ ତୁଲ୍ୟ ଆହ୍ନିକଗତିରେ (ଆଜିମଧ) ବିଘୂର୍ଣ୍ଣିତ, ତେଣୁ ଆର୍ଯ୍ୟଋଷି ବର୍ଣ୍ଣନା କରି ଲେଖିଗଲେ 'ସିନ୍ଧୁ ମନ୍ଥନ' । ଆମ୍ଭେମାନେ ବୁଝିଲୁଁ ଯଥାର୍ଥରେ ଗୋଟାଏ ପର୍ବତ ବୋହିଆଣି ବାସୁକୀ ସାପଟାକୁ ଖୁଆରଜ୍ଜୁ କରି ମୁଣ୍ଡପାଖେ ଅସୁରମାନେ, ଲାଞ୍ଜପଟେ ଦେବତାମାନେ ଧରି ଝିଙ୍କିଲେ । ଆଜିକାଲି ଆମ୍ଭେମାନେ ଏ ସିନ୍ଧୁମନ୍ଥନ କରିଥିଲେ ମୁଣ୍ଡ ଓ ଲାଞ୍ଜ ଏକାପଟେ ଧରିଥାନ୍ତୁଁ । ଖୁଆଦଣ୍ଡ ମେରୁ ପର୍ବତର ତଳେ ଉପରେ ଦୁଇଖଣ୍ଡ ବଡ ଦଉଡି ବା ଯୋଡାଏ ବଡସାପ ବାନ୍ଧି ଦେଇ ଖୁଆବାଡିର କେନ୍ଦ୍ର ସ୍ଥାନାନ୍ତରିତ ନୋହିବାର ସୁବିଧା କରି ନେଇଥାନ୍ତୁଁ । ସେହି ଦଉଡି ଦୁଇଖଣ୍ଡବାନ୍ଧି ରଖିବାକୁ ଅବଶ୍ୟ ମେରୁଠାରୁ ଖୋବ୍ ବଡ ଦୁଇଗୋଟା ଖମ୍ବ ବା ପର୍ବତ ଲୋଡା ହୋଇଥାନ୍ତା । ଆମ୍ଭେମାନେ ତ ଏହିପରି ଭାବରେ ଖୁଆଦଣ୍ଡ ଚାଳନାରେ ଅଭ୍ୟସ୍ତ । ତେଣୁ ସେମାନଙ୍କର ମନ୍ଥନର ରୀତି ସମ୍ବନ୍ଧେ ମନ ମଧ୍ୟରେ ଗୋଟାଏ ବିଷମ ଧନ୍ଦା ଲାଗୁଅଛି ଯେ ଖୁଆଦଣ୍ଡଟା କୂର୍ମକେନ୍ଦ୍ରରେ ରହିଲା କିପରି ? ମେରୁ ପର୍ବତର ତଳଟା କୂର୍ମପୃଷ୍ଠ ଉପରୁ ଖସି ନଯିବାଭଳି କଇଁଛ ଖୋଳପାର ଭିତରପଟ ଭଳିଆ କରି ଖୋଳା ହୋଇ କିଛି ଉପାୟ ବା କରାହୋଇଥିବ ମାତ୍ର ତାହାତ ବର୍ଣ୍ଣିତ ନାହିଁ ? ପ୍ରକୃତ ସିଦ୍ଧାନ୍ତର ଅବବୋଧ ନକରି ଆମ୍ଭେମାନେ ଏଭଳି ଧାରଣା କରିବା ପରେ ପାଶ୍ଚାତ୍ୟ ଜାତି ଆମ୍ଭମାନଙ୍କ ଲଲାଟରେ ଅମାନବିକତାର ଛାପ ମାରିବାରେ ସେମାନଙ୍କର ଅପରାଧ କଣ ? ବିଶ୍ୱସିନ୍ଧୁ ମନ୍ଥନକରି 'ଦେବ' ନାମରେ ଗୌରବାନ୍ୱିତ ଆର୍ଯ୍ୟ, ପଶୁ ସମାଜରୁ ସୁରଭି, ଐରାବତ, ଉଚ୍ଚୈଃଶ୍ରବା, ସ୍ଥାବର ଜଗତରୁ କୌସ୍ତୁଭମଣି, ଲକ୍ଷ୍ମୀ ଅର୍ଥାତ ଶ୍ରୀସମ୍ପଦାଦି ସହ ସ୍ୱାସ୍ଥ୍ୟ ଓ ଚିଦମୃତ ଲାଭକରି ଧନ୍ୟ ହେଲେ, ତାଙ୍କର ବଂଶଧର ଆମ୍ଭେମାନେ, ଋଷକ୍ ଶିରୋମଣି ଯୋଗେଶ୍ୱର ମୃତ୍ୟୁଞ୍ଜୟ ଶିବଙ୍କର (ଗରଳକୁ ଅମୃତ କରିଦେବାର ଯାହାର ଶକ୍ତିଥିଲା) ପାନରିକ୍ତ ଗରଳପାତ୍ରଟି ମାତ୍ର ଘେନି ବସିଅଛୁଁ । ସେ ବିଶ୍ୱସିନ୍ଧୁ ମନ୍ଥନର ଅଧିକାରୀ ଆଜି ପାଶ୍ଚାତ୍ୟଜାତି ରେଡିୟମ୍, ପ୍ଲାଟିନମ୍ ପ୍ରଭୃତି ରତ୍ନ, ଐରାବତ, ଉଚ୍ଚୈଃଶ୍ରବା ଠାରୁ ସହସ୍ର ଗୁଣରେ ବେଗଶାଳୀ, ବାଷ୍ପୀୟ ଓ ବୈଦ୍ୟୁତିକ ଶକ୍ତି ସହ ଧରଣୀର ସାର ଶ୍ରୀ ସମ୍ପଦ ଗ୍ରହଣ କରି ଧନ୍ୟ । ଆମ୍ଭମାନଙ୍କ ଭାଗ୍ୟରେ, କେବଳ ଏଭଳି ପ୍ରବନ୍ଧଟିଏ ଲେଖି 'ଆମ୍ଭର ସବୁଥିଲା' ବୋଲି ଘୋଷିବାଛଡା ଆଉ କିଛି ନାହିଁ ।। ଆଦର୍ଶ ମହୀପାଳ ମହାରାଜ ଭାଗୀରଥ, ସଗରଙ୍କର ଷାଠିଏ ହଜାର ସନ୍ତାନ ସନ୍ତତିଙ୍କର ଭରଣ ପୋଷଣର ଉପଯୋଗୀ କ୍ଷେତ୍ର, ଜଳାଭାବରେ ଅକର୍ମଣ୍ୟ ହେତୁତଃ ସେମାନଙ୍କର ଦୁରବସ୍ଥା ଦେଖି ସେହି ଜଳାଭାବ ଦୂରୀକରଣ ମାନସରେ ଗୋଟିଏ ସଦାନୀରା ଜଳପ୍ରବାହ ଆନୟନ ନିମନ୍ତେ ବିପୁଳ ସାଧନା କଲେ । ବହୁ ଅନୁସନ୍ଧାନ ପରେ ଚିର ପ୍ରବାହିନୀ ହୋଇ ପାରିବାଭଳି ଜଳପ୍ରବାହର ଉତ୍ସ-ସ୍ଥାନ ନିର୍ଣ୍ଣୟ କଲେ ହିମାଳୟର ଗହ୍ୱରରେ । ସେଠାରୁ ଜଳଧାରା ବହିର୍ଗତ ହେବାରେ

ଶିଳାମୟ ଗିରିଗାତ୍ର ଦୁରତିକ୍ରମ ପ୍ରତିବନ୍ଧକ ରୂପେ ବିଦ୍ୟମାନ୍ ଦେଖି, ନିଜର ବିପୁଳ ହସ୍ତୀ, ଅଶ୍ୱ, ସୈନ୍ୟ ଓ ପ୍ରଜାପୁଞ୍ଜଙ୍କୁ ନେଇ ଗିରିଗାତ୍ର ଭେଦ କରି ଗଙ୍ଗା (ଅଳକାନନ୍ଦା) ପ୍ରବାହକୁ ପ୍ରବାହମାନା କରାଇବା କଥା କବିତ୍ୱଛଟାରେ ଆର୍ଯ୍ୟକବି ବର୍ଣ୍ଣନା କରିଗଲେ । ସେ ବର୍ଣ୍ଣନାରେ ଗଙ୍ଗାଙ୍କର ଉତ୍ପତ୍ତି ସ୍ଥାନ ବିଷ୍ଣୁପଦ ଅର୍ଥ ଆକାଶ ପରିବର୍ତ୍ତେ ଆମ୍ଭେମାନେ ଅବବୋଧ କଲୁଁ- ବୈକୁଣ୍ଠରେ ସୁନାଖଟରେ ଶୋଇଥିବା ନାରାୟଣଙ୍କ ପାଦ । କାଳକ୍ରମରେ ତାଙ୍କର ନଖ କୋଣ । ଇତ୍ୟାଦି ରୂପରେ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ତପସ୍ୟାର ଅର୍ଥ ବାଘଛାଲରେ ବସି ଜପକରିବା ଆଦି ବୁଝିଲୁଁ । ଥରେ ଭାବିଲୁଁ ନାହିଁ ଯେ ସେଭଳି ନାକରେ ହାତଦେଇ ପ୍ରାଣାୟାମ ଅଭ୍ୟାସ କଲେ ବାୟୁ ସାଧନାରେ ସ୍ୱାସ୍ଥ୍ୟ ଓ ଆୟୁର ସ୍ଥୈର୍ଯ୍ୟସାଧନ ହୋଇପାରେ ମାତ୍ର ଗୋଟାଏ ପ୍ରକାଣ୍ଡ କେନାଲ୍ ପ୍ରସ୍ତୁତ ହୋଇନପାରେ । ଏଥିରେ ମଧ୍ୟ କେହି କେହି କହିବେ ଯେ ସେକାଳର ସେଭଳି ତପସ୍ୟାରେ ଅସମ୍ଭବ ସମ୍ଭବ ହେଉଥିଲା । ସେଠାରେ ବକ୍ତବ୍ୟ ଏହି ଯେ ଯାହା କୋଟି ସାବଳ ହାତୀ ଘୋଡା ଦ୍ୱାରା ସାଧ୍ୟ, ସେ ନିମନ୍ତେ 'ତପୋବଳ' ର ପ୍ରୟୋଗ ବିଜ୍ଞତାର ପରିଚାୟକ ନୁହେଁ ।

ଉପନିଷଦ୍‌ରେ ଉକ୍ତ ଅଛି :-

ଅପାଣିପାଦ ଜବନୋ ଗ୍ରହୀତା
ପଶ୍ୟତ୍ୟଚକ୍ଷୁ ସଶୃଣୋତ୍ୟକର୍ଣ୍ଣଃ ।
ସବେତ୍ତି ବେଦ୍ୟଂ ନଚ ତସ୍ୟାସ୍ତି ବେତ୍ତା
ତମାହୁରଗ୍ର୍ୟମ୍ ପୁରୁଷଂ ମହାନ୍ତମ୍ ।
ଯତଦଦ୍ରେଶ୍ୟ ମଗ୍ରାହ୍ୟ ମଗୋତ୍ର ମବର୍ଣ୍ଣ
ନଚକ୍ଷୁଶ୍ରୋତ୍ରଂ ତଦପାଣିପାଦଂନିତ୍ୟମ୍
ବିଭୁଂ ସର୍ବଗତଂ ସୁସୂକ୍ଷ୍ମଂ ତଦବ୍ୟୟଂ
ଯଦ୍‌ଭୂତଯୋନିଂ ପରିପଶ୍ୟନ୍ତି ଧୀରାଃ ।

'ସେହି ପରମାତ୍ମା ହସ୍ତପାଦ ଶୂନ୍ୟ ହୋଇ ମଧ୍ୟ ବେଗବାନ୍ ଓ ଗ୍ରହୀତା, ଅଚକ୍ଷୁ ହୋଇ ମଧ୍ୟ ଦର୍ଶନ କରନ୍ତି, ଅକର୍ଣ୍ଣ ହୋଇ ମଧ୍ୟ ଶ୍ରବଣ କରନ୍ତି, ସେ ଜ୍ଞେୟ ବିଷୟର ଜ୍ଞାତା, ତାଙ୍କର ଜ୍ଞାତା ନାହିଁ, ବ୍ରହ୍ମବିଦ୍‌ଗଣ ତାହାଙ୍କୁ ପ୍ରଥମ ଓ ମହାପୁରୁଷ ବୋଲି କହନ୍ତି ।

'ଯେ ଅଦୃଶ୍ୟ, ଅଗ୍ରାହ୍ୟ ଅର୍ଥାତ୍ କର୍ମେନ୍ଦ୍ରିୟର ଅବିଷୟ, ଅଗୋତ୍ର ଅର୍ଥାତ୍ ଅମୂଳ, ଅବର୍ଣ୍ଣ, ଅଚକ୍ଷୁ, ଅଶ୍ରୋତ୍ର; ସେହି ହସ୍ତପଦ ରହିତ, ନିତ୍ୟ ସର୍ବବ୍ୟାପୀ, ସର୍ବଗତ, ସୁସୂକ୍ଷ୍ମ ଓ ସର୍ବଭୂତର ଉତ୍ପାଦୟିତାଙ୍କୁ ଜ୍ଞାନୀଗଣ ଦର୍ଶନ କରନ୍ତି । କେବଳ ଏତିକି ନୁହେଁ, ସମଗ୍ର ବେଦ ବେଦାନ୍ତରେ ଆର୍ଯ୍ୟ ଋଷି ପରମାତ୍ମାଙ୍କର ସତ୍ତାର ଯେ ସିଦ୍ଧାନ୍ତ ପ୍ରକାଶ କରିଅଛନ୍ତି, ତହିଁର ସମନ୍ୱୟରେ ବିଶ୍ୱମୂର୍ତ୍ତିର ପ୍ରତୀକ ରୂପେ ନୀଳାଚଳରେ ମୂର୍ତ୍ତି ତ୍ରୟ ଗଠିତ । ହିନ୍ଦୁର ଆରାଧିତ ରାମ ଲକ୍ଷ୍ମଣାଦି ଅନ୍ୟ ମୂର୍ତ୍ତି ସବୁ ମାନବବିଗ୍ରହୀ ଅବତାରମାନଙ୍କର ପ୍ରତିମୂର୍ତ୍ତି; ମାତ୍ର ଜଗନ୍ନାଥ

ବଳଭଦ୍ର ସୁଭଦ୍ରାଙ୍କର ପିତାମାତା ବା ଜନ୍ମସ୍ଥଳର ନିର୍ଣ୍ଣୟ ନାହିଁ କାରଣ ସେ ବିଗ୍ରହତ୍ରୟ କୌଣସି ମହାମାନବଙ୍କର ପ୍ରତିମୂର୍ତ୍ତି ନୁହନ୍ତି । ଶ୍ରୀକ୍ଷେତ୍ରର ବିଧିବିଧାନ, ମନ୍ଦିର ଓ ମୂର୍ତ୍ତି ଗଠନାଦି ପ୍ରତି ଲକ୍ଷ୍ୟ କଲେ ସ୍ୱତଃ ଉପରୋକ୍ତ ଭାବଗୁଡ଼ିକ ଚିତ୍ତପଟରେ ଉଦ୍‌ଭାସିତ ହୋଇଉଠେ । ଅଥଚ ଆମ୍ଭେମାନେ ସେଠାରେ କବିତ୍ୱ ଦେଖାଇ ମୂର୍ତ୍ତିର ଅପୂର୍ଣ୍ଣତାର କୈଫିୟତ ଦେଇ ବସିଲୁଁ-ମିଆଦ୍ ପୂର୍ଣ୍ଣ ନ ହେଉଣୁଁ ରାଜା କବାଟ ଫିଟାଇ ଦେବାରୁ କାର୍ଯ୍ୟ ବାକି ରହିଗଲା । ଏଠାରେ ମଧ ଭଗବାନ୍ ବୁଦ୍ଧ ବଢ଼ାଇ ବେଶରେ ମାନବ ଶରୀରରେ ଲେନ୍ସେରାଯୁକ୍ତ ଚକ୍ଷୁ, 'ବାରସି' ମଣ୍ଡିତ ଖାନ୍ଦରେ ମିଟି ମିଟି ଚାହିଁ ଖୁଇଁ ଖୁଇଁ କାସି ଆମ୍ଭମାନଙ୍କର ସାହିତ୍ୟ କ୍ଷେତ୍ରକୁ ଚାଲିଆସି ଜଗତ ସମକ୍ଷରେ ଆମ୍ଭମାନଙ୍କୁ ହଟହଟାରେ ପକାଇଲେ । ବିଭିନ୍ନ ଧର୍ମାବଲମ୍ବୀମାନେ କହିଲେ-ତୁମ୍ଭର କର୍ତ୍ତାତ ଭଗବାନ୍ ନୁହନ୍ତି, ତୁମ୍ଭେହିଁ ଭଗବାନଙ୍କର କର୍ତ୍ତା ।

ଯାହାହେଉ ଉକ୍ତ ରୂପକ ରହସ୍ୟ, କବିତ୍ୱ ଚାତୁରୀର ତାତ୍‌ପର୍ଯ୍ୟକୁ ବିକୃତକରି ଆମ୍ଭେମାନେ ପୁଣି କବିତ୍ୱ ଦେଖାଇ ବର୍ଣ୍ଣନା କରି ବସିଲୁଁ-ଗୋଟିଏ ବୃଦ୍ଧି ଗୀତଗୋବିନ୍ଦ ଗାଇ ବାଇଗଣ ତୋଳୁଥିଲା, ଜଗନ୍ନାଥେ ସେ ଗୀତ ଶୁଣିବାକୁ ବୃଦ୍ଧିର ପଛେ ପଛେ ବୁଲିବାରୁ ତାଙ୍କ ପୀତାମ୍ବରରେ ବାଇଗଣ କଣ୍ଟା ଲାଗିରହିଲା ।

ଏପରି କ୍ରମରେ ଡାକିନୀ ଯୋଗିନୀ ଦେବତା ଭୂତମାନେ ଆମ୍ଭମାନଙ୍କର ସାହିତ୍ୟ କ୍ଷେତ୍ରରେ ବିଚରଣ କରି ଅସମ୍ଭବ କାର୍ଯ୍ୟମାନ ସାଧନ କରିଅଛନ୍ତି । ଫଳରେ ଆମ୍ଭେମାନେ ଭ୍ରାନ୍ତି ପଟଳରେ ଚକ୍ଷୁ ବାନ୍ଧି ବସିଅଛୁଁ । ଦୈବଶକ୍ତି ନାହିଁ ବୋଲି ସିଦ୍ଧାନ୍ତ କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । ମାତ୍ର ଚିର ଅନ୍ଧକାରମୟ ଗୋଟିଏ ଗିରିଗହ୍ୱରରେ ଜନ୍ମାବଧି ଚିରକାଳ ବାସ କରୁଥିବା ଲୋକ ବାସନ୍ତୀକ ଉଷାର ଶୋଭାବର୍ଣ୍ଣନା କରିବା ରୀତିରେ ଏଭଳି ଦୈବ ବା 'ଭୌତିକ' ବର୍ଣ୍ଣନା ଗୁଡ଼ିକ ପ୍ରକୃତ ଜ୍ଞାନାଲୋକକୁ ଘେରି ଘୋଡାଇ ରଖୁଅଛି । ମାତୃଭୂମି, ଧରଣୀ ବା ପ୍ରକୃତି, ବିଶ୍ୱଧାତ୍ରୀ ରୂପେ ପୂଜିତ ବା ବର୍ଣ୍ଣିତ ହେବା ହୃଦୟ ପଦ୍ମବାସିନୀ ବାକ୍‌ଶକ୍ତି ସରସ୍ୱତୀ ନାମରେ ଆରାଧିତା ହେବା ସୁନ୍ଦର ଓ ସ୍ୱାଭାବିକ ମାତ୍ର ଗୋଟିଏ ଗୋଟିଏ କିମ୍ଭୂତକିମାକାର କଳ୍ପନାରେ ଶୂନ୍ୟମୟ (ଭିତ୍ତିଶୂନ୍ୟ) ଶରୀର ବିଶିଷ୍ଟ ଡାକିନୀ ଯୋଗିନୀ ଦେବାତାଭୂତମାନଙ୍କୁ ଆବାହନ କରି ତାଙ୍କରିଦ୍ୱାରା ନାୟକନାୟିକାଙ୍କର ମିଳନ, ଅଦ୍‌ଭୁତ ବରଦାନାଦିରେ ସାଫଲ୍ୟସାଧନାଦି ଦେଖାଇ ଆମ୍ଭମାନଙ୍କର ପୌରୁଷ ପ୍ରତିଭାର ବିକାଶରେ ମଧ୍ୟଯୁଗର କବିମାନେ ନିଦାରୁଣ ଅନ୍ତରାୟ ଆଣିଦେଇ ନାହାନ୍ତି କି ? କେବଳ 'ତପସ୍ୟା'ର ଅର୍ଥ ସାଧନା (Study) ବୋଲି ଚିତ୍ରିତ କରିଥିଲେ ଆଜି ଭ୍ରାନ୍ତିପଥ କେତେ ସଙ୍କୁଚିତ ହୋଇ ଯାଇଥାନ୍ତା ! ଉପନିଷଦାଦି ଗ୍ରନ୍ଥରେ ଆର୍ଯ୍ୟଋଷି ଯେଉଁ ସିଦ୍ଧାନ୍ତ ଦେଖାଇ ଅଛନ୍ତି, ସେଥିରୁହିଁ ଜଣାଯାଏ ଯେ ଦେବତାଗୁଡ଼ାକ ଏଭଳି ଶରୀର ଧରି ଚରି ବୁଲିବା ଜନ୍ତୁ (ଜୀବ) ନୁହନ୍ତି । ଉପରୋକ୍ତ ଆଦର୍ଶ ସବୁକୁ ଲକ୍ଷ୍ୟକଲେ କବିତାରେ ଦେବାବତରଣର କ୍ରମ ପରିଷ୍କାର ଜଣାପଡେ । ସୁଦକ୍ଷହସ୍ତରେ ମଧୁମୟୀ ଲେଖନୀରେ ତାହା ସ୍ୱର୍ଗୀୟ ସୁଷମାଶାଳୀ ହୋଇପାରେ ମାତ୍ର ଅନ୍ୟତ୍ର ବିଅ ଗଢୁ ଗଢୁ ବାନର ମୂର୍ତ୍ତିଧାରଣକରି ସାହିତ୍ୟକୁ କଳଙ୍କିତ କରେ ମାତ୍ର ।

# ହରିହର ମହାପାତ୍ରଙ୍କ ବଂଶାବଳୀ

ଗୋବର୍ଦ୍ଧନ ମହାପାତ୍ର ସ୍ତ୍ରୀ-ଜାନକୀ ଦେବୀ
(ରାଜପୁରୋହିତ-ବାମଣ୍ଡା)





ହୃଷିକେଶ — ହରିହର (ସ୍ତ୍ରୀ-ବସୁମତି) — ଗୋରା — ଦାମୋଦର (ପ୍ରାଜ୍ଞ) — ସଦାଶିବ (ବାମଣ୍ଡାର ପ୍ରଥମ ଆଇ.ଏ) — ବାଜି





ଶଶି ଭୂଷଣ — ତିଳୋତ୍ତମା — ବିଧୁ ଭୂଷଣ — ଇନ୍ଦୁ ଭୂଷଣ — ସୁଧାଂଶୁ — ହିମାଂଶୁ — ମନୋରମା

# (ଖ)

# କବିତା ବିଭାଗ

## ସୁଜ୍ଜ୍ୱଳ ଦେବ ପ୍ରୟାଣେ

x x x x x x
କ୍ରନ୍ଦନ ନିନାଦ x x x
ବିଚରଣ କଲ ଅମର ଧାମେ
ପୁରବାସୀ ନରନାରୀ
ବିଷାଦ ଯୋଦ୍ଧାର ଅଧୀନ ହୋଇ
ଶୋକ ଶତ୍ରୁ ଯୋଗେ ହାରି । (୨)

ଆହେ ସୁଜ୍ଜ୍ୱଳ ଦେବ ଦଣ୍ଡଧାରୀ
ଉତ୍କଳ ନୟନୁ ବହଇ ବାରି
ଚାଲିଗଲ ଦେବ ସ୍ୱର୍ଗ ପଥରେ
ନଚାହିଁଲ ଆମ୍ଭ କଷ୍ଟକୁ ଥରେ
ପିତାପ୍ରାୟ ଥିଲ ପାଳି
ନିଶ୍ଚିନ୍ତେ ବୈକୁଣ୍ଠ ଧାମେ ବିରାଜିଲ
ଶୋକେ ମଗ୍ନ ଅଛୁ ଭାଳି । (୩)

ଆମ୍ଭେ ବାଳକେତ ଦୀନ ଅଜ୍ଞାନୀ
ନ ଭୁଲିବୁଁ ତୁମ୍ଭ ମଧୁର ବାଣୀ
ଯେ ସ୍ଥାନରେ ଦେଖ ଆମ୍ଭମାନଙ୍କୁ
ମିଷ୍ଟବାଣୀ କହି ତୋଷ ମନକୁ

ସେ କଥାମାନ ସୁମରି
ବିଷାଦ ପ୍ରଧାନ ପାଟେ ଅବଗାହୀ
ଯାଉଅଛି ଦେହ ଥରି । (୪)

ନାନା ସ୍ଥାନେ ରାଜେ ତବ କୀରତି
ମଣ୍ଡିଅଛି ଉତ୍କଳ ଧରତୀ
ଦ୍ରୁତୁମ ଦ୍ରୁତୁମ ଧ୍ୱନି ପଡ଼ିଲେ ମନେ
ମନ ବଣାହୁଏ ବିସ୍ମୟ ବଣେ
ଧନ୍ୟ ତୁମ୍ଭର ଶକତି
ଧୈର୍ଯ୍ୟ ଗାମ୍ଭୀର୍ଯ୍ୟାଦି ତୁମ୍ଭ ଗୁଣ ଗଣ
ଗୁଣୁଅଛି ଆମ୍ଭ ମତି ।

(ସଂବଲପୁର ହିତୈଷିଣୀ ୨୩.୧୨.୧୯୦୩)

## ଶ୍ରୀମାନ ହୃଦୟନାଥ ଦେବଙ୍କ ବ୍ରତୋପନୟନ ଉପଲକ୍ଷେ
## କାମୋଦୀ-ତାଳଝୁଲା

ବାଜରେ ଆଜ ମୋ ବୀଣା  ଲଳିତ ପଞ୍ଚମ ତାନରେ
ଏ ଉପନୟନ ଶୁଭ ଉତ୍ସବେ  ମଙ୍ଗଳ ଗାନେ । ପଦ ।

ପରଜା ରଞ୍ଜନ ବ୍ରତୀ  ସଚ୍ଚିଦାନନ୍ଦ ଭୂପତି
ବନ୍ଦନୀୟ ହୃଦ ସ୍ନେହେ  ଆହ୍ଲାଦି ଭକ୍ତି ଚନ୍ଦନେ । ୧ ।

ଯାହାଙ୍କ ହୃଦ ଯତନେ  ମଣ୍ଡିତ ଗୁଣ ରତନେ
ସେ ଯୁବରାଜ ଦଂପତି  ହୃଦୟ ଅଭିନନ୍ଦନେ । ୨ ।

ନରେଶ ହୃଦ ଚନ୍ଦନ  ହୃଦୟ ନାଥ ନନ୍ଦନ
ଯୁବ ରାଜାନୁଜ ନବ  ଦ୍ୱିଜରାଜ - ଆହ୍ଲାଦନେ । ୩ ।

ରାଜସୁତା ରାଜସୁତ  ରାଜବନ୍ଧୁ ରାଜଭ୍ରାତ
ନିଖିଳ ହୃଦୟ ତୋଷି  ଯତନେ ଶ୍ରଦ୍ଧା ସୁମନେ । ୮ ।

ସ.ହି. ୨୬/୨୫: ୧୦.୦୪.୧୯୧୫

## ଶ୍ରଦ୍ଧା ସମ୍ଭାଷଣ

(ଶ୍ରୀମାନ୍ ବିଶ୍ୱନାଥ ମିଶ୍ର ବାରିଷ୍ଟରଙ୍କର ପ୍ରତି)

ରାଗ : ଶଙ୍କରାଭରଣ

ହର୍ଷେ ଦିଅ କରତାଳି
ଏ ଶୁଭ ମିଳନେ ଆଜି ସର୍ବ ବଂଧୁ ମିଳି । ପଦ ।

କର୍ମେଯୋଗୀ ବୀର ଯୋଗ୍ୟ ଉତ୍କଳ ନନ୍ଦନ
ସମ୍ମୁଖେ ବିଲୋକି ନୟନ ନନ୍ଦନ (ଛବି) ।

ଦୈବ ବିଭା ଦୀପ୍ତ ମୁଖ ସଭକ୍ତି ଲୋଚନେ
ବିଲୋକି, ଅକ୍ଷମ ବାଣୀ ନାମ ଉଚ୍ଚାରଣେ ।

ଯାହାଙ୍କ ସ୍ନେହ ପ୍ରତିଭା ଗୁଣେ ସମାଦରେ
ଆଗତ, ଆଦୃତ ଗୁଣୀ ଏବେ ସମ୍ମୁଖରେ-

ଯୋଗୁଁ ଲଭିଲୁ (ଏହି) ଦିବ୍ୟ ପ୍ରତିଭା ଲୋଚନ
ସେ ନରେଶଙ୍କର କରି ହୃଦୟ ବନ୍ଦନ ।

ଉତ୍କଳ ଜନନୀଙ୍କର ହୃଦୟ ଚନ୍ଦନ
ସାଦରେ ଘେନନ୍ତୁ ଆମ୍ଭ ଏ ଅଭିନନ୍ଦନ ।

ଅରପନ୍ତୁ ଦୟାମୟ ଜଗତ ବନ୍ଦନ
ସୁଦୀର୍ଘ ଜୀବନେ ତାଙ୍କ କୁସୁମ ଚନ୍ଦନ ।

# ଭରତ

(ହରିହର ମହାପାତ୍ରଙ୍କ 'ଭରତ' ଏକ ଉତ୍କୃଷ୍ଟ କାବ୍ୟ ଏହାର ନିର୍ବାଚିତ ଅଂଶ 'ଚୟନିକା' ଶୀର୍ଷକରେ ଗଡଜାତ ବାସିନୀ ୨୯.୯.୧୯୩୪ ଓ ୭.୧୦.୧୯୩୪ ସଂଖ୍ୟାରେ ଏବଂ 'ଉପହାର' ୧୯୩୭ ବର୍ଷର କିଛି ସଂଖ୍ୟାରେ ପ୍ରକାଶିତ । ୧୯୮୮ ବେଳକୁ ହରିହରଙ୍କ ନାତି ତରୁଣ କୁମାର ମହାପାତ୍ର ନିଜ ପ୍ରକାଶିତ 'ଗଡଜାତ ସମାଚାର' ସାପ୍ତାହିକ ସମ୍ବାଦପତ୍ରରେ 'ଭରତ' କାବ୍ୟକୁ ଧାରାବାହିକ ପ୍ରକାଶ କରୁଥିଲେ । ତରୁଣ ମହାପାତ୍ରଙ୍କ ଅକାଳ ତିରୋଧାନ ଯୋଗୁଁ ଏହି କାବ୍ୟ ରସ ପ୍ରାପ୍ତିରୁ ଓଡିଆ ପାଠକେ ବଞ୍ଚିତ ହେଲେ । 'ଗଡଜାତ ସମାଚାର' ପତ୍ର ଗୁଡିକ ମିଳୁନଥିବାରୁ ଏଠାରେ ପ୍ରାପ୍ତ କେବଳ ଗୋଟିଏ ସଂଖ୍ୟାର ଅଂଶ ବିଶେଷ ପତ୍ରସ୍ଥ ହେଲା । ଭରତ କାବ୍ୟକୁ ପୂର୍ଣ୍ଣାଙ୍ଗ ରୂପେ ପ୍ରକାଶ କରିପାରିନଥିବାରୁ ଆମେ ଦୁଃଖିତ-ସଂପାଦକ)

## ଉଦ୍‌ବୋଧନ

ଓଁକାର ନାଦିନୀ ବିପଞ୍ଚି ବାଦିନୀ
ମୋ ହୃଦ କୁଟୀର ବାସିନି !
ଜାଗ, ପ୍ରଜ୍ଞାମୟୀ ବାଣୀ ବିଶ୍ୱ ଶୋଭାରାଣୀ
ପ୍ରଫୁଲ୍ଲ ପଙ୍କଜ ହାସିନି ।
ଦୁଃଖୀ-ଦୁଃଖ ଅବସାନ ନାଶିନି (୧)

ଦେଖୁ ବେଳଯାଏ ବଳି ଧୃତିଯାଏ ଟଳି
କେତେ ରହିବୁ ମା ! ଶୟନେ
ତୋର ମଧୁହାସ ବିନା ଦିଶୁଅଛି ସିନା
ଶୂନ୍ୟମୟ ବିଶ୍ୱ, ନୟନେ
ଜାଗ, ପ୍ରଫୁଲ୍ଲ ପଙ୍କଜ ନୟନେ । (୨)

ଆଜି ବିଷାଦେ ମଳିନ ଶରଧା ନଳିନ
ତୋଳି ଆଣିଅଛି ଯତନେ
ବାଞ୍ଛା, ପୂର୍ଣ୍ଣ ହେଉ ମୋର ବାରେ ମାତ୍ର ତୋର
ଦୟାମୟୀ ଦୃଷ୍ଟି ପତନେ,
ତୋର, ସ୍ନେହ ଅଶ୍ରୁ ମୋତି ରତନେ । (୩)

ମାଗୋ, ବାଞ୍ଛା ଜାଗେ ମନେ ଅତୀତ ଗହନେ
ବୁଲିବି ମୋ ବୀଣା ବଜାଇ,
ତନ୍ତ ଯାଇଅଛି ଛିଡି ଯତନେ ତା ଯୋଡି

ଦେ ମା ! ସପ୍ତସ୍ୱର ସଜାଇ
ଦେ ମା ! ନେତ୍ରେ ଦିବ୍ୟାଞ୍ଜନ ରଞ୍ଜାଇ । (୪)

ଯହିଁ ଭ୍ରାନ୍ତି ମରିଚିକା କାଳ ଯବନିକା
ଅନ୍ତରେ ନାଚଇ ଅନ୍ଧାରେ,
ଯହୁଁ, ନିରସ୍ତ ଈକ୍ଷଣ ସୁଦୂର ବୀକ୍ଷଣ
ନ ପଡିବି କି ମୁଁ ଧନ୍ଦାରେ ?
ଦେ ମା ! ଦିବ୍ୟ ଜ୍ୟୋତି ମୋର ମେଧାରେ
ଭ୍ରାନ୍ତି ମରିଚିକା କାଳ ଯବନିକା
ଭେଦିବି ଯେହ୍ନେ ସେ ଅନ୍ଧାରେ (୫)

ସେ ଯେ, ଧୀର ବୀରମଣି ନରେନ୍ଦ୍ର ଅଗ୍ରଣୀ
ମହାଜ୍ଞାନୀ ଯୋଗୀ ଭରତ
ଯାର, ଅସୀ ଆସ୍ଫାଳନେ ବସି ନିକାଞ୍ଚନେ
ବଇରୀ କେଶରୀ ଆରତ
ଯେହୁ ସ୍ଥାପିଲେ ବିଶ୍ୱାଳ ଭାରତ । (୬)

ତାଙ୍କ, କୀରତି କେତନ ସୁଗୁଣ ରତନ
ହିମାଚଳ ଚୂଳେ ଝଳକି
ରାଗେ, ଉଷାମୁଖରଞ୍ଜି ଭାନୁତେଜ ଗଞ୍ଜି
ସିନ୍ଧୁ ବକ୍ଷ ଥିଲା ଆଲୋକି
ବୈନିମେରୁ ଦେଖୁଥିଲା ପୁଲକି,
ତାଙ୍କ କୀରତି କେତନ ଦୋଳୁଥିଲା ପରା
ହିମାଚଳ-ଚୂଳେ ଝଳକି । (୭)

ତାଙ୍କ, ମହିମା ସୁମନ ମଧୁପ ଗୁଞ୍ଜନ
ମୋ ବୀଣା ତାନେ କି ମିଶିବ ?
ସେହି, କୁସୁମ ଚୟନେ ମୋ କ୍ଷଈଣ ନୟନେ
ଗହନ ପଥ କି ଦିଶିବ ?
ମୋ ନୟନେ କି ସେ ଫୁଲ ହସିବ ? (୮)

ଏବେ ଉଠ ମା ! ଉଠ ମା ! ଭାରତ ଭାରତି ।
ଫେଡ ଅତୀତର କବାଟ,
ସେହି, ମହାମହିମାର କହମା ! ଶକୁନ
ଦେଖାଇ ଦିଅ ମା ! ସେ ବାଟ
ବାରେ ଦେଖାଅ ସେ ଛବି ବିରାଟ (୯)
ବିରାଟ (ଗଡଜାତ ବାସିନୀ ୨୯.୦୯.୧୯୩୪)

## (ବର୍ଷା)

ସମାଗତ ନବ ନିରଦ
କାଳ, ଭୁବନ ଘେରି
ବାଜିଲା ଅନନ୍ତ ଗଗନେ
ଘନ ତାଣ୍ଡବ ଭେରୀ । (୧)

ବାଷ୍ପାକାରେ ଉଠି ଆକାଶେ
ସିନ୍ଧୁ ସଲିଳ ରାଶି
ବହି ବ୍ୟୋମତର ମୂରତି
ଖେଳେ ଚୌଦିଗେ ଭାସି । (୨)

ଲୋଟୁଥିଲା ଯାର ଚରଣେ
ପିଟି ଲହରୀ ଶିର
ଆଦରେ ଆଶ୍ଳେଷି ବହିଛି
ଶିରେ ସେହି ସମୀର । (୩)

ଅନ୍ୟୋଽନ୍ୟ ସମ୍ମୁଖେ ଧାବନ୍ତି
ଅଭ୍ର ଯୁଗ ଗଗନେ
ମହାମେଘ ବେନି ଧାବିତ
କି ସେ ? ସମରାଙ୍ଗଣେ । (୪)

ତାଳେ ତାଳେ ଭୀମ ନିର୍ଘାତେ
ବହ୍ନି ହୁଏ ବାହାର
ସଂଯୋଗୀ ଦାମିନୀ ଏରୂପେ
କରେ ଘନ ସଂହାର । (୫)

ଝରିପଡି ସ୍ୱେଦ ନିର୍ଝର
ପ୍ଲାବି ଅବନୀ ତଳ
ତପ୍ତ ଗିରିବନ କାନ୍ତାର
କରେ ସ୍ନିଗ୍ଧ ଶୀତଳ । (୬)

ବହି ଯାଉଅଛି ଚୌଦିଗେ
ନବ ଆସାର ବାରି
ନବବିମଳତା -ସୁଷମା
ଧରା ଅଙ୍ଗେ ସଞ୍ଚାରି । (୭)

ବିଲୋମେ ଚଞ୍ଚଳ ସଞ୍ଚାରେ
ସ୍ରୋତ କରି ସଙ୍କୁଳ
ପ୍ରସବନ୍ତି ଅର୍ଦ୍ଧ ଗର୍ଭକ
କୋଷ ସଫରୀ କୁଳ । (୮)

ଗଣ୍ଡ ଶୈଳପଦ ଅଣ୍ଡାଳି
ଯାଚୁଥିଲା ଶରଣ
ସେହି ଶୈଳରାଣୀ, ତା ଶିରେ
ଏବେ ରଖେ ଚରଣ । (୯)

ଲୋଟି ପଡିଥିଲା ପାଦପ-
ପାଦେ ତାପେ ଝାଉଁଳି
ସେ ଲତିକା ଏବେ ତା ଶିରେ
ଉଠେ, ଅଙ୍ଗ ସାଉଁଳି । (୧୦)

ଇନ୍ଦ୍ରଗୋପ ପୁଞ୍ଜ ରଞ୍ଜିତ
ମଞ୍ଜୁ ମାଣିକ୍ୟ ତେଜେ
ଧୀରେ ବିଳସନ୍ତି ଧରଣୀ-
ବକ୍ଷେ ଶ୍ୟାମଳ ଶେଯେ । (୧୧)

ଘନନାଦେ ଶୃଙ୍ଗ ଷଡଜ-
ତାନେ ନାଚଇ କେକୀ,
ସୁବର୍ଣ୍ଣ ରଞ୍ଜିତ ମଞ୍ଜୁଳ
ନୀଳ, ଶିଖଣ୍ଡେ ଟେକି । (୧୨)

କାଦମ୍ବରୀ-ମଧୁ ସରଘା-
କୁଳ, କଦମ୍ବ କୋଳେ
ପାନ କରି ଅନୁନାସିକେ
ଗାନ ତୋଳନ୍ତି ଭୋଳେ । (୧୩)

ଚଖାଇ ମରନ୍ଦେ ମଦିରା
ଦରହାସେ ସୁମନା
ହରିନିଏ ଭୃଙ୍ଗ ଜୀବନ
କରି ପ୍ରୀତି ଛଳନା । (୧୪)

ତମସ୍ୱିନୀ ଗର୍ଭେ, ଅସିତ -
ଘନେ ଦାମିନୀ ବଲ୍ଲି
ମହାକାଳୀ - ଲୋଳ ରସନା
ସମ ଉଠଇ ଝଳି । (୧୫)

ବୃଦ୍ଧି ହୋଇଯାଏ ନୟନ
ତାର ଦୀପ୍ତ ଝଲକେ
'କିଳି କିଳା' ସମ ନିର୍ଘୋଷ
ଉଠେ ପର ପଲକେ । (୧୬)

ଡାକିନୀଙ୍କ ଡାକ, ଡାହୁକ
ରବେ ଯେହ୍ନେ ପ୍ରକଟି
ନୀରଦ ନିବିଡ ସୁଦୂର
ବ୍ୟୋମେ ଯାଏ ଚହଟି । (୧୭)

ରଣିତ ନୂପୁର ନିକ୍ୱଣ
ପ୍ରାୟେ ଦର୍ଦ୍ଦୁର ରବ
ଅପ୍ରମିତ ଝିଲ୍ଲି ଝଙ୍କାରେ
ହୁଏ ଶ୍ରୁତି ଭୈରବା (୧୮)

(ଗଡଜାତ ବାସିନୀ ୦୬.୧୦.୧୯୩୪)

## (ଚୟନିକା)

ଶୁଣି ଭୂପତି-ଭାରତୀ, ଭାଷିଲେ କୁମାର (୧)
କର ଯୋଡି ଧୀରେ ବିନୟ ବାଣୀ
" ଦେବ ! ଅବଧାନ ହେଉ, ତବ ପୂଣ୍ୟ ସ୍ନେହେ
ମୁଞ୍ଛିଛି କି ଆଶା ଧରଣୀ ରାଣୀ ? ୪୪

ତବ କରୁଣା କୋମଳ ପ୍ରତିଭା ମୟୂଖେ
ରଞ୍ଜିତ ଯେ ଦୀପ୍ତ ଶାସନ ଦଣ୍ଡ
ମୋର ଅର୍ବାଚୀନ କରେ ପାରିବ କି ସତେ
ଆହ୍ଲାଦି ବିଶାଳ ପଞ୍ଚାଳ ଖଣ୍ଡ ? ୪୫

ହୃଦେ ସଞ୍ଚାରିଛ ମୋର ଯେ ଶୋଣିତ ଧାରା,
ଖେଳୁଛି ତହିଁ ଯେ ଦାମିନୀ ବିଭା,

ତା'ର ବିମଳ ଝଲକେ ଏ କ୍ଷାତ୍ର ଜୀବନେ
ଆରାଧିବି ସଦା ଆର୍ଯ୍ୟ ପ୍ରତିଭା; । ୪୬

ମୁଁ ଯେ ନାରସିଂହ-ବଂଶୀ ପୌରବ ଗୌରବ
ବୀରେନ୍ଦ୍ର କେଶରୀ ତୁମ୍ଭରି ସୁତ,
ଏହି ମହୀୟାନ ସ୍ମୃତି କରୁ ନିରନ୍ତର
ଆର୍ଯ୍ୟ ତେଜେ ମୋର ଜୀବନ ପୂତ । ୪୭

ରାଜ୍ୟ ଶାସନ ପାଳନେ , ଅରାତି ଦଳନେ
କ୍ଷତ୍ରିୟ ହୃଦୟେ ନୁହେଁ କାତର,
ମାତୃ ପିତୃ ସ୍ନେହ ସୁଧା ସ୍ୱର୍ଗୀୟ ସମ୍ପଦୁଁ
କେଉଁ ଅପରାଧେ ହେବି ଅନ୍ତର ? ୪୮

ତବ ସୁନୀତି-କୁଶଳ ମନ୍ତ୍ରୀଗଣ ତୁଲେ
ସମର-କୁଶଳ ସେନାନୀ ପଦେ
ନିଜେ ଖୁଲ୍ଲତାତଗଣ, ଛନ୍ତି ବିରାଜିତ
ପୂରିଛି ପଞ୍ଚାଳ ଶକ୍ତି ସମ୍ପଦେ । ୪୯

ଚତୁରଙ୍ଗିଣୀ ବାହିନୀ ବହ୍ନି ପ୍ରବାହିନୀ
ପ୍ରାଏ ଧାଏଁ ଯେବେ ବୈରୀ କାନନେ
ତାର ଉଜ୍ଜ୍ୱଳ ମୟୂଖ ଅଙ୍ଗାର କାଳିମା
ବୋଳିଦିଏ ସିନା ବୈରୀ-ଆନନେ । ୫୦

ଶ୍ରଦ୍ଧା ଭକତି ବିନୟେ ପୂର୍ଣ୍ଣ ପ୍ରଜାହୃଦ
ସ୍ୱାଧ୍ୟାୟ ନିରତ ବିପ୍ର ତାପସ,
ପୂର୍ଣ୍ଣ ଧନ ଧାନ୍ୟେ ହେମ ରତ୍ନ ରାଜକୋଷ
ଦୂରୀକୃତ ଦେଶୁଁ ଦୁଃଖ ତାମସ । ୫୧

ରାଜ ପୁଣ୍ୟର ସୌରଭ ଟାଣିଆଣେ ସିନା
ସୁଦୂର ଗଗନୁଁ ଆସାର ଧାରା ?
ତବ ଯଜ୍ଞ ଧୂମ ଧାରା କରୁଛି ତ ନିତ୍ୟ
ବିମଳିନ, ନଭେ ତପନ ତାରା । ୫୨

ଚାରୁ ନିୟନ୍ତ୍ରଣେ ତବ ନିୟନ୍ତ୍ରିତ ରାଜ୍ୟ
ଯନ୍ତ୍ର ପ୍ରାଏ ସେତ ଚଳିବ ସୁଖେ,

ପିତୃ ସ୍ନେହ ସୁଧା ଦିବ୍ୟ ସମ୍ପଦ ହରାଇ
ମଜ୍ଜିବି ସିନା ମୁଁ ଦାରୁଣ ଦୁଃଖେ ? ୫୩

କେଡେ ମଧୁର ଜଗତେ ପିତୃ ମାତୃ ନାମ
ତହୁଁ କିବା ସ୍ନିଗ୍ଧ ମୟୂଖ ଝରେ ।
ପ୍ଲାବି ସନ୍ତାନ ଜୀବନ କି ଅମୃତ ରସେ
ବିଦୂରିତ କରେ ଦୂରିତ ଖରେ । ୫୪

ତପ୍ତ ବିଶ୍ୱ ମରୁଭୂମେ ନିରାଟ ନିଦାଘେ
ପିତୃ ସ୍ନେହ ସଦା ଅମୃତ - ଛତି,
ରଖି ଦାୟାଦ ଆଶନେ ଅନୁଲୋମେ ସିନା
ଦେଇଛନ୍ତି ତାହା ଜଗତ ପତି । ୫୫

ତା'ର ଶୀତଳ ଛାୟାରେ ଖେଳି, କାଟେ କାଳ
ଜଗତ ଅନ୍ତରେ ସନ୍ତତେ ସୁଖେ
ଶିରୁଁ ଅପସରି ଗଲେ ସେ ଛାୟା ସନ୍ତାନ,
ସନ୍ତାପିତ ହୁଏ ଦାରୁଣ ଦୁଃଖେ ୫୬

ଧନ୍ୟ ପିତୃ ହୃଦ, ସେହି ଛାତ୍ର ପୁତ୍ର ଶିରେ
ତୋଳି ଧରେ ନିଜେ ସନ୍ତାପ ସହି
ଯେବେ ଚୂର୍ଣ୍ଣଭୂତ ତାହା ହୁଅନ୍ତା, ଓହୋହୋ ! !
ଶିଶୁ ମୁଣ୍ଡମାଳା ବହନ୍ତା ମହୀ । ୫୭

ସହି ଅଶେଷ ଯାତନା ଜୀବନେ ଜନନୀ
ପାଳଇ ସନ୍ତାନ ଜଠରେ ବହି
ମାତ୍ର କାହିଁ ତା ହୃଦୟେ ସୃଜନ ଶକତି ?
ନନ୍ଦନ କାନନେ ମଣ୍ଡିବ ମହୀ । ୫୮

କେବେ ପୁରୁଷ ବିହୁନେ ନୁହେଁତ ସକ୍ଷମ
ପ୍ରକୃତିର କୃତି ବିଶ୍ୱ-ସୃଜନେ
ତେଣୁ ସିନା ବ୍ରହ୍ମବାଦୀ ପ୍ରକୃତି ଉପେକ୍ଷି
ନିତ୍ୟ ରତ ବ୍ରହ୍ମସତ୍ତା ପୂଜନେ । ୫୯

ଜୀବ ଆଦିସୃଷ୍ଟି କାଳୁଁ ବିଶ୍ୱ ପିତା ବକ୍ଷୁଁ
ଜୀଇଁଛି , ପିଇ ଏ ଅମୃତଝର,

ଆଜି ଭୁବନ ପାବନ ସେ ଦିବ୍ୟ ସମ୍ପଦୁଁ
କେଉଁ ଅପରାଧେ ହେବି ଅନ୍ତର ? ୬୦

ଯେବେ ପରିଶ୍ରାନ୍ତକର ବିଶ୍ରାମ ଲୋଡଇ,
ଲଭୁ ସେ ବିଶ୍ରାମ ସ୍ୱର୍ଣ୍ଣ ଆସନେ ?
ତବ ଚରଣ ରେଣୁରେ ମାଜି ମୋ କୃପାଣ
ନିଯୋଜିବି ପ୍ରାଣ ରାଜ୍ୟ ଶାସନେ ? ୬୧

ନିତ୍ୟ ସ୍ୱଧର୍ମ ନିରତ ପବିତ୍ର ହୃଦୟ
ବଳିଛି ଶାଶ୍ୱତ ପଦ ଚିନ୍ତନେ,
ପୁରେ ରଚିବି ଆଶ୍ରମ ଅଭିରୁଚି ମତେ
ସାଜି ତପୋବନ ଅତି ଯତନେ ।୬୨

ତେଜି ସଉଧ, କେସନେ ଏ ବୃଦ୍ଧ ଶରୀରେ,
କଟାଇବ କାଳ କାନନେ ରହି ?
କେତେ ଝଡ ବୃଷ୍ଟି ସଙ୍ଗେ ଶିଶିର ଗ୍ରୀଷମ
ଯିବ ନିରନ୍ତର ମସ୍ତକେ ବହି ।୬୩

ଯା'ର ପ୍ରାସାଦେ ନିରତ ଲକ୍ଷ ପରିଚାର,
ସ୍ୱକରେ ଆହରି ନିର୍ଝର ବାରି
ବନେ ସେ ପୁଣି ଯାପିବ କୁଟୀରେ ଜୀବନ
ବନ୍ୟ ଫଳ ମୂଳେ କ୍ଷୁଧା ନିବାରି ? ୬୪

ହସି ଭାଷନ୍ତି ଦୁଷ୍ମନ୍ତ:-ଆୟୁଷ୍ମନ୍ତ ବସ !
ନୁହ ଚିନ୍ତାନ୍ୱିତେ ଛନ୍ନ ଅନ୍ତର,
ଜନ୍ମ ଜନ୍ମାନ୍ତର ସୂତ୍ର କରି ନପାରଇ
କ୍ଷଣିକ ବିଚ୍ଛେଦ ଭାଗ୍ୟେଁ ଅନ୍ତର ।୬୫

ସଦା ଆସକ୍ତି ବାସନା ଜନମାଏଁ ସିନା
ଅନ୍ତରାୟ ଆତ୍ମ ମୁକତି ପଥେ,
ବିଶ୍ୱ ମହା ନାଟ୍ୟଶାଳା, ଅଭିନୟ ଅନ୍ତେ
ବାହୁଡେ ମାନବ ସ୍ୱ ମନୋରଥେ ।୬୬

ତାହା ସୁସଜ୍ଜିତ କରି ଜୀବନ ସାୟାହ୍ନେ
ବିବେକୀ ମାନବ କରଇ ଗତି,

ମହା ମିଳନ ମନ୍ଦିର ରଚିଛନ୍ତି ସିନା
ନିଜ ସ୍ନେହ କୋଳେ ସେ ବିଶ୍ୱପତି ।୬୭

ବିନ୍ଦୁ ମାନବ ଜୀବନ, ସିନ୍ଧୁ ସେ ବିରାଟ
ନିତ୍ୟ ଚିଦାନନ୍ଦ ଅମୃତ ମୟ
ଭୁଞ୍ଜେ ନୃତ୍ୟ -ଶ୍ରାନ୍ତ ନର ଅମୃତ ଚିନ୍ମୟ
ସେ ମହା ଆଶ୍ରମ କରି ଆଶ୍ରୟ ।୬୮

ତୁଚ୍ଛ ପ୍ରକୃତ ବିପ୍ଳବ, ତହୁଁ ବଳି ବାତ୍ୟା
ବହୁଛି ନିରତେ ନର ଅନ୍ତରେ
ଏଡି ନପାରିଲେ ସେହି ପ୍ରବୃତ୍ତି ବିପ୍ଳବ
ଭ୍ରମୁଥିବ ଭବ ମରୁ ପ୍ରାନ୍ତରେ ।୬୯

ଏହି ଜଗତ ନିରତେ ଧାଉଁଛି କାହାରି
ପ୍ରତି ଆବର୍ତ୍ତନେ ନାହିଁ ଶକତି
କାଳ କଲ୍ଲୋଳିନୀ ଗର୍ଭେ ଉନ୍ମେଷ ନିମେଷେ
ଅବିରତେ ଜୀବ କରଇ ଗତି ।୭୦

ନିଜ ସୋପାନେ ଆଦରି କର୍ମପଥେ, ବତ୍ସ !
ଚାଲ ଅବିରତେ ବିପ୍ଳବ ଦଳି,
କେହି ପାରେ କି ନିରୋଧି ? ରବି ଚନ୍ଦ୍ରତାରା
ଅସ୍ତାଚଳେ ଯେବେ ଯାଆନ୍ତି ଚଳି ।୭୧

ତହୁଁ ଭାଷନ୍ତି ଅଙ୍ଗିରା ମହର୍ଷି ସତ୍ତମ:-
ଏତ ପ୍ରାଣ ମନ ମୋହନ ଛବି !
କେହି ରୋଧି ନପାରଇ ଅସ୍ତାଚଳେ ଯେବେ
ଦିବା ଅବସାନେ ଗମନ୍ତି ରବି ।୭୨

ହେଲେ ଶୁଖି ନ ଯାଏକି ପ୍ରକୃତି ବଦନ
ସେ ଘୋର ବିଚ୍ଛେଦେ ଦାରୁଣ ଦୁଃଖେ ?
ଜୀବ ଜଗତେ ଜାଗଇ ନିର୍ବେଦ ବେଦନା,
ବିଶ୍ରାମନ୍ତି ସିନା ବିଶ୍ରାନ୍ତ ମୁଖେ ।୭୩

ବିଶ୍ୱପତି ପଦୁଁ ଝରେ ପ୍ରେମ ଗଙ୍ଗା ଝର
ପିଇ ଆହ୍ଲାଦିତ ବିଶ୍ୱ ଭୁବନ,

ଆଜି ପିତା ପୁତ୍ର ପ୍ରାଣେ ଉଛୁଳି ପଡୁଛି
ସେ ପ୍ରେମ ପୀୟୁଷ ହ୍ରଦ ପାବନ ।୭୪

ପିତା ପ୍ରସାରନ୍ତି କର ରାଜଶିରୀ ନେଇ
ମଣ୍ଡିବେ ସୁଯୋଗ୍ୟ ସନ୍ତାନ ଶିରେ,
ନିଜେ ସଂତୃପ୍ତ ହୃଦୟେ ଅପସରି ଯିବେ
ତାପସ ଜୀବନେ କାନନେ ଧୀରେ ।୭୫

ପୁତ୍ର ପ୍ରଣତ ଚରଣେ ସ୍ୱାର୍ଥବଳି ଢାଳି
ନିବେଦି, ପୌରବ ଗୌରବ ସ୍ମରି ।
ବେନି ହୃଦେ କୁଳଗତ ବାତ୍ସଲ୍ୟ ଭକତି
ଅମୃତ ପରାଏ ଯାଏ ସଞ୍ଚରି । ୭୬

ଏ ତ ଆର୍ଯ୍ୟ କୁଳରୀତି ! ପ୍ରକୃତିର କୃତି
ସ୍ମରି ଆର୍ଯ୍ୟ ପ୍ରାଣ କରଇ ଗତି,
ବାଲ୍ୟେ ବିଦ୍ୟା ଯଉବନେ ସୁକର୍ମ ସାଧନା
ସାୟାହ୍ନେ ଲୋଡଇ ଆତ୍ମ ମୁକତି ।୭୭।
ରବି ଅସ୍ତାଚଳେ ଗଲେ ବିମଳ ମୟୂଖ
ଅର୍ପନ୍ତି ବର୍ଦ୍ଧିଷ୍ଣୁ ଚନ୍ଦ୍ରମା ବକ୍ଷେ,
ପିତୃ-ବିଭା ପୁତ୍ର ବକ୍ଷେ ଘଟାଇଛି ଆଜି
ଦର୍ଶ ଅଦର୍ଶନ ପଞ୍ଚାଳ ପକ୍ଷେ ।୭୮

ନର ବୁଝି ନପାରଇ ପ୍ରକୃତି ବାସନା
ଇଙ୍ଗିତେ ସିନା ସେ କରଇ ଗତି ।
ଯହିଁ ନିହିତ ନିଗୂଢ଼ ଭୁବନ କଲ୍ୟାଣ
ଧାଏଁ ତହିଁ ମହା ମାନବ ମତି ।୭୯

ଯାହା ବଳିଛି ବାସନା :- ନରମଣିଙ୍କର
ସନ୍ୟାସ ଜୀବନେ ଯିବେ କାନନେ,
ତହିଁ ଡାକୁଛି ପ୍ରକୃତି ରାଜ ସିଂହାସନେ
ଲକ୍ଷି କୁମାରଙ୍କ ସୌମ୍ୟ ଆନନେ ।୮୦

ସର୍ବେ ହେଲେ ତୂଷ୍ଣୀଭୂତ, ସଭା ଭେଙ୍ଗି ନୃପ
ଗମିଲେ ପ୍ରାସାଦେ ଅଙ୍ଗିରା ସଙ୍ଗେ

ସଙ୍ଗେ ଅଛନ୍ତି କୁମାର ଭାଷିଲେ ନୃମଣି
ରାଜ୍ୟାଶ୍ରମ ନୀତି କଥା ପ୍ରସଙ୍ଗେ ।୮୧

"ଚିରେ ସନ୍ତାପ ଶୋଚନା ନଘେନ କୁମାର !
ତୁମ୍ଭେ ପୁରୁକୁଳ- ଉଜ୍ଜ୍ୱଳ ମଣି,
ତବ ଭାସ୍ୱର ବିମଳ ଗୌରବ ଝଳକେ
ହସିବ ପୁଲକେ ଦିନେ ଧରଣୀ ।୮୨

ମନେ ଅଛି ବୀରମଣି ! କାଶ୍ୟପଙ୍କ ବାଣୀ
ଦେଖୁଛି ତ ଅସ୍ତ୍ର ଶସ୍ତ୍ର ଚାଳନା,
ସଦା ଆର୍ଯ୍ୟ କୁଳୋଚିତ କାର୍ଯ୍ୟ ଚତୁରତା
ବିଳକ୍ଷି କରିଛି ବୁଦ୍ଧି କଳନା ।୮୩

ଦିନେ ହେବ ତ ସଫଳ ସେ ଭବିଷ୍ୟ ବାଣୀ,
ନାହିଁ ମନେ ମୋର ସଂଶୟ ଲେଶ
ତବ ବିକ୍ରମ ଗରିମା ଅତିକ୍ରମି ଯିବ
ସିନ୍ଧୁ ଶୈଳ ଭେଦି ଅମରଦେଶ ।୮୪

ଦିନେ ଉଦିଲା ଯେକାଳ ଗରିମାର ଉଷା
ହସି ପାରିଜାତ ସୁଷମା ରାଶି,
ନବ ତପନ ପରାଏ ନାରସିଂହ ବିଭା
ଧାଇଁଲା ଚୌଦିଗେ ବିଶ୍ୱ ଉଦ୍‌ଭାସି ।୮୫

ଧୀରେ ଅପସରି ଗଲା ସେ ମହାତିମିର
ଆର୍ଯ୍ୟର ଆର୍ଜବ ବିକ୍ରମ ତେଜେ
ସେ ଯେ ମହାମାଂସ ଭୋଜୀ ଦାନବେ ଲୁଚିଲେ
ଦୂର ଦୂରାନ୍ତରେ ଶଇଳ ଶେଯେ ।୮୬

ସତ୍ତ୍ୱ ସମ୍ପଦ ରକ୍ଷଣେ ଦାନବ ଧର୍ଷଣେ
ବ୍ୟସ୍ତେ ବାରମ୍ବାର ଏ ଆର୍ଯ୍ୟକୁଳ
ଶକ୍ତି କେନ୍ଦ୍ରୀଭୂତ କଲେ ରାଜ ସିଂହାସନେ
ଆଶ୍ରି ଅରିନ୍ଦମ-ପତାକା ମୂଳ ।୮୭

ସେହି ଦିନୁ କୋଟି ରଶ୍ମି ବନ୍ଧା ରାଜଦଣ୍ଡେ,
ଅନୁସରି କୋଟି ପ୍ରାଣ ତରଣୀ
ଚଳେ ଭୂପତି ଇଙ୍ଗିତେ କାଳ-ପାରାବାରେ
ମୁଦ୍ରିତ ନୟନେ ବାହି ସରଣୀ ।୮୮

ଭ୍ରାନ୍ତି ବିଳାସ ତରଙ୍ଗେ ଭାସିଲେ ଭୂପତି
ଘଟେ ସିନା ରାଜ୍ୟେ ମହା ବିପ୍ଳବ,
ଛିନ୍ନେ ଅନିୟନ୍ତ୍ରିତ ସେ କୋଟି ତରୀ ଧାଏଁ
କ୍ଷୁବ୍ଧ କରି ସେହି ମହାଅର୍ଣ୍ଣବ ।୮୯

ତହୁଁ ସେ ହତାଶେ ବିପନ୍ନ ନରେନ୍ଦ୍ର ଜୀବନ
ହରାଏ ଶକତି ଆତ୍ମ ରକ୍ଷଣେ
ତାର ପ୍ରବୃତ୍ତି ବିପ୍ଳବ ବଦନ ବ୍ୟାଦାନି
ଗ୍ରାସଇ ଜୀବନ ତରୀ କ୍ଷଣେ ।୯୦
ଏହି ସୂତ୍ରେ ଆତ୍ମଶକ୍ତି ହରାଇବେ ଅର୍ଯ୍ୟେ
ଜିଣିବେ ଦାନବେ ପାଶବ ବଳେ
ଆର୍ଯ୍ୟ ଗୌରବ-ତପନ ବୁଡିଯିବ ଦିନେ
ଅସାର ବିଳାସ ବିଭ୍ରମ ଫଳେ ।୯୧

ଶକ୍ତି ଉପଚୟ ଲାଗି ସଂଚୟ ଲାଳସା
ସଞ୍ଚରି ଗଲାଣି ଆର୍ଯ୍ୟ ସଂସାରେ
ଏ ତ ହରୁଛି ଆର୍ଯ୍ୟର ଧୈର୍ଯ୍ୟ ବୀର୍ଯ୍ୟ, ବଳେ
ପକାଇବ ନେଇଂ ମରୁ-କାସାରେ ।୯୨

ଯେବେ ଦିଗ୍‌ବିଜୟେ ଦଳି ଦୁଷ୍ଟ ଦୈତ୍ୟକୁଳ
ଆହରିବ ଧନ ନିଜ ଅଗାରେ,
ସାଧୁ ଦୀନ ଦ୍ୱିଜେ ତାହା ଅର୍ପିବ ନିଃଶେଷେ
ନିୟୋଜିତ କରି ଯଜ୍ଞ ସମ୍ଭାରେ ।୯୩

ନିଜ ଭୁଜ ବୀର୍ଯ୍ୟ ସିନା ଆଜନ୍ମ ଆର୍ଯ୍ୟର
କି କାର୍ଯ୍ୟ ଏ ତୁଚ୍ଛ ନଶ୍ୱର ଧନେ,
ଯେତେ ପୂର୍ଣ୍ଣ ହେଉଥିବ ରାଜକୋଷ, ଶୂନ୍ୟ
କରୁଥିବ ସତ୍ତ୍ୱ ଶକ୍ତି ବର୍ଦ୍ଧନେ ।୯୪

ବିପ୍ର ତାପସ ବିଦୂଷେ ଆଦରିବ ଯତ୍ନେ
ଶାନ୍ତି ସ୍ୱସ୍ତ୍ୟୟନ ବାଣୀ ତାଙ୍କର
ସଦା ସୁନୀତି ପ୍ରଚାରି ପ୍ରଜ୍ଞାନ ମୟୂଖେ
ଆଲୋକିତ କରେ ନର ଅନ୍ତର ।୯୫

ବିଶ୍ୱ ବିରାଟ ପୁରୁଷ, ଚିଦାନନ୍ଦ ଜ୍ୟୋତି
ଲଭିଛନ୍ତି ବିପ୍ରେ ସାଧନା ବଳେ
ବୈରୀ-ଦମନ ବିକ୍ରମ ଲଭି କ୍ଷାତ୍ର ଭୁଜ
ପାଳଇ ପ୍ରକୃତି - ଅବନୀ ତଳେ ।୯୬

ଏକ ନିରୁଦ୍ଧ ଚୈତନ୍ୟ ପଙ୍ଗୁ ପ୍ରାଏ, ମାତ୍ର
ପ୍ରକାଶେ ବିମଳ ସ୍ୱଚ୍ଛଳ ଜ୍ୟୋତି
ଅନ୍ୟ ମଦମତ୍ତ ଅନ୍ଧ ବିକ୍ରମେ, ଅବନୀ-
ଶାସି ଲଭେ ରାଜ ଗୌରବ ମୋତି ।୯୭
ସଦା ଅନ୍ୟୋଅନ୍ୟେ ସହାୟ ନହେଲେ, ପ୍ରକୃତି
ପ୍ରବଞ୍ଚିତ ହୁଏ କଲ୍ୟାଣ ଧନେ,
ଭୁଜ ଉପରେ ମସ୍ତକ ବହିଛି ମାନବ,
ସ୍ମର ସଦା ବିଶ୍ୱ ହିତ ସାଧନେ ।୯୮

ମାତା ପରାଏ ମଣିବ ପର ରମଣୀ କି,
ଯୋଗମାୟା ଶକ୍ତି ବହିଛି ନାରୀ,
ମହାମାୟା ଯୋଗେ ମୋହି ନିଖିଳ ଭୁବନ
ପାଳୁଅଛି ସିନା ଶକ୍ତି ତାହାରି ! ।୯୯

ତାର ମଧୁର ମୋହନ ସ୍ନିଗ୍ଧ ବାଣୀଧାରା
ସଞ୍ଚାରି ଦାମିନୀ ନିତ୍ୟ ଉଦୟେ,
ନାଶି ଜୀବନ ଜଡତା କରେ ଉଦ୍‌ବୋଧନ
ବିଶ୍ୱଜୟୀ ଶକ୍ତି ବୀର-ହୃଦୟେ ।୧୦୦

ସଦା ରଖିବ ସଂକୁଳ କ୍ଷୀରନିଧି ନିଭ
ଗୋଧନେ ଜାହ୍ନବୀ ଯମୁନା କୂଳ
ଯହୁଁ କ୍ଷୀର ହବି ରୂପେ ଅମୃତ ନିର୍ଝର
ପାନେ ବୀର୍ଯ୍ୟବନ୍ତ ଏ ଆର୍ଯ୍ୟକୁଳ ? ୧୦୧

ପ୍ରାଣେ ସଂଯମ ଦୃଢ଼ତା ପ୍ରଜ୍ଞାନ ସାହସ
ଶକତି ସଂଚାରେ ହେଲେ ବଞ୍ଚିତ,
ଆର୍ଯ୍ୟ ସଂସାରେ ଜଳିବ ଦୁଃଖ ଦାବାନଳ,
ହେବେ ଆର୍ଯ୍ୟକୁଳ ବିଶ୍ୱେ ଲାଞ୍ଛିତ ।୧୦୨

ତେଣୁ ବିଳାସ ବ୍ୟସନ କାର୍ପଣ୍ୟ ଉପେକ୍ଷି
ଦାନେ ତୋଷି ଦୀନ ବିପ୍ର ହୃଦୟ
ନିତ୍ୟ ପ୍ରଜ୍ଞାନ ଆରାଧ୍ୟ, ନାରୀ, ଗୋ, ଆଦରି
କେ ନିଜ ପ୍ରାଣ ଗରିମାମୟ ।୧୦୩

ପ୍ରଜା ହୃଦୟ କେଦାରୁଁ ଖେଦ-ବୀଜ ନାଶି
ଆଦରିବ ତହିଁ ଭକ୍ତି ଆସନ,
ତୁଚ୍ଛ ରତ୍ନ ସିଂହାସନେ ଆସକ୍ତି ଉପେକ୍ଷି
ଚଳାଇବ ସଦା ସୌମ୍ୟ ଶାସନ ।୧୦୪

ନୀଚ ପ୍ରବୃତ୍ତି ପରାଏ ଖଳ ଜନେ ସଦା
ଲୋଭାନ୍ତି କୁକାର୍ଯ୍ୟେ ନରେନ୍ଦ୍ର ମନ,
ତାଙ୍କ ହୃଦ-ଅଭିସନ୍ଧି ପରିପୂର୍ଣ୍ଣ ହେଲେ
ହରନ୍ତି ତ ଧନ ମାନ ଜୀବନ ।୧୦୫

ଅଛି ବିଶାଳ ହୃଦୟ ଅବିଚଳ ଲକ୍ଷ୍ୟ
ବୀରେନ୍ଦ୍ର ବିକ୍ରମ ବହିଛ ପ୍ରାଣେ,
କରେ କରାଳ କୃପାଣ, ଚିତ୍ତେ ବିରାଜିତ
ମହତୀ କରୁଣା ଆରତତ୍ରାଣେ ।୧୦୬

ସଙ୍ଗେ ଅଛନ୍ତି ଅଙ୍ଗିରା ମହର୍ଷି ସତ୍ତମ
ଜାଳି ହୃଦେ ତବ ଜ୍ଞାନ ପ୍ରଦୀପ
ତବ ପ୍ରତିଭା ମୟୂଖ ପ୍ରସରିବ ବିଶ୍ୱେ
ଲଂଘି ବିଧି ପ୍ରତିକୂଳ ପ୍ରତୀପ ।୧୦୭

ନବ ଭାସ୍ୱର ବିଭୂତି ବିଭାକର ତୁମ୍ଭେ
ଆସିଲାଣି ଏବେ ଉଦୟ କାଳ
ତବ କର୍ମ ସମୁଦିତ ବିଭା ଘୁଞ୍ଚାଇବ
ଧରଣୀ ରାଣୀର ଦୁଃଖ ଜଞ୍ଜାଳ ।୧୦୮

ଆର୍ଯ୍ୟ- ଆଦ୍ୟ ଗାରିମାର ମହା ମହୀରୁହ
ପ୍ରରୋହିତ ହୋଇ ତୁମ୍ଭରି କରେ
ଦିନେ ପ୍ରସବିବ ଯେଉଁ ସୁଧାମୟ ଫଳ
ଚାହିଁ ପୁଲକିବେ ଅମର ନରେ ।୧୦୯

ତୁମ୍ଭ ନାମ ଅନୁମତେ ଲଭିବ ପ୍ରଖ୍ୟାତି
ସେ ଅମୃତ ଫଳ 'ଭାରତ' ନାମେ
ଯା'ର ମଧୁମୟ ରସ ପାନେ ଧନ୍ୟ ହେବେ
ବିବୁଧ ମାନବେ ଧରଣୀ ଧାମେ ।୧୧୦

ତବ ପୁଣ୍ୟ କର୍ମ ଧାରା ଅବରୋଧି ବନ୍ଧୁ !
ତେଜି ନିଜ ଆତ୍ମ ମୁକ୍ତି ସରଣୀ
ଯେବେ ରାଜ ସିଂହାସନେ ଯାପିବି ଜୀବନ,
ପ୍ରବଞ୍ଚିତ ସିନା ହେବେ ଧରଣୀ ।୧୧୧
(ଉପହାର ଅପ୍ରେଲ ୧୯୩୭)

X X X X

ଘନ କୁନ୍ତଳିନୀ ଦିଗଙ୍ଗନା ଶୋଭା
ସୁନୀଳ ଗଗନେ ବିକସି ।
ବାମେ ବନ୍ଧୁଅଛି ଅମର ରମଣୀ
ଅମର (୧) ତଟିନୀ ତଟରେ
ହୁଳ ହୁଳୀ ନାଦେ ମଙ୍ଗଳ ସମ୍ଭାର
ସଜାଇ ସୁବର୍ଣ୍ଣ ଘଟରେ
ବାମେତରେ ଚାରୁ ଚମରୀକା କୁଳ
ଢାଳୁଛନ୍ତି ଶ୍ୱେତ ଚାମର
ଉନ୍ନତି ବିଷାଣ ପୃଷ୍ଠ ନତ କରି
ଚାହୁଁଛନ୍ତି ବଲ୍‌ଗା ଶମ୍ବର
କ୍ଷୀରୋଦଧି (୨) ବକ୍ଷେ ଅୟୁତ ବିମାନ
ଝଲକେ ତରଙ୍ଗେ ତରଙ୍ଗେ
ଉଦ୍‌ଭ୍ରାନ୍ତ ନିଃସ୍ୱନେ ଉଡନ୍ତି ଗଗନେ
କ୍ରୌଞ୍ଚ ଆଦି ଜଳ ବିହଙ୍ଗେ ।

ଅବଦାତ ରମ୍ୟ          ମଲ୍ଲିକା ମାଳିକା
    ଅରପି ଅବନୀ ସୁନ୍ଦରୀ
ଅରିନ୍ଦମ ବୀରେ          ବନ୍ଦଇ କି ସ୍ନେହେ
    ଆବାହନ ବିଧି ଆଚରି ।

ଋଷି ଅଧୁସିତ          କ୍ଷୀରୋଦଧି କୂଳେ
    ଦିବ୍ୟ ଲୟେ ଯୋଗ ଆସନେ,
ବାଞ୍ଛନ୍ତି ମଙ୍ଗଳ          ସିଦ୍ଧି ଋଷି କୁଳ
    ବିଲୋକି ପ୍ରଜ୍ଞାନ ନୟନେ;
ଅତିକ୍ରମୁଁ କ୍ରମେ          କନକ ବିମାନ
    ଇଳା ବୃଉ ନଭଃ ସରଣୀ;
ଲଳିତ ଗାୟନେ          ବନ୍ଦୁଅଛି ପଦ
    ସ୍ନେହେ କିଂ ପୁରଷ ରମଣୀ ।

ଜୟ ଜୟ ବ୍ୟୋମ-          ବିମାନ ବିହାରୀ
    ନରେନ୍ଦ୍ର ମଉଳି ମଣ୍ଡନ
ଜୟ ଜୟ ଦେବ          ପଞ୍ଚାଳ ଭୂଷଣ !
    ପ୍ରଜାକୁଳ ଦୁଃଖ ଖଣ୍ଡନ !
ଜୟ ହେ ଦୁଷ୍ମନ୍ତ          ପୁରୁ ବଂଶ ମଣି !
    କାଳନେମି କୁଳ ମର୍ଦ୍ଦନ
ଜୟ ଇନ୍ଦ୍ର ସଖା !          ବିରେନ୍ଦ୍ର କେଶରୀ
    ସୁରୋଧ ସୁଯୋଗ୍ୟ ନନ୍ଦନ ।

(ଗଡଜାତ ସମାଚାର ୧୬.୧୧.୧୯୮୮)

୧ : ଅମର ନଦୀ । ମାଞ୍ଚୁରିଆରେ । R. Amur

୨ : କୃଷ୍ଣ ସାଗର, କାସ୍ପିଆନ ହ୍ରଦ, ଆରାଲ ଓ ବଲ୍‌ଖାସ ହ୍ରଦ ସହିତ ଅଭିନ୍ନ ରୂପରେ, ସମଗ୍ର ସାଇବେରିଆ ଭୂଖଣ୍ଡରେ ପ୍ରାଚୀନ ଯୁଗରେ ବିଶାଳ ଜଳଭାଗ କ୍ଷୀର ସମୁଦ୍ର ନାମରେ ବିଦ୍ୟମାନ ଥିଲା । ଏହା ଭୂବିଜ୍ଞାନବେତ୍ତାମାନଙ୍କର ସିଦ୍ଧାନ୍ତ ।



# ପ୍ରକୃତିର ଚାତୁରୀ

ଧାଉଁଛି ଧରଣୀ ଚଞ୍ଚଳ ଚରଣେ
ଅନୁସରି ବ୍ୟୋମ ସରଣୀ,
(ତହିଁ) କେତେ ରଙ୍ଗେ ନାଚେ କାଳନଦୀ ବକ୍ଷେ
ନିଖିଳ ଜୀବନ ତରଣୀ ।୧।

ବହି ଯାଉଛି ସେ ମହା କଲ୍ଲୋଳିନୀ
ଲକ୍ଷି କେଉଁ ମହା ଜଳଧି ?
(ସେତ) କୋଟି କଳ୍ପ ବ୍ୟାପି ଧାଉଁଛି ନୀରବେ
ନ ପାଏତ ତାର ଅବଧି ।୨।

(ତହିଁ) ଦୋଳୁଛି ପ୍ରବଳେ ଅହମିକାଧ୍ୱଜା
ଆନ୍ଦୋଳି ମାନବ ଭୁବନ
(ପୁଣି) ଖଣ୍ଡ ଖଣ୍ଡ ହୋଇ ଛିଣ୍ଡି ପଡୁଅଛି
ଲଭି ପ୍ରତିକୂଳ ପବନ । ୩।

ତେବେହେଁ ମାନବ ଫୁଲାଉଛି ଛାତି
ବଢାଇ ହୃଦୟ-ବଡାଇ
ବାର ବାର ତାର ଗୌରବ ଗରବ
ପ୍ରକୃତି ନେଉଛି ଛଡାଇ । ୪।

(କେତେ) ଅଙ୍କୁଛି ମାନବ ବାରିମାର ରେଖା
ବିଜ୍ଞାନର ଚାରୁ ପଟରେ
(ପୁଣି) ହସି ମାୟା ବିନୀ ନବ ଇନ୍ଦ୍ର ଜାଲେ
ଲିଭାଇ ଦେଉଛି ହଟରେ । ୫।

ଉନ୍ମଦେ ଦାମ୍ଭିକ ଖେଳାଉଛି କେତେ
ସ୍ତରେ ସ୍ତରେ ରକ୍ତ ଲହରୀ,

(ସେତ) ପରକ୍ଷଣେ ସେହି        କ୍ଷେତ୍ର କେତନ
ନେଉଛି ତାକରୁ ସଂହରି ।୬।

(କେତେ) ଗୁନ୍ଥୁଛି ଧନିକ        ଧନର ମାଳିକା
ଧରଣୀ-ପରିଧି ଗୁଡାଇ,
(ଚିତ୍ତେ) କଳପେ ଲମ୍ୱାଇ        ଚନ୍ଦ୍ର ମଣ୍ଡଳେ
କୀର୍ତ୍ତି ଧ୍ୱଜା ଦେବ ଉଡାଇ ।୭।

(କେତେ) ଲେଖୁଛି ଲେଖକ        ଲକ୍ଷ ହୀନ ଲେଖା
କା ଲାଗି ଲେଖୁଛି ? କି ପାଇଁ
(ସେତ) ଭାଳୁଛି ମନରେ        ତା ଲେଖନୀ ମୁନେ
ବିଶ୍ୱ-କେନ୍ଦ୍ର ଦେବ କମ୍ପାଇ ।୮।

(ତାର) ବିପଞ୍ଚୀ ଝଙ୍କାରେ        ଝଙ୍କାରିତ ନୁହେ
ଅଣୁ ଜୀବ- କ୍ଷୀଣ ଅନ୍ତର,
(ମନେ) ତେବେହେଁ କଳ୍ପୁଛି        ଦ୍ରବି ଯିବ ମେରୁ
ଶୁଣି ତା ମୋହନ ମନ୍ତର ।୯।

(ରଙ୍ଗେ) ଛନ୍ଦିଛି ପ୍ରକୃତି        କେତେ ଇନ୍ଦ୍ରଜାଲେ
ରଚି ବିଶ୍ୱ-ନାଟ ମନ୍ଦିର,
(ତହିଁ) ରହସ୍ୟ ଅନ୍ଧାରେ        ରଖିଛି ଗୁପତେ
ଶାଶ୍ୱତ ବିଧାନ ବିଧିର ।୧୦।

(ସେଯେ) ବାନ୍ଧିଛି ଯତନେ        ମାନବ ନୟନେ
ମୋହାଞ୍ଜନେ ଅନ୍ଧ ପଟଳୀ
(ତହିଁ) ଖଞ୍ଜିଛି ସୁନ୍ଦର        ହୃଦର ଦର୍ପଣ
ଚିତ୍ରି ବିଶ୍ୱ ଚିତ୍ର ଆବଳି ।୧୧।

(ଯେବେ) ବିକଶି ଆସଇ        କରୁଣା କୁସୁମ
ଦୁଃଖୀର ଦାରୁଣ କଷଣେ,
(ତହିଁ) ଖେଳାଇ ନିର୍ମ୍ମମ        ଆତ୍ମମ୍ଭରି ନୀତି
ଦଳିଦିଏ କ୍ରୁର ପେଷଣେ ।୧୨।

(ଯେବେ) ସଂଯମ କବଚେ        ବକ୍ଷ ବାନ୍ଧେ ନର
ଉନ୍ମିଳନେ ପ୍ରଜ୍ଞା ନୟନ,
(କେତେ) ସରାଗେ ସଜାଏ        ବିଳାସ ଲାଳସା-
କୁସୁମେ କୋମଳ ଶୟନ ।୧୩।

(ଯେବେ) ସତ୍ୟ ଆଲୋକେ ଦେଖଇ ମାନବ
ବିଶ୍ୱର ନଶ୍ୱର ମୁରତି,
(ତହିଁ) କାମିନୀ କାଞ୍ଚନ ଖଞ୍ଜି ରଞ୍ଜି ଦିଏ
ଆସଙ୍ଗ ଅଞ୍ଜନେ ଆରତି ।୧୪।

(ସେହ) ଆସଙ୍ଗେ ସଂଜାତ କାମାନଳ ଜାଳି
ଦହି ଦିଏ ଆତ୍ମ ଶକତି,
(ସଦା) ପ୍ରକୃତିର ଅନୁ- ସରଣ ବିହୀନେ
ଦୁର୍ବଳର ଅଛି କି ଗତି ?।୧୫।

# ବିରାଟ ବିସ୍ମୟ

ମହା ଅନ୍ଧକାରେ ବିଲୀନ ରହିଛି
ଚିର ଜ୍ୟୋତିର୍ମୟ ବିମଳ ଛବି
ଚିର ଅଭିନବ ପୁରାଣ ଶାଶ୍ୱତ
ଆସ ପ୍ରାଣେ ପ୍ରାଣ ପଙ୍କଜ-ରବି !
ଆସିଛି ନିଭୃତେ ଏ ପ୍ରାଣ କୁଟୀରେ ?
ଦିଶୁ ନାହଁ କିପାଁ ନୟନେ ମୋର ?
ବିରାଟ ଅରୂପ ଗମ୍ଭୀର ମୂରତି
ସଞ୍ଚାରେ ଅନ୍ତରେ ବିସ୍ମୟ ଘୋର !
ହେ ମହିମାମୟ ମହା ମହୋଦଧି
ମୀନ ପ୍ରାଏ ରବି ଚନ୍ଦ୍ରମା ତାରା
ସନ୍ତରି ବୁଲନ୍ତି ବିଶାଳ ଉରସେ
ପ୍ରସରାନ୍ତି ତବ କିରଣ ଧାରା !
ଏକି ରୂପ ତବ ? ନାହିଁ ହାତ ଗୋଡ
ନାହିଁ ଅଛି ପୁଟା ମାଉଁସ ଚମ
ଖାଲି ଜ୍ଞାନାନନ୍ଦ ଜ୍ୟୋତିର୍ମୟ ବପୁ !
ଶାଶ୍ୱତ ପ୍ରଭାବେ କି ମନୋରମ ।

❖❖❖





**ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ**
**(୧୯୫୯)**

ସମକାଳୀନ ଓଡ଼ିଆ ପୁସ୍ତକ ସଂପାଦନା କ୍ଷେତ୍ରରେ ଭାବଗତ ବିବିଧତା ଓ କଳାତ୍ମକ ପର୍ଯ୍ୟବେକ୍ଷଣର ମନୁଷ୍ୟ ପରିପ୍ରକାଶ ଦୃଷ୍ଟିରୁ ଫଣୀନ୍ଦ୍ର ଭୂଷଣ ନନ୍ଦ ଜଣେ କୃତବିଦ୍ୟ ସଂପାଦକ । ପ୍ରବନ୍ଧ ସମାଲୋଚନା ଓ କବିତା ରଚନାରେ ନିଜର ସିଦ୍ଧି ପ୍ରକାଶ କରିଥିବା ଏହି ପ୍ରତିଭା ଅନାଲୋଚିତ ସାରସ୍ୱତ ସାଧକଙ୍କ କୃତିରେ ସଂଧାନ କରନ୍ତି ସୌନ୍ଦର୍ଯ୍ୟବୋଧ ଓ ଜୀବନ ସତ୍ୟର କ୍ରମଃସାଧ ବିଦ୍ଧାଣୀବ୍ରତ୍କୁ । ତାଙ୍କରି ଉଦ୍ୟମ ଫଳରେ ବିଲୁପ୍ତି ଓ ବିସ୍ମୃତିର ଦ୍ୱାରଦେଶରୁ ଫେରିଛନ୍ତି ବହୁ ସାହିତ୍ୟରଥୀ, ଉଦ୍ଧାର ପାଇଛି ବହୁ ଅକ୍ଷରମାଳିନୀ କୀର୍ତ୍ତି, ସାହିତ୍ୟ ଆଲୋଚନା ପାଇଛି ନୂତନ ଦିଗନ୍ତ ଓ କଳାତ୍ମକତାର ସ୍ପର୍ଶ ।

ବାସୁଦେବ ସୁଦ୍ଧଳଦେବ ଗ୍ରନ୍ଥାବଳୀ, ସଚ୍ଚିଦାନନ୍ଦ ତ୍ରିଭୁବନଦେବ ଗ୍ରନ୍ଥାବଳୀ, ଜଳଧର ଗ୍ରନ୍ଥାବଳୀ, ମୌଲାନା ମୁସ୍ତକିମ ଖାଁ ଗ୍ରନ୍ଥାବଳୀ ସଂପାଦନାରେ ଉତ୍କର୍ଷତା ପ୍ରତିପାଦିତ କରିଥିବା ଏହି ସ୍ରଷ୍ଟାଙ୍କ ବିଜ୍ଞାନସିଦ୍ଧ ସଂପାଦନାର ଉଜ୍ଜ୍ୱଳ ଦୃଷ୍ଟାନ୍ତ 'କବି ହରିହର ମହାପାତ୍ର ଗ୍ରନ୍ଥାବଳୀ' ଯେ ପାଠକଙ୍କୁ ଆବିଷ୍ଟ କରିବ ଏହା ସ୍ୱତଃସିଦ୍ଧ ।

-ପ୍ରକାଶକ

ତୁମ୍ଭେ ତ ପରମ ପିତା ମୁଁ କ୍ଷୁଦ୍ର ସନ୍ତାନ,
ମାନବ ବିଗ୍ରହେ ଦେଇ ଯେ ପରମ ଜ୍ଞାନ;

ଆଦର୍ଶ ଜଙ୍ଗମ ସୃଷ୍ଟି ଦେଖାଇଛ ଭବେ,
ସେ ସୃଷ୍ଟି-କମଳ ତବ ସେ ଜ୍ଞାନ-ସୌରଭେ-

ସୁରଭିତ, ଉଦ୍‌ବୋଧିତ, ଉଲ୍ଲସିତ ଛବି,
ଦେଖଇଁ ପୁଲକ ନେତ୍ରେ ପ୍ରାଣେ ଅନୁଭବି ।

ତୁମ୍ଭରି ଇଙ୍ଗିତେ ତ୍ରସ୍ତ ଦୁଷ୍ଟ ରିପୁକୁଳ
ତୁମ୍ଭରି ଇଙ୍ଗିତେ ଚିତ୍ତ ହୁଏ ସୁନିର୍ମ୍ମଳ ।

ତୁମ୍ଭରି ବରେଣ୍ୟ ବିଭା ବିଲୋକି ଜୀବନ
ଲଭିବ କି ତବ ପଦ ଶାନ୍ତି-ନିକେତନ ?




ହରିହର ମହାପାତ୍ର ଗ୍ରନ୍ଥାବଳୀ
ସଂଗ୍ରହ ଓ ସଂପାଦନା
ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ


KAVYALOKA
Nizigarh Kurukhi, Harirajpur
Jatni, Puri-752050

₹ ୪୮୦/-